# ଜୀବନର ମୂଲ୍ୟ ଓ ହେତୁବାଦ

ଧନେଶ୍ୱର ସାହୁ



ହେତୁବାଦୀମାନେ ସଭ୍ୟତାର ପଥପ୍ରଦର୍ଶକ ଓ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ସ୍ୱପ୍ନ-ଦ୍ରଷ୍ଟା । ସେହିମାନେ ହିଁ ମାନବଜାତିର ବିବେକର ପ୍ରତିଭୂ ।

ମଣିଷ ହିଁ ସଭ୍ୟତା ଓ ସଂସ୍କୃତିର ନିର୍ମାତା । ସଭ୍ୟତାରେ ଯାହାକିଛି ବିକଶିତ ହୋଇଛି, ତାହା ମଣିଷର ଅନୁସନ୍ଧିତ୍ସା, ଗବେଷଣା ଓ ବୌଦ୍ଧିକ ଚିନ୍ତନ ଯୋଗୁଁ ସମ୍ଭବ ହୋଇଛି ।

ଜୀବନର ଗୁଣାତ୍ମକ ମାନ ବିଚାରଶୀଳ ଦୃଷ୍ଟି ଓ ମାନବିକ ସମ୍ବେଦନଶୀଳତା ଉପରେ ନିର୍ଭର କରେ । ବିଚାରଶୀଳ ଓ ମାନବିକତା ମହତ୍ତର ଜୀବନବୋଧର ସ୍ୱାକ୍ଷର ବହନ କରେ ।

ଯେଉଁ ରାଷ୍ଟ୍ରମାନେ ବିକଶିତ, ସେମାନଙ୍କୁ କେଉଁ ଦିଅଁ ଦେବତାର ଆଶୀର୍ବାଦ ମିଳିନାହିଁ ବା ଯେଉଁ ରାଷ୍ଟ୍ରମାନେ ଅନଗ୍ରସର ସେମାନଙ୍କୁ ଅଭିଶାପ ମିଳିନାହିଁ । ନିଷ୍ପାପର ପ୍ରୟାସ, ଉଚ୍ଚ କର୍ମସଂସ୍କୃତି, ସାଧୁତା, ବୃହତ୍ତର ସମାଜ ପ୍ରତି ଅଙ୍ଗୀକାରବଦ୍ଧତା ଓ ସମତାର ଭାବ ବିକାଶର ମୂଳମନ୍ତ୍ର ।

ଜୀବନର ମୂଲ୍ୟ ଓ ହେତୁବାଦ
(ପ୍ରବନ୍ଧ)
*ଲେଖକ :* ଧନେଶ୍ୱର ସାହୁ
ଦୂରଭାଷ : ୯୪୩୮୫୪୭୮୯୫
*ପ୍ରକାଶକ :* କାଳୀପଦ ପଣ୍ଡା, ସୁବର୍ଣ୍ଣଶ୍ରୀ ପ୍ରକାଶିନୀ
ନେଳିଆବାଗ, ଶ୍ରୀକଣ୍ଠପୁର, ବାଲେଶ୍ୱର, ମୋ: ୯୪୩୭୦୮୯୨୪୧
*ପ୍ରଚ୍ଛଦ :* ବିଜୟ କୁମାର ପ୍ରଧାନ
ପ୍ରଥମ ସଂସ୍କରଣ: ୨୦୧୬, ମୂଲ୍ୟ : ଟ.୨୨୦/-

---

JIBANARA MULYA O HETUBADA
(ESSAYS)
by : Dhaneswar Sahoo
Ph.: 9438547895

**Publisher :** Kalipada Panda, **SUBARNASHREE PRAKASHINI**
Neliabag, Shrikanthapur, Balasore, Mob : 9437089241

**Cover Design : Bijay Kumar Pradhan**
**First Edition** : 2016, **Price : Rs. 220 /-**

# ଉତ୍ସର୍ଗ

ମାନବିକତା ଓ ସମ୍ବେଦନଶୀଳତାର ଭାବ ଓ ଭାଷାକୁ ଦୃଷ୍ଟିହୀନମାନେ ବି ଦେଖିପାରିବେ ଓ ବଧିରମାନେ ବି ଶୁଣିପାରିବେ । ଯେଉଁମାନେ ସେହି ଭାଷାକୁ ନିଜ ଅନ୍ତରର ଭାବ ଓ ଭାଷା କରିଆସିଛନ୍ତି, ସେହିମାନଙ୍କ ହାତରେ ଏହି ବହିଟିକୁ ଉତ୍ସର୍ଗ କରୁଛି ।

- *ଲେଖକ*

# ମୁଖବନ୍ଧ

ଏହି ପୁସ୍ତକଟି ମୋର ଚତୁର୍ଥ ପ୍ରବଂଧ ସଂକଳନ । ଏହା ପୂର୍ବରୁ ପ୍ରକାଶିତ ତିନୋଟି ପ୍ରବଂଧ ସଂକଳନ ହେଲା- (୧) ଧର୍ମ, ଦର୍ଶନ ଓ ସମାଜ, (୨)ସଂସ୍କୃତି ଓ ସର୍ବୋଦୟ, (୩) ଗାନ୍ଧୀ, ବିଜ୍ଞାନ ଓ ମାନବବାଦ । ପ୍ରତ୍ୟେକଟିରେ ଚବିଶଟି ଲେଖାଏଁ ପ୍ରବଂଧ ସ୍ଥାନୀତ ହୋଇଥିବା ଯୋଗୁଁ ଏହି ସଂକଳନଟିରେ ମଧ୍ୟ ଚବିଶଟି ପ୍ରବଂଧ ଅନ୍ତର୍ଭୁକ୍ତ କରିଛି। ଏଥିରେ ସ୍ଥାନୀତ ପ୍ରବଂଧମାନ ବୈଜ୍ଞାନିକ ଚର୍ଚ୍ଚା, ବିକଳ୍ପ ବିଚାର, ସମଦୃଷ୍ଟି, ଅଳକାନନ୍ଦା, ପ୍ରଜ୍ଞାଶ୍ରୀ, ଝଙ୍କାର ଇତ୍ୟାଦି ପତ୍ରିକାମାନଙ୍କରେ ପୂର୍ବରୁ ପ୍ରକାଶ ପାଇଛି। ପ୍ରକାଶିତ ପ୍ରବଂଧଗୁଡିକ ଗୋଟିଏ ସଂକଳନରେ ଏକତ୍ର ଗୁନ୍ଥା ହୋଇ ପ୍ରକାଶ ପାଇବା ମୋପାଇଁ ବେଶ୍ ଆନନ୍ଦର ବିଷୟ।

ଏହି ପ୍ରବଂଧଗୁଡିକ ବିଭିନ୍ନ ସମୟରେ ଓ ବିଭିନ୍ନ ପ୍ରସଙ୍ଗ ଉପରେ ଲିଖିତ। କେତେକ ସାଂପ୍ରତିକ ଘଟଣା, କିଛି ବିଶିଷ୍ଟ ବ୍ୟକ୍ତି, କେତେକ ଦାର୍ଶନିକ ପ୍ରତୀତି, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଇତ୍ୟାଦି ବିଷୟମାନଙ୍କ ଉପରେ ପ୍ରବଂଧଗୁଡିକ ଲେଖା ଯାଇଛି। ତେବେ ଜୀବନର ଗୁଣାତ୍ମକ ମୂଲ୍ୟ କେଉଁ ବିଚାରବୋଧରେ ନିହିତ, ଏହି ପ୍ରସଙ୍ଗଟି ବିଭିନ୍ନ ପ୍ରବଂଧରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଆଲୋଚନାର ପରିସରକୁ ଆସିଛି । ଏହା ସହିତ ହେତୁବାଦର

ବିଭିନ୍ନ ଦିଗନ୍ତ ଉପରେ କେତେକ ପ୍ରବଂଧ ରହିଛି । ସୁତରାଂ ପ୍ରବଂଧ ସଂକଳନଟିର ଶୀର୍ଷକ "ଜୀବନର ମୂଲ୍ୟ ଓ ହେତୁବାଦ" ରଖିବାକୁ ସ୍ଥିର କଲି ।

ଜୀବନର ମୂଲ୍ୟ ନିରୂପଣ କରିବା ଏକ ଜଟିଳ ପ୍ରସଙ୍ଗ । ଉତ୍ତମ ଜୀବନର ସ୍ୱରୂପଟି କ'ଣ ଏହି ପ୍ରସଙ୍ଗ ଉପରେ ନୀତି-ଦର୍ଶନ ପରିସରରେ ବହୁ ଆଲୋଚନା ହେବା ଦେଖାଯାଏ । ଭଲ-ମନ୍ଦ, ନୀତି- ଅନୀତି, ନ୍ୟାୟ-ଅନ୍ୟାୟ, ମାନବିକ-ଅମାନବିକ ପ୍ରସଙ୍ଗମାନ ଆମର ଆଚରଣ ସହ ସଂଶ୍ଳିଷ୍ଟ । କେତେକ କାର୍ଯ୍ୟ ବା ଆଚରଣ ଉତ୍ତମ, ନୀତିପୂର୍ଣ୍ଣ, ସମାଜ ପାଇଁ ମଙ୍ଗଳପ୍ରଦ ଓ ମାନବିକ, ଅଥଚ ଅନ୍ୟ କେତେକ କାର୍ଯ୍ୟ ମନ୍ଦ, ଅନୈତିକ, ଅସାମାଜିକ ଓ ଅମାନବିକ । ତେବେ ନୀତି, ନୈତିକତାର ପ୍ରସଙ୍ଗ ସାମାଜିକ ଜୀବନ ପ୍ରବାହରେ ହିଁ ଆଲୋଚ୍ୟ । ସାଧାରଣ ଭାବେ କହିଲେ ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ହିଁ ବିଚାର୍ଯ୍ୟ । ଜୀବନର ଗୁଣାତ୍ମକ ମୂଲ୍ୟ ଏହି ଦୃଷ୍ଟିରୁ ଏକ ନୀତିପୂର୍ଣ୍ଣ ଜୀବନ ସହ ସଂଶ୍ଳିଷ୍ଟ । ଏହି ପୃଷ୍ଠଭୂମିରେ ମାନବବାଦୀ ଜୀବନଦୃଷ୍ଟି, ସମ୍ବେଦନଶୀଳ ମନୋଭାବ, ନ୍ୟାୟବୋଧ ଓ ସମତାର ଭାବ ଜୀବନର ମୂଲ୍ୟ ନିରୂପଣ କରିବାରେ ଏକ ନିର୍ଭରଶୀଳ ମାନଦଣ୍ଡ । ଏହା ସହିତ ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମନୋଭାବ ବି ଜୀବନର ଉତ୍କର୍ଷ ସାଧନ ଦିଗରେ ସହାୟକ ହୋଇଥାଏ । ସଂକ୍ଷେପରେ କହିଲେ, ମାନବବାଦ ଓ ବିଚାରଶୀଳ ଦୃଷ୍ଟି ବ୍ୟକ୍ତିର ଜୀବନବୋଧରେ ଯେତେ ଅଧିକ ପ୍ରତିଫଳିତ ହୁଏ, ଜୀବନର ଗୁଣାତ୍ମକ ମୂଲ୍ୟ ସେତେ ଉନ୍ନତ ହୋଇଥାଏ । ଏହି ଭାବଧାରା ହିଁ ପ୍ରବଂଧମାନଙ୍କର ଅନ୍ତର୍ନିହିତ ବାର୍ତ୍ତା ବୋଲି ମୁଁ ମନେକରେ ।

ଏହି ପ୍ରବଂଧ ସଂକଳନରେ ସ୍ଥାନୀତ ପ୍ରବଂଧମାନ ପୂର୍ବରୁ ପ୍ରକାଶିତ ହୋଇଥିବାରୁ କେତେକ ପାଠକ ମୋତେ ସାଧୁବାଦ ଜଣାଇଛନ୍ତି ଓ ସେମାନଙ୍କର ସୁଚିନ୍ତିତ ମତାମତ ଦେଇଛନ୍ତି। ବିଶେଷକରି "ବୈଜ୍ଞାନିକ ଚର୍ଚ୍ଚା"ରେ ପ୍ରକାଶିତ ପ୍ରବଂଧମାନ ପଢ଼ିବା ପରେ କିଛି ସହୃଦୟ ପାଠକ ମୋତେ ଫୋନ୍ କରିଛନ୍ତି। ସମସ୍ତ ପାଠକମାନଙ୍କୁ ଏହି ଅବସରରେ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି।

ପ୍ର. ରାଧାମୋହନ, ପ୍ର. ପ୍ରସନ୍ନ କୁମାର କରବର ଓ ପ୍ର. ବିଜୟାନନ୍ଦ କରଙ୍କ ପରି ହିତୈଷୀ ଗୁରୁଜନମାନଙ୍କର ପ୍ରେରଣା ପାଇଁ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି । ଲେଖାମାନଙ୍କୁ ଡି.ଟି.ପି. କରିବାରେ ବହୁ ସାହାଯ୍ୟ ଦେଇଥିବାରୁ ଶ୍ରୀ ମନମୋହନ ମହାପାତ୍ରଙ୍କୁ ଧନ୍ୟବାଦ ଦେଉଛି। ପୁସ୍ତକର ପ୍ରକାଶନ ଦାୟିତ୍ୱ 'ସୁବର୍ଣ୍ଣଶ୍ରୀ ପ୍ରକାଶନୀ'ର ସତ୍ତ୍ୱାଧିକାରୀ ଶ୍ରୀ କାଳୀପଦ ପଣ୍ଡା ନେଇଥିବାରୁ ତାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଛି।

ଧନେଶ୍ୱର ସାହୁ

ଏ-୧୨, ଭାଗୀରଥି ବିହାର
ଢେଙ୍କାନାଳ
ଫୋନ୍ ନଂ-୯୪୩୮୫୪୭୮୯୫

# ସୂଚୀପତ୍ର

\

# ସାମ୍ରାଜ୍ୟବାଦ : ରାଜନୈତିକ ଓ ସାଂସ୍କୃତିକ

ଏହା ଏକ ଐତିହାସିକ ସତ୍ୟ ଯେ ଆଧୁନିକ ବିଜ୍ଞାନର ବିକାଶପର୍ବ ପାଶ୍ଚାତ୍ୟ ୟୁରୋପୀୟ ଦେଶମାନଙ୍କରେ ନବଜାଗରଣ ଯୁଗ ପରେ ଆରମ୍ଭ ହେଲା । ବିଭିନ୍ନ ପ୍ରାଚୀନ ସଭ୍ୟତାରେ ଯାହା କିଛି ବୈଜ୍ଞାନିକ ଜ୍ଞାନର ବିକାଶ ହୋଇଥିଲା ତାହା ଗୋଷ୍ଠୀଗତ ଜୀବନର କେତେକ ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରୁଥିଲା । କୃଷି, କୁଟୀର ଶିଳ୍ପ, କିଛି ସାଧାରଣ ଚିକିତ୍ସା, ଜଳଯାତ୍ରା ଇତ୍ୟାଦି କ୍ଷେତ୍ରରେ ପ୍ରତ୍ୟେକ ପ୍ରାଚୀନ ସଭ୍ୟତାରେ କିଛି କିଛି ବିକାଶ ହୋଇଥିଲେ ବି ତାହା ଅତି ସୀମିତ ଓ ଅବିକଶିତ ସ୍ତରରେ ରହିଥିଲା । ତେବେ ୟୁରୋପରେ ଯେଉଁ ନବଜାଗରଣର ଯୁଗ ଆସିଲା ତା ପରଠାରୁ ଜ୍ଞାନବିଜ୍ଞାନ, ଶିକ୍ଷା, ଗମନାଗମନ, ସମୁଦ୍ର ଯାତ୍ରା ଇତ୍ୟାଦି କ୍ଷେତ୍ରରେ ଉଲ୍ଲେଖନୀୟ ବିକାଶର ଯୁଗ ଆରମ୍ଭ ହେଲା । ଶିଳ୍ପ ବିପ୍ଳବ ଯୋଗୁଁ ବାଣିଜ୍ୟ ପାଇଁ ପଶ୍ଚିମ ମହାଦେଶର ବଣିକମାନେ ଜଳପଥରେ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଗଲେ । ବିଭିନ୍ନ ଭୂଖଣ୍ଡ ସହ ଯୋଗାଯୋଗ ସମୁଦ୍ର ଯାତ୍ରାଜନିତ ଜ୍ଞାନ ଓ ପ୍ରଯୁକ୍ତି ଯୋଗୁଁ ସମ୍ଭବ ହେଲା । ଯେଉଁ ପାଶ୍ଚାତ୍ୟ ବଣିକମାନେ ପୃଥିବୀର ବିଭିନ୍ନ ଅଞ୍ଚଳକୁ ଗଲେ କାଳକ୍ରମେ ସେମାନେ ନିଜର କୌଶଳ ଓ ବଳ ଲଗାଇ ସେମାନଙ୍କର ଆଧିପତ୍ୟ ଦୃଢ଼ କଲେ । ସାମ୍ରାଜ୍ୟବାଦର ଯୁଗ ଆସିଲା ଓ ପୃଥିବୀର ସାମରିକ ଶକ୍ତିରେ ବଳଶାଳୀ ଓ ଶିଳ୍ପରେ ଆଗୁଆ ଥିବା ଲୋକମାନେ ପୃଥିବୀବ୍ୟାପୀ ଉପନିବେଶ ସ୍ଥାପନ କଲେ । ସେମାନେ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ଆଗୁଆ ଥିବାରୁ ବିଭିନ୍ନ ଭୂଖଣ୍ଡକୁ ଅଧିକାର କଲେ । ଏହା ଏକ ଐତିହାସିକ ସତ୍ୟ ଯେ ବହୁଧା ବିଭକ୍ତ ଭାରତବର୍ଷ କାଳକ୍ରମେ ଇଂଲଣ୍ଡର ଉପନିବେଶ ହେଲା । ବ୍ରିଟିଶ ସାମ୍ରାଜ୍ୟବାଦ ଭାରତରେ ମୋଗଲ ଶାସନର ଜବନିକା ଟାଣିଲା ଓ ଧୀରେ ଧୀରେ ଅସଂଖ୍ୟ ଛୋଟଛୋଟ ରାଜ୍ୟମାନଙ୍କୁ ଅକ୍ଳେଶରେ କରାୟତ

କରିଚାଲିଲା । ଏହି ଧାରାରେ ବିଶାଳ ଭାରତବର୍ଷ ଏକ ରାଜନୈତିକ ସଂହତି ଭିତରକୁ ଆସିଲା ଓ ଇଂଲଣ୍ଡର ଶାସନାଧୀନ ହେଲା । ଦେଶ-ଅଧିକାର ଜନିତ ଧ୍ୱଂସଦହନର ପରିସ୍ଥିତି ପରେ ଶାସନ ଜନିତ ଶୃଙ୍ଖଳା, ସଂହତି ପାଇଁ କିଛି ପ୍ରୟାସ ଆରମ୍ଭ ହେଲା । ସପ୍ତଦଶ/ଅଷ୍ଟାଦଶ ଶତାବ୍ଦୀରୁ ୟୁରୋପୀୟମାନେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଉପନିବେଶ ସ୍ଥାପନ କରିବା ସହ ସେଠିକାର ଶାସନତନ୍ତ୍ରକୁ ନିୟନ୍ତ୍ରଣ କଲେ । ଊନବିଂଶ ଶତାବ୍ଦୀ ବେଳକୁ ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ଉପନିବେଶୀୟ ପରିସ୍ଥିତି ଯୋଗୁଁ ଏକ ଆଦାନ-ପ୍ରଦାନର ପରିବେଶ ଆସି ସାରିଥିଲା । ଉନ୍ନବିଂଶ ଶତାବ୍ଦୀ ବେଳକୁ ୟୁରୋପୀୟ ରାଷ୍ଟ୍ରମାନଙ୍କରେ ବିଶ୍ୱବିଦ୍ୟାଳୟ ଶିକ୍ଷା, ବୈଜ୍ଞାନିକ ଗବେଷଣା ଓ ନୂତନ ପ୍ରଯୁକ୍ତିର ପରିବେଶ ଏକ ସୁଦୃଢ ଭିତ୍ତି ନେଇ ସାରିଥିଲା । ବିଶ୍ୱବିଦ୍ୟାଳୟ ଶିକ୍ଷାସ୍ତରରେ ବହୁ କ୍ଷେତ୍ରରେ ନୂଆ ନୂଆ ଗବେଷଣା, ତଥ୍ୟାନୁସନ୍ଧାନ ଓ ବୌଦ୍ଧିକ କୌତୂହଳତା ସୃଷ୍ଟି ହୋଇ ସାରିଥିଲା । ଏହି ଧାରାରେ ବିଭିନ୍ନ ସଭ୍ୟତା, ସଂସ୍କୃତି, ଧର୍ମ, ପ୍ରାଚୀନ କୀର୍ତ୍ତିରାଜୀ ଇତ୍ୟାଦି ଉପରେ ପାଶ୍ଚାତ୍ୟ ମନୀଷୀମାନେ ନାନା ଗବେଷଣା କରି କେତେ କେତେ ନୂଆ ତଥ୍ୟ ବାହାରକୁ ଆଣିପାରିଲେ ।

ଉପନିବେଶିକ ଶାସନ ଧାରାରେ ଆର୍ଥିକ ଶୋଷଣ ଓ ରାଜନୈତିକ କର୍ତ୍ତୃତ୍ୱ ନିଶ୍ଚୟ ରହିଥିଲା । ଏହା ସହିତ ପାଶ୍ଚାତ୍ୟ ଦେଶରୁ ବହୁ ବିଜ୍ଞ ମନୀଷୀ ବିଭିନ୍ନ ସଭ୍ୟତାରେ ପ୍ରଚ୍ଛନ୍ନ ହୋଇ ଲୁକାୟିତ ଥିବା ବହୁ ଅମୂଲ୍ୟ ରତ୍ନ ବି ବାହାରକୁ ଆଣିଲେ । ଏହି ଧାରାରେ ପୃଥିବୀର ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଥିବା ମହାନ କୃତି ଗୁଡିକ ଅନୁବାଦିତ ହେଲା ଓ ସାମଗ୍ରିକ ଭାବେ ମଣିଷ ଜାତିର ସାଂସ୍କୃତିକ ବିଭବ ହୋଇପାରିଲା । ଏହା ସହିତ ପୃଥିବୀରେ କେଉଁଠି କ'ଣ ସଭ୍ୟତା ଥିଲା, ସେଠିକାର ସାମାଜିକ ଜୀବନ ପ୍ରବାହ କିପରି ଥିଲା, ଧାର୍ମିକ ପରଂପରା କିପ୍ରକାର ଥିଲା, ଭାଷା କିପରି ଥିଲା, ଭାଷାମାନଙ୍କର କ୍ରମ ବିକାଶ କିପରି ହୋଇଛି ଏସବୁର ଅଧ୍ୟୟନ ପାଶ୍ଚାତ୍ୟ ଜ୍ଞାନ-ପିପାସୁ ମନୀଷୀମାନେ ଆରମ୍ଭ କଲେ । ମାୟା ସଭ୍ୟତା, ସୁମେରୀୟ ଓ ବେବିଲୋନ ସଭ୍ୟତାର ବିକାଶ ପର୍ବ, ସିନ୍ଧୁ ସଭ୍ୟତାର ଉତ୍‌ଥାନ-ପତନର କାହାଣୀ ପାଶ୍ଚାତ୍ୟ ଐତିହାସିକ, ନୃତତ୍ତ୍ୱବିତ୍, ପ୍ରତ୍ନତତ୍ତ୍ୱବିତ୍‌ମାନେ ବାହାର କଲେ । ସେହିମାନେ ହିଁ କେତେ ପୋଥି, କେତେ ମୂର୍ତ୍ତି, ନାନା ଶିଳାଲିପି ଓ ସଂପଦମାନଙ୍କୁ ନାନା ଭାବରେ ଲୋକଲୋଚନକୁ ଆଣିଲେ । ବିଦେଶୀ ସାମ୍ରାଜ୍ୟବାଦ ଦ୍ୱାରା ହିଁ ସଭ୍ୟତା-ସଭ୍ୟତା ଓ ସଂସ୍କୃତି-ସଂସ୍କୃତି ଭିତରେ ଯେ ମିଳନ ପର୍ବ ସୃଷ୍ଟି ହେଲା ଏହା ଅସ୍ୱୀକାର କରି ହେବ ନାହିଁ ।

ଏହି ଧାରାରେ ପାଶ୍ଚାତ୍ୟ ବିଦ୍ୱାନ, ମନୀଷୀ ଓ ଗବେଷକମାନଙ୍କ ପ୍ରଚେଷ୍ଟାଦ୍ୱାରା ବହୁ ସଂସ୍କୃତିର ପୁନରୁଦ୍ଧାର ହୋଇଛି । ଭାରତ ଭୂଖଣ୍ଡର ବେଦ, ଉପନିଷଦ୍, ବ୍ରହ୍ମସୂତ୍ର ଓ ଦାର୍ଶନିକ ଗ୍ରନ୍ଥଗୁଡିକ ସଂସ୍କୃତରୁ ଇଂରାଜୀ ଓ ପାଶ୍ଚାତ୍ୟ ଭାଷାମାନଙ୍କରେ ଅନୁବାଦିତ ହୋଇଛି । ଭାରତରେ ଇଂରେଜ ଶାସନର ଭିତ୍ତି ଦୃଢ ହେବା ପରେ ଭାରତୀୟ ସିଭିଲ ସର୍ଭିସ ଭିତରେ ବହୁ ବିଦ୍ୱାନ ଓ ଗବେଷକ ଏଠାକୁ ଆସି ଭାରତର ଏକ ଧାରାବାହିକ ଇତିହାସ ବି ସଂକଳନ କଲେ । ଭାରତୀୟ ସଂସ୍କୃତିର ଭଲ ଓ ମନ୍ଦ ଦିଗ ଉପରେ ବହୁ ତଥ୍ୟ ପାଶ୍ଚାତ୍ୟ ଓ ବିଶେଷତଃ ଇଂଲଣ୍ଡର ଜିଜ୍ଞାସୁମାନେ ପୁନରୁଦ୍ଧାର କଲେ । ଭାରତୀୟ ସଂସ୍କୃତିର ଭଲ ଓ ମନ୍ଦ ଦିଗ ଉପରେ ବହୁ ଅନାବିଷ୍କୃତ ତଥ୍ୟ ସେହିମାନେ ହିଁ ବାହାରକୁ ଆଣିଲେ । ବିସ୍ମୃତ ଇତିହାସର ବହୁ ଲୁକାୟିତ ଓ ସାଂସ୍କୃତିକ ବିଭବମାନଙ୍କୁ ସେହି ପାଶ୍ଚାତ୍ୟ ଗବେଷକମାନେ ଖୋଜି ବାହାରକଲେ ।

ସମାଜ, ସଂସ୍କୃତି, ସଭ୍ୟତା, ଇତିହାସ ପ୍ରତ୍ୟେକ କ୍ଷେତ୍ରରେ ଏକ ନିରପେକ୍ଷ ଅଧ୍ୟୟନ ପାଇଁ ଆବଶ୍ୟକ ଏକ ମୁକ୍ତ ମନ ଓ ଏକ ବୈଜ୍ଞାନିକ ଦୃଷ୍ଟିକୋଣ । ଯେଉଁଠି ଭାବପ୍ରବଣତା ଓ ଉଗ୍ର ଜାତୀୟତାର ପ୍ରାବଲ୍ୟ ରହେ, ସେଠାରେ ରୁଦ୍ଧ ମାନସିକତା ଆସିଥାଏ । ରୁଦ୍ଧ ମାନସିକତାରେ ଆବଦ୍ଧ ଥିବା ବ୍ୟକ୍ତି ବା ଗୋଷ୍ଠୀ ନିଜର ଗୁହା ଭିତରେ ରହିଯାନ୍ତି । ଯେଉଁଠି ବ୍ୟକ୍ତି କୂପମଣ୍ଡୁକ ହୁଅନ୍ତି ସେମାନେ ଅପସିଦ୍ଧାନ୍ତକୁ ସତ୍ୟ ବୋଲି ବିଶ୍ୱାସ କରନ୍ତି । ନାନା ଭ୍ରମ ପ୍ରମାଦ ଭିତରେ ଶିକାର ହେଲେ ଜ୍ଞାନର ବିସ୍ତୃତି ସମ୍ଭବ ହୁଏ ନାହିଁ । ନିଜର ଭାଷା, ସଂସ୍କୃତି, ଧର୍ମକୁ ମହାନ ବୋଲି ମାନିବାର ମାନସିକତା ବ୍ୟକ୍ତି-ଚେତନାକୁ ସ୍ଥାଣୁ କରିଥାଏ । ଏସବୁ ସହ ଏକ ବ୍ୟକ୍ତିର ଆବେଗିକ ବନ୍ଧନ ରହିପାରେ, ତେବେ ଅସତ୍ୟକୁ ସତ୍ୟ ଭାବି ମାୟାଜାଲ ଭିତରେ ଆବଦ୍ଧ ରହିଗଲେ ଜିଜ୍ଞାସାବୋଧ ଚାଲିଯାଏ । ଅପସିଦ୍ଧାନ୍ତ ଓ ଅନ୍ଧସଂସ୍କାର ଜ୍ଞାନର ବିକାଶରେ କିପରି ଅନ୍ତରାୟ ହୋଇଛି ତାହା ମଧ୍ୟଯୁଗୀୟ ଇତିହାସରୁ ସୁସ୍ପଷ୍ଟ । ବାସ୍ତବତାକୁ ସ୍ୱୀକାର କଲେ ଯାଇ ନିଜ ସଭ୍ୟତା ଓ ସଂସ୍କୃତିର ଆବର୍ଜନା ଗୁଡିକୁ ଦୂର କରିବାର ସତ୍ ସଂକଳ୍ପ ଆସିଥାଏ ।

ଗୋଟିଏ ସଭ୍ୟତା ଯେତିକି ପୁରାତନ ତାହା ସେତିକି ମହାନ ବୋଲି କେତେକ ବ୍ୟକ୍ତି ରକ୍ଷଣଶୀଳ ଭାବରେ ବିଶ୍ୱାସ କରନ୍ତି । ଏକ ସଭ୍ୟତା ବା ଜନ ସମୂହର ପ୍ରାଚୀନତା ଗୋଟିଏ ପ୍ରଶ୍ନ ଓ ତାର ଗୁଣାତ୍ମକ ମାନ ଏକ ଭିନ୍ନ ପ୍ରଶ୍ନ । ଗୋଟିଏ

ସଭ୍ୟତାର ଜନଗଣ ବା ଏକ ସମାଜ ବଞ୍ଚି ରହିବା ଓ ସମ୍ମାନଜନକ ଭାବେ ବଞ୍ଚି ରହିବା ଭିତରେ ମୌଳିକ ପାର୍ଥକ୍ୟ ରହିଛି । ଅନ୍ୟ ଭାବରେ କହିଲେ ପ୍ରାଚୀନତା ମହାନତା ବା ଉନ୍ନତିର ମାନଦଣ୍ଡ ନୁହେଁ । ଉନ୍ନତିର ଅବଧାରଣାଟି ନାନା ଆନୁଷଙ୍ଗିକ ଲକ୍ଷଣ ଉପରେ ନିର୍ଭରଶୀଳ । ସାଂପ୍ରତିକ ପୃଷ୍ଠଭୂମିରେ ଉନ୍ନତିର ଆଧାର ଭାବେ ଆଧୁନିକ ଜ୍ଞାନବିଜ୍ଞାନ, ଉନ୍ନତ ରାଜନୈତିକ ବ୍ୟବସ୍ଥା, ସଭ୍ୟ ମୂଲ୍ୟବୋଧର ବ୍ୟାପକତା ଇତ୍ୟାଦିକୁ ମାନଦଣ୍ଡ ଭାବରେ ଗ୍ରହଣ କରାଯାଇପାରେ । ଯେଉଁ ଜନ ସମୁଦାୟର ଜୀବନ-ପ୍ରବାହରେ ଏସବୁ ଲକ୍ଷଣ ଯେତେ ଅଧିକ ପ୍ରତିଫଳିତ ତାହା ସେତିକି ଉନ୍ନତ । ଏକ ସଭ୍ୟତା ବହୁ ପ୍ରାଚୀନ ହେଲେ ମଧ୍ୟ ତାହାର ପାରଂପରିକ ବିଶ୍ୱାସ, ସମାଜ ବ୍ୟବସ୍ଥା, ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ, ଜ୍ଞାନ-ବିଜ୍ଞାନ ପ୍ରତି ମନୋଭାବ ଭିତରୁ ଏକ ନକାରାତ୍ମକ ଚିତ୍ର ମିଳିପାରେ । ସୁତରାଂ ଯେଉଁମାନେ ଯେତେ ପ୍ରାଚୀନ ସଭ୍ୟତାର ଉତ୍ତରାଧିକାରୀ ସେମାନେ ସେତିକି ସଭ୍ୟ, ସଂସ୍କୃତି ସଂପନ୍ନ ଓ ଉନ୍ନତ ଭାବିବା ଯଥାର୍ଥ ମନେହୁଏ ନାହିଁ । ବରଂ ଯେଉଁ ସାମାଜିକ ପରିବେଶରେ ଜ୍ଞାନ-ବିଜ୍ଞାନ ନେଇ ଅନୁସନ୍ଧିତ୍ସା, ଶିକ୍ଷାର ବ୍ୟାପକତା, ମାନବବାଦୀ ଆଭିମୁଖ୍ୟ, ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ମୂଲ୍ୟଚୟ ଯେତିକି ଦୃଢ ତାହା ସେତିକି ପ୍ରଗତିଶୀଳ । ଅପରପକ୍ଷରେ ଏକ ଜନଗୋଷ୍ଠୀ ଭିତରେ ଯଦି ସାମାଜିକ ଭେଦଭାବ, ସ୍ୱାର୍ଥପରତା, ନାନା ବିଦ୍ୱେଷ ଓ ଦୁର୍ବଳ ଶ୍ରେଣୀ ଉପରେ ଅତ୍ୟାଚାର ଓତପ୍ରୋତ ଭାବେ ଜଡିତ ତେବେ ତାହା ଯେତେ ପ୍ରାଚୀନ ହେଲେ ମଧ୍ୟ ତାହା ଉନ୍ନତ ମନେହୁଏ ନାହିଁ ।

ଇଂରେଜ ଉପନିବେଶବାଦ ଭାରତବର୍ଷକୁ କବଳିତ କରିନଥିଲେ ଓ ଭାରତର ମୁଖ୍ୟ ଅଂଶରେ ମୋଗଲ ରାଜତ୍ୱ ଅବ୍ୟାହତ ରହିଥିଲେ, ଭାରତ ଆଜି କେଉଁଠି ରହିଥାନ୍ତା ତାହା କହିବା ଜଟିଳ ମନେହୁଏ । ଇଂରେଜ ମାନଙ୍କ ପୂର୍ବରୁ ଭାରତରେ ରାଜନୈତିକ ସଂହତି ଥିଲା କି ? ଗୋଟିଏ ମୁଖ୍ୟ ଭୂଖଣ୍ଡକୁ ଛାଡିଦେଲେ ଏଠାରେ ଅସଂଖ୍ୟ ରାଜ୍ୟ ରହିଥିଲା ଓ ପ୍ରତ୍ୟେକ ରାଜ୍ୟ ସାର୍ବଭୌମ ରହି ରାଜତନ୍ତ୍ରଦ୍ୱାରା ଶାସିତ ହେଉଥିଲା । ବହୁ ଭାଷା, ବହୁ ଜାତି, ବହୁ ଧର୍ମ ଭିତରେ ଭିନ୍ନତା ଯୋଗୁ ସଂହତି ପ୍ରାୟତଃ ଅସମ୍ଭବ ଥିଲା । ଏହା ମଧ୍ୟ ଐତିହାସିକ ସତ୍ୟ ଯେ ଭାରତୀୟମାନେ ରାଜନୈତିକ ସ୍ତରରେ ବା ସାମାଜିକ ସ୍ତରରେ ଏକ ସମୁଦାୟ ଭାବେ ଇଂରେଜମାନଙ୍କ ଆଗମନ ପୂର୍ବରୁ ଏକ ସ୍ୱତନ୍ତ୍ର ପରିଚୟର ଅଧିକାରୀ ହୋଇନାହାନ୍ତି । ହିନ୍ଦୁ ସମାଜ ବି ଏକ କାଳ୍ପନିକ ବସ୍ତୁ ବୋଲି ଆମ୍ବେଦକରଙ୍କ ପରି ବହୁ ସମାଜ-ବିଜ୍ଞାନୀ ମତ ଦେଇଛନ୍ତି ।

ମୁସଲମାନ ଆକ୍ରମଣ ପୂର୍ବରୁ ହିନ୍ଦୁ ଶବ୍ଦର ପ୍ରୟୋଗ କୌଣସି ସଂସ୍କୃତ ପୁସ୍ତକରେ ନାହିଁ । ମୁସଲମାନମାନେ ଏହି ଭୂଖଣ୍ଡର ଲୋକମାନଙ୍କୁ ସେମାନଙ୍କଠାରୁ ପୃଥକ୍ କରିବାକୁ 'ହିନ୍ଦୁ' ଶବ୍ଦ ପ୍ରୟୋଗ କରିଥିବା କୁହାଯାଏ । ଭାରତୀୟ ସମାଜ ବହୁ ଜାତିରେ ବିଭକ୍ତ ହୋଇ ରହିଥିଲା ଓ ପ୍ରତ୍ୟେକ ଜାତି ନିଜର ଅସ୍ତିତ୍ୱ ନେଇ ସଚେତନ ଭାବେ ଅନ୍ୟଠାରୁ ନିଜକୁ ପୃଥକ୍ କରି ଆସିଥିଲା । ଭାରତୀୟ ହିନ୍ଦୁ ଜନଗଣଙ୍କ ଭିତରେ ଜାତିର ପରିଚୟ ହିଁ ମୁଖ୍ୟ ପ୍ରଶ୍ନ ଥିଲା ଓ ଜାତି ଜାତି ଭିତରେ ବିବାହ ଓ ଏପରିକି ସହଭୋଜନ ଅସମ୍ଭବ ଥିଲା । ରୁଦ୍ଧ ଜାତି ବ୍ୟବସ୍ଥା ସଂହତିପୂର୍ଣ୍ଣ ଜୀବନ ପ୍ରବାହ ବା ଏକ ସମ୍ମିଳିତ ଚେତନାର ବିକାଶରେ ବଡ ଅନ୍ତରାୟ ଥିଲା । ଜାତି ଜାତି ଭିତରେ ଏକ ବିଦ୍ୱେଷପୂର୍ଣ୍ଣ ଓ ଭେଦଭାବମୂଳକ ମାନସିକତା ଭାରତୀୟ ସମାଜରେ ସର୍ବବ୍ୟାପୀ ହୋଇ ରହିଥିଲା ।

ବିଭିନ୍ନ ପାଶ୍ଚାତ୍ୟ ଦେଶର ବହୁ ବଣିକ ଭାରତ ଭୂଖଣ୍ଡକୁ ଆସିଥିଲେ ବି ଶେଷରେ ଇଂରେଜମାନେ ହିଁ ବିଶାଳ ଭାରତ ଭୂଖଣ୍ଡକୁ ନିଜର ଉପନିବେଶ କରିବାରେ ସମର୍ଥ ହେଲେ । ସମ୍ପ୍ରତି ଭାରତ, ପାକିସ୍ଥାନ, ବଙ୍ଗଳାଦେଶ, ଶ୍ରୀଲଙ୍କା ଏହି ସମସ୍ତ ରାଷ୍ଟ୍ର ସେତେବେଳେ ବ୍ରିଟିଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ଓ ଏହି ଉପ ମହାଦେଶ ଭାରତ ବା ଇଣ୍ଡିଆ ଭାବେ ପରିଚିତ ହେଉଥିଲା । ଇଂରେଜମାନେ ଭାରତକୁ ରାଜନୈତିକ ସ୍ତରରେ ଏକ ଶାସନାଧୀନ କରି ତାହାକୁ ଏକତ୍ର କରିଥିଲେ । ପରିସ୍ଥିତି କ୍ରମେ ସମଗ୍ର ଦେଶରେ ଇଂରେଜମାନେ ହିଁ ଗଣଶିକ୍ଷାର ପରିବେଶ ଆଣିଥିଲେ ଓ ଇଂରେଜ ଭାଷାକୁ ଉଚ୍ଚ ଶିକ୍ଷାର ମାଧ୍ୟମ କରିଥିଲେ । ଏହି ପୃଷ୍ଠଭୂମିରେ ଥୋମାସ ବେବିଙ୍ଗଟନ୍ ମ୍ୟାକଲେ (୧୮୦୦-୧୮୫୯) ଭାରତରେ ଇଂରେଜ ଶିକ୍ଷା ପ୍ରଚଳନ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲେ ।

ପ୍ରଶ୍ନ ହେଉଛି- ମ୍ୟାକଲେ କିଏ ଓ ଭାରତରେ ଇଂରେଜ ଶିକ୍ଷା ପ୍ରଚଳନ କରିବାରେ ତାଙ୍କର କଣ ଭୂମିକା ଥିଲା ? ମ୍ୟାକଲେ ବ୍ରିଟିଶ ପାର୍ଲିଆମେଣ୍ଟର ହାଉସ ଅଫ୍ କମନସ୍‌ର ସଭ୍ୟ ଥିଲେ । ଇଷ୍ଟଇଣ୍ଡିଆ କଂପାନୀ ଯାହା ଭାରତରେ ଇଂରେଜ ଶାସନର ମୂଳଦୁଆ ପକାଇଥିଲା, ସେଥିରେ ବ୍ରିଟିଶ ସରକାରଙ୍କ ପ୍ରତିନିଧିତ୍ୱ ପାଇଁ ସରକାର ଏକ ବୋର୍ଡ ଅଫ୍ କଣ୍ଟ୍ରୋଲ ଗଠନ କରିଥିଲେ । ଲର୍ଡ ମ୍ୟାକଲେ ସଂସଦ ସଭ୍ୟ ଭାବେ ବୋର୍ଡ ଅଫ୍ କଣ୍ଟ୍ରୋଲର ସଭ୍ୟ ହେଲେ ଓ ଇଷ୍ଟ ଇଣ୍ଡିଆ କଂପାନୀକୁ ସରକାରଙ୍କ ତରଫରୁ ପ୍ରତିନିଧିତ୍ୱ କଲେ । ଘଟଣା କ୍ରମେ ମ୍ୟାକଲେ ଭାରତ ବିଷୟରେ

ବିଭିନ୍ନ ବିଷୟ ଜାଣିବାର ଅବକାଶ ପାଇଲେ । ସେ ଯେହେତୁ ଜଣେ ସୁଲେଖକ, ଆଇନଜ୍ଞ ଓ ଅଧ୍ୟୟନ ପିପାସୁ ଥିଲେ ସେ ଇଂଲଣ୍ଡର ଶାସନାଧୀନ ଥିବା ବିଶାଳ ଭାରତ ଭୂଖଣ୍ଡର ସମାଜ, ଧର୍ମ, ସଂସ୍କୃତି, ଇତିହାସ ଇତ୍ୟାଦି ବିଷୟରେ ଅନେକ ତଥ୍ୟ ସଂଗ୍ରହ କରିଥିଲେ । ପରେ ଇଂରେଜ ସରକାର ସୁପ୍ରିମ କାଉନସିଲ ଅଫ୍ ଇଣ୍ଡିଆର ସଭ୍ୟ ମନୋନୀତ କରି ତାଙ୍କୁ ଭାରତର ଶାସନ ବ୍ୟବସ୍ଥାରେ ସହାୟତା ଦେବାକୁ ଭାରତକୁ ଯିବାକୁ କହିଲେ । ନିଜର ଆର୍ଥିକ ସ୍ଥିତିରେ ଉନ୍ନତି ପାଇଁ ମ୍ୟାକଲେ ଏହି ପଦବୀକୁ ଗ୍ରହଣ କଲେ । ମ୍ୟାକଲେ ଇଂଲଣ୍ଡରୁ ତିନି ମାସର ସମୁଦ୍ର ଯାତ୍ରାକରି ୧୮୩୪ ମସିହା ଜୁନ ୧୦ରେ ଭାରତର ମାଡ୍ରାସ (ବର୍ତ୍ତମାନର ଚେନାଇ)ଠାରେ ପହଞ୍ଚିଥିବା ତାଙ୍କ ଜୀବନୀରୁ ଜଣାଯାଏ । ମ୍ୟାକଲେ ଜଣେ ଉଦାରବାଦୀ ବୁଦ୍ଧିଜୀବୀ, ମାନବ-ଦରଦୀ, ଗଣତନ୍ତ୍ରପ୍ରେମୀ ଓ ଆଇନରେ ପାରଦର୍ଶୀ ଥିବା ତାଙ୍କର ପୁତୁରା ଓ ଜୀବନୀ ଲେଖକ ଜର୍ଜ ଟ୍ରେଭେଲ୍ୟାନ ଦର୍ଶାଇଛନ୍ତି ।

ମ୍ୟାକଲେ ଯେଉଁ ସମୟରେ ଭାରତକୁ ଆସିଥିଲେ ସେ ସମୟରେ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ୱିଲିୟମ ବେଣ୍ଟିଙ୍କ । ବେଣ୍ଟିଙ୍କ ଭାରତ ଉପମହାଦେଶର ଶାସନ ମୁଖ୍ୟ ଭାବେ ଯେତିକି ପରିଚିତି ପାଇଛନ୍ତି ତାହାଠାରୁ ଅଧିକ ସ୍ଥାନ ନେଇଛନ୍ତି ଭାରତୀୟ ସମାଜରେ ନାନା ସଂସ୍କାରବାଦୀ କାର୍ଯ୍ୟସୂଚୀ-ଯୋଗୁଁ । ବିଶାଳ ଭାରତ ଭୂଖଣ୍ଡରେ ବିଭିନ୍ନ ଅଞ୍ଚଳରେ ନାନା ଅସଭ୍ୟ ପ୍ରଥା ରହିଥିଲା, ଯାହାକୁ ବେଣ୍ଟିଙ୍କ ଆଇନ ଦ୍ୱାରା ଓ ଦୃଢ ପ୍ରଶାସନିକ ଇଚ୍ଛାଶକ୍ତି ଯୋଗୁ ବନ୍ଦ କରିଥିବା ଜଣାଯାଏ । ଏଠାରେ କେତୋଟି ଅସଭ୍ୟ ପ୍ରଥାର ଅବତାରଣା କରାଯାଇପାରେ । ସେତେବେଳର ସାମାଜିକ ବ୍ୟବସ୍ଥାରେ ଉଚ୍ଚ ଜାତିମାନଙ୍କ ମଧ୍ୟରେ ଏକ ପରଂପରା ଥିଲା ଯେ କୌଣସି ବ୍ୟକ୍ତି ମୃତ୍ୟୁବରଣ କରିବା ପରେ ତାଙ୍କର ପତ୍ନୀଙ୍କୁ ତାଙ୍କ ଚିତାରେ ଆତ୍ମାହୂତି ଦେବାକୁ ହେଉଥିଲା ଓ ଏହାକୁ ସତୀଦାହ ପ୍ରଥା କୁହାଯାଉଥିଲା । ଏହାସହିତ ବିଭିନ୍ନ ଆଦିବାସୀ ସମାଜରେ ନରବଳି ପ୍ରଥା ରହିଥିଲା, ଏବଂ ଶକ୍ତିପୀଠ ମାନଙ୍କରେ ସେତେବେଳେ ନରବଳି ପଡୁଥିଲା । (ଏବେ ବି ଶକ୍ତିପୀଠ ମାନଙ୍କରେ ଛେଳି, ମଇଁଷି ବଳି ଦିଆଯାଉଛି) । ଏହି ବର୍ବର ପ୍ରଥାକୁ ବେଣ୍ଟିଙ୍କ ବନ୍ଦ କରିଥିଲେ । ଏତଦ୍‌ବ୍ୟତୀତ କେତେକ ଅଞ୍ଚଳରେ ଦୁର୍ଦ୍ଦଶ ସନ୍ତ୍ରାସବାଦୀମାନେ ସାଧାରଣ ବାଟୋଇ ଓ ଲୋକମାନଙ୍କୁ ହତ୍ୟାକରି ସେମାନଙ୍କ ରକ୍ତ ଦେବୀଙ୍କୁ ପ୍ରଦାନ କରୁଥିଲେ ଓ ସେମାନଙ୍କୁ "ଠଗ" କୁହାଯାଉଥିଲା । ଏହି ଠଗ ସନ୍ତ୍ରାସବାଦୀ ମାନଙ୍କୁ ଦମନ କରିବାରେ ବେଣ୍ଟିଙ୍କ ଦୃଢ

ପଦକ୍ଷେପ ନେଇଥିଲେ । ଭାରତୀୟ ସମାଜରେ ନାନା ଅସଭ୍ୟ ଓ କୁତ୍ସିତ ପ୍ରଥାକୁ ବନ୍ଦ କରିବାରେ ବେଣ୍ଟିଙ୍କଙ୍କର ଉଲ୍ଲେଖନୀୟ ଅବଦାନ ରହିଥିଲା ।

ଏହି ସମୟରେ ମ୍ୟାକଲେ ସୁପ୍ରିମ୍ କାଉନସିଲ ଅଫ ଇଣ୍ଡିଆର ସଭ୍ୟ ହୋଇ ଭାରତକୁ ୧୮୩୮ ମସିହାରେ ଆସିବା ଏକ ଐତିହାସିକ ଘଟଣା । କେତେକ ବ୍ୟକ୍ତି ମ୍ୟାକଲେଙ୍କ ସମ୍ପର୍କରେ ନାନା ମିଥ୍ୟା ଓ ଆଧାରହୀନ କଥା ପ୍ରଚାର କରିଥାନ୍ତି । କେତେକ ସମ୍ବାଦପତ୍ରରେ ଓ ପତ୍ରିକାରେ କେତେକ ବ୍ୟକ୍ତି ମ୍ୟାକଲେଙ୍କର ଏକ ବକ୍ତବ୍ୟ ବିଷୟରେ ଲେଖିବାର କିଛି ଦୃଷ୍ଟାନ୍ତ ମୁଁ ପଢିଛି । କେତେକ ପ୍ରଚାର କରନ୍ତି ଯେ ମ୍ୟାକଲେ ୧୮୩୫ ମସିହା ଫେବୃଆରୀ ୨ ତାରିଖରେ ବ୍ରିଟିଶ ପାର୍ଲିଆମେଣ୍ଟରେ କହିଥିଲେ ଯେ- "ସେ ସାରା ଭାରତ ବୁଲି ଦେଖିଛନ୍ତି । କେଉଁଠି ଗୋଟିଏ ଭିକାରି ପାଇନାହାନ୍ତି, ଗୋଟିଏ ଚୋର ଦେଖିନାହାନ୍ତି । ଲୋକଙ୍କର ନୈତିକତା ଅତି ଉଚ୍ଚରେ । ଏପରି ଦେଶକୁ ଶାସନ କରିବା ପାଇଁ ସେମାନଙ୍କର ସାଂସ୍କୃତିକ, ଆଧାତ୍ମିକ ପରଂପରାକୁ ଭାଙ୍ଗିବାକୁ ହେବ, ଯାହାକି ଇଂରାଜୀ ଶିକ୍ଷାଦ୍ୱାରା ସମ୍ଭବ" । ତେବେ ମ୍ୟାକଲେଙ୍କ ଏହି ବକ୍ତବ୍ୟ ଏକ ମନଗଢା କାହାଣୀ ଓ ସଂପୂର୍ଣ୍ଣ ମିଥ୍ୟା ଉପରେ ଆଧାରିତ । କାରଣ ମ୍ୟାକଲେ ୧୮୩୫ରେ ଭାରତରେ ଥିଲେ, ଇଂଲଣ୍ଡରେ ନଥିଲେ । ତାପରେ ସେ ଭାରତ ସାରା ବୁଲିବା ଯାହା କୁହାଯାଉଛି ତାହା ମଧ୍ୟ ସମ୍ପୂର୍ଣ୍ଣ ଅସତ୍ୟ । ମ୍ୟାକଲେଙ୍କ ସମୟକୁ ଭାରତରେ ରେଳ ଯାତ୍ରା ଆରମ୍ଭ ହୋଇନାହିଁ । ଭାରତରେ ସେପରି ସଡକ ପଥ ନଥିଲା । କେବଳ ଜଳପଥରେ ଯିବାକୁ ହେଉଥିଲା ଓ ସ୍ଥଳ ପଥରେ ଘୋଡାରେ ବସି କିମ୍ବା ମଣିଷ କାନ୍ଧରେ ପାଲିଙ୍କିରେ ବସି ଯିବାକୁ ପଡୁଥିଲା । ମ୍ୟାକଲେ ସେତେବେଳର ମାଡ୍ରାସରୁ ଭଟକାମଣ୍ଡ (ବର୍ତ୍ତମାନର ଉଟି) ଚାରିଶହ ମାଇଲ କିପରି ପାଲିଙ୍କିରେ ଯାଇଛନ୍ତି, ତାହା ତାଙ୍କର ଅନୁଭୂତିରେ ଲେଖିଛନ୍ତି । ତେବେ ମ୍ୟାକଲେ ତାଙ୍କର ରହଣି ମୁଖ୍ୟତଃ କଲିକତାରେ କଟାଇଥିଲେ । କାରଣ କଲିକତା ହିଁ ସେତେବେଳେ ଭାରତର ରାଜଧାନୀ ଥିଲା । ଅଧ୍ୟୟନ ପିପାସୁ ମ୍ୟାକଲେ ଲେଖିବା ଓ ପଢିବାରେ ନିଜର ସମୟ ବ୍ୟୟ କରିବା ତାଙ୍କର ଜୀବନୀ ଲେଖକ ଟ୍ରେଭେଲ୍ୟାନ ପ୍ରକାଶ କରିଛନ୍ତି । ମ୍ୟାକେଲ ୧୮୩୪ ମସିହା ଜୁନ ୧୦ରେ ଚେନାଇରେ ପହଞ୍ଚି ଭାତରରେ ଚାରିବର୍ଷରୁ କମ୍ ସମୟ ରହି ୧୮୩୮ ମସିହା ଆରମ୍ଭରେ ଇଂଲଣ୍ଡ ଫେରିଯିବା ଜଣାଯାଏ ।

ମ୍ୟାକଲେଙ୍କ ସମୟକୁ ଭାରତରେ ବିଶ୍ୱବିଦ୍ୟାଳୟ ଶିକ୍ଷା ଆରମ୍ଭ ହୋଇନାହିଁ । ଭାରତରେ ୧୮୫୭ ମସିହାରେ ହିଁ ପ୍ରଥମ କରି ବିଶ୍ୱବିଦ୍ୟାଳୟ ଆରମ୍ଭ ହେଲା ଓ ଉଚ୍ଚ ଶିକ୍ଷାର ସୁଯୋଗ ଆସିଲା । ମ୍ୟାକଲେଙ୍କ ପୂର୍ବରୁ କେବଳ କିଛି ସରକାରୀ ସାହାଯ୍ୟରେ ସଂସ୍କୃତ ଟୋଲ, ଆରବିକ ସ୍କୁଲ ଓ ପାର୍ଶୀ ସ୍କୁଲ ରହିଥିଲା । ବ୍ରିଟିଶ ଭାରତରେ ଶିକ୍ଷାର ବ୍ୟବସ୍ଥା କପରି କରାଯିବ, ସରକାର ସେଥିପାଇଁ ଦଶ ଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ନେଇ 'ପବ୍ଲିକ ଇନଷ୍ଟ୍ରକସନ କମିଟି' ଗଠନ କରିଥିଲେ । ଏହି କମିଟିର ସଭ୍ୟମାନେ ସେମାନଙ୍କ ମତରେ ଦୁଇ ଭାଗ ହୋଇ ଯାଇଥିଲେ । କମିଟିର ଅଧା ସଭ୍ୟ ଯେଉଁ ସଂସ୍କୃତ, ଆରବିକ ଓ ପାର୍ଶୀ ଭାଷାରେ ପୃଥକ୍ ପୃଥକ୍ ସ୍କୁଲ ଚାଲିଛି, ତାହା ଅବ୍ୟାହତ ରଖିବାକୁ ଚାହିଁଲେ । ଆଉ ଅଧା ସଭ୍ୟ ପ୍ରାଥମିକ ସ୍ତରରେ ମାତୃଭାଷାରେ ଓ ପରେ ଇଂରାଜୀ ଭାଷାରେ ଶିକ୍ଷା ଦେବାକୁ ମତ ଦେଇଥିଲେ । ଏହି ପ୍ରଶ୍ନ ନେଇ କୌଣସି ସହମତି ସଭ୍ୟମାନଙ୍କ ଭିତରେ ଆସିପାରୁ ନଥିଲା । ଦ୍ୱୈତାବସ୍ଥା ଦୂର ପାଇଁ ଏହି ପୃଷ୍ଠଭୂମିରେ ମ୍ୟାକଲେଙ୍କୁ ପବ୍ଲିକ ଇନଷ୍ଟ୍ରକସନ କମିଟିର ସଭାପତି କରାଗଲା । ମ୍ୟାକଲେ ସମସ୍ତ ବିଷୟକୁ ଗମ୍ଭୀର ଭାବେ ଅଧ୍ୟୟନ କରି ଶିକ୍ଷାନୀତି ଉପରେ ଏକ ଦଲିଲ ପ୍ରସ୍ତୁତ କଲେ ଯାହାକୁ "Mintues by T.B Macaulay" କୁହାଯାଏ ।

ମ୍ୟାକଲେଙ୍କ ପାଇଁ ବଡ ପ୍ରସଙ୍ଗ ଥିଲା ସଂସ୍କୃତ, ଆରବିକ ଓ ପାର୍ଶୀ ଭାଷାରେ ଯେଉଁ ପୃଥକ୍ ପୃଥକ୍ ସ୍କୁଲ କିଛି ଚାଲିଛି ତାହା ଅବ୍ୟାହତ ରହିବ ନା ବିଶାଳ ଭାରତ ଭୂଖଣ୍ଡରେ ଇଂରାଜୀ ଭାଷାକୁ ଶିକ୍ଷାର ମାଧ୍ୟମ କରାଯିବ ? ବିଶେଷକରି ସଂସ୍କୃତ ଭାଷା ଓ ଆରବିକ ଭାଷା ଆଧୁନିକ ଜ୍ଞାନ ବିଜ୍ଞାନର ଭାଷା ଭାବେ ଏ ବିଶାଳ ଭୂଖଣ୍ଡର ଆବଶ୍ୟକତାକୁ ମେଣ୍ଟାଇ ପାରିବ କି ? ତାଙ୍କର ଦଲିଲଟିରେ ଏସବୁ ପ୍ରସଙ୍ଗର ନାନା ଦିଗନ୍ତ ଉପରେ ବିବରଣୀ ରହିଛି । ମ୍ୟାକଲେଙ୍କ ମତରେ ସଂସ୍କୃତ ବା ଆରବିକ ଭାରତର ପ୍ରାଚୀନ ଭାଷା । ଏଥିରେ ସାହିତ୍ୟ, ଦର୍ଶନର କିଛି କୃତି ରହିଛି । ଏହି ଦୁଇ ଭାଷାର ଯାହା ସବୁ କୃତି ରହିଛି ତାହା ପାଶ୍ଚାତ୍ୟ ଜ୍ଞାନ ଭଣ୍ଡାର ପାଖରେ ଅତି ନଗଣ୍ୟ ମନେ ହୁଏ । ଆଧୁନିକ ଜ୍ଞାନର ବିକାଶ, ବୈଜ୍ଞାନିକ ଅଧ୍ୟୟନ ସାମାଜିକ ବିକାଶର ଆଧାର । ଏହି ପରିପ୍ରେକ୍ଷୀରେ ସଂସ୍କୃତ ବା ଆରବିକ ଆଧୁନିକ ଜୀବନ ପ୍ରବାହର ଆବଶ୍ୟକତାକୁ ପୂରଣ କରିପାରିବ ନାହିଁ । ମ୍ୟାକଲେ ଏକଥା ସ୍ୱୀକାର କରିଛନ୍ତି ଯେ ଇଂରାଜୀ, ଫ୍ରେଞ୍ଚ ଭାଷା ବି ଦିନେ ଅତି ଅନୁନ୍ନତ ସ୍ତରରେ ରହିଥିଲା । ଲାଟିନ ଓ

ଗ୍ରୀକ୍ ଭାଷା ସେତେବେଳେ ୟୁରୋପରେ ମୁଖ୍ୟ ସ୍ଥାନ ନେଇଥିଲା । ତେବେ ନବ ଜାଗରଣ ବା ୟୁରୋପୀୟ ରେନେସାଁ ପରେ ୟୁରୋପରେ ଜ୍ଞାନର ବହୁ ଦିଗନ୍ତ ସୃଷ୍ଟି ହେଲା । ପରିଣାମତଃ ଇଂରାଜୀ ଭାଷା ଏକ ଉନ୍ନତ ଭାଷା ଭାବେ ସମୃଦ୍ଧ ହୋଇଚାଲିଲା । ଏହା ଜ୍ଞାନ ବିଜ୍ଞାନର ବିକାଶ ପାଇଁ ଏକ ପ୍ରମୁଖ ଭାଷା ଭାବେ ଏବେ ସ୍ୱୀକୃତ । ଇଂରେଜ ଭାଷାରେ ଉଚ୍ଚ ଶିକ୍ଷା ସ୍ତରରେ ଅଧ୍ୟୟନ ଦ୍ୱାରା ଭାରତୀୟମାନେ ଶାସନ, ବିଜ୍ଞାନ, ବିଚାର ବ୍ୟବସ୍ଥା ଓ ସଂଚାର କ୍ଷେତ୍ରରେ ଉନ୍ନତ ହୋଇପାରିବେ । ଇଂରାଜୀ ଭାଷାରେ ଅଧ୍ୟୟନଦ୍ୱାରା ବିଶ୍ୱର ଜ୍ଞାନ ସହ ପରିଚୟ ହେବା ସମ୍ଭବ ହେବ ।

ମ୍ୟାକଲେଙ୍କ ବିବରଣୀରେ ଏକଥା ମଧ୍ୟ ଉଲ୍ଲେଖ ରହିଥିଲା ଯେ ଟୋଲ ଓ ମଦ୍ରାସାମାନଙ୍କରେ ସଂସ୍କୃତ ଓ ଆରବିକ ଭାଷାରେ ଯେଉଁ ଛାତ୍ରମାନେ ପଢିଛନ୍ତି ଓ ସେଥିପାଇଁ ସରକାରୀ ସାହାଯ୍ୟ ନେଇଛନ୍ତି ସେମାନେ ସ୍କୁଲ ଶିକ୍ଷା ପରେ କୌଣସି କ୍ଷେତ୍ରରେ ଉପାର୍ଜନ କ୍ଷମ ହୋଇପାରୁନାହାନ୍ତି । ସେମାନଙ୍କ ଶିକ୍ଷାପରେ ସେମାନେ ପୁନଶ୍ଚ ସରକାରୀ ସାହାଯ୍ୟରେ ଜୀବନ ଧାରଣ ପାଇଁ ସରକାରଙ୍କୁ ନିବେଦନ କରୁଛନ୍ତି । ସଂସ୍କୃତ ଭାଷାରେ ସରକାର ବହି ଛପାରେ ଯାହା ଖର୍ଚ୍ଚ କରୁଛନ୍ତି, ସେ ବହି କିପରି ବିକ୍ରି ନହୋଇ ପଡିରହିଛି ତାହା ସେ ଉଲ୍ଲେଖ କରିଛନ୍ତି । ଏହିପରି ବହୁ ବିଷୟକୁ ନାନା ଦିଗରୁ ଅନୁଶୀଳନ କରି .ମ୍ୟାକଲେ ବ୍ରିଟିଶ ଭାରତରେ ଇଂରାଜୀ ଭାଷାରେ ମାଧ୍ୟମିକ ସ୍ତରରୁ ଶିକ୍ଷା ଦେବାକୁ ସରକାରଙ୍କୁ ସୁପାରିଶ କରିଛନ୍ତି । ମ୍ୟାକଲେ ତାଙ୍କ ରିପୋର୍ଟ ଗଭର୍ଣ୍ଣର ଜେନେରାଲଙ୍କୁ ୧୮୩୫ ମସିହା ଫେବୃଆରୀ ୨ରେ ଦେବା ଓ ବେଣ୍ଟିଙ୍କ ତାହାକୁ ୧୮୩୫ ମସିହା ମାର୍ଚ୍ଚ ୭ରେ ଅନୁମୋଦନ କରିବା ଜଣାଯାଏ ।

ମ୍ୟାକଲେଙ୍କ ବିବରଣୀରେ ବ୍ରିଟିଶ ଶାସିତ ବିଶାଳ ଭାରତ ବର୍ଷର ସମୃଦ୍ଧି ଓ ବିକାଶ ପାଇଁ ବି ଆନ୍ତରିକତା ବ୍ୟକ୍ତ ହୋଇଥିଲା । ଶିକ୍ଷାର ବିକାଶ ଓ ଜ୍ଞାନ ବିଜ୍ଞାନର ପ୍ରସାରଦ୍ୱାରା ଯେ ଏକ ଜାତିର ବିକାଶ ସମ୍ଭବ ଏହା ମ୍ୟାକଲେଙ୍କର ବିଚାର ରହିଥିଲା । ଯେଉଁ ରାଷ୍ଟ୍ରମାନେ ଏକଦା ଅବହେଳିତ ଥିଲେ ଓ ପାଶ୍ଚାତ୍ୟ ଶିକ୍ଷା, ବିଜ୍ଞାନ ସଂଯୋଗରେ ଆସି ଶିକ୍ଷା ଦ୍ୱାରା ବିକଶିତ ହୋଇଛନ୍ତି ତାହା ସେ ରୁଷ ପରିପ୍ରେକ୍ଷୀରେ ଦର୍ଶାଇଛନ୍ତି । ସେହିପରି ଆଶା ବ୍ୟକ୍ତ କରିଛନ୍ତି ଯେ ଅବହେଳିତ ଭାରତବର୍ଷ ବି ଶିକ୍ଷାର ପ୍ରସାର ଦ୍ୱାରା ବିକଶିତ ହୋଇପାରିବ । କହିବା ନିଷ୍ପ୍ରୟୋଜନ ଯେ ମ୍ୟାକଲେଙ୍କର ବିବରଣୀ ପରେ ଭାରତ ବର୍ଷରେ ଧୀରେ ଧୀରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଛି । ପୂଜକବର୍ଗ, ରାଜା ଜମିଦାରବର୍ଗଙ୍କୁ ଛାଡିଦେଲେ ଭାରତରେ ସାଧାରଣ ଜନତା ଯେଉଁମାନେ ଯୁଗ

ଯୁଗ ଧରି ଶିକ୍ଷାର ଆଲୋକରୁ ବଞ୍ଚିତ ଥିଲେ ସେମାନେ ଶିକ୍ଷାର ସୁଯୋଗ ପାଇଛନ୍ତି । ବ୍ରିଟିଶ ଭାରତରେ ଗଣଶିକ୍ଷାର ସମ୍ଭାବନା ସରକାରୀ ଉଦ୍ୟମରେ ସ୍ଥାପିତ ସ୍କୁଲ ପ୍ରତିଷ୍ଠା ଯୋଗୁଁ ସମ୍ଭବ ହୋଇଛି । ଗଣଶିକ୍ଷା ଓ ଉଚ୍ଚଶିକ୍ଷାର ସମ୍ଭାବନା ଯୋଗୁଁ ପାଶ୍ଚାତ୍ୟ ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି, ଗଣତାନ୍ତ୍ରିକ ଆଦର୍ଶ, ବିଚାର ବ୍ୟବସ୍ଥା ଇତ୍ୟାଦି ଭାରତରେ ଭିତ୍ତି ନେଇଛି । ଏହାର ସମ୍ମିଳିତ ପ୍ରଭାବରୁ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟ ଚେତନା ନେଇ ପରିବେଶ ସୃଷ୍ଟି ହୋଇଛି । ଭାରତରେ ଯେତେ ସୀମିତ ଅର୍ଥରେ ହେଲେ ବି ଏକ ନବଜାଗରଣର ଯୁଗ ସୃଷ୍ଟି ହୋଇଛି । ଇଂରାଜୀ ଭାଷାରେ ଉଚ୍ଚ ଶିକ୍ଷାର ପରିବେଶରୁ ଜାତୀୟ ଆନ୍ଦୋଳନ ବି ଦେଶରେ ସମ୍ଭବ ହୋଇଛି ।

ମ୍ୟାକଲେଙ୍କ ବିଷୟରେ ଏତେ ଅପପ୍ରଚାର ହେଉଛି ଯେ ଅନେକ ଲୋକଙ୍କର ଧାରଣା ତାଙ୍କ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଭାରତୀୟ ସଂସ୍କୃତି ଓ ସମାଜ ବ୍ୟବସ୍ଥାକୁ କଳୁଷିତ କରିଦେଇଛି । ଏପରିକି ସାଂପ୍ରତିକ ଓ ସ୍ୱାଧୀନ ଭାରତର ଶିକ୍ଷା ସ୍ତରରେ ଯାହା କିଛି ତ୍ରୁଟି, ଅଶୋଭନୀୟତା ଓ ଭ୍ରଷ୍ଟାଚାର ରହିଛି ତାହାକୁ କେତେକ ବ୍ୟକ୍ତି ମ୍ୟାକଲେଙ୍କ ପରଠାରୁ ଭାରତରେ ଯେଉଁ ଶିକ୍ଷାନୀତିର ପ୍ରୟୋଗ ହେଲା ତାହାର କୁପରିଣାମ ବୋଲି ଭାବିଥାନ୍ତି । ମ୍ୟାକଲେ ଭାରତୀୟ ଜନଜୀବନକୁ ବିପର୍ଯ୍ୟସ୍ତ କରିବା ପାଇଁ ଚକ୍ରାନ୍ତମୂଳକ ଭାବେ ଉଦ୍ୟମ କରିଥିବା ବି କେତେକ ବ୍ୟକ୍ତ କରିଥାନ୍ତି । ମ୍ୟାକଲେଙ୍କର ସମାଲୋଚକ ମାନେ ତାଙ୍କ ବିବରଣୀରୁ(minutes) ଗୋଟିଏ ଧାଡି ସର୍ବଦା ଉଲ୍ଲେଖ କରିଥାନ୍ତି ଯେ ଯେଉଁମାନେ ଇଂରାଜୀ ଶିକ୍ଷା ପାଇବେ ସେମାନେ ଚେହେରାରେ ଭାରତୀୟ ରହିଲେ ବି ବିଚାର, ଆଚାର ଓ ମାନସିକତାରେ ଇଂରେଜ ହେବେ । ମ୍ୟାକଲେଙ୍କ ବିବରଣୀରୁ ସେହି ପାରାଟିକୁ ଏଠାରେ ଉଲ୍ଲେଖ କରୁଛି-

In one point I fully agree with the gentlemen to whose general views I am opposed. I feel with them that it is impossible for us, with our limited means to attemp to educate the body of the people. We must at present do our best to form a class who may be interpreters between us and the millions whom we govern, a class of persons Indian in blood and colour, but English in taste, in opinins, in morals and in intellect. To that class we may leave it to refine the vernacular dialect of the country, to enrich those

dialects with terms of science borrowed from the Western nomenclature, and to render them by degrees fit vehicles for conveying knowledge to the great mass of population.

ମ୍ୟାକଲେଙ୍କ ମନ୍ତବ୍ୟ ଥିଲା ଯେ ଯେଉଁମାନଙ୍କ ମତଠାରୁ ମୋର ମତ ଭିନ୍ନ (ଯେଉଁମାନେ ସଂସ୍କୃତ, ଆରବିକ ଓ ପାର୍ଶୀ ଭାଷାରେ ଅଲଗା ଅଲଗା ଶିକ୍ଷାନୁଷ୍ଠାନ ଚାଲିବାର ସପକ୍ଷରେ ମତ ଦେଇଥିଲେ) ସେମାନଙ୍କର ଗୋଟିଏ ମତ ସହ ମୁଁ ଏକମତ । ସରକାରଙ୍କ ସୀମିତ ସମ୍ବଳ ଭିତରେ ଏ ବିଶାଳ ଜନଗଣଙ୍କ ପାଖକୁ ଶିକ୍ଷାର ସୁଯୋଗ ନେବା ସମ୍ଭବ ନୁହେଁ । ଏହି ସ୍ଥିତିରେ ସାଂପ୍ରତିକ ପରିବେଶରେ ଆମେ କେବଳ ଏକ କ୍ଷୁଦ୍ର ଶ୍ରେଣୀକୁ ଶିକ୍ଷିତ କରିପାରିବା ଯେଉଁମାନେ ଆମ ଭିତରେ ଓ ଆମେ ଶାସନ କରୁଥିବା କୋଟି କୋଟି ସାଧାରଣ ଜନତା ଭିତରେ ବ୍ୟାଖ୍ୟାକାରୀ ଅନୁବାଦକ ଭାବେ କାର୍ଯ୍ୟ କରିବେ । ସେମାନେ ନିଜର ରକ୍ତ ଓ ରୂପରେ ଭାରତୀୟ ରହିଲେ ବି ଭାବରେ, ବିଚାରରେ ଓ କର୍ତ୍ତବ୍ୟ କ୍ଷେତ୍ରରେ ଇଂରେଜଙ୍କ ପରି କାର୍ଯ୍ୟ କରିବେ । ସେହି ଶିକ୍ଷିତ ବର୍ଗଙ୍କ ହାତରେ ସେମାନଙ୍କର ନିଜ ନିଜର ମାତୃଭାଷାକୁ ଉନ୍ନତ ଓ ସମୃଦ୍ଧ କରିବାର ଦାୟିତ୍ୱ ଆମେ ଦେଇପାରିବା । ସେମାନେ ପାଶ୍ଚାତ୍ୟ ଶିକ୍ଷା କ୍ଷେତ୍ରରୁ ପାଇଥିବା ଜ୍ଞାନ ବିଜ୍ଞାନକୁ ନିଜସ୍ୱ ମାତୃଭାଷାରେ ଉପଯୁକ୍ତ ପରିଭାଷା ଦ୍ୱାରା ଅନୁବାଦ କରିପାରିବେ ଯାହାଦ୍ୱାରା ଏ ଦେଶରେ ଅଗଣିତ ଜନଗଣ ଶିକ୍ଷା ଓ ଜ୍ଞାନର ଆଲୋକ ପାଇପାରିବେ ।

ଏହି ବକ୍ତବ୍ୟଟିରୁ ମ୍ୟାକଲେଙ୍କର ମନ୍ଦ ମନୋଭାବ ନା ଏକ ବାସ୍ତବବାଦୀ ଉଦାରବାଦୀ ଦୃଷ୍ଟିର ପରିଚୟ ମିଳୁଛି ? ଯେଉଁମାନେ ତାଙ୍କ ଜୀବନୀ ପଢ଼ିବେ, ସେମାନେ ଅନୁଭବ କରିବେ ଯେ ସେ ଇଂରେଜ ସାହିତ୍ୟ, ସଂସ୍କୃତି ଓ ଦର୍ଶନର ଥିଲେ ସପକ୍ଷବାଦୀ । ଏହା ସହିତ ସେ ଯେ ଥିଲେ ଏକ ମାନବଦରଦୀ ଓ ଉଦାରବାଦୀ ବ୍ୟକ୍ତି ଏହା ନିଃସନ୍ଦେହ । ବ୍ରିଟିଶ ଶାସିତ ବିଶାଳ ଭାରତବର୍ଷର ବିକାଶ ଓ ସମୃଦ୍ଧି ପାଇଁ ତାଙ୍କର ଆନ୍ତରିକତାକୁ ଯେଉଁମାନେ ସନ୍ଦେହ କରନ୍ତି, ସେମାନେ ତାଙ୍କ ପ୍ରତି ନ୍ୟାୟ କରୁଥିବା ମନେ ହୁଏ ନାହିଁ ।

ମ୍ୟାକଲେଙ୍କର ଭାରତୀୟ ଜନଜୀବନକୁ ସବୁଠାରୁ ବଡ ଅବଦାନ ହେଉଛି ଯେ ସେ ଭାରତୀୟ ଦଣ୍ଡବିଧି ଆଇନ(ଇଣ୍ଡିଆନ ପେନାଲ କୋଡ୍ ବା ଆଇପିସି)ର ଡ୍ରାଫ୍‌ଟ ମଧ କରିଥିଲେ । ତା' ପୂର୍ବରୁ ବିଶାଳ ଭାରତ ଭୂଖଣ୍ଡରେ ଏକ ସାର୍ବଜନୀନ

ଆଇନର ଭାବନା ବା ପରିକଳ୍ପନା ବି ଆସିନଥିଲା । ଭାରତର ଶହଶହ କରଦ ରାଜ୍ୟରେ ରାଜାମାନେ ହିଁ ସର୍ବେସର୍ବା ଥିଲେ ଓ କୌଣସି ଆଇନର ବ୍ୟବସ୍ଥା ନଥିଲା । ହିନ୍ଦୁମାନେ ମାନବିକତା-ବିରୋଧୀ ମନୁସଂହିତା ଓ ମୁସଲମାନ ମାନେ ରକ୍ଷଣଶୀଳ ସାରିଆତ୍ ଦ୍ୱାରା ପରିଚାଳିତ ହେଉଥିଲେ । ଏହି ସ୍ଥିତିରେ ସବୁ ନାଗରିକଙ୍କୁ ଆଇନ ଦୃଷ୍ଟିରେ ସମାନ କରିବା ଓ ଦେଶରେ ଆଇପିସିର ପ୍ରଚଳନ କରିବାର ବିଚାର ଦେବାରେ ମ୍ୟାକଲେଙ୍କର ଅବଦାନ ଥିଲା ଯୁଗାନ୍ତକାରୀ ।

ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତରେ ଦାରିଦ୍ର୍ୟ ନ ଥିବା ବା ଭିକାରି ନଥିବା କହି ଯେଉଁମାନେ ଆତ୍ମସନ୍ତୋଷ ଲାଭ କରନ୍ତି ତାହା ବାସ୍ତବତା ନା ଏକ ଛଳନା ? ସେତେବେଳେ ଚିକିତ୍ସା ଅଭାବରେ ହଇଜା, ବସନ୍ତ ଓ ପ୍ଲେଗରୋଗ କିପରି ମହାମାରୀ ଭାବେ ଆସୁଥିଲା, ତାହାର ବହୁ ଦୁଃଖଦ କାହାଣୀ ରହିଛି । ଏହା ସହିତ ସେ ସମୟରେ ପରିବହନ ଓ ଗମନାଗମନ ଅଭାବ ଯୋଗୁଁ ବନ୍ୟା, ବାତ୍ୟା, ମରୁଡି ହେଲେ ଲୋକମାନେ ଅନାହାରରେ କିପରି ପୋକମାଛି ପରି ମରୁଥିଲେ ତାହାର କାହାଣୀ ବେଶ୍ ମର୍ମାନ୍ତିକ । ଉନବିଂଶ ଶତାବ୍ଦୀର ସତୁରୀ ଦଶକରେ ଓଡିଶାର ନଅଙ୍କ ଦୁର୍ଭିକ୍ଷରେ ଉପକୂଳବର୍ତ୍ତି ଜିଲ୍ଲାମାନଙ୍କରେ କିପରି ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ଅନାହାରରେ ମୃତ୍ୟୁବରଣ କରିଥିଲେ ତାହା ଲୋମହର୍ଷଣକାରୀ । ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ବିଶିଷ୍ଟ ଅର୍ଥନୀତି ପ୍ରଫେସର ଡ.ବିଦ୍ୟାଧର ମିଶ୍ର(୧୯୧୬-୨୦୦୪) ତାଙ୍କ ରଚିତ ପୁସ୍ତକ "ବିଂଶ ଶତାବ୍ଦୀରେ ଓଡିଶା: ମୋ ଅନୁଭୂତି"ରେ ଗଣଦାରିଦ୍ର୍ୟ ଓ ଗଣମୃତ୍ୟୁ ଓଡିଶାରେ ସାଧାରଣ ଘଟଣା ଥିବା ବ୍ୟକ୍ତ କରିଛନ୍ତି । ହାରାହାରି ଭାବରେ ପ୍ରତି ପାଞ୍ଚବର୍ଷରେ ଓଡିଶାରେ ଗୋଟିଏ ବଡ ନଦୀବଢି ହେଉଥିଲା ଓ ସେଥିରେ ଲୋକମାନେ ଅସହାୟ ଭାବେ ମୃତ୍ୟୁବରଣ କରୁଥିଲେ । ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ ଓଡିଶାରେ ତା ପୂର୍ବରୁ ଶହେବର୍ଷ ଭିତରେ ୧୨ଟି ବଡ ଦୁର୍ଭିକ୍ଷ ପଡିଥିବା କଥା ପ୍ର. ମିଶ୍ର ଉଲ୍ଲେଖ କରିଛନ୍ତି । ନଅଙ୍କ ଦୁର୍ଭିକ୍ଷରେ କଟକ, ପୁରୀ, ବାଲେଶ୍ୱରରେ ଲୋକସଂଖ୍ୟାର ଏକ ଚତୁର୍ଥାଂଶରୁ ଅଧିକ ଲୋକ ମରିଥିବା ତାଙ୍କ ପୁସ୍ତକରୁ ଜଣାପଡେ । ଏପରିକି ସ୍ୱାଧୀନତା ପୂର୍ବରୁ ବିଂଶ ଶତାବ୍ଦୀରେ ବଙ୍ଗ ଦୁର୍ଭିକ୍ଷରେ ୧୫ଲକ୍ଷ ଲୋକ ମୃତ୍ୟୁବରଣ କରିଥିବାର ଐତିହାସିକ ତଥ୍ୟ ରହିଛି । ଏହି ସ୍ଥିତି ସାରା ଭାରତବର୍ଷରେ ସବୁ ଅଞ୍ଚଳରେ ଅଳ୍ପ ବହୁତ ଲାଗି ରହିଥିଲା । ତେଣୁ ଭାରତରେ ଭିକାରି ନଥିବା ବା ଦାରିଦ୍ର୍ୟ ନଥିବା କହିବା ସତ୍ୟର ଅପଳାପ ନୁହେଁ କି ?

ଊନବିଂଶ ଶତାବ୍ଦୀ ବା ତା ପୂର୍ବରୁ ଭାରତୀୟ ଜନଗଣଙ୍କର ସାମାଜିକ, ସାଂସ୍କୃତିକ ଜୀବନ କେଉଁ ସ୍ତରରେ ରହିଥିଲା ? ଯଦି ଭାରତରେ ମ୍ୟାକଲେଙ୍କ ଶିକ୍ଷା ନୀତିକୁ ଆଧାର କରି ଇଂରେଜ ଶିକ୍ଷାର ପ୍ରଚଳନ ହୋଇନଥାନ୍ତା, ତେବେ ଭାରତରେ ସଂସ୍କୃତ ଓ ଆରବିକ୍ ଭାଷାରେ ହୁଏତ ସେହି ଯୁଗରେ ଶିକ୍ଷାର ବ୍ୟବସ୍ଥା ହୋଇଥାନ୍ତା । କାରଣ ସେ ସମୟକୁ ପ୍ରାନ୍ତୀୟ ଭାଷା ଗୁଡିକରେ ପଠନଯୋଗ୍ୟ ପୁସ୍ତକ ପ୍ରକାଶ ପ୍ରାୟ ଆରମ୍ଭ ହୋଇନଥିଲା । ମନେ କରାଯାଉ ମୁସଲମାନ ମାନେ ଆରବିକ ଭାଷାରେ ଓ ହିନ୍ଦୁମାନେ ସଂସ୍କୃତ ଭାଷାରେ ପଢିଥାନ୍ତେ ଓ ଏହି ଭାଷା ଦ୍ୱୟ ହୁଏତ କାଳକ୍ରମେ ବିକଶିତ ହୋଇଥାନ୍ତା, ଯଦି ବା ସଂସ୍କୃତ ଭାଷା ଏକ କଥିତ ଭାଷା ଭାବେ ଭାରତରେ କେଉଁଠି ପ୍ରଚଳନ ନଥିଲା । ତେବେ ସଂସ୍କୃତ ଭାଷା ପ୍ରତି ସଂସ୍କୃତ ପଣ୍ଡିତମାନଙ୍କର ଦୃଷ୍ଟିଭଙ୍ଗୀ କଣ ଥିଲା ? ମନୁବାଦୀମାନେ ସଂସ୍କୃତ ଭାଷା ପଢିବାରେ ଶୂଦ୍ର, ଅତିଶୂଦ୍ର (ବର୍ତ୍ତମାନର ଦଳିତ) ଓ ନାରୀମାନଙ୍କୁ ବାରଣ କରି ଆସିଥିବା ଘଟଣା ସୁବିଦିତ । ଏଠାରେ ଏକ ବାସ୍ତବ ଘଟଣା ଉଲ୍ଲେଖ କରାଯାଇପାରେ । ଡକ୍ଟର ବି.ଆର ଆମ୍ବେଦକର ୧୯୦୭ ମସିହାରେ ମାଟ୍ରିକ ପାସ୍ କଲେ । ହାଇସ୍କୁଲରେ ପଢିବା ବେଳେ ଇଂରାଜୀ ଭାଷା ସହିତ ଏକ ଦ୍ୱିତୀୟ ଭାଷା ପଢିବାର ବ୍ୟବସ୍ଥା ଥିଲା । ଆମ୍ବେଦକର ଓ ତାଙ୍କର ଭାଇ ସଂସ୍କୃତ ଭାଷା ନେବାକୁ ଚାହୁଁଥିଲେ । କିନ୍ତୁ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ ଅସ୍ପୃଶ୍ୟମାନେ ସଂସ୍କୃତ ପଢିବା ନୀତି ବିରୁଦ୍ଧ କହି ଶ୍ରେଣୀରୁ ସେମାନଙ୍କୁ ବାହାର କରିଦେବା ଓ ଏଥିରେ ଆମ୍ବେଦକର ଗଭୀର ଯନ୍ତ୍ରଣା ପାଇଥିବା ବେଶ୍ ଜଣାଶୁଣା । ବାଧ ହୋଇ ଆମ୍ବେଦକର ଦ୍ୱିତୀୟ ଭାଷା ଭାବେ ପାର୍ଶୀ ଭାଷା ପଢିବା ତାଙ୍କର ଜୀବନୀ ଲେଖକମାନେ ଉଲ୍ଲେଖ କରିଛନ୍ତି । (ଆମ୍ବେଦକରଙ୍କର ବିଶିଷ୍ଟ ଜୀବନୀ ଲେଖକ ଜନକ ସିଂହଙ୍କ ପୁସ୍ତକ ଡ. ବି.ଆର ଆମ୍ବେକର, ପୃ-୩୯ ଦ୍ରଷ୍ଟବ୍ୟ) ଏହା ବିଂଶ ଶତାବ୍ଦୀ ଆରମ୍ଭର ଘଟଣା, ତେବେ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ହିନ୍ଦୁ ପୂଜକ ଶ୍ରେଣୀର ମାନସିକତା କେତେ ରକ୍ଷଣଶୀଳ ଥିଲା ତାହା ସହଜରେ ଅନୁମେୟ । ସେହିପରି ମହାରାଷ୍ଟ୍ରର ବିଶିଷ୍ଟ ସଂସ୍କାରକ ଜ୍ୟୋତିରାଓ ଫୁଲେ(୧୮୨୭-୧୮୯୦) ଏକ ସାମାଜିକ ବିପ୍ଳବୀ ଓ ମହାତ୍ମା ଭାବେ ପରିଚିତ । ସେ ଯେତେବେଳେ ଶୂଦ୍ର ଓ ଝିଅମାନଙ୍କର ପାଠ ପଢିବା ପାଇଁ କିଛି ଉଦ୍ୟମ କରିଥିଲେ ସେ ଉଚ୍ଚ ଜାତିର ଲୋକଙ୍କ ଦ୍ୱାରା କି ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଛନ୍ତି, ତାହା ଆଜି ଇତିହାସର ବିଷୟ । ସେହିପରି କେରଳରେ ନାରାୟଣ ସ୍ୱାମୀ, ତାମିଲନାଡୁରେ ପେରିୟାର ଇତ୍ୟାଦି

ସଂସ୍କାରକମାନେ ଉନବିଂଶ ଶତାବ୍ଦୀରେ ଶିକ୍ଷା ପାଇଁ ସାମାଜିକ ଚେତନା ସୃଷ୍ଟି କରିବାରେ ଯେଉଁ କିଛି ପଦକ୍ଷେପ ନେଇଛନ୍ତି ତାହାକୁ ସମାଜର ସମ୍ଭ୍ରାନ୍ତ ବର୍ଗ ସେ ଯୁଗର ମାନସିକତାରେ ନାନା ବିରୋଧ କରି ଆସିଛନ୍ତି । ଏପରିକି ସରକାରୀ ପରିଚାଳିତ ବିଦ୍ୟାଳୟମାନଙ୍କରେ ତଥାକଥିତ ଦଳିତ ପିଲାମାନଙ୍କୁ ଯେଉଁ ଅମାନବୀୟ ବ୍ୟବହାର କରାଯାଇଛି ତାହାର କାହାଣୀ ଅତ୍ୟନ୍ତ ମର୍ମାନ୍ତିକ । ଭାରତୀୟ ସମାଜର ନୈତିକ ଓ ସାଂସ୍କୃତିକ ଦୃଷ୍ଟିଭଙ୍ଗୀ କେତେ ଅମାନବୀୟ ରହି ଆସିଥିଲା, ତାହା ଉନବିଂଶ ଶତାବ୍ଦୀର ଯେ କୌଣସି ସଂସ୍କାରକଙ୍କ ଜୀବନୀରୁ ସୁସ୍ପଷ୍ଟ ।

ଇଂରେଜମାନେ ସେମାନଙ୍କର ବାଣିଜ୍ୟ କରିବାକୁ ଆସି ଭାରତକୁ ଏକ ଉପନିବେଶ କଲେ । ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ ଶିଳ୍ପୋନ୍ନତ ଓ ସାମରିକ ଶକ୍ତିଶାଳୀ ରାଷ୍ଟ୍ରମାନେ ଏସିଆ, ଆଫ୍ରିକା ଇତ୍ୟାଦି ଦେଶମାନଙ୍କୁ ସାମ୍ରାଜ୍ୟବାଦୀ ନିୟନ୍ତ୍ରଣ ଭିତରକୁ ନେଇଥିଲେ । ଏହାଥିଲା ରାଜନୈତିକ ସାମ୍ରାଜ୍ୟବାଦ । ଇଂରେଜମାନେ ଅର୍ଥନୈତିକ ଶୋଷଣ କରିଛନ୍ତି, ସ୍ୱାଧୀନତା ଆନ୍ଦୋଳନ ଉଦ୍ୟମକୁ ପ୍ରତିହତ କରିବାକୁ କିଛି ଦମନଲୀଳାର ବି ଆଶ୍ରୟ ନେଇଛନ୍ତି । ରାଜନୈତିକ ସାମ୍ରାଜ୍ୟବାଦର ଏହା ଅପରିହାର୍ଯ୍ୟ ଅଙ୍ଗ । ତେବେ ଏସବୁ ସତ୍ତ୍ୱେ ସେହି ରାଜନୈତିକ ସାମ୍ରାଜ୍ୟବାଦ ଭିତରେ ବି ଭାରତର ଏକ ରାଜନୈତିକ ସଂହତି ଆସିଛି । ଗଣଶିକ୍ଷାର ପରିବେଶ, ଆଇନର ଶାସନ ଓ ଏକ ସଭ୍ୟ ବିଚାର ବ୍ୟବସ୍ଥା ବ୍ରିଟିଶ ସାମ୍ରାଜ୍ୟବାଦରୁ ହିଁ ଉଦ୍ଭବ ହୋଇଛି । ଗଣତନ୍ତ୍ର, ବ୍ୟକ୍ତି ମର୍ଯ୍ୟାଦାବୋଧ, ସମତାର ଭାବନା ଅନେକାଂଶରେ ପାଶ୍ଚାତ୍ୟ ଦେଶର ଉଦାରବାଦୀ ଦାର୍ଶନିକମାନଙ୍କ ବିଚାରରୁ ସୃଷ୍ଟି ହୋଇଛି । ପାଶ୍ଚାତ୍ୟ ଶିକ୍ଷା ଓ ଗଣତାନ୍ତ୍ରିକ ଜୀବନଶୈଳୀର ପ୍ରଭାବରୁ ଭାରତୀୟ ଜାତୀୟ ଆନ୍ଦୋଳନ ସୃଷ୍ଟି ହୋଇଛି ଓ ଦେଶ ରାଜନୈତିକ ସ୍ୱାଧୀନତା ଲାଭ କରିଛି ।

ତେବେ ଭାରତ ଯୁଗ ଯୁଗ ଧରି ଅନ୍ୟ ଯେଉଁ ସାମ୍ରାଜ୍ୟବାଦ ଦ୍ୱାରା ପ୍ରଦୂଷିତ ଓ କଳୁଷିତ ହୋଇ ରହିଛି, ତାହା ହେଲା ସାଂସ୍କୃତିକ ସାମ୍ରାଜ୍ୟବାଦ । ଏହି ସାଂସ୍କୃତିକ ସାମ୍ରାଜ୍ୟବାଦର ପୃଷ୍ଠପୋଷକ ହୋଇଛନ୍ତି ମନୁବାଦୀ ପୂଜକଗୋଷ୍ଠୀ । ଗୋଟିଏ ମୁଷ୍ଟିମେୟ ସଂଭ୍ରାନ୍ତ ଗୋଷ୍ଠୀ ଜନଗଣଙ୍କ ବେକରେ ଜାତିଭେଦର ଯେଉଁ ଶିକୁଳିଟି ବାନ୍ଧିଛନ୍ତି ସେଥିରୁ ଏ ଦେଶର ଜନଗଣ ମୁକ୍ତି ପାଇପାରୁ ନାହାନ୍ତି । ରାଜତନ୍ତ୍ର ଯୁଗରେ ହେଉ, ମୁସଲମାନ ବା ଇଂରେଜ ଶାସନ କାଳରେ ହେଉ ଅବ୍ରାହ୍ମଣ ଶୂଦ୍ର ଓ ଦଳିତଙ୍କ ପାଇଁ ମାନବିକ ସ୍ୱାଧୀନତା ଦଣ୍ଡନୀୟ ହୋଇ ରହିଛି । ଜଣେ ଭିକାରି ଉଚ୍ଚଜାତିର

ଲୋକ ଯେଉଁ ସମ୍ମାନର ଅଧିକାରୀ ହୋଇଛି, ଜଣେ ଶୂଦ୍ର ବା ଅତିଶୂଦ୍ର ଯେତେ ପ୍ରତିଭାବାନ ହେଲେ ମଧ୍ୟ ସେହି ସମ୍ମାନର ଅଧିକାରୀ ହୋଇନାହିଁ । ବିଲେଇ, କୁକୁରର ଛୁଆ ଜନ୍ମ ପାଇଁ ଯେଉଁମାନେ ନିଜ ବାଡିରେ ସ୍ଥାନ ଦେଇଛନ୍ତି, କୌଣସି ପ୍ରାୟଶ୍ଚିତ ପାଇଁ ଗାଈର ମୂତ୍ର ପାନ କରିବାକୁ କହିଛନ୍ତି, ସେହିମାନେ ଏ ଦେଶର ଅଗଣିତ ଦଳିତଙ୍କର ଛାଇକୁ ବି ଅପବିତ୍ର ମନେ କରିଛନ୍ତି । ସର୍ବସାଧାରଣ ରାସ୍ତାରେ ଚାଲିବା ଓ ମଶାଣୀରେ ଶବ ପୋଡିବାର ଅଧିକାର ବି ଦଳିତ ମାନେ ପାଇନାହାନ୍ତି । ଏ ଦେଶର ଅଶୀ ଭାଗରୁ ଅଧିକ ଲୋକ ମୁଷ୍ଟିମେୟ ପୂଜକ ଓ ଶାସକ ଗୋଷ୍ଠୀର କ୍ରୀତଦାସ ହୋଇ ରହି ଆସିଛନ୍ତି । ଗୋଟିଏ ଭୌଗୋଳିକ ଭୂଖଣ୍ଡରେ ଓ ଗୋଟିଏ ଧର୍ମଧାରା ଭିତରେ ରହିଥିବା ଅଗଣିତ ମଣିଷ ଯେପରି ମୁଷ୍ଟିମେୟ ଲୋକଙ୍କର ଅତ୍ୟାଚାର ସହି ଆସିଛନ୍ତି ଓ ମର୍ଯ୍ୟାଦାବିହୀନ ନିକୃଷ୍ଟ ବୋଲି ବିବେଚିତ ହୋଇଛନ୍ତି ତାହା ପାଖରେ ରାଜନୈତିକ ସାମ୍ରାଜ୍ୟବାଦର ଶୋଷଣ ଅତି ନ୍ୟୂନ ମନେହୁଏ । ସାମାଜିକ ଜୀବନ ପ୍ରବାହରେ ଅଗଣିତ ମଣିଷକୁ ଯୁଗ ଯୁଗ ଧରି ଅସ୍ପୃଶ୍ୟ  କରିରଖିବା ଓ ସେହି ମୂକ ଜନତାକୁ ସର୍ବନିମ୍ନ ଅଧିକାର ନଦେବାଠାରୁ ଅଧିକ ଜଘନ୍ୟତମ ଶୋଷଣ କିଛି ଥାଇପାରେ କି ? ସାମାଜିକ ସ୍ୱେଚ୍ଛାଚାରିତା ଓ ମୁଷ୍ଟିମେୟ ପ୍ରଭାବଶାଳୀ ଲୋକଙ୍କର ଦମନଲୀଳାର ଯେଉଁ ଭୟାନକ କାହାଣୀ ଆମ ସାମାଜିକ ଜୀବନକୁ ଯେପରି ଧ୍ୱସ୍ତ ବିଧ୍ୱସ୍ତ ଓ ବିକଳାଙ୍ଗ କରିଦେଇଛି ସେହି ସାଂସ୍କୃତିକ ସନ୍ତ୍ରାସବାଦ ରାଜନୈତିକ ସାମ୍ରାଜ୍ୟବାଦଠାରୁ ଯେ ଅଧିକ ମାରାତ୍ମକ ଏହା କହିବା ନିଷ୍ପ୍ରୟୋଜନ ।

ଏହା ଅନସ୍ୱୀକାର୍ଯ୍ୟ ଯେ ପୃଥିବୀର ପ୍ରାଚୀନ ସଭ୍ୟତାମାନଙ୍କ ମଧ୍ୟରେ ଭାରତୀୟ ସଭ୍ୟତା ଅନ୍ୟତମ । ଭାରତୀୟ ସଭ୍ୟତା ତୁଳନାରେ ବହୁ ୟୁରୋପୀୟ ରାଷ୍ଟ୍ରମାନଙ୍କର ସଭ୍ୟତା ସେତେ ପୁରାତନ ନୁହେଁ । ପ୍ରାଚୀନ ଭାରତୀୟ ସଭ୍ୟତାରେ ଜୀବନର ପବିତ୍ରତା, ଉଚ୍ଚଚିନ୍ତା, ସର୍ବେ ଭବନ୍ତୁ ସୁଖୀନଃ ପରି କିଛି ମହାନ ଆଦର୍ଶ ସୃଷ୍ଟି ହୋଇଥିଲା । ଏସବୁ ମହାନ ହେତୁବାଦୀ ଆଦର୍ଶ ଗୁଡିକ ଭାରତୀୟ ଜନଜୀବନରେ କାହିଁକି ଉଚ୍ଚ ସ୍ପନ୍ଦନ ସୃଷ୍ଟି କରିପାରିଲା ନାହିଁ ? ଏହାର କାରଣ ବିଷୟରେ ନାନା ବ୍ୟାଖ୍ୟା କରାଯାଇଛି । ଏ କ୍ଷେତ୍ରରେ ମୁଖ୍ୟ ପ୍ରତିବନ୍ଧକ ହୋଇ ରହିଛି ବ୍ରାହ୍ମଣବାଦୀ ମାନସିକତା । ତେବେ ଭାରତବର୍ଷରେ ବୁଦ୍ଧଙ୍କର ଆବିର୍ଭାବ ଏକ ମହାନ ସାଂସ୍କୃତିକ କ୍ରାନ୍ତିର ପରିବେଶ ଆଣିଥିଲା । ସ୍ୱାର୍ଥଜନିତ ପୂଜାପଦ୍ଧତି, ନିଷ୍ଠୁର ପଶୁବଳି, ଭେଦଭାବମୂଳକ ବର୍ଣ୍ଣବ୍ୟବସ୍ଥା ଓ ପୂଜକ ଗୋଷ୍ଠୀର ଅସତ୍ ପନ୍ଥା ବିରୁଦ୍ଧରେ ବୌଦ୍ଧଧର୍ମ

ଥିଲା ଏକ ବୈପ୍ଳବିକ ଆହ୍ୱାନ । ଏସବୁ ବିଶ୍ୱାସରୁ ଜନମାନସକୁ ମୁକ୍ତ କରି ଏକ ନୈତିକ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ପ୍ରସାର କରିବାରେ ବୁଦ୍ଧ ଥିଲେ କ୍ରାନ୍ତିକାରୀ । ବିଶ୍ୱର ସବୁ ମଣିଷ ସମାନ, ମଣିଷକୁ ଭଲପାଇବା ହିଁ ପ୍ରକୃତ ଧର୍ମ, ଏକ ସତ୍ୟାଧାରିତ ନିର୍ମଳ ଜୀବନ ହିଁ ଧର୍ମର ମୌଳିକ ଆଦର୍ଶ ବୁଦ୍ଧଙ୍କ ଅଷ୍ଟାଙ୍ଗ ମାର୍ଗର ସାରମର୍ମ ଥିଲା । ବୌଦ୍ଧଧର୍ମ ପ୍ରଥମଥର ପାଇଁ ଭାରତବର୍ଷକୁ ଏକ ସାର୍ବଜନୀନ ଆଦର୍ଶରେ ସଂଗଠିତ କରିଥିବା ମନେହୁଏ । ବୁଦ୍ଧଙ୍କ ବାଣୀ ଓ ଆଦର୍ଶ ପୃଥିବୀରେ ଯେତିକି ପ୍ରସାରିତ ହେଲା, ଭାରତ ଏକ ମହାନ ରାଷ୍ଟ୍ର ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ପଥ ପ୍ରଦର୍ଶକ ଭାବେ ସ୍ୱୀକୃତି ଲାଭ କଲା । ଦୀର୍ଘ ଚଉଦ ଶହ ବର୍ଷ ଧରି (ଖ୍ରୀ.ପୂ. ୬୦୦ରୁ ଖ୍ରୀଷ୍ଟାବ୍ଦ ୮୦୦ ପର୍ଯ୍ୟନ୍ତ) ବୌଦ୍ଧଧର୍ମ ଭାରତରେ ଗଣଧର୍ମ ଭାବେ ଏକ ମହାନ ସଂସ୍କୃତିର ଭିତ୍ତି ସ୍ଥାପନ କରିଥିଲା । ବୌଦ୍ଧଧର୍ମ ଭାରତବର୍ଷରୁ କିପରି ଓ କାହିଁକି ଲୋପ ପାଇଲା ଓ ପୁନଶ୍ଚ ବ୍ରାହ୍ମଣବାଦ ଆସିଲା ତାହାର କାହାଣୀ ମଧ୍ୟ ମର୍ମାନ୍ତିକ । ବୌଦ୍ଧଧର୍ମକୁ ଧ୍ୱଂସାଭିମୁଖୀ କରିବାରେ ଭାରତବର୍ଷରେ ବ୍ରାହ୍ମଣବାଦୀ ଶାସକଗୋଷ୍ଠୀର କିପରି ଚକ୍ରାନ୍ତ ଥିଲା ତାହାର ବିଭିନ୍ନ ଦିଗନ୍ତ ଉପରେ ନାନା ଐତିହାସିକ କାରଣ ରହିଛି । ପୁଷ୍ୟମିତ୍ର ସୁଙ୍ଗଙ୍କଠାରୁ ବୌଦ୍ଧ ସନ୍ନ୍ୟାସୀଙ୍କୁ ହତ୍ୟା, ବୌଦ୍ଧ ସ୍ତୁପ ଧ୍ୱଂସ ଓ ବ୍ରାହ୍ମଣ-ଶାସିତ ରାଜ୍ୟ ମାନଙ୍କରେ ବୌଦ୍ଧଧର୍ମକୁ ନିଷେଧର ଯେଉଁ ପରିବେଶ ଆରମ୍ଭ ହୋଇଥିଲା, ତାହା ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ପରେ ଲକ୍ଷ୍ୟରେ ପହଞ୍ଚିଲା । ପୂଜକଗୋଷ୍ଠୀ କୌଣସି ରାଜାର ପତନ ଚାହୁଁଥିଲେ ସେମାନେ କିପରି ବିଦେଶୀ ଶକ୍ତିର ସାହାଯ୍ୟ ନେଉଥିଲେ ତାହା ବି ଆମ ଇତିହାସରେ ଦେଖିବାକୁ ମିଳେ । ସକ, ହୁନ, ୟୁଚୀ, ଆରବୀ, ତୁର୍କୀ ଓ ରାଜପୁତମାନଙ୍କ ସହଯୋଗରେ ପ୍ରଭାବଶୀଳା ପୂଜକ ଗୋଷ୍ଠୀ ବୌଦ୍ଧ ସଂଘ ଗୁଡିକର ପତନ ଘଟାଇଥିଲେ । ବୌଦ୍ଧ ବିହାର ଗୁଡିକୁ ଧ୍ୱଂସକରି କିପରି ବିରାଟ ମନ୍ଦିରମାନ ସୃଷ୍ଟି କଲେ ତାହାର ବ୍ୟାଖ୍ୟା ସ୍ୱାମୀ ଧର୍ମତୀର୍ଥ ତାଙ୍କର ପୁସ୍ତକ ହିନ୍ଦୁ ସାମ୍ରାଜ୍ୟବାଦର ଇତିହାସ (History of Hindu Imperialism)ରେ ଆଲୋଚନା କରିଛନ୍ତି । ବୌଦ୍ଧ ବିହାର ଯାହା ଶିକ୍ଷା ଓ ସେବାର କେନ୍ଦ୍ର ଥିଲା ତାହା ମନ୍ଦିରରେ ପରିଣତ ହୋଇ ଏକ ଶ୍ରମବିହୀନ ରୋଜଗାର ବୃତ୍ତିରେ ରୂପାନ୍ତରିତ ହେଲା । ବୌଦ୍ଧଧର୍ମରେ ଯେଉଁ ସମତାଭିତ୍ତିକ ଗଣତାନ୍ତ୍ରିକ ସମାଜ ଗଠନର ଅବକାଶ ଥିଲା, ତାହା ସବୁଦିନ ପାଇଁ ଲୋପ ପାଇଲା ଓ ସାଂସ୍କୃତିକ ସାମ୍ରାଜ୍ୟବାଦ ମନୁବାଦର ନୀତି ଉପରେ ଗଢି ଉଠିଲା । ଏହାସହିତ ଇହ ଜୀବନକୁ ପ୍ରାଧାନ୍ୟ ଦେଇ ବୈଜ୍ଞାନିକ ବିଚାରଶୀଳତାକୁ ଗୁରୁତ୍ୱ

ଦେଉଥିବା ଲୋକାୟତ ଦର୍ଶନର ସମସ୍ତ କୃତିକୁ ଲୋପ କରାଗଲା । ବୌଦ୍ଧଧର୍ମ ଯେହେତୁ ଭାରତ ଭୂଖଣ୍ଡର ବାହାରକୁ ଚାଲି ଯାଇଥିଲା, ବୌଦ୍ଧଧର୍ମ ଓ ଦର୍ଶନର ଅନେକ କୃତି ରହିଲା, ଅଥଚ ଲୋକାୟତ ଦର୍ଶନର କୌଣସି କୃତି ରହିଲା ନାହିଁ । ରାଜତନ୍ତ୍ର ଯୁଗରେ ଶାସକ ଗୋଷ୍ଠୀର ସ୍ୱାର୍ଥବିରୁଦ୍ଧ କୌଣସି ଧର୍ମ, ଦର୍ଶନର ବିଲୋପ ହେବା ଇତିହାସରେ ସାଧାରଣ ଘଟଣା ମନେହୁଏ । ବ୍ରାହ୍ମଣମାନେ ବା ସେମାନଙ୍କ ସମର୍ଥନର ଶାସକମାନେ ରଷ୍ଟ୍ରଶକ୍ତି ପ୍ରୟୋଗ କରି ଏକ ସମତାଭିତ୍ତିକ ଓ ମାନବବାଦୀ ଧର୍ମକୁ ଧ୍ୱଂସ କଲେ । ରାଷ୍ଟ୍ରଶକ୍ତିର ସାହାଯ୍ୟରେ ବୌଦ୍ଧଧର୍ମକୁ କିପରି ଲୋପ କରାଗଲା ତାହାର ବିଶଦ ବ୍ୟାଖ୍ୟା ସ୍ୱାମୀ ଧର୍ମତୀର୍ଥଙ୍କ ପରି ବିଶିଷ୍ଟ ଗବେଷକ ମାନେ ଦର୍ଶାଇଛନ୍ତି । କାଳେ କେତେବେଳେ ଜନବିଦ୍ରୋହ ହେବ ବା ଲୋକମାନେ ପୂଜକ ଗୋଷ୍ଠୀ ପ୍ରତି ବିପଦ ସୃଷ୍ଟି କରିବେ ସେ ପାଇଁ ଲୋକମାନଙ୍କୁ ଜାତି ଆଧାରରେ ବିଭକ୍ତ କରାଗଲା ଓ ମନୁସଂହିତା ପରି ଶାସ୍ତ୍ର ଆଧାରରେ ସାମାଜିକ ବୈଷମକୁ ଦୈବୀ ବା ଈଶ୍ୱରୀୟ ସ୍ୱୀକୃତି ଦିଆଗଲା । ଶୂଦ୍ର ଓ ଅତିଶୂଦ୍ର ଯେଉଁମାନେ ଏ ଦେଶର କୃଷକ, ଶ୍ରମଜୀବୀ ଓ କାରିଗର ଶ୍ରେଣୀ ସେମାନେ ସାମାଜିକ ବ୍ୟବସ୍ଥାରେ ଶୋଷିତ, ଅବହେଳିତ ରହି ଅମର୍ଯ୍ୟାଦାର ଜୀବନ ନିର୍ବାହ କଲେ ।

ଭାରତରେ ସାମାଜିକ ଜୀବନ ଯେତିକି କଳୁଷିତ, ବିପର୍ଯ୍ୟସ୍ତ ଓ ବିଭାଜିତ ହୋଇ ଚାଲିଲା ତାହା ବିଦେଶୀ ଆକ୍ରମଣର ପଥ ସୁଗମ କଲା । ତେବେ ବିଡମ୍ବନାର ବିଷୟ ମୁସଲମାନ ରାଜତ୍ୱ କାଳରେ ହେଉ, ଇଂରେଜ ଶାସନ କାଳରେ ହେଉ ବା ଅସଂଖ୍ୟ କରଦ ରାଜ୍ୟମାନଙ୍କରେ ହେଉ ଶୂଦ୍ର ଓ ଦଳିତଙ୍କ ସ୍ଥିତିରେ କିଛି ପରିବର୍ତ୍ତନ ହେଲାନାହିଁ । ମୁସଲମାନମାନେ ଘୃଣା କରୁଥିବା ପିତୁଳା ପୂଜାକୁ ବ୍ରାହ୍ମଣମାନଙ୍କ ଆଧିପତ୍ୟରେ ରଖିଲେ ଓ ମନ୍ଦିରମାନଙ୍କରୁ ପ୍ରଚୁର ରାଜସ୍ୱ ପାଉଥିଲେ । ବ୍ରିଟିଶ ଶାସନ ଭାରତକୁ ଆସିବା ପରେ ଇଂରେଜମାନେ ଭାରତୀୟମାନଙ୍କ ସମାଜ ବ୍ୟବସ୍ଥା ଓ ଧର୍ମ ଭାବନାରେ ହସ୍ତକ୍ଷେପ କଲେନାହିଁ । ସେମାନେ ବି ସମସ୍ତ ମନ୍ଦିର, ମୂର୍ତ୍ତିପୂଜା ଓ ବ୍ରାହ୍ମଣବାଦୀ ପରଂପରାକୁ ସ୍ୱୀକୃତି ଦେଲେ । ଏପରିକି ବ୍ରାହ୍ମଣମାନେ ସମାଜର ପ୍ରତିପତ୍ତି ଗୋଷ୍ଠୀ ହୋଇଥିବାରୁ ସେମାନଙ୍କୁ ବିଶ୍ୱସ୍ତତାର ପଦ ପଦବୀରେ ସ୍ଥାନିତ କଲେ । ବ୍ରାହ୍ମଣମାନେ ବ୍ରିଟିଶ ଶାସନକୁ ସମର୍ଥନ ଦେଇ ମନୁବାଦୀ ବ୍ୟବସ୍ଥାକୁ ସୁଦୃଢ କରି ନିଜର ସ୍ୱାର୍ଥସାଧନ କରିଚାଲିଲେ । ମନ୍ଦିର, ତୀର୍ଥଯାତ୍ରା, ମୂର୍ତ୍ତିପୂଜା, ନାନା ପର୍ବପର୍ବାଣୀ, ପ୍ରାୟଶ୍ଚିତ, କର୍ମକାଣ୍ଡ ଓ ନାନା କାଳ୍ପନିକ କାହାଣୀମାନ ରଚନା କରି

ଲୋକମାନଙ୍କୁ ଶୋଷଣ କରିବାକୁ ଲାଗିଲେ ଓ ତାକୁ ଧର୍ମ, ସଂସ୍କୃତି, ପରଂପରା, ଐତିହ୍ୟର ରୂପ ଦେଲେ । କୃଷି, ଶିଳ୍ପ ଓ ଶ୍ରମରେ ଯେଉଁମାନେ ସଂଗ୍ରାମ କରି ଉତ୍ପାଦନ କରୁଥିଲେ ସେମାନଙ୍କୁ ମୁକ୍ତି, ସ୍ୱର୍ଗ, ପରଜନ୍ମ ଇତ୍ୟାଦିର ନାନା ପ୍ରଲୋଭନ ଦେଖାଇ ସେମାନଙ୍କ ଅର୍ଥକୁ ଶୋଷଣ କରିବା ପାଇଁ ନାନା ଫନ୍ଦି ବାହାର କଲେ । ଏ ଦେଶର ଜନଗଣ ଏହିପରି ସାଂସ୍କୃତିକ ସାମ୍ରାଜ୍ୟବାଦଦ୍ୱାରା ଶୋଷିତ ହୋଇଚାଲିଲେ ଓ ଜନ୍ମଭିତ୍ତିକ ଜାତିପ୍ରଥାକୁ ଅଲଂଘନୀୟ ଭାବେ ସ୍ୱୀକାର କରିଗଲେ ।

ରାଜନୈତିକ ସାମ୍ରାଜ୍ୟବାଦ ୟୁରୋପରୁ ଏ ଦେଶକୁ ଆସିଥିଲା ଓ ସେଥିରେ ବେପାର ଓ ଅର୍ଥନୈତିକ ଶୋଷଣର ଉଦ୍ଦେଶ୍ୟ ନିହିତ ଥିଲା । ଏ ସତ୍ତ୍ୱେ ସେଠାରେ ଯେଉଁ ସଂସ୍କାରବାଦୀ ଆଭିମୁଖ୍ୟ ଥିଲା ତାହା ସାଂସ୍କୃତିକ ସାମ୍ରାଜ୍ୟବାଦରେ ଯେ ନଥିଲା ସେଥିରୁ ଦୁଇଟି ଉଦାହରଣ ଦେଇ ଲେଖାଟିକୁ ଶେଷ କରୁଛି । ସ୍ୱାମୀ ଧର୍ମତୀର୍ଥ ତାଙ୍କର ପୁସ୍ତକ "ହିନ୍ଦୁ ସାମ୍ରାଜ୍ୟବାଦର ଇତିହାସ" ପୁସ୍ତକରେ (ସ୍ୱାମୀ ଧର୍ମତୀର୍ଥ କେରଳ ରାଜ୍ୟର) ଲେଖିଛନ୍ତି ଯେ କେରଳର ତ୍ରିବାଙ୍କୋର ରାଜ୍ୟରେ ଜନସଂଖ୍ୟାର ଏକ ଚତୁର୍ଥାଂଶରୁ ଅଧିକ ଲୋକ ଇଝାବ ଏକ ଦଳିତ ସଂପ୍ରଦାୟର ଥିଲେ । ସେମାନଙ୍କର ପିଲାମାନେ ସ୍କୁଲରେ ପଢିବା ପାଇଁ ସେମାନେ ଦାବି କଲେ ବି ଉଚ୍ଚଜାତିର ଭୟଙ୍କର ବିରୋଧ ଯୋଗୁ ୧୮୮୫ ପର୍ଯ୍ୟନ୍ତ ସେମାନଙ୍କର ପିଲାମାନେ ବିଦ୍ୟାଳୟରେ ପଢିବାର ସୁଯୋଗ ପାଇନାହାନ୍ତି । ଏପରିକି ୧୮୯୧ ମସିହାରେ ସେମାନେ ସରକାରଙ୍କ ପାଖରେ ଚାକିରୀ ପାଇଁ ଦଶହଜାର ଲୋକ ଦସ୍ତଖତ କରି ନିବେଦନ କରିଥିଲେ ବି ଉଚ୍ଚ ହିନ୍ଦୁ ଜାତିଙ୍କ ବିରୋଧ ଯୋଗୁଁ ସରକାର ସେହି ଅନୁରୋଧକୁ ମଂଜୁର କରିନାହାନ୍ତି ।

ପ୍ରଚଳିତ ପ୍ରଥା ଅନୁଯାୟୀ ନୀଚଜାତିର ହିନ୍ଦୁ ସ୍ତ୍ରୀ ଲୋକମାନେ ଉଚ୍ଚ ଜାତିର ମହିଳାମାନଙ୍କ ପରି ଶରୀରର ଊର୍ଦ୍ଧ୍ୱାଂଶରେ ଓଢଣା ପକାଇ ପିନ୍ଧି ପାରିବେ ନାହିଁ । ଖ୍ରୀଷ୍ଟିୟାନ ମିସନାରୀମାନେ ଏହି ଅସଭ୍ୟ ପ୍ରଥାକୁ ବନ୍ଦ କଲେ ଓ ସେମାନଙ୍କୁ ଶରୀରର ଊର୍ଦ୍ଧ୍ୱାଂଶରେ ଓଢଣା ପରିଧାନ କରାଇଲେ । କେତେକ ଖ୍ରୀଷ୍ଟଧର୍ମ ବି ଗ୍ରହଣ କରିଗଲେ । ଏଥିରେ ଏକ ସାଂପ୍ରଦାୟିକ ଉତ୍ତେଜନାର ପରିବେଶ ଆସିଲା । ଏହି ଲଜ୍ଜାଜନକ ଅସଭ୍ୟ ପ୍ରଥାକୁ ସମର୍ଥନ କରୁଥିବା ଲୋକମାନଙ୍କ ବିରୁଦ୍ଧରେ ଦୃଢ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ମାଡ୍ରାସ ଗଭର୍ଣ୍ଣର ତ୍ରିବାଙ୍କୋର ରେସିଡେନସିଙ୍କ ପାଖକୁ ଯେଉଁ ନିର୍ଦ୍ଦେଶ ଦେଇଥିଲେ ତାହା ସ୍ୱାମୀ ଧର୍ମତୀର୍ଥ ତାଙ୍କ ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

ଦ୍ୱିତୀୟ ଘଟଣା ଟି ହେଲା ଯେଉଁ ଅସ୍ପୃଶ୍ୟ ଓ ଦଳିତ ଲୋକମାନେ ଭୟଙ୍କର ସାମାଜିକ ଅତ୍ୟାଚାରରେ ହନ୍ତସନ୍ତ ହୋଇ ଧର୍ମାନ୍ତରିତ ହୋଇ ଅନ୍ୟ ଧର୍ମକୁ ଯାଉଥିଲେ ସେମାନେ କିଛିଟା ଦାସତ୍ୱରୁ ମୁକ୍ତ ହେଉଥିଲେ । ଧର୍ମାନ୍ତରିତ ଦଳିତ ଖ୍ରୀଷ୍ଟିୟାନମାନେ ଯେତେବେଳେ ଯାଇ ଚର୍ଚ୍ଚରେ ବସି ପ୍ରାର୍ଥନା କଲେ ମାଡ୍ରାସର ଉଚ୍ଚଜାତିର ହିନ୍ଦୁମାନେ ନ୍ୟାୟାଳୟରେ ମାମଲା ଦାଏର କଲେ ଯେ, ଧର୍ମାନ୍ତରିତ ନୀଚ ଜାତିର ହିନ୍ଦୁମାନଙ୍କୁ ଚର୍ଚ୍ଚରେ ଏକତ୍ର ବସିବାକୁ ଦିଆନଯାଉ । ମାଡ୍ରାସ ନ୍ୟାୟାଳୟ ଈଶ୍ୱରଙ୍କ ପାଖରେ ଭେଦଭାବ ନାହିଁ କହି ଏହି ମାମଲାକୁ ଖାରଜ କରିଦେଲେ । ସ୍ୱାମୀ ଧର୍ମତୀର୍ଥ ଲେଖିଛନ୍ତି ଯେ ଉଚ୍ଚ ହିନ୍ଦୁମାନଙ୍କ ଚାପରେ ୧୮୮୫ ମସିହା ପର୍ଯ୍ୟନ୍ତ ଦଳିତ ପିଲାମାନଙ୍କୁ ବିଦ୍ୟାଳୟରେ ପଢିବାର ସୁଯୋଗ ନଥିଲା, ଯଦି ନ୍ୟାୟାଳୟ ହିନ୍ଦୁମାନଙ୍କ ଅଭିଯୋଗକୁ ଗ୍ରହଣ କରିଥାନ୍ତେ, ତେବେ ଭାରତରେ ଖ୍ରୀଷ୍ଟଧର୍ମ ବି ହିନ୍ଦୁ ଧର୍ମପରି ଜାତିଭିତ୍ତିକ ହୋଇଯାଇଥାନ୍ତା ।

ଉପସଂହାରରେ ରାଜନୈତିକ ସାମ୍ରାଜ୍ୟବାଦ ଭାରତର ଯାହା କ୍ଷତି କରିଛି ତାହାଠାରୁ ଶତଗୁଣ କ୍ଷତି କରିଛି ଦେଶର ସାଂସ୍କୃତିକ ସାମ୍ରାଜ୍ୟବାଦ । ମଣିଷ ଯେଉଁ ଧର୍ମରେ ବିଶ୍ୱାସ କରୁ ବା ନକରୁ ହୃଦୟର ପବିତ୍ରତା, ନୈତିକ ଜୀବନ ଓ ମାନବିକ ସମତାବୋଧ ଜୀବନକୁ ମହତ୍ତର ସୋପାନକୁ ନେଇଥାଏ । ପରିତାପର ବିଷୟ ଯେ ଏକ ଭେଦଭାବମୂଳକ ବ୍ୟବସ୍ଥା ଭାରତୀୟ ସମାଜରେ ଯୁଗ ଯୁଗ ଧରି ତିଷ୍ଠି ରହିଛି । ରାଜନୈତିକ ସ୍ୱାଧୀନତା ହାସଲ କରି ଆମେ ଗୋଟିଏ ସାମ୍ରାଜ୍ୟବାଦୀ ଶତ୍ରୁ ଉପରେ ବିଜୟ ହାସଲ କରିଛେ, କିନ୍ତୁ ଏକ ବୃହତ୍ତର ଓ ଅଧିକ ମାରାତ୍ମକ ଶତ୍ରୁ ଉପରେ ପୂର୍ଣ୍ଣ ବିଜୟ ହାସଲ କରିପାରି ନାହେଁ ।



# ହେତୁବାଦୀ ଦୃଷ୍ଟିଭଙ୍ଗୀ: ପ୍ରୀତିପୂର୍ଣ୍ଣ ବିଶ୍ୱ

ସବୁ ସଭ୍ୟତାରେ ଜୀବନର ଘନଘଟା ଓ ପ୍ରକୃତିର ରହସ୍ୟକୁ ଜାଣିବାକୁ କିଛି ବ୍ୟକ୍ତି କୌତୂହଳୀ ହୋଇଛନ୍ତି । ସେମାନେ ସ୍ୱାଧୀନ ଭାବେ ଚିନ୍ତା କରିବାକୁ ପ୍ରୟାସ କରିଛନ୍ତି ଓ ସେହି ପ୍ରୟାସରୁ ସଭ୍ୟତାର ବିକାଶ ହୋଇଛି । ଗତ ଅଢେଇ ହଜାର, ତିନି ହଜାର ବର୍ଷର ଏକ ଧାରାବାହିକ ଇତିହାସରୁ ସଭ୍ୟତାର ଅଗ୍ରଗତି ବିଷୟରେ ଯେଉଁ ଚିତ୍ରଟି ମିଳେ ସେଥିରୁ ଜଣାଯାଏ ଯେ ଆଦିମ ଗୋଷ୍ଠୀ ଜୀବନରୁ ନଦୀକୂଳର ଗ୍ରାମୀଣ ସଭ୍ୟତା, କ୍ଷୁଦ୍ର ରାଜ୍ୟ, ରାଷ୍ଟ୍ର ଇତ୍ୟାଦିର ଭାବନା ବିକଶିତ ହୋଇଛି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତା ଧୀର ମନ୍ଥର ଗତିରେ ଆଗକୁ ଯାଇଛି । କେଉଁଠି କେଉଁଠି କୌଣସି କାରଣ ଯୋଗୁଁ କେତେକ ଜନଗୋଷ୍ଠୀର ସଭ୍ୟତାର ବିଲୋପ ମଧ୍ୟ ହୋଇଛି । ଗୋଟିଏ ଗୋଟିଏ ନୂତନ୍ ଉଦ୍‌ଭାବନ ବା ଆବିଷ୍କାର, ନୂତନ ପ୍ରାଯୁକ୍ତିକ ଜ୍ଞାନ ସଭ୍ୟତାର ଅଗ୍ରଗତି କ୍ଷେତ୍ରରେ ବଳିଷ୍ଠ ଭିତ୍ତି ଯୋଗାଇଛି । ଆଦିମ ଯୁଗର ଶଙ୍କାକୁଳ ଯାଯାବର ଜୀବନରୁ ଆଜି ଯୁଗର ସଂହତିପୂର୍ଣ୍ଣ ନିରାପଦ ସାମାଜିକ ଜୀବନର କ୍ରମବିକାଶ ପଶ୍ଚାତରେ ରହିଛି ମଣିଷର ଅନୁସନ୍ଧିତ୍ସା, କିଛି ବ୍ୟକ୍ତିଙ୍କର ଅବଦାନ, ନିଷ୍ଠାପର ପ୍ରୟାସ ଓ ସର୍ବୋପରି ମଣିଷର ବିଚାରଶୀଳ ସାମର୍ଥ୍ୟ । ଭାଷା ବ୍ୟବହାର କରିବାର ସାମର୍ଥ୍ୟ ଓ ବିଚାରଶୀଳତା ଯୋଗୁଁ ଜୀବନର କ୍ରମୋନ୍ନତି ଓ ସାମାଜିକ ବିକାଶ ସମ୍ଭବ ହୋଇପାରିଛି । ଇତର ପ୍ରାଣୀମାନଙ୍କ ଜୀବନଧାରାରେ କୌଣସି ପରିବର୍ତ୍ତନ ହୋଇନାହିଁ । ଗାଈ, କୁକୁର, ବିରାଡି, କାଉ ଇତ୍ୟାଦି ଇତର ପ୍ରାଣୀମାନେ ଲକ୍ଷେ ବର୍ଷ ତଳେ ଯେଉଁ ସ୍ତରରେ ଥିଲେ ଆଜି ବି ସେହି ସ୍ତରରେ ବଞ୍ଚିଛନ୍ତି । କିନ୍ତୁ ମଣିଷ ନିଜର ବିଚାରଶୀଳ ସାମର୍ଥ୍ୟ ଯୋଗୁ ସଚେତନ ଭାବେ ନିଜର ବିକାଶ ଘଟାଇବାରେ ସମର୍ଥ ହୋଇଛି । ମଣିଷର ବିଚାରଶୀଳ ସାମର୍ଥ୍ୟ

କିଛିଟା ସହଜାତ ହେଲେ ମଧ୍ୟ ସାମାଜିକ ବିକାଶଧାରାରେ ଏହା ବି କ୍ରମବର୍ଦ୍ଧିଷ୍ଣୁ ଭାବେ ବିକଶିତ ହୋଇଚାଲିଛି । କିଛି ବ୍ୟକ୍ତି ମଣିଷର ସ୍ଥିତିରେ ଉନ୍ନତି ପାଇଁ ଚିନ୍ତାପ୍ରକଟ କରିଛନ୍ତି ଓ ନୂଆ ମାର୍ଗ ଦର୍ଶାଇଛନ୍ତି । କିଛି ବ୍ୟକ୍ତିଙ୍କର ସ୍ୱାଧୀନ ଭାବେ ଚିନ୍ତା କରିବାର ଅବକାଶ ଯୋଗୁ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଛି, ସଭ୍ୟତାର ରୂପ ବଦଳିଛି ଓ ବୌଦ୍ଧିକ ସୃଜନଶୀଳତା ଦେଇ ଜ୍ଞାନ ବିଜ୍ଞାନର ବିକାଶ ହୋଇଛି । ଏହି ଧାରା ନିରନ୍ତର ଭାବେ ଅବ୍ୟାହତ ରହିଛି ଓ ମଣିଷ ଜାତିର ଐକ୍ୟ ପାଇଁ ପରିବେଶ ଆସିପାରିଛି ।

ହେତୁବାଦ ଏକ ବୈଚାରିକ ଆଲୋଡନ ଓ ଏକ ଜୀବନ ଦର୍ଶନ । ମୁକ୍ତମନ, ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମନୋଭାବ ହେତୁବାଦର ଅନ୍ତଃସ୍ୱର । କୌଣସି ପୂର୍ବ ଧାରଣାର ବଶବର୍ତ୍ତୀ ନହୋଇ ସତ୍ୟସନ୍ଧାନୀ ହେବା ଓ ମୁକ୍ତ ମନ ନେଇ ପର୍ଯ୍ୟବେକ୍ଷଣ ପରୀକ୍ଷଣ ଆଧାରରେ ଜ୍ଞାନର ବିକାଶ ଘଟାଇବା ହେତୁବାଦର ଲକ୍ଷ୍ୟ ହୋଇଆସିଛି । ବୈଜ୍ଞାନିକ ପଦ୍ଧତିକୁ ବସ୍ତୁନିଷ୍ଠ ଜ୍ଞାନର ମୂଳ ଭାବେ ନେଇ ଏହା ଜ୍ଞାନର ଦିଗନ୍ତକୁ ବିସ୍ତାର କରିପାରିଛି । ୟୁରୋପୀୟ ନବଜାଗରଣ ଯୁଗ ପରେ ରାଜ୍ୟରେ ଯେଉଁ ଆଲୋଡନ ଆସିଛି ତାହା ପଶ୍ଚାତରେ ରହିଛି ବୈଜ୍ଞାନିକ ଦୃଷ୍ଟି । ଏହି ବିଶାଳ ବିଶ୍ୱକୁ ଜାଣିବା ପାଇଁ ବିଜ୍ଞାନ ତାହାର ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ପ୍ରୟାସ କରିଛି । ପରିଣାମତଃ ପ୍ରକୃତିର ବହୁ ରହସ୍ୟ ଓ ତଥ୍ୟ ଜଣାପଡିଛି । ବିଜ୍ଞାନ ବିଶ୍ୱ ସଂକ୍ରାନ୍ତରେ ଜ୍ଞାନର ଯେଉଁ ସିଦ୍ଧାନ୍ତମାନ ଉନ୍ମୋଚନ କରିଛି ତାହା ସତ୍ୟ, ପରୀକ୍ଷିତ, ସାର୍ବଜନୀନ, ପ୍ରଗତିଶୀଳ ହୋଇପାରିଛି । ବିଜ୍ଞାନ ନିରପେକ୍ଷ ଭାବେ ନିଜର ଗବାକ୍ଷକୁ ସର୍ବଦା ଉନ୍ମୁକ୍ତ କରିଆସିଛି ଓ କୌଣସି କିଛିକୁ ଶାଶ୍ୱତ, ଚିରନ୍ତନ ବୋଲି ନେଇନାହିଁ ।

କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରକୃତିର ରହସ୍ୟକୁ ମଣିଷ ନିଜର ଅନୁସନ୍ଧିତ୍ସା ଓ ବୈଜ୍ଞାନିକ ଅନୁସନ୍ଧାନଦ୍ୱାରା ଯେତିକି ଜାଣିବାକୁ ସମର୍ଥ ହୋଇଛି ତାହାରି ଆଧାରରେ ନୂଆନୂଆ ପ୍ରଯୁକ୍ତିମାନ ଉଦ୍ଭବ ହୋଇଛି । ମାତ୍ର ବିଗତ ଦୁଇଶହ ବର୍ଷ ଭିତରେ ପୃଥିବୀର ରୂପରେଖ କଳ୍ପନାତୀତ ଭାବେ ବଦଳିବାରେ ଲାଗିଛି । କୃଷି, ଉତ୍ପାଦନ, ଗମନାଗମନ, ଗଣମାଧ୍ୟମ, ଆଧୁନିକ ଚିକିତ୍ସା, ଶିକ୍ଷା, ଗୃହନିର୍ମାଣ, କଂପୁଟର, ଇଣ୍ଟରନେଟ୍ ଇତ୍ୟାଦି ନାନା କ୍ଷେତ୍ରରେ ଅଭୂତପୂର୍ବ ସଫଳତା ମିଳିପାରିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ନାନା କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବାରେ ସଫଳ ହୋଇଛି । ବୈଜ୍ଞାନିକ ପ୍ରଣାଳୀ କେବଳ ଯେ ପ୍ରକୃତିର ରହସ୍ୟ ଓ ନିୟମକୁ ଅନୁଶୀଳନ କରିଛି ତାହା ନୁହେଁ

ଏହା ସମାଜ, ସମାଜର ବିକାଶ ପ୍ରକ୍ରିୟା, ସାମାଜିକ ସଂଗଠନ, ଅନୁଷ୍ଠାନ, ସମାଜର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଧାରା ସକଳକୁ ମଧ୍ୟ ଅନୁଶୀଳନ କରିଛି । ପ୍ରତ୍ୟେକ ସଭ୍ୟତା, ସଂସ୍କୃତି ଏକ ଜନଗୋଷ୍ଠୀର ନୀତିବୋଧ, ପରଂପରା, ଜୀବନଦୃଷ୍ଟିକୁ ବିଚାରଶୀଳ ଭାବେ ବିଶ୍ଳେଷଣ କରିଛି । ପ୍ରତ୍ୟେକ ସଭ୍ୟତା ବା ସଂସ୍କୃତିର ସକାରାତ୍ମକ ଆବେଦନ ସହ ତାହାର ନକାରାତ୍ମକ ଦିଗ ଗୁଡିକୁ ମଧ୍ୟ ଏହା ପଦାକୁ ଆଣିଛି । ଏହା ସହିତ ନାନା ମନୋବୈଜ୍ଞାନିକ ଅନୁଶୀଳନ ଦ୍ୱାରା ବ୍ୟକ୍ତିର ସ୍ୱଭାବ, ଆବେଗ, ଚରିତ୍ରକୁ ଏହା ବିଶ୍ଳେଷଣ କରିଛି । ମାନସିକ ସୁସ୍ଥତା ଓ ଅସୁସ୍ଥ ମନ ନେଇ ଏହା ବିଶ୍ଳେଷଣ କରିଛି ଓ କେତେ କେତେ ଲୁକାୟିକ ତଥ୍ୟ ପଦାକୁ ଆଣିଛି । ମନୋବିଜ୍ଞାନ ବ୍ୟକ୍ତିର ଆଚରଣ, ପାରିପାର୍ଶ୍ୱିକ ପରିସ୍ଥିତି, ମାନସିକ ଆବେଗ, କ୍ରିୟା, ପ୍ରତିକ୍ରିୟା, ବ୍ୟକ୍ତିତ୍ୱ, ମାନସିକ ବ୍ୟାଧି ଇତ୍ୟାଦି ପ୍ରସଙ୍ଗ ଉପରେ ବୈଜ୍ଞାନିକ ପଦ୍ଧତିରେ ଅନୁଶୀଳନ କରିବା ଦେଖାଯାଏ । ହେତୁବାଦ ଜ୍ଞାନ ବିଜ୍ଞାନର ଅନୁଶୀଳନ କ୍ଷେତ୍ରରେ ଯେଉଁ ବୌଦ୍ଧିକ ଆଲୋଡନ ସୃଷ୍ଟି କରିଛି ତାହାର ପରିଣାମ ସ୍ୱରୂପ ପ୍ରାକୃତିକ ବିଜ୍ଞାନ, ସମାଜ-ବିଜ୍ଞାନ, ମନୋବିଜ୍ଞାନ କ୍ଷେତ୍ରରେ ନାନା ଦିଗନ୍ତ ସୃଷ୍ଟି ହୋଇଛି ।

ମଣିଷର ସ୍ୱରୂପ ଓ ବ୍ୟକ୍ତି-ଚରିତ୍ରର ଅନୁଶୀଳନୀରୁ ଏହା ପ୍ରତୀୟମାନ ହୋଇଥାଏ ଯେ ମଣିଷ ସ୍ୱଭାବରେ ଏକ ଆବେଗିକ ସ୍ତର ରହିବା ସହିତ ଏକ ବୌଦ୍ଧିକ ସ୍ତର ରହିଛି । ଆମର ସାମାଜିକ ପରିବେଶ, ଶିକ୍ଷା, ଭାବନା ଇତ୍ୟାଦି ଆମର ଚେତନାକୁ ପ୍ରଭାବିତ କରିଥାଏ । ବ୍ୟକ୍ତିର ଭାବନା, ଅନୁଭୂତି, ପ୍ରତ୍ୟକ୍ଷ, ବୁଦ୍ଧି, ଅନୁଶୀଳନାତ୍ମକ ଦକ୍ଷତା ବ୍ୟକ୍ତିର ଚେତନାକୁ ପ୍ରସାରିତ କରିଥାଏ । ଜୀବନ, ସମାଜ, ପରିବେଶ, ପ୍ରାକୃତିକ କ୍ଷେତ୍ର ବିଷୟରେ ଆମର ଯାହା କିଛି ଜ୍ଞାନ, ବିଚାରବୋଧ ଥାଏ ତାହା ଆମ ବୌଦ୍ଧିକ ବିକାଶ ସହିତ ସମ୍ପୃକ୍ତ ହେବା ଦେଖାଯାଏ । ବ୍ୟକ୍ତିର ବୌଦ୍ଧିକ ବିକାଶ ନାନା ପରିସ୍ଥିତି ଓ ପାରିପାର୍ଶ୍ୱିକ ଅବସ୍ଥା ଦ୍ୱାରା ପ୍ରଭାବିତ ବା ନିୟନ୍ତ୍ରିତ ହୋଇଥାଏ । ବ୍ୟକ୍ତିର ବୌଦ୍ଧିକ ସାମର୍ଥ୍ୟ ସହିତ ଏକ ଆବେଗିକ ସ୍ତର ଥାଏ ଯାହା ଅନେକାଂଶରେ ପ୍ରବୃତ୍ତିଗତ ମନେହୁଏ । ଆମର ଇଚ୍ଛା, କାମନା, ଭାବାବେଗ, ଭାବପ୍ରବଣତା, ମାନସିକ ଉଦ୍ଦୀପନା, ଅନୁରାଗ, ପ୍ରତିକ୍ରିୟା ଇତ୍ୟାଦି ଆମର ଆବେଗିକ ସ୍ତର ସହିତ ସଂଶ୍ଳିଷ୍ଟ ହେବା ଦେଖାଯାଏ । ଆମର ଆବେଗିକ ସ୍ତରରୁ ଯେଉଁ ଲକ୍ଷ୍ୟ ବା ଉଦ୍ଦୀପନା ଆସେ ତାହାକୁ ପୂରଣ କରିବା ଦିଗରେ ଆମର ବୁଦ୍ଧି, ଚେତନା ବ୍ୟବହୃତ ହୋଇଥାଏ । ବୁଦ୍ଧି ବା ମାନସିକ ଦକ୍ଷତା ମହତ୍ତର ଲକ୍ଷ୍ୟ ଦିଗରେ ପରିଚାଳିତ

ହୋଇପାରେ କିମ୍ବା ସ୍ୱାର୍ଥପର ଲକ୍ଷ୍ୟ ଦିଗରେ ବି ପରିଚାଳିତ ହୋଇପାରେ । ବୁଦ୍ଧି, ବିଚାରଶୀଳତା ଏକ ସାଧନ ଭାବରେ କୌଣସି ଲକ୍ଷ୍ୟ ହାସଲ ପାଇଁ ବିନିଯୋଗ ହୋଇଥାଏ ।

ହେତୁବାଦ ବୈଦ୍ଧିକତା ଓ ବିଚାରଶୀଳତାକୁ ପ୍ରାଧାନ୍ୟ ଦେବା ଭିତରେ ଏକ ଜୀବନ ଦର୍ଶନର ଅବତାରଣା କରିଥାଏ । ଏହି ଜୀବନ ଦର୍ଶନର ଆଧାର ଇହ-ଲୌକିକ (this worldly) ହେବା ଦେଖାଯାଏ । ପାରଲୌକିକ ଅବସ୍ଥା, ଅତୀନ୍ଦ୍ରିୟ ଜଗତ, ମୃତ୍ୟୁପର ଜୀବନ, ସ୍ୱର୍ଗ, ମୁକ୍ତି ଇତ୍ୟାଦି ଭାବନା ସକଳର କୌଣସି ଅନୁଭବଗତ ବା ପର୍ଯ୍ୟବେକ୍ଷଣୀୟ ଆଧାର ନଥିବାରୁ ଏସବୁକୁ କେବଳ ଧାର୍ମିକ ବିଶ୍ୱାସ ଭାବରେ ନିଆଯାଏ । ଯେହେତୁ ଏସବୁ ବିଶ୍ୱାସ ଉପରେ ଆଧାରିତ ଈଶ୍ୱର, ଆତ୍ମା, ଧର୍ମ, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ପ୍ରସଙ୍ଗ ଉପରେ ନାନା ତାତ୍ତ୍ୱିକ ଅବଧାରଣାମାନ ରହିବା ଦେଖାଯାଏ । ଏସବୁ ପ୍ରସଙ୍ଗ ଉପରେ କୌଣସି ସାର୍ବଜନୀନ ସିଦ୍ଧାନ୍ତ ନଥାଏ, ବରଂ ବିଭିନ୍ନ ସଭ୍ୟତା, ପରଂପରା, ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ନାନା ପରସ୍ପର-ବିରୋଧୀ ସିଦ୍ଧାନ୍ତ ରହିବା ଦେଖାଯାଏ ।

ଏକ ଇହଲୌକିକ ଜୀବନ-ଦର୍ଶନରେ ଜୀବନର ଗୁଣାତ୍ମକ ମାନ ବୃଦ୍ଧି କ୍ଷେତ୍ରରେ ମଣିଷର ପ୍ରୟାସ ଓ ସାମାଜିକ ସମ୍ପୃକ୍ତି ଉପରେ ପ୍ରାଧାନ୍ୟ ଦିଆଯାଏ । ଶିକ୍ଷା, ନାଗରିକ ସଚେତନତା, ଶୃଙ୍ଖଳାବୋଧ, ସ୍ୱାସ୍ଥ୍ୟସେବା, ସ୍ୱାଧୀନଚିନ୍ତା, ଉତ୍ତମ ଜୀବନ, ପୁଷ୍ଟିକର ଖାଦ୍ୟ, ଉପଯୁକ୍ତ ବାସସ୍ଥାନ ଓ ସବୁ ବ୍ୟକ୍ତିଙ୍କର ସୁସ୍ଥ ଜୀବନକୁ ଗୁରୁତ୍ୱ ଦିଆଯାଏ । ବିଶେଷକରି ମଣିଷର ଉଦ୍ୟମ ଓ ସାମାଜିକ ବ୍ୟବସ୍ଥା ଦ୍ୱାରା ଏସବୁ ଯେ ଉପଲବ୍ଧ ହୋଇପାରିବ ହେତୁବାଦୀ ଜୀବନ ଦର୍ଶନରେ ଏହାକୁ ସ୍ୱୀକାର କରାଯାଏ । ଅପରପକ୍ଷରେ ଏକ ପାରଲୌକିକ ଜୀବନ-ଦର୍ଶନରେ ଜୀବନ ଓ ସାମାଜିକ ବ୍ୟବସ୍ଥାର ଉନ୍ନତି ପ୍ରତି ସମ୍ପୃକ୍ତି ନଥାଏ । ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟ, ଭକ୍ତି, ଦୈବୀକୃପା ପରି ଭାବନା ପାରଲୌକିକ ଜୀବନଦର୍ଶନର ଆଭିମୁଖ୍ୟ ହୋଇଥାଏ । ନାନା ମିଥ୍, କାଳ୍ପନିକ କାହାଣୀ, ବିଶ୍ୱାସ ଓ ମିଥ୍ୟାଚାର ଯଦି ଜୀବନର ଘଟଣା ପ୍ରବାହ ଓ ସାମାଜିକ ବ୍ୟବସ୍ଥାକୁ ଗଭୀର ଭାବେ ପ୍ରଭାବିତ କରେ ସେ କ୍ଷେତ୍ରରେ ଜୀବନର ଗୁଣାତ୍ମକମାନ ଉନ୍ନତ ହୁଏନାହିଁ । ପରିଣାମତଃ ସମାଜରେ ନାନା ଦୁଃଖ, ଦୁର୍ଦ୍ଦଶା, ଅନ୍ୟାୟ, ଭେଦଭାବ ରହିଥାଏ ଓ ସେସବୁ ପ୍ରତି ସ୍ପର୍ଶକାତରହୀନ ଦୃଷ୍ଟିଭଙ୍ଗୀ ଆସିଥାଏ । ଜୀବନର ପରିସ୍ଥିତି ପାଇଁ ଅଦୃଷ୍ଟ, ଭାଗ୍ୟ, ଦୈବୀ ଆଶୀର୍ବାଦ ବା ଅଭିଶାପକୁ ବ୍ୟକ୍ତି ବିଶ୍ୱାସ କରେ ।

କେଉଁ କଳ୍ପିତ ଦିଅଁ ଦେବତାକୁ ପ୍ରାର୍ଥନା ଦ୍ୱାରା ଜୀବନରେ ଦୈବୀ ଆଶୀର୍ବାଦ ମିଳିଲେ ଜୀବନରୁ ହତାଶା, ନୈରାଶ୍ୟ ଚାଲିଯିବ ବୋଲି ସେ କଳ୍ପନା କରେ । ଭକ୍ତିର ନିଦର୍ଶନ ସ୍ୱରୂପ କିଏ ଲଣ୍ଡାହୁଏ, ନିଆଁରେ ଚାଲେ, ଅପରିଷ୍କାର ପାଣିରେ ବୁଡ ପକାଏ, କେଉଁ ପଥରମୂର୍ତ୍ତି ପାଖରେ ନଡିଆ, ଘିଅ, କ୍ଷୀର ଦେବାକୁ ମାନସିକ କରେ ବା କଷ୍ଟକର ପଥ ଅତିକ୍ରମ କରି କେଉଁ ମୂର୍ତ୍ତିରେ ପାଣି ଢାଳିବାକୁ ସଂକଳ୍ପ କରେ । ସରକାରୀ ବ୍ୟବସ୍ଥା, ପ୍ରଶାସନ, ବୃହତ୍ତର ସମାଜ ଉପରେ ସେ ଭରସା ନକରି ଭରସା କରେ କାଳ୍ପନିକ ଦିଅଁ ଦେବତାର ଆଶୀର୍ବାଦ ଉପରେ ଓ ସେଥିପାଇଁ କେତେକ ପୂଜା, ନିଷ୍ଠା, ଭକ୍ତି, ଧାର୍ମିକ ଆବେଗ ଉପରେ ଗୁରୁତ୍ୱ ଦିଏ । ନାନା ଭୟ ଓ ମନସ୍ତାତ୍ତ୍ୱିକ କାରଣରୁ ସମାଜରେ ଚଳି ଆସିଥିବା ବିଶ୍ୱାସ, ଭାବାବେଗ, ଧାର୍ମିକ କର୍ମକାଣ୍ଡ ପରିବର୍ତ୍ତିତ ପରିସ୍ଥିତିରେ ନାନା ଆଡମ୍ବରରେ ପାଳିତ ହୁଏ । ତାହା ଯେତେ ଅର୍ଥହୀନ, ବ୍ୟୟସାପେକ୍ଷ, ପରିବେଶ କ୍ଷୟକାରୀ ହେଲେ ମଧ୍ୟ ତାହାକୁ ପରଂପରା, ଐତିହ୍ୟର ରୂପ ଦେଇ ଐହିକ ଲାଭ ଓ ପାରଲୌକିକ ପ୍ରାପ୍ତି ଉଦ୍ଦେଶ୍ୟରେ ପାଳନ କରାଯାଏ ।

ହେତୁବାଦୀ ଜୀବନ-ଦର୍ଶନରେ ମଣିଷର ଅନୁଭୂତି, ପର୍ଯ୍ୟବେକ୍ଷଣ-ପରୀକ୍ଷଣ, ବିଚାରଶୀଳତା ଓ ତାର୍କିକ ବିଶ୍ଳେଷଣକୁ ଯେକୌଣସି ଜ୍ଞାନ ଲାଭର ମୂଳଭିତ୍ତି ଭାବେ ସ୍ୱୀକାର କରାଯାଏ । ସାମାଜିକ ଆଦର୍ଶ, ନୀତିବୋଧ, ନୈତିକ ମୂଲ୍ୟବୋଧ, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ମୂଲ୍ୟଚୟ ସକଳ ଆମର ଗଭୀର ଅନୁଭୂତି ଓ ଉନ୍ନତ ଜୀବନଧାରା ନେଇ ଅନୁଶୀଳନରୁ ଉଦ୍‌ଭବ ହୋଇଥିବା ମନେ କରାଯାଏ । ସାଧୁତା, ସତ୍ୟବାଦିତା, ସମ୍ବେଦନଶୀଳତା, କର୍ତ୍ତବ୍ୟପରାୟଣତା ଇତ୍ୟାଦି ମୂଲ୍ୟଚୟ ଏକ ଅର୍ଥପୂର୍ଣ୍ଣ ସାମାଜିକ ଜୀବନ ପାଇଁ ଅପରିହାର୍ଯ୍ୟ । ନୈତିକ ଆଚରଣ ଏକ ସାମାଜିକ କର୍ତ୍ତବ୍ୟ । ସମାଜରେ ପାରସ୍ପରିକ ସମ୍ବନ୍ଧ ଓ ଆଦାନ-ପ୍ରଦାନ ପୃଷ୍ଠଭୂମିରେ ନୈତିକ ଶୃଙ୍ଖଳା ଏକ ଉନ୍ନତ ଦୃଷ୍ଟିଭଙ୍ଗୀର ସ୍ୱାକ୍ଷର ବହନ କରେ । ମୁଁ କାହିଁକି ନୀତିବାନ ହେବି-ପ୍ରଶ୍ନର ଉତ୍ତର ହେତୁବାଦୀ ଦୃଷ୍ଟିଭଙ୍ଗୀରେ ହେବ ଏହାଏକ ସଂସ୍କୃତି-ସମ୍ପନ୍ନ ସାମାଜିକ ଜୀବନ ପାଇଁ ଅବଶ୍ୟମ୍ଭାବୀ । ମୁଁ ଯେହେତୁ ଅନ୍ୟ ପାଖରୁ ଉତ୍ତମ ବ୍ୟବହାର ଆଶାକରେ, ପ୍ରତିଦାନରେ ମୁଁ ମୋର କର୍ତ୍ତବ୍ୟ କ୍ଷେତ୍ରରେ ଉତ୍ତମ ବ୍ୟବହାର ପ୍ରଦର୍ଶନ କରିବି । ସୁତରାଂ ନୈତିକତା, ସାଧୁତା, ପଚ୍ଛାର ପବିତ୍ରତା ଇତ୍ୟାଦି ସଭ୍ୟ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ । ଧର୍ମ, ଈଶ୍ୱର, ପାରଲୌକିକ ପ୍ରାପ୍ତି ପାଇଁ ଏହା ଉଦ୍ଦିଷ୍ଟ ନୁହେଁ । ସହିଷ୍ଣୁତା, ଅହିଂସା, ଭାତୃଭାବ, ବିଶ୍ୱଦୃଷ୍ଟି, ବ୍ୟକ୍ତି ମର୍ଯ୍ୟାଦାବୋଧ,

ମାନବିକ ମହତ୍ତ୍ୱ ଇତ୍ୟାଦି ମହତ୍ତର ମୂଲ୍ୟବୋଧ ସକଳ ଏକ ମାନବବାଦୀ ଜୀବନ-ଦର୍ଶନରୁ ଉଦ୍ଭବ ହୋଇଛି ।

ହେତୁବାଦୀ ଜୀବନ-ଦର୍ଶନ ମଣିଷ ସମାଜକୁ ଐକ୍ୟ ଭାବରେ ନେଇ ଏକ ପ୍ରୀତିପୂର୍ଣ୍ଣ ଓ ଦୁଃଖରହିତ ବିଶ୍ୱର କଳ୍ପନା କରେ । ଏହା ମଣିଷ ମଣିଷ ଭିତରେ କୌଣସି ଭେଦଭାବ ଓ ବିଦ୍ୱେଷର ବାତାବରଣ ସୃଷ୍ଟି କରେନାହିଁ । ନାନା ଭୌଗୋଳିକ ଓ ସାଂସ୍କୃତିକ କାରଣ ଯୋଗୁଁ ଆମ ସଂସାରରେ ବହୁ ଭିନ୍ନତା ମଣିଷ ସମାଜରେ ରହିଛି । ସବୁ ମଣିଷ ଚେହେରାରେ, ଖାଦ୍ୟରେ, ରଙ୍ଗରେ, ସାମାଜିକ ଚଳଣିରେ, ବିଶ୍ୱାସରେ ଓ ବିଚାରବୋଧରେ ସମାନ ନୁହନ୍ତି । ମଣିଷ ସମାଜରେ ଭିନ୍ନତା, ବିବିଧତା ରହିଛି ଓ ତାହା ପଶ୍ଚାତରେ ନାନା ଭୌଗୋଳିକ, ଐତିହାସିକ, ସାଂସ୍କୃତିକ କାରଣ ରହିଛି । ଏହି ବିବିଧତା ଓ ଭିନ୍ନତାକୁ ଆମକୁ ସ୍ୱୀକାର କରିବାକୁ ହେବ, କାରଣ ତାହା ହିଁ ସାମାଜିକ ବାସ୍ତବତା । ସମାଜରେ ରହିଥିବା ବିବିଧତା ଓ ଭିନ୍ନତାକୁ ଆଧାର କରି ଅସହିଷ୍ଣୁତା, ବିଦ୍ୱେଷର ମନୋଭାବ ଆଣିବା ହେତୁବାଦୀ ଜୀବନ-ଦର୍ଶନର ପରିପନ୍ଥୀ । ହେତୁବାଦୀ ଜୀବନ ଦର୍ଶନ ସମଗ୍ର ମଣିଷ ଜାତିକୁ ଭାତୃତ୍ୱର ଡୋରିରେ ଯୋଡିବାକୁ ଚାହେଁ । ଏକ ଭେଦଭାବ ରହିତ ଓ ମାନବବାଦୀ ବିଶ୍ୱର ସମ୍ଭାବନା ପାଇଁ ସବୁ ସଭ୍ୟତାରେ ହେତୁବାଦୀମାନେ ପଥପ୍ରଦର୍ଶକ ହୋଇଛନ୍ତି । ଆମେ ଆମ ପୃଥିବୀରେ ଶାନ୍ତି, ସୌହାର୍ଦ୍ଦ୍ୟ ଓ ଭାତୃତ୍ୱର ସହ ବଞ୍ଚିବାକୁ ଚାହୁଁ-ଏହା ହିଁ ହେତୁବାଦୀ ଜୀବନ-ଦର୍ଶନର ଆଭିମୁଖ୍ୟ ହୋଇଆସିଛି । ହେତୁବାଦୀମାନେ ମୁକ୍ତି, ମୋକ୍ଷ, ସ୍ୱର୍ଗର ସ୍ୱପ୍ନ ଦେଖନ୍ତି ନାହିଁ । ବରଂ ଏହି ସଂସାରରେ ପ୍ରତ୍ୟେକ ବ୍ୟକ୍ତି କିପରି ମର୍ଯ୍ୟାଦାର ସହ ଜୀବନ ବଞ୍ଚିପାରିବ ସେ ପାଇଁ ଗମ୍ଭୀର ଚିନ୍ତା ପ୍ରକଟ କରନ୍ତି । ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ସୃଜନଶୀଳତାର ବିକାଶ ପାଇଁ ପରିବେଶ ସୃଷ୍ଟି କରିବାକୁ ପ୍ରୟାସ କରନ୍ତି । ଏପରିକି ଭିନ୍ନକ୍ଷମ ବା ଶାରୀରିକ ସମସ୍ୟା ଥିବା ବ୍ୟକ୍ତିମାନଙ୍କୁ ଏହା ତାଙ୍କ ଭାଗ୍ୟଲିଖନ, କର୍ମଫଳ କହି ଏଡାଇ ଯାଆନ୍ତି ନାହଁ । ବରଂ ସେମାନେ ବି ଯେପରି ମର୍ଯ୍ୟାଦାର ସହ ବଞ୍ଚିବେ ଓ ଅସମ୍ମାନର ସମ୍ମୁଖୀନ ହେବେ ନାହିଁ ତାହାକୁ ହେତୁବାଦୀମାନେ ସ୍ୱୀକାର କରନ୍ତି ।

ଏକଥା ସତ୍ୟ ଯେ ଆମ ସଂସାରରେ ବହୁ ଦୁଃଖ, ନୈରାଶ୍ୟ, ଦାରିଦ୍ର୍ୟ ଓ ଅମାନବିକତା ରହିଛି । କୌଣସି ପ୍ରାକୃତିକ ଦୁର୍ବିପାକ ଯୋଗୁଁ ଆମ ସଂସାରରେ କିଛି ବ୍ୟକ୍ତି ଦୁଃଖ ପାଇଥାନ୍ତି । ତେବେ ପ୍ରାକୃତିକ ଦୁର୍ବିପାକକୁ ପ୍ରତିହତ କରି ବଞ୍ଚି ରହିବାକୁ

ମଣିଷ ଆଦିମ ଯୁଗରୁ ପ୍ରୟାସ କରିଆସିଛି । କେତେକ ପ୍ରାକୃତିକ ଦୁର୍ବିପାକକୁ ସମ୍ମୁଖୀନ ହେବାର ଜ୍ଞାନ କୌଶଳ ମଣିଷ ହାସଲ କରିବାକୁ ସମର୍ଥ ହେଲାଣି । ସେହିପରି ନାନା ମହାମାରୀ ରୋଗ ଓ ଅସୁସ୍ଥତାକୁ ନିୟନ୍ତ୍ରଣ କରିବାର ସଫଳତା ମଣିଷ ହାସଲ କରିବାରେ ସକ୍ଷମ ହୋଇପାରିଲାଣି । ମାତ୍ର ଦୁଇଶହ ବର୍ଷ ତଳେ ହଇଜା, ବସନ୍ତ, ପ୍ଲେଗ, କୁଷ୍ଠ, ଯକ୍ଷ୍ମା ପରି ମାରାତ୍ମକ ରୋଗମାନେ ଯେପରି ଗଣମୃତ୍ୟୁର କାରଣ ହେଉଥିଲା ବା ଜୀବନକୁ ଯନ୍ତ୍ରଣା ଜର୍ଜରିତ କରୁଥିଲା ସେହି ପରିବେଶ ଏବେ ନାହିଁ । ମଣିଷ ନିଜର ଗବେଷଣା ଓ ପ୍ରୟାସ ଯୋଗୁଁ ଏହିସବୁ ରୋଗମାନଙ୍କୁ ବିଶ୍ୱସ୍ତରରେ ଦୂର କରିବାକୁ ସମର୍ଥ ହେଲାଣି । କିନ୍ତୁ ପରିତାପର ବିଷୟ ନାନା ଅଜ୍ଞତା, କୁସଂସ୍କାର, ଅହେତୁକ ବ୍ୟବସ୍ଥା ଯୋଗୁଁ ସମାଜରେ ନାନା ଦୁଃଖର ପରିବେଶ ରହିଛି । ସେହିପରି ମାନବିକ ନିଷ୍ଠୁରତା, କ୍ରୂରତା, ମଣିଷ ଉପରେ ମଣିଷର ଅତ୍ୟାଚାର, ଶୋଷଣ ଯୋଗୁଁ ଆମ ସଂସାରରେ ବହୁ ଦୁଃଖ ଓ ଯାତନା ରହିଆସିଛି । ଯୁଦ୍ଧ, ଅସହିଷ୍ଣୁତା, ସନ୍ତ୍ରାସବାଦ ଆମ ସଂସାରକୁ ରକ୍ତରଂଜିତ କରିଆସିଛି । ମାନବକୃତ କାରଣରୁ ଯେଉଁ ଦୁଃଖ ଓ ଯାତନା ସମାଜରେ ରହିଛି ତାହାର ପରିବର୍ତ୍ତନ ପାଇଁ ଏକ ଉନ୍ନତ ବ୍ୟବସ୍ଥାର ବିକାଶ କରାଇବାକୁ ହେତୁବାଦୀମାନେ ସର୍ବଦା ନିଜର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ଯେଉଁ ସବୁ କାରଣ ପାଇଁ ଅଗଣିତ ମଣିଷ ଦାରିଦ୍ର୍ୟର କଷାଘାତ ଭିତରେ ଅବମାନବୀୟ ସ୍ତରରେ ଜୀବନ ବଞ୍ଚୁଛନ୍ତି ଓ ତାହାକୁ ନିଜର ଭାଗ୍ୟ ବୋଲି ମାନି ନେଉଛନ୍ତି, ସେହି ମାନସିକତାରେ ପରିବର୍ତ୍ତନ ପାଇଁ ନିଷ୍ଠାପର ପ୍ରୟାସ ଆବଶ୍ୟକ । ଆମକୁ ଏହା ସ୍ୱୀକାର କରିବାକୁ ହେବ ଯେ କେଉଁ କଳ୍ପିତ ଦିଅଁ, ଦେବତା ଆମର ଦୁଃଖ ଦୂର କରିବେ ନାହିଁ । ଯେଉଁ ରାଷ୍ଟ୍ର ସକଳର ଜନଗଣ ଭୌତିକ ସମୃଦ୍ଧି ଭିତରେ ଉନ୍ନତ ଜୀବନ ଯାପନ କରିବାକୁ ସମର୍ଥ ହୋଇଛନ୍ତି ସେ ପାଇଁ ତାଙ୍କୁ ଦୈବୀ କୃପା ମିଳିନାହିଁ । ସେହିପରି ଯେଉଁଠି ଗଣଦାରିଦ୍ର୍ୟ ରହିଛି ସେହି ଲୋକମାନେ ଦୈବୀ ଅଭିଶାପରୁ ଏପରି ପ୍ରତିକୂଳ ପରିସ୍ଥିତିରେ ନାହାନ୍ତି । ସକଳ ସମୃଦ୍ଧି, ବିକାଶ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ରାଜନୀତି, ଅର୍ଥନୀତି, ଯୋଜନା, ଭବିଷ୍ୟ ପାଇଁ କାର୍ଯ୍ୟସୂଚୀ ମଣିଷର ଚିନ୍ତାରୁ ହିଁ ଆସିଛି । ଯେଉଁଠି ଉଚ୍ଚ କର୍ମସଂସ୍କୃତି, ସାମାଜିକ ସଚେତନତା, ରାଜନୈତିକ ଦୃଶ୍ୟପଟ ଉନ୍ନତ ହୋଇଛି ସେଠିକାର ଜନଗଣଙ୍କର ଜୀବନ ଧାରଣର ମାନ ଉନ୍ନତ ହୋଇଛି, ସମାଜରୁ ଶୋଷଣ, ବୈଷମ୍ୟ, ଭେଦଭାବ ଲୋପପାଇଛି । ମଣିଷର ଇଚ୍ଛାଶକ୍ତି, ସଂହତିପୂର୍ଣ୍ଣ ସାମାଜିକ ପରିବେଶ, ରାଜନୈତିକ ଓ ଅର୍ଥନୈତିକ

ପରିସ୍ଥିତି ସାମାଜିକ ବିକାଶ ଓ ଭୌତିକ ସମୃଦ୍ଧି ପାଇଁ ଅନୁକୂଳ ହୋଇଛି । ଏହି ପୃଷ୍ଠଭୂମିରେ ସାମାଜିକ ପରିବେଶକୁ ଉନ୍ନତ ଓ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ମଣିଷର ସଂଘବଦ୍ଧ ପ୍ରୟାସ ନିର୍ଣ୍ଣାୟକ ମନେହୁଏ । ଏକ ଉନ୍ନତ ସମାଜ ପାଇଁ ବିଚାରଶୀଳ ଦୃଷ୍ଟି, ଉନ୍ନତ ଶିକ୍ଷା ବ୍ୟବସ୍ଥା ଓ ଏକ ମାନବବାଦୀ ସଂସ୍କୃତିର ବିକାଶକୁ ପ୍ରାଧାନ୍ୟ ଦେବାକୁ ହେତୁବାଦରେ ଗୁରୁତ୍ୱ ଦିଆଯାଇଛି ।

ହେତୁବାଦର ଦୁଇଟି ମୌଳିକ ନିର୍ଯାସ ହେଉଛି ବିଚାରଶୀଳତା ଓ ମାନବିକତା । ବିଚାରଶୀଳ ଦୃଷ୍ଟି ଭିତରୁ ବିଜ୍ଞାନ ଓ ପ୍ରକୃତିବାଦର ଉଦ୍ଭବ ହୋଇଛି । ବିଜ୍ଞାନ ବା ବୈଜ୍ଞାନିକ ଚିନ୍ତନର ମୂଳଭିତ୍ତି ହେଉଛି ପ୍ରକୃତିବାଦ(naturalism) । ପ୍ରକୃତିବାଦର ତାତ୍ପର୍ଯ୍ୟ ହେଉଛି ପ୍ରକୃତିରେ ଯାହା ଘଟେ ବା ଯାହା କିଛି ଅଛି ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । କୌଣସି ଘଟଣା ପଶ୍ଚାତରେ ଆଦିଭୌତିକ କାରଣ ନାହିଁ । ପ୍ରକୃତିରେ ବହୁ ରହସ୍ୟ ରହିଛି ଯାହା ମଣିଷ ପ୍ରଜ୍ଞାର ବହିର୍ଭୂତ ହୋଇରହିଛି । ଜ୍ଞାନର ବିକାଶ ସହିତ ମଣିଷ ପ୍ରାକୃତିକ ରହସ୍ୟକୁ ଧୀରେ ଧୀରେ ଉନ୍ମୋଚନ କରିଚାଲିଛି । ହେତୁବାଦର ଅନ୍ୟ ତାତ୍ପର୍ଯ୍ୟ ଟି ହେଲା ମାନବବାଦ । ମାନବବାଦୀ ଚିନ୍ତନରୁ ଗଣତାନ୍ତ୍ରିକ ଚେତନା, ଧର୍ମ ନିରପେକ୍ଷ ଦୃଷ୍ଟିଭଙ୍ଗୀ, ସାମାଜିକ ନ୍ୟାୟ, ମାନବିକ ଅଧିକାର, ସମତାର ଭାବନା ବିକଶିତ ହୋଇଛି । ବସ୍ତୁତଃ ଏସବୁ ମୂଲ୍ୟବୋଧ ଗୁଡିକ ହେତୁବାଦ ଓ ଏହି ଦର୍ଶନ ଆଧାରିତ ଜୀବନଦୃଷ୍ଟିରୁ ଉଦ୍ଭବ ହୋଇଛି ।

ହେତୁବାଦ ସମ୍ପର୍କରେ କେତେକ ବିଭିନ୍ନ ଅଭିଯୋଗ ଆଣିଛନ୍ତି । ଏଠାରେ ଦୁଇଟି ମୁଖ୍ୟ ଅଭିଯୋଗକୁ ବିଚାର କରାଯାଉ । ହେତୁବାଦୀ ଜୀବନଦର୍ଶନ ବିଶ୍ୱାସ-ଆଧାରିତ ନହୋଇ ପ୍ରମାଣ-ଆଧାରିତ ହେବା ଦେଖାଯାଏ । ତେବେ କେତେକ ପ୍ରଶ୍ନ କରନ୍ତି ଯେ ହେତୁବାଦରେ ବି ଅନେକ କଥା ବିଶ୍ୱାସ କରାଯାଏ ଓ ବିଶ୍ୱାସ ଜୀବନର ଅବିଚ୍ଛେଦ୍ୟ ଅଙ୍ଗ ଅଟେ । ବିଶ୍ୱାସକୁ ଆମେ ଜୀବନରୁ ବାଦ୍ ଦେଇପାରିବା କି ? ହେତୁବାଦୀମାନେ ସବୁ କଥାକୁ ପ୍ରମାଣ କରିପାରିବେ କି ? ଯଦି ସବୁ କଥାରେ ପ୍ରମାଣ ଲୋଡାଯିବ ଆମର ବହୁ ବିଶ୍ୱାସକୁ ଆମେ ପ୍ରମାଣ କରିପାରିବା ନାହିଁ । ନିଜର ଅସ୍ତିତ୍ୱ, ଜଗତର ଅସ୍ତିତ୍ୱ, ଆମ ଇନ୍ଦ୍ରିୟଲବ୍ଧ ଜ୍ଞାନର ବୈଧତା ଇତ୍ୟାଦିକୁ ଆମେ ବିଶ୍ୱାସ କରେ ନାହିଁ କି ? ଯଦି ଏ ସବୁକୁ ଆମେ ବିଶ୍ୱାସ କରୁଛେ ତେବେ ବିଶ୍ୱାସକୁ ଜୀବନରୁ କିପରି ଦୂର କରିପାରିବା ? ଏଠାରେ ଉତ୍ତର ହେବ ବିଶ୍ୱାସ

ଭିତରେ ଗୁଣାତ୍ମକ ପାର୍ଥକ୍ୟ ନାହିଁ କି ? ବିଶ୍ୱାସ ରଖିବା ଓ ଆଧାରହୀନ ବିଶ୍ୱାସ ରଖିବା ଭିତରେ ପାର୍ଥକ୍ୟ ଅଛି କି ନାହିଁ ? ଆମେ ଯେଉଁ ବିଶ୍ୱାସ ପୋଷଣ କରିବା ତାହାର କିଛି ଆଧାର ବା ଭିତ୍ତି ଥିବା ଆବଶ୍ୟକ । କିନ୍ତୁ ଏପରି ଅନେକ ବିଶ୍ୱାସ ରହିଛି ଯାହା ସମ୍ପୂର୍ଣ୍ଣ ଆଧାରହୀନ ବା ଯାହା କୁସଂସ୍କାର (ବା ଅନ୍ଧବିଶ୍ୱାସ, ଅନ୍ଧବିଶ୍ୱାସ ସଂପ୍ରତି ଏକ ଅମର୍ଯ୍ୟାଦାଜନକ ଶବ୍ଦ ବୋଲି ଧରାଯାଉଛି) ହେତୁବାଦୀର ବିଶ୍ୱାସ ମୁକ୍ତ, ଯୁକ୍ତି ସଂଗତ, ପରୀକ୍ଷା ସାପେକ୍ଷ, ସ୍ୱସଂଶୋଧନାତ୍ମକ ଓ ଅନୁଶୀଳନାତ୍ମକ (self-critical) । ଅପର ପକ୍ଷରେ ଅନେକ ବିଶ୍ୱାସ କେବଳ କଳ୍ପନା ଆଧାରିତ ଓ ସମ୍ପୂର୍ଣ୍ଣ ଅଯୌକ୍ତିକ । ସୁତରାଂ ବିଶ୍ୱାସ ଓ ଆଧାରହୀନ ବିଶ୍ୱାସ ଭିତରେ ପାର୍ଥକ୍ୟ ରହିବା ଯୁକ୍ତିସଙ୍ଗତ ମନେହୁଏ ।

ହେତୁବାଦ ସମ୍ପର୍କରେ ଅନ୍ୟ ଏକ ଅଭିଯୋଗ ହୁଏ ଯେ ସବୁ କିଛିକୁ ବିଚାରଶୀଳତା ଆଧାରରେ ଗ୍ରହଣ କରିବା ଅସଂଗତ ମନେହୁଏ । ଜୀବନରେ ଆବେଗ, କଳ୍ପନା, ଭାବପ୍ରବଣତାର ମଧ୍ୟ ମହତ୍ତ୍ୱ ରହିଛି । ପ୍ରେମଭାବ, ସ୍ନେହ, ସମ୍ପ୍ରୀତି ଯାହା ଆମର ବିଚାରଶୀଳତା ପରିବର୍ତ୍ତେ ଆବେଗରୁ ଆସିଥାଏ ସେସବୁ ବି ଜୀବନରେ ମହତ୍ତ୍ୱପୂର୍ଣ୍ଣ । ସବୁ ସ୍ତରରେ ଯୁକ୍ତି, ବିଚାରଶୀଳତା, ହେତୁ ବା କାରଣ ଖୋଜିବା ଯଥାର୍ଥ ନୁହେଁ ।

ଆମର ଆବେଗ, ପ୍ରେମ ଭାବ, କଳ୍ପନା ଇତ୍ୟାଦିର ମୂଲ୍ୟକୁ କୌଣସି ହେତୁବାଦୀ ଅସ୍ୱୀକାର କରିବେ ନାହିଁ । ସାହିତ୍ୟ, ସୃଜନାତ୍ମକ କଳାକୃତି ଇତ୍ୟାଦି ଆବେଗରୁ ବା କଳ୍ପନାରୁ ରୂପ ନେଇଥାଏ । ବିଚାରଶୀଳତାର ଯେପରି ମହତ୍ତ୍ୱ ରହିଛି, ସୃଜନାତ୍ମକ ଆବେଗ, ପ୍ରେମ, ଶ୍ରଦ୍ଧା ଇତ୍ୟାଦିର ସେପରି ମୂଲ୍ୟ ରହିଛି । ତେବେ ଆମର ଆବେଗ, ଶ୍ରଦ୍ଧାକୁ ଅଧିକ ଜୀବନଧର୍ମୀ କରିବାରେ ବିଚାରଶୀଳତା ହିଁ ଆବଶ୍ୟକ ହୁଏ । ଏକ ଆବେଗ ପ୍ରୀତିପୂର୍ଣ୍ଣ ନା ଘୃଣାଦ୍ୟୋତକ, ସୃଜନାତ୍ମକ ନା ଧ୍ୱଂସାତ୍ମକ ତାହା ଆମେ ଆମର ବିଚାର ଦେଇ ସ୍ଥିର କରିବା ନାହିଁ କି ? ଏକ ଧାର୍ମିକ ଅବେଗଦ୍ୱାରା ପରିଚାଳିତ ହୋଇ କିଏ ଦୁସ୍ଥ ମଣିଷର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିପାରେ, ଅନ୍ୟ କେହି ଧାର୍ମିକ ଆବେଗଦ୍ୱାରା ପରିଚାଳିତ ହୋଇ ସାଂପ୍ରଦାୟିକ ହିଂସାର ତାଣ୍ଡବ ସୃଷ୍ଟି କରିପାରେ । ସୁତରାଂ କେଉଁ ଆବେଗ ପ୍ରୀତିପୂର୍ଣ୍ଣ ବା ସୃଜନାତ୍ମକ ଓ କେଉଁ ଆବେଗ ଉନ୍ମାଦଯୁକ୍ତ ବା ଧ୍ୱଂସାତ୍ମକ ତାହାର ମୂଲ୍ୟାୟନ ପାଇଁ ବିଚାରଶୀଳ ଦୃଷ୍ଟି ହିଁ ମାର୍ଗଦର୍ଶକ ହୋଇଥାଏ ।

ସଭ୍ୟତାର ଏହା ଏକ ବିଡମ୍ବନା ଯେ ସମାଜର ଅଗଣିତ ମଣିଷ ସମାଜର ପ୍ରଚଳିତ ଧାରା, ପରଂପରା ଓ ଚଳଣିକୁ ମାନିଯାନ୍ତି ବା ବିଶ୍ୱାସ କରନ୍ତି । ଏପରିକି ସମାଜର ପ୍ରଚଳିତ ନାନା ଅର୍ଥହୀନ ପରଂପରାକୁ ମାନନ୍ତି ଓ ତାହାକୁ ନିଜର ଐତିହ କହି ସେଥିରେ ଭାବ ପ୍ରବଣତା ପ୍ରକାଶ କରନ୍ତି । ତେବେ ସମାଜର ମୁଷ୍ଟିମେୟ ବ୍ୟକ୍ତି ଚିନ୍ତା କରନ୍ତି, ସବୁ ବିଷୟର ଭଲମନ୍ଦ ମୂଲ୍ୟାୟନ କରନ୍ତି । ବିଚାରଶୀଳ ଭାବେ ଏକ ଉନ୍ନତ ଓ ଅଧିକ ମାନବିକ ସ୍ଥିତିର ପରିକଳ୍ପନା କରନ୍ତି । ସେମାନେ ସମାଜକୁ ନୂଆବାଟ ଦେଖାନ୍ତି । ନୂତନ ଜ୍ଞାନ-କୌଶଳଦ୍ୱାରା ସଭ୍ୟତାକୁ ଆଗକୁ ନିଅନ୍ତି ଓ ଏକ ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ବ୍ୟବସ୍ଥା ପାଇଁ ସଂଗ୍ରାମ କରନ୍ତି । ତେବେ ଯେଉଁମାନେ କୌଣସି କଥାକୁ ଅନ୍ଧାନୁକରଣ ନକରି ଏକ ଅନୁଶୀଳନାତ୍ମକ ମନୋଭାବ ପୋଷଣ କରନ୍ତି ସେମାନେ ସମାଜ ଆଖିରେ ସମୟରେ ନିନ୍ଦିତ ହୁଅନ୍ତି ଓ ଏପରିକି ନାନା ବିପର୍ଯ୍ୟୟର ସମ୍ମୁଖୀନ ହୁଅନ୍ତି । ଧର୍ମଗ୍ରନ୍ଥ, ଶାସ୍ତ୍ର, ପୁରାଣର କଥାକୁ ସେମାନେ ନିଜର ବିଶ୍ଳେଷଣାତ୍ମକ ଦୃଷ୍ଟିରେ ସନ୍ଦେହ କଲେ ସେମାନଙ୍କ ପ୍ରତି ସମାଜର ମନୋଭାବ ବିରୋଧାତ୍ମକ ହୋଇଥାଏ । ଅଧିକାଂଶ ସଂସ୍କୃତିରେ ଓ ଧର୍ମୀୟ ପରଂପରାରେ ବିଶ୍ୱାସ ରହିଛି ଯେ ଯେଉଁମାନେ ଧର୍ମଗ୍ରନ୍ଥର ବାଣୀକୁ ସନ୍ଦେହ କରିବେ ସେମାନେ ନର୍କଗାମୀ ହେବେ ବା ଅନନ୍ତକାଳ ପାଇଁ ଦୁଃଖ ଭୋଗ କରିବେ । ଏବେ ବି ଆତ୍ମା, ଭୂତ, ପ୍ରେତ, ପରଜନ୍ମ, ପୂର୍ବଜନ୍ମ, ଫଳିତ ଜ୍ୟୋତଷ, ଗ୍ରହଶାନ୍ତିର ପରଂପରା ସମାଜରେ ଅତୁଟ ରହିଛି । ସାମାଜିକ ଜୀବନର ବହୁ ବ୍ୟାପାରରେ ଧାର୍ମିକ ବିଶ୍ୱାସ ଓ ତଦ୍‌ଜନିତ କୁସଂସ୍କାର ସୀମାହୀନ ଭାବେ ବିସ୍ତାର ଲାଭକରି ରହିଛି । ସେହିପରି ଜାତିଆଣ ଭେଦଭାବ, ସାଂପ୍ରଦାୟିକ ମାନସିକତା ବି ସମାଜରେ ବ୍ୟାପକ ହୋଇ ରହିଛି ଯାହା ଗଣତାନ୍ତ୍ରିକ ଜୀବନଧାରା, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ମାନବିକ ଅଧିକାରର ପରିପନ୍ଥୀ ।

ସାମାଜିକ ଜୀବନର ଆଉ ଏକ ବିଡମ୍ବନା ହେଉଛି ଆଧୁନିକ ବିଜ୍ଞାନର ବହୁ ଉପକରଣକୁ ଧାର୍ମିକ ରକ୍ଷଣଶୀଳ ଲୋକମାନେ ବ୍ୟବହାର କରିବାରେ କୌଣସି ଅନ୍ତର୍ବିରୋଧ ଅନୁଭବ କରନ୍ତି ନାହିଁ, ଅଥଚ ଆଧୁନିକ ବିଜ୍ଞାନ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ପାଶ୍ଚାତ୍ୟ ଜ୍ଞାନ କୌଶଳକୁ ପ୍ରଗଲ୍‌ଭ ଭାବେ ନିନ୍ଦା କରନ୍ତି । ବିଜ୍ଞାନ ଜଗତରେ ଅମର କୀର୍ତ୍ତିର ଅଧିକାରୀ ହୋଇଥିବା ଓ ସଭ୍ୟତାର ରୂପରେଖ ବଦଳାଇ ଦେଇଥିବା କେତେକ ବୈଜ୍ଞାନିକ ଆଜିର ଜନମାନସରେ ବିସ୍ମୃତ ହୋଇଯାଇଥିଲେ ବି ସେମାନଙ୍କ ଯୋଗୁଁ ଆଜିର ଜୀବନଧାରା ସରଳ, ସୁଗମ ହୋଇପାରିଛି । ଇଲେକଟ୍ରିସିଟି,

ରେଳଯାତ୍ରା, ନୂତନ ଚାଷ ପ୍ରଣାଳୀ, କୃତ୍ରିମ ପ୍ରଜନନ, ଟେଲିଭିଜନ, ମୋବାଇଲ ଫୋନ ଇତ୍ୟାଦି ବହୁ କ୍ଷେତ୍ରରେ ଯେଉଁ ବୈଜ୍ଞାନିକମାନେ ନିଜର ଅବାଦନ ଦେଇଯାଇଛନ୍ତି ସଭ୍ୟତା ପ୍ରତି ସେମାନଙ୍କ ଅବଦାନ ଅତୁଳନୀୟ । ସେହିପରି ଗଣତନ୍ତ୍ର, ମାନବିକ ଅଧିକାର, ବିଶ୍ୱଭ୍ରାତୃତ୍ୱ ଇତ୍ୟାଦି ଭାବନା ଦେଇଥିବା ଦାର୍ଶନିକମାନେ ଜୀବନର ଗୁଣାତ୍ମକ ମୂଲ୍ୟ ବୃଦ୍ଧି କରିବାରେ ବି ବେଶ୍ କ୍ରାନ୍ତିକାରୀ ମନେହୁଅନ୍ତି । ବିଶିଷ୍ଟ ଆମେରିକୀୟ ଲେଖକ ଜେମ୍ସ ଏ.ହଟ ତାଙ୍କର ପୁସ୍ତକ "ଦୁଇହଜାର ବର୍ଷର ଅବିଶ୍ୱାସ"ରେ (Two Thousand Years of Disbelief-By James A. Haught) ହେତୁବାଦୀ, ନିରୀଶ୍ୱରବାଦୀ ମାନଙ୍କର ଜୀବନୀ ସଂକଳନ କରି ଦର୍ଶାଇଛନ୍ତି ଯେ ସଭ୍ୟତାର ଉତ୍ତରଣରେ ଏହି ମାନଙ୍କର ଅବଦାନ ଅତୁଳନୀୟ । ବିଜ୍ଞାନ, ଦର୍ଶନ, ସାହିତ୍ୟ, ମାନବତାବାଦ, ମାନବିକ ଅଧିକାର, ସଭ୍ୟ ମୂଲ୍ୟବୋଧ କ୍ଷେତ୍ରରେ ଏହି ହେତୁବାଦୀଙ୍କର ଅବଦାନ ଯୋଗୁ ସଭ୍ୟତା ଆଗକୁ ଯାଇଛି ଓ ସାର୍ବଜନୀନ ମୂଲ୍ୟବୋଧର ବିକାଶ ହୋଇଛି । ନିଜ ସମସାମୟିକ ସମାଜରେ କିନ୍ତୁ ଏହି ପ୍ରତିଭାଧର ହେତୁବାଦୀ, ନିରୀଶ୍ୱରବାଦୀମାନେ ପରଂପରା ବିରୋଧୀ, ଧର୍ମ ବିରୋଧୀ ବୋଲି ବହୁ ଅପଯଶ ପାଇଛନ୍ତି ଓ ଏପରିକି ନିର୍ଯାତନା ଭୋଗ କରିଛନ୍ତି । ନାନା ବିରୋଧ ଓ ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ସୁଦ୍ଧା ସେମାନେ ସୃଜନଶୀଳ ହୋଇଛନ୍ତି । ଚିନ୍ତା ରାଜ୍ୟର ବିପ୍ଲବୀ ଓ ସତ୍ୟଦ୍ରଷ୍ଟା ଭାବେ ନୂଆ ବାଟରେ ଚିନ୍ତା କରିଛନ୍ତି । ସଭ୍ୟତାକୁ ଆଗକୁ ନେଇଛନ୍ତି ଓ ସଭ୍ୟ ମୂଲ୍ୟବୋଧର ବାର୍ତ୍ତାବହ ହୋଇଛନ୍ତି । ଜେମସ ହଟ୍ ତାଙ୍କ ପୁସ୍ତକରେ ଏହି ନିରୀଶ୍ୱରବାଦୀ ଓ ହେତୁବାଦୀଙ୍କ ସମ୍ପର୍କରେ ଲେଖିଛନ୍ତି, "This two-thousand-year struggle for the freedom to think independently is a sweeping epic. Much progress has been achieved, but the battle is not won, and may never be. Supernaturalism is rooted deep in dark, fearful, irrational recesses of the human mind. It exerts a powerful grip on societies, to oppose it involves risk. Courage is required to dispute the prevailing beleifs of fellow citizens. (ଜେମସ ହଟଙ୍କ ପୁସ୍ତକ, ପୃଷ୍ଠା-୩୨୨)

"ସ୍ୱାଧୀନ ଭାବେ ଚିନ୍ତାକରିବା ନେଇ ଏହି ଦୁଇ ହଜାର ବର୍ଷର ସଂଗ୍ରାମର କାହାଣୀର ଏକ ସୁଦୂରପ୍ରସାରୀ ପ୍ରଭାବ ରହିଛି । ଅନେକ କ୍ଷେତ୍ରରେ ବହୁ ବିକାଶ

ସାଧିତ ହୋଇଛି, ତଥାପି ସ୍ୱାଧୀନ ଚିନ୍ତକମାନଙ୍କର ବିଜୟ ସମ୍ଭବ ହୋଇନାହିଁ, ହୁଏତ ସେମାନଙ୍କର ବିଜୟ ସମ୍ଭବ ହୋଇନପାରେ । ଅତୀନ୍ଦ୍ରିୟ ସତ୍ତାରେ ବିଶ୍ୱାସ ମଣିଷ ମନର ଅନ୍ଧକାର, ଭୟାତୁର ଓ ଅହେତୁକ ସତ୍ତାରେ ନିବିଡ ହୋଇରହିଛି । ତାହାର ଅଭିବ୍ୟକ୍ତି ସାମାଜିକ ବ୍ୟବସ୍ଥାକୁ ଗଭୀର ଭାବେ କବଳିତ କରି ରଖିଛି । ଏହି ବ୍ୟବସ୍ଥାକୁ ବିରୋଧ କରିବା କ୍ଷେତ୍ରରେ ବହୁ ବିପଦ ରହିଛି । ସାଧାରଣ ଜନଗଣଙ୍କର ଅସ୍ଥି ମଜ୍ଜାଗତ ବିଶ୍ୱାସକୁ ବଦଳାଇବାକୁ ଉଦ୍ୟମ ପାଇଁ ଅନେକ ସାହସ ଆବଶ୍ୟକ" ।

ତଥାପି ହେତୁବାଦୀମାନେ ସଭ୍ୟତାର ପଥ ପ୍ରଦର୍ଶକ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ସ୍ୱପ୍ନ ଦ୍ରଷ୍ଟା । ସକ୍ରେଟିସଙ୍କଠାରୁ ପେରିୟାରଙ୍କ ପର୍ଯ୍ୟନ୍ତ, ବ୍ରୁନୋ, ଗାଲିଲିଓଙ୍କଠାରୁ ଆରମ୍ଭ କରି ଚାର୍ଲସ ଡରୱିନ, ସିଗମଣ୍ଡ ଫ୍ରଏଡଙ୍କ ପର୍ଯ୍ୟନ୍ତ, ପ୍ରୋଟାଗୋରାସଙ୍କଠାରୁ ଆରମ୍ଭ କରି କାର୍ଲ ମାର୍କସଙ୍କ ପର୍ଯ୍ୟନ୍ତ ଏହି ହେତୁବାଦୀ ଚିନ୍ତାନାୟକ ଗଣ ଚିନ୍ତାରାଜ୍ୟର ବିପ୍ଳବୀ, ମାନବିକ ଉତ୍କର୍ଷର ବିକାଶ ପାଇଁ ସଂଗ୍ରାମୀ ଓ ଜ୍ଞାନରାଜ୍ୟର ଅମ୍ଳାନ ଜ୍ୟୋତିଷ୍କ । ଏମାନଙ୍କ ପରି ଉତ୍ତୁଙ୍ଗ ନହେଲେ ମଧ୍ୟ ସବୁ ଯୁଗରେ ଓ ସବୁ ସଭ୍ୟତାରେ ହେତୁବାଦୀମାନେ ହିଁ ସଂସ୍କାରବାଦୀ ଚେତନାର ପଥଦ୍ରଷ୍ଟା ଓ ମାନବିକ ମହତ୍ତ୍ୱର ପ୍ରବକ୍ତା । ସେହିମାନେ ହିଁ ମାନବଜାତିର ବିବେକର ପ୍ରତିଭୂ । ସେମାନେ ଯେଉଁ ଜୀବନଦର୍ଶନର ପ୍ରବକ୍ତା ତାହା ଯଦି ବାସ୍ତବରେ ସମାଜରେ ବ୍ୟାପକ ଭିତ୍ତି ନେଇପାରନ୍ତା, ତେବେ ସାରା ପୃଥିବୀରେ ଏକ ଉନ୍ନତ ଯୁଗର ଅଭ୍ୟୁଦୟ ହୁଅନ୍ତା । ପାରଲୌକିକ ଜୀବନ ଦୃଷ୍ଟିରୁ ମାନବକୈନ୍ଦ୍ରିକ ଜୀବନ ଦୃଷ୍ଟିର ବିକାଶଦ୍ୱାରା ସଭ୍ୟତାର ନୂତନ ଉତ୍ତରଣ ସମ୍ଭବ ହୋଇପାରନ୍ତା । 'ମଣିଷ ହିଁ ତାର ଭବିଷ୍ୟତର ନିର୍ମାତା ଓ ମଣିଷର ପ୍ରୟାସରେ ଜୀବନର ଗୁଣାତ୍ମକ ପ୍ରଗତି ସମ୍ଭବ' ଏହି ଭାବନା ଚିନ୍ତା ରାଜ୍ୟରେ ନୂଆ ଦିଗନ୍ତ ସୃଷ୍ଟି କରିପାରନ୍ତା । ଏକ ଉନ୍ନତ ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ବାସ୍ତବରେ ସାକାର ରୂପ ନିଅନ୍ତା ଓ ଆମ ସଂସାରରୁ ମଣିଷକୃତ ବିଭୀଷିକାର ଅନ୍ତ ହୋଇପାରନ୍ତା । ଏହା ହିଁ ହେଉଛି ହେତୁବାଦର ବିଚାର ଓ ହେତୁବାଦୀଙ୍କ ସ୍ୱପ୍ନ ।



# ଈଶ୍ୱର କଣିକା ଓ ଈଶ୍ୱର

ନିକଟରେ ଜୁଲାଇ ୪, ୨୦୧୨ ଦିନ ଜେନେଭାଠାରେ ଇଉରୋପୀୟ ନିଉକ୍ଲିଅର ଗବେଷଣା ପ୍ରତିଷ୍ଠାନ(CERN) ଏକ ଅଜ୍ଞାତ କଣିକା ବିଷୟରେ ଘୋଷଣା କରିଛି । ଏହି କଣିକାକୁ ହିଗସ୍ ବୋସନ କୁହାଯାଉଛି । ପଦାର୍ଥବିଜ୍ଞାନରେ ଅଣୁଶକ୍ତି ଉପରେ ଗବେଷଣା କରୁଥିବା ବୈଜ୍ଞାନିକମାନେ ଚାରି ଦଶନ୍ଧି ଧରି ଏହି କଣିକାର ସନ୍ଧାନ ନେଇ ଅନୁସନ୍ଧାନ କରୁଥିଲେ । ସେମାନେ ଦୀର୍ଘଦିନର ଗବେଷଣା ଦ୍ୱାରା ଏହି କଣିକାର ସନ୍ଧାନ ପାଇଛନ୍ତି । ପ୍ରକୃତରେ ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ପିଟର ହିଗସ୍ ଏହି କଣିକାର ସ୍ଥିତି ନେଇ ପରିକଳ୍ପନା କରିଥିଲେ । ତାଙ୍କ କଣିକାଟି ସତ୍ୟେନ୍ଦ୍ରନାଥ ବୋସଙ୍କ କଣିକା ଶ୍ରେଣୀର ହୋଇଥିବାରୁ ଏହି କଣିକାକୁ ହିଗସ୍-ବୋସନ କୁହାଯାଉଛି । ପଦାର୍ଥ ବିଜ୍ଞାନରେ ଆବିଷ୍କୃତ କଣିକାମାନଙ୍କୁ ଦୁଇ ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରାଯାଏ ଯଥା ବୋସନ ଓ ଫର୍ମିଅନ । ସତ୍ୟେନ୍ଦ୍ର ନାଥ ବୋସ୍ ଆଇନଷ୍ଟାଇନଙ୍କ ସହ ମିଶି ଗୋଟିଏ ଶ୍ରେଣୀର କଣିକାର ସ୍ୱରୂପ କ୍ଷେତ୍ରରେ ଯେଉଁ ସିଦ୍ଧାନ୍ତ ଦେଇଥିଲେ, ତାହା ବୋସ୍ ଆଇନଷ୍ଟାଇନ ଷ୍ଟାଟିଷ୍ଟିକସ୍ ଭାବେ ଜଣାଶୁଣା । ଏହି ପ୍ରଣାଳୀରେ ନିରୂପିତ ଏହି କଣିକା ବୋସନ-କଣିକା ନାମରେ ପରିଚିତ । ହିଗସ୍‌ଙ୍କ କଳ୍ପିତ କଣିକା ଏହି ଶ୍ରେଣୀର ହୋଇଥିବାରୁ ଏହି କଣିକାକୁ ହିଗସ୍-ବୋସନ କୁହାଯାଇଛି ।

ଆଟମ୍ ବା ଅଣୁକୁ ବିଭାଜନ କରିବା ଦ୍ୱାରା ଯେଉଁ ସବୁ ବସ୍ତୁ ମିଳିଥାଏ ତାହାକୁ ସବ-ଆଟମିକ ପାର୍ଟିକେଲ ବା କଣିକା କୁହାଯାଏ । ଏକ କଣିକାର ବିଷୟକୁ ବୁଝିବାକୁ ବସ୍ତୁ ସମ୍ପର୍କରେ ଧାରଣା ଆବଶ୍ୟକ । ବୈଜ୍ଞାନିକ ଅନୁଶୀଳନରୁ ଜଣାଯାଏ ଯେ ବିଶ୍ୱରେ କିଛି ମୌଳିକ ବସ୍ତୁ(ଏଲିମେଣ୍ଟ) ରହିଛି ଓ ମୌଳିକ ବସ୍ତୁମାନଙ୍କର ବିଭିନ୍ନ ସମ୍ମିଶ୍ରଣରେ ସକଳ ବସ୍ତୁମାନଙ୍କର ଉତ୍ପତ୍ତି ହୋଇଛି । ମୌଳିକ ବସ୍ତୁ ଗ୍ୟାସୀୟ,

ତରଳ ବା କଠିନ ଅବସ୍ଥାରେ ରହିପାରେ । ଉଦ୍‌ଜାନ, ଅମ୍ଳଜାନ, ଯବକ୍ଷାରଜାନ ପରି ମୌଳିକ ବସ୍ତୁମାନ ଗ୍ୟାସୀୟ ସ୍ତରର ଓ ଏମାନଙ୍କର ସଂଖ୍ୟା ଏଗାର । ତରଳ ସ୍ତରୀୟ ମୌଳିକ ବସ୍ତୁ ହେଲା ପାରଦ ଓ ବ୍ରୋମିନ । ବାକି ସବୁ ମୌଳିକ ବସ୍ତୁ ଯଥା ଲୁହା, ସୁନା, ନିକେଲ, ମାଙ୍ଗାନିଜ୍ ଇତ୍ୟାଦି ହେଲା କଠିନ ଓ ଏମାନଙ୍କର ସଂଖ୍ୟା ପ୍ରାୟ ୧୦୦ । ବର୍ତ୍ତମାନ ସୁଦ୍ଧା ୧୧୪ଟି ମୌଳିକ ପଦାର୍ଥର ସନ୍ଧାନ ମିଳିପାରିଛି ।

ଏକ ମୌଳିକ ବସ୍ତୁର ବିଭାଜନ ଦ୍ୱାରା ଅଣୁମାନ ମିଳିଥାଏ । ପ୍ରତ୍ୟେକ ମୌଳିକ ବସ୍ତୁର ଅଣୁରେ ଥିବା ପ୍ରୋଟନ ଓ ନିଉଟ୍ରନର ସ୍ୱରୂପ ସମାନ ହେଲେ ବି ସେମାନଙ୍କ ମଧ୍ୟରେ କେବଳ ପରିମାଣାତ୍ମକ ପାର୍ଥକ୍ୟ ରହିଥାଏ । ଅଣୁକୁ ବିଭାଜନ ଦ୍ୱାରା ଇଲେକ୍‌ଟ୍ରନ, ପ୍ରୋଟନ ଓ ନିଉଟ୍ରନ ମିଳିଥାଏ । ପ୍ରୋଟନ ଓ ଇଲେକଟ୍ରନର ସ୍ୱରୂପ ସମାନ ହେଲେ ବି ସେମାନଙ୍କ ମଧ୍ୟରେ କେବଳ ପରିମାଣାତ୍ମକ ପାର୍ଥକ୍ୟ ରହିଥାଏ । ଅଣୁକୁ ବିଭାଜନ ଦ୍ୱାରା ଇଲେକ୍‌ଟ୍ରନ, ପ୍ରୋଟନ ଓ ନିଉଟ୍ରନ ମିଳିଥାଏ । ପ୍ରୋଟନ ଓ ଇଲେକ୍‌ଟ୍ରନ ପୁନଶ୍ଚ ବିଭାଜ୍ୟ ଯାହା ହେଲା କ୍ୱାର୍କ । ଏ ପ୍ରତ୍ୟେକର ଲକ୍ଷଣ ବୈଜ୍ଞାନିକ ଗବେଷଣା ଦ୍ୱାରା ସ୍ଥିର ହୋଇଛି । ଅଣୁର ବିଭାଜନକୁ ସବ୍ ଆଟମିକ ପାର୍ଟିକେଲ ବା କଣିକା କୁହାଯାଏ । କଣିକାକୁ ବିଶ୍ଳେଷଣ କରି ସେମାନଙ୍କର ଲକ୍ଷଣ ଓ ଧର୍ମ ନିର୍ଣ୍ଣୟ କରାଯାଇ ପାରିଛି ।

ତେବେ ପ୍ରଶ୍ନ ହେଉଛି ହିଗସ୍-ବୋସନ କଣିକା କଣ ଓ ଏହା କାହିଁକି ଗୁରୁତ୍ୱପୂର୍ଣ୍ଣ ? ପାର୍ଟିକେଲ ଫିଜିକ୍‌ସ କ୍ଷେତ୍ରରେ ହିଗସ୍ ପରିକଳ୍ପନା କଲେ ଯେ ଏପରି ଏକ କଣିକା ରହିଛି ଯାହା କଣିକାମାନଙ୍କ ସମ୍ପର୍କ ସ୍ଥାପନ କ୍ଷେତ୍ରରେ ମୁଖ୍ୟ ସ୍ଥାନ ନେଇଛି ଓ ଯାହାଦ୍ୱାରା ସବ୍ ଆଟମିକ ମୌଳିକ ବସ୍ତୁମାନଙ୍କର ଶକ୍ତିକୁ ବ୍ୟାଖ୍ୟା କରିହେବ । ପୁନଶ୍ଚ ସବ୍ ଆଟମିକ ପାର୍ଟିକେଲ ମାନଙ୍କୁ ବସ୍ତୁତ୍ୱ ଦେବାରେ ଏହି କଣିକାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଅର୍ଥାତ୍ ଏହି କଣିକା ଯୋଗୁଁ ଅଣୁ, କଣିକାମାନଙ୍କ ଭିତରେ ବସ୍ତୁତ୍ୱ ସୃଷ୍ଟି ହେବା ସମ୍ଭବ ହୋଇଛି ଯାହାଦ୍ୱାରା ଏ ବିଶାଳ ବିଶ୍ୱ ଉଦ୍ଭବ ହୋଇଛି । ହିଗସ୍ ୧୯୬୪ ମସିହାରେ ଦୁଇଟି ପ୍ରବନ୍ଧ ଲେଖି ଏହି କଣିକାର ପରିକଳ୍ପନା କଲେ ଯାହାକୁ ସମ୍ପ୍ରତି ହିଗସ୍ କ୍ଷେତ୍ର ବା ହିଗସ୍ ଫିଲ୍‌ଡ୍ କୁହାଯାଉଛି । ହିଗସ୍ ଫିଲଡ୍ ଦ୍ୱାରା କ୍ୱାର୍କ ଓ ଇଲେକଟ୍ରନମାନ ବସ୍ତୁତ୍ୱ ଲାଭ କରିଥିବା ଅନୁମାନ କରାଗଲା । ତେବେ କ୍ୱାର୍କ ଭିତରେ ଥିବା ବସ୍ତୁତ୍ୱ ତୁଳନାରେ ପ୍ରୋଟନ ଓ ନିଉଟ୍ରନର ବସ୍ତୁତ୍ୱ ଅଧିକ ଥିବା କେବଳ ଏହି ହିଗସ୍ ଫିଲ୍‌ଡ ଯୋଗୁ ଗ୍ରହଣ କରାଯାଏ ।

ଅବଶ୍ୟ ହିଗସ୍‌ଙ୍କ ପରି ଅନ୍ୟ କେତେକ ବୈଜ୍ଞାନିକ କଣିକାମାନଙ୍କର ବସ୍ତୁତ୍ୱ ଆହରଣ ନେଇ ତଥ୍ୟମାନ ବି ଦେଇଛନ୍ତି । ତେବେ ହିଗସ୍‌ଙ୍କ ପରିକଳ୍ପନାର ତାତ୍ପର୍ଯ୍ୟ ଥିଲା ଯେ ସେ ଏହାକୁ ଏକ ଗାଣିତିକ ଧାରାରେ ବ୍ୟାଖ୍ୟା କରି ଅଣୁର "ସ୍ପୋଣ୍ଟାନିଅସ ସିମେଟ୍ରି ବ୍ରେକିଙ୍ଗ" ଜଟିଳ ବୈଜ୍ଞାନିକ ସିଦ୍ଧାନ୍ତଟିକୁ ବ୍ୟାଖ୍ୟା କଲେ । ଏହା ହିଗସ ଫିଲଡ ଦ୍ୱାରା ସମ୍ଭବ ବୋଲି ଅନୁମାନ କରାଗଲା ।

ତେବେ ହିଗସ୍-ବୋସନ କଣିକାକୁ ପାଇବା ସମ୍ଭବତଃ ସମ୍ଭବ ନୁହେଁ ବୋଲି ଅନୁମାନ କରି ସେହି ସମ୍ପର୍କରେ ନୋବେଲ ବିଜେତା ଲିଓନ ଲେଡରମାନ "Goddamn Particle" ନାମରେ ଏକ ପୁସ୍ତକ ଲେଖିଲେ । ପୁସ୍ତକର ପ୍ରକାଶକ ବହିଟିର ପ୍ରସାର ପାଇଁ ବ୍ୟାବସାୟିକ ଲକ୍ଷ୍ୟରେ ପୁସ୍ତକର ନାମ "God Particle" କଲେ । ଯେତେବେଳେ ହିଗସ୍‌ଙ୍କ ପରିକଳ୍ପିତ ପ୍ରକଳ୍ପକୁ ବର୍ଷ ବର୍ଷର ଗବେଷଣା ଦ୍ୱାରା ବୈଜ୍ଞାନିକମାନେ ଏକ ନିୟନ୍ତ୍ରିତ ସ୍ଥିତିରେ ପରୀକ୍ଷା କରିବାକୁ ସମର୍ଥ ହେଲେ ତାହାକୁ ଲେଡରମାନଙ୍କ ବହି ନାମରେ ଗଡ ପାର୍ଟିକେଲ କୁହାଯାଇଛି । ବସ୍ତୁର ବିଭାଜନ ପ୍ରକ୍ରିୟାରେ ସବୁଠାରୁ କ୍ଷୁଦ୍ରତମ ଅଂଶ ଓ ସେହି କ୍ଷୁଦ୍ରତମ ଅଂଶମାନଙ୍କର ପାରସ୍ପରିକ ସମ୍ପର୍କକୁ ବୁଝାଇବାରେ ହିଗସ୍ ବୋସନ ବା ଈଶ୍ୱର କଣିକା ସହାୟକ ବୋଲି ପଦାର୍ଥ-ବିଜ୍ଞାନୀମାନେ ଆଶା କରିଛନ୍ତି ।

ପଦାର୍ଥବିଜ୍ଞାନୀମାନେ କୌଣସି କଣିକାର ଆବିଷ୍କାର ପରେ ସେହି କଣିକାର ଧର୍ମ, ଲକ୍ଷଣକୁ ସୁନିର୍ଦ୍ଦିଷ୍ଟ କରିବାକୁ ନାନା ଭାବରେ ପ୍ରୟାସ କରିଥାନ୍ତି । ପାର୍ଟିକେଲ ଫିଜିକ୍‌ସରେ ଜ୍ଞାତ କଣିକାମାନଙ୍କୁ ଅନୁଶୀଳନ କରାଯାଇ ସେମାନଙ୍କର ସ୍ୱରୂପ କଣ ଓ ତାହା ପ୍ରକୃତରେ ବୋସନ- ଶ୍ରେଣୀୟ କଣିକା କି ନୁହେଁ ତାହାର ନାନା ପରୀକ୍ଷା କରାଯାଏ । ପୁନଶ୍ଚ ହିଗସ୍-ବୋସନ କଣିକାର ଅନ୍ୟାନ୍ୟ ସମ୍ପର୍କିତ କଣିକାମାନଙ୍କୁ ବି ପ୍ରକଳ୍ପରେ ଅନୁମାନ କରାଯାଉଛି ।

ମୋଟ ଉପରେ କହିଲେ ହିଗସ୍-ବୋସନ ଏକ ଅତ୍ୟନ୍ତ ଜଟିଳ ବୈଜ୍ଞାନିକ ପ୍ରକଳ୍ପ । ପ୍ରାୟ ତେରଶହ କୋଟି ବର୍ଷ ତଳେ ବିଗ୍ ବ୍ୟାଂଗ ପରେ ବିଶ୍ୱରେ କିପରି ପରିବେଶ ଦେଇ ସୃଷ୍ଟିର ବିବର୍ତ୍ତନ ପ୍ରକ୍ରିୟା ଆରମ୍ଭ ହୋଇଥିବ ତାହାର ଏକ ବୈଜ୍ଞାନିକ ବ୍ୟାଖ୍ୟା ପାଇଁ ହିଗସ୍ ତାଙ୍କ ପ୍ରକଳ୍ପକୁ ଅନୁମାନ କରିଥିଲେ । ସେହି ସମୟର ସ୍ଥିତିକୁ ପରିକଳ୍ପନା କରାଯାଇ ସେହି ଅବସ୍ଥାକୁ ଏକ ନିୟନ୍ତ୍ରିତ ପରିସ୍ଥିତିରେ ସୃଷ୍ଟି କରିବାକୁ ପ୍ରବୀଣ ବୈଜ୍ଞାନିକମାନେ ପ୍ରୟାସ କଲେ । ପରିକଳ୍ପିତ କଣିକା ହିଗସ୍-ବୋସନକୁ

ପରୀକ୍ଷା ପାଇଁ ପ୍ରୋଟନ-ପ୍ରୋଟନ ମଧ୍ୟରେ ୯୦୦ ଲକ୍ଷ କୋଟି ଥର ୨୭ କି.ମି ପରିଧି ବିଶିଷ୍ଟ ମାଟିତଳେ ନିର୍ମିତ ଅତ୍ୟାଧୁନିକ ଟନେଲରେ କୋଲିଜନ ବା ଧକ୍‌କା କରାଇ ତାର ପରିଣାମକୁ ଲକ୍ଷ୍ୟ କଲେ । ଏହି କୋଲିଜନ ଫଳରେ ଯେଉଁ ଅଫୁରନ୍ତ ଶକ୍ତିର ଉତ୍ପନ୍ନ ହେଲା ତାହାକୁ ବିଚାରକୁ ନେଇ ନାନା ଜଟିଳ ପରୀକ୍ଷା କଲେ । (ଉତ୍ପନ ଶକ୍ତିର ପରିମାଣ ହେଲା ୮ ଗିଗା ଇଲେକଟ୍ରନ ଭୋଲ୍ଟ ବା 8Gev) ସେହି ପରିସ୍ଥିତିରେ ସବ୍ ଆଟମିକ କଣିକାମାନ କିପରି ବସ୍ତୁତ୍ୱ ଆହରଣ କରୁଛନ୍ତି ତାହାକୁ ଅତ୍ୟାଧୁନିକ ପ୍ରଣାଳୀରେ ବୈଜ୍ଞାନିକ ମାନେ ପର୍ଯ୍ୟବେକ୍ଷଣ କଲେ । ତେବେ ହିଗସ କଣିକାର ସମୟ ଏତେ କ୍ଷୁଦ୍ର ଯେ ($୧୦^{-୨୨}$ ସେକେଣ୍ଡ)ତାହାର ଅସ୍ତିତ୍ୱକୁ ବାହାର କରିବା ସମ୍ଭବ ନୁହେଁ । କେବଳ ଏକ ଜଟିଳ ଗାଣିତିକ ପରିସଂଖ୍ୟାନ ମଧ୍ୟଦେଇ ଏହାର ଅବକ୍ଷୟକୁ ଅନ୍ୟ କଣିକା ଜରିଆରେ ଅନୁମାନ ଓ ବ୍ୟାଖ୍ୟା କରାଯାଏ । ଏହି ସମସ୍ତ ପରୀକ୍ଷା ଅତ୍ୟନ୍ତ ଜଟିଳ, ବ୍ୟୟବହୁଳ ଓ ଅତ୍ୟାଧୁନିକ ବୈଜ୍ଞାନିକ ପରିବେଶରେ କରିବା ସମ୍ଭବ । ଏହି ସ୍ଥିତିରେ ପୃଥିବୀର ବିଭିନ୍ନ ଦେଶର ପ୍ରବୀଣ ବୈଜ୍ଞାନିକମାନେ ବର୍ଷ ବର୍ଷର ଉଦ୍ୟମ ଦ୍ୱାରା ଏହି କଣିକାର ସନ୍ଧାନ କରିଛନ୍ତି ଯାହା ସାହାଯ୍ୟରେ ବିଗ୍-ବ୍ୟାଂଗ ପରଠାରୁ ବିଶ୍ୱର ବିକାଶକୁ ବ୍ୟାଖ୍ୟା କରାଯାଇପାରିବ । କଣିକା ଭିତରେ ବସ୍ତୁତ୍ୱ ସୃଷ୍ଟି ପ୍ରକ୍ରିୟା (mass generating mechanism) ହିଗସ୍ ବୋସନ ବା ଈଶ୍ୱର କଣିକା ଦ୍ୱାରା ରୂପ ନେଇଥିବ ବୋଲି ଯାହା ଅନୁମାନ କରାଯାଉଥିଲା, ତାହା ଏବେ ପରୀକ୍ଷିତ ହୋଇପାରିଛି । ଏହାରି ଆଧାରରେ ଭବିଷ୍ୟତରେ ସୃଷ୍ଟିର ଅନେକ ଲୁକ୍‌କାୟିତ ରହସ୍ୟ ଉନ୍ମୋଚିତ ହୋଇପାରିବ ବୋଲି ବୈଜ୍ଞାନିକମାନେ ଆଶା ପୋଷଣ କରୁଛନ୍ତି ।

ହିଗସ୍-ବୋସନର ଆବିଷ୍କାର ଦ୍ୱାରା କଣିକା ତତ୍ତ୍ୱର ଯେ ସବୁକିଛି ବ୍ୟାଖ୍ୟା କରାଯାଇପାରିବ ତାହା ଭାବିବା ଠିକ୍ ନୁହେଁ । ତେବେ ଅଣୁର ସବୁଠାରୁ କ୍ଷୁଦ୍ରତମ ଅଂଶଗୁଡିକ ପରସ୍ପର ସହିତ କିପରି ସଂଯୋଜିତ ତାହାକୁ ବ୍ୟାଖ୍ୟା କରିବାରେ ହିଗସ୍-ବୋସନ ସହାୟକ ହୋଇପାରିବ ବୋଲି ପଦାର୍ଥ ବିଜ୍ଞାନୀମାନେ ଆଶା ପୋଷଣ କରିଛନ୍ତି । କଣିକାତତ୍ତ୍ୱ ସ୍ତରରେ ଗାଣିତିକ ଡାଞ୍ଚାର ଧାରାରେ ବୈଜ୍ଞାନିକମାନେ ଯେଉଁ ଷ୍ଟାଣ୍ଡାର୍ଡ ମଡେଲ କରିଛନ୍ତି, ସେଥିରେ ହିଗସ୍-ବୋସନ ଥିଲା ଶେଷ କଣିକା ଯାହା ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନଥିଲା । ହିଗସ୍-ବୋସନକୁ ଜାଣିବା ଦ୍ୱାରା ପାର୍ଟିକେଲ ଫିଜିକ୍ସର ସବୁକିଛି ଯେ ବ୍ୟାଖ୍ୟା ହୋଇପାରିବ ତାହା ମଧ୍ୟ ଠିକ୍ ନୁହେଁ । ଏବେ ବି ଏ

କ୍ଷେତ୍ରରେ ନିଉକ୍ଲିଅର ଫୋର୍ସ, ଇଲେକ୍ଟ୍ରୋମ୍ୟାଗନେଟିଜମ୍ ସହ ଗ୍ରାଭିଟିର ସମ୍ପର୍କ ନେଇ ଅନେକ ଅସ୍ପଷ୍ଟତା ରହିଛି । ହିଗସ୍ ବୋସନ ସହ ତାହାର କେତେକ ସମ୍ପର୍କୀୟ ବି ରହିଛନ୍ତି ଯାହା ଏବେ ବି ଅସ୍ପଷ୍ଟ ହୋଇ ରହିଛି । ମୋଟ ଉପରେ ଏହି ସମଗ୍ର ଧାରଣାଟି ପଦାର୍ଥ ବିଜ୍ଞାନର ଏକ ଅତ୍ୟନ୍ତ ଗଭୀର ଓ ଜଟିଳ ଭାବନା ଏହା ଅସ୍ୱୀକାର କରାଯାଇ ନପାରେ ।

ଏହି ଜଟିଳ ବୈଜ୍ଞାନିକ ଅବଧାରଣାକୁ ଗଣମାଧମରେ କେତେକ କହିଲେ ଯେ ଈଶ୍ୱର କଣିକାର ସନ୍ଧାନ ମିଳିଛି । ଫଳତଃ ଈଶ୍ୱରଙ୍କ ଅସ୍ତିତ୍ୱ ବିଜ୍ଞାନରେ ସ୍ୱୀକୃତ । ତେବେ ଈଶ୍ୱରଙ୍କ ସ୍ୱରୂପ କ'ଣ ? ଈଶ୍ୱରଙ୍କ ବିଷୟରେ ସାଧାରଣ ଧାରଣା ହେଉଛି ଈଶ୍ୱର ସୃଷ୍ଟିକର୍ତ୍ତା ଓ ସର୍ବଶକ୍ତିମାନ । ତେବେ ଈଶ୍ୱରଙ୍କୁ କଣ ଏକ କଣିକା କୁହାଯିବ ? ଉଲ୍ଲେଖଯୋଗ୍ୟ ଯେ ଈଶ୍ୱର ଯେହେତୁ ଏକ ବସ୍ତୁନିଷ୍ଠ ସତ୍ତା ନୁହନ୍ତି ବା ଈଶ୍ୱରଙ୍କ ଅସ୍ତିତ୍ୱକୁ ବୈଜ୍ଞାନିକ ପ୍ରଣାଳୀ ଆଧାରରେ ପରୀକ୍ଷା କରିବା ସମ୍ଭବ ନୁହେଁ ତେଣୁ ବିଜ୍ଞାନ ଈଶ୍ୱରଙ୍କ ସମ୍ପର୍କରେ ଅନୁଶୀଳନ କରେ ନାହିଁ । ଈଶ୍ୱର ଭାବନା ଦର୍ଶନ ଓ ଧର୍ମ ପରିସରରେ ଆଲୋଚିତ ହୁଏ । ଧର୍ମ ପରିସରରେ ଈଶ୍ୱର ଭାବନା ଏକ ପ୍ରମୁଖ ପ୍ରତୀତି ହୋଇଥିବାରୁ ଓ ଧର୍ମ ଏକ ସାମାଜିକ ଅନୁଷ୍ଠାନ ହୋଇଥିବା ଯୋଗୁଁ ସମାଜଶାସ୍ତ୍ର ପରିସରରେ ଧର୍ମର ଅନୁଶୀଳନ ମଧ୍ୟ ଦେଇ ଈଶ୍ୱର ଭାବନାର ବିଶ୍ଳେଷଣ କରାଯାଏ । ଈଶ୍ୱର ଭାବନାର ଉତ୍ପତ୍ତି, କ୍ରମବିକାଶ, ସାମାଜିକ ମନସ୍ତତ୍ତ୍ୱରେ ଏହି ଭାବନାର ପ୍ରଭାବ ନେଇ ଚର୍ଚ୍ଚା ସମାଜ-ବିଜ୍ଞାନ ସ୍ତରରେ ହେବା ଦେଖାଯାଏ । ଏହା ସହିତ ଦର୍ଶନରେ ଈଶ୍ୱର ପ୍ରତୀତିର ଗମ୍ଭୀର ଚର୍ଚ୍ଚା ଦେଖିବାକୁ ମିଳେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସଭ୍ୟତାର କ୍ରମବିକାଶ ଧାରାରେ ଈଶ୍ୱର ଭାବନାର ବି ବିବର୍ତ୍ତନ ହେବା ଦେଖାଯାଏ । ସଭ୍ୟତାର ଆରମ୍ଭ ପର୍ବରେ ମଣିଷ ଯେତେବେଳେ ଏକ ନିରାପଦବିହୀନ ଜୀବନ ଯାପନ କରୁଥିଲା ତଥା ପ୍ରକୃତି ଓ ପରିବେଶ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲା, ସେତେବେଳେ ଆଦିମ ସମାଜର କିଛି ବୁଦ୍ଧିମାନ ଲୋକ ଈଶ୍ୱର ଭାବନା ବିଷୟରେ ଚିନ୍ତା କରିଥିଲେ । ଅଜ୍ଞତା ଓ ଭୟ ଜନିତ କାରଣରୁ ସେମାନେ ଧାରଣା ସୃଷ୍ଟି କଲେ ଯେ ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର କୌଣସି ନା କୌଣସି ଅତୀନ୍ଦ୍ରିୟ ଶକ୍ତିଦ୍ୱାରା ପରିଚାଳିତ ବା ନିୟନ୍ତ୍ରିତ ହେଉଛି । ସୂର୍ଯ୍ୟ, ଚନ୍ଦ୍ରକୁ ସେମାନେ ଦେବତା ବୋଲି ଭାବୁଥିଲେ । ସେହିପରି ଅଗ୍ନି, ପବନ, ବର୍ଷା, ପାହାଡ, ସମୁଦ୍ର ଇତ୍ୟାଦି ପ୍ରାକୃତିକ ବସ୍ତୁ ବା ଘଟଣାମାନଙ୍କୁ ସେମାନେ ପୃଥକ୍ ଈଶ୍ୱର ବୋଲି

କଳ୍ପନା କରୁଥିଲେ । ପ୍ରତ୍ୟେକ ପ୍ରାଚୀନ ସଭ୍ୟତାରେ 'ବହୁ ଈଶ୍ୱର' ଭାବନା ରହିଥିଲା । ସଭ୍ୟତାର ବିକାଶଧାରାରେ ଯେତେବେଳେ ଗୋଷ୍ଠୀ ଜୀବନ ଆରମ୍ଭ ହେଲା ସେତେବେଳେ ଧାରଣା ସୃଷ୍ଟି ହେଲା ଯେ ପ୍ରତ୍ୟେକ ଗୋଷ୍ଠୀ ଏକ ଏକ ଈଶ୍ୱରଙ୍କଠାରୁ ଉତ୍ପତ୍ତି ଲାଭ କରିଛି । ସେହି ଯୁଗର ଭାବନା ଥିଲା ଯେ ପ୍ରତ୍ୟେକ ଗୋଷ୍ଠୀ ନିଜ ନିଜ ଈଶ୍ୱରଙ୍କୁ ଆରାଧନା କରିବା ଆବଶ୍ୟକ । ଏହିପରି ନାନା ଗୋଷ୍ଠୀ ଭିତରେ ଏକୈକାଧିକ (henotheism) ଈଶ୍ୱର ଭାବନା ସୃଷ୍ଟି ହେଲା । ଏବେ ବି ବିଭିନ୍ନ ଆଦିମ ସମାଜରେ ଏହି ଈଶ୍ୱର ଭାବନାର ପ୍ରଚଳନ ରହିଛି । ଏହାପରେ ବିଶ୍ୱାସ ସୃଷ୍ଟି ହେଲା ଯେ ଜୀବନର ପ୍ରତ୍ୟେକଟି ବିଭାଗ କୌଣସି ଦେବ ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ । ବିଦ୍ୟା, ଧନ, ଜୀବନ, ମୃତ୍ୟୁ, ବିବାହ, ଗୃହ ନିର୍ମାଣ, କୃଷି ଇତ୍ୟାଦି ପ୍ରତ୍ୟେକଟି କ୍ଷେତ୍ର ପାଇଁ ସ୍ୱତନ୍ତ୍ର ଦେବ ବା ଦେବୀ ରହିଛନ୍ତି । ଜ୍ଞାନ ଆହରଣ ପାଇଁ ଯେଉଁ ଈଶ୍ୱର ବା ଦେବତାଙ୍କୁ ଡାକିବାକୁ ହେବ ଧନ ଲାଭ ପାଇଁ ସେହି ଈଶ୍ୱରଙ୍କୁ ଡାକିଲେ ଫଳ ମିଳିବ ନାହିଁ ଇତ୍ୟାଦି ଇତ୍ୟାଦି । ପୁନଶ୍ଚ ମାତୃକୈନ୍ଦ୍ରିକ ସମାଜରେ ଅନେକ ଦେବୀଙ୍କୁ କଳ୍ପନା କରାଯିବା ବେଳେ ପିତୃକୈନ୍ଦ୍ରିକ ସମାଜରେ ଈଶ୍ୱରଙ୍କୁ ପୁରୁଷ ବୋଲି ଗ୍ରହଣ କରାଯିବା ଜଣାଯାଏ । ବହୁ ଈଶ୍ୱରବାଦ ଭାବନାରୁ କାଳକ୍ରମେ ଏକେଶ୍ୱରବାଦର ଭାବନା ଆସିବା ଦେଖାଯାଏ । ବିଶେଷକରି ଦାର୍ଶନିକ ଚିନ୍ତାଧାରାର ବିକାଶ ଓ ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ମଧ୍ୟ ଦେଇ ଏକେଶ୍ୱରବାଦର ଭାବନା ସୃଷ୍ଟି ହେବା ଏକ ଐତିହାସିକ ସତ୍ୟ ଅଟେ । ଏକେଶ୍ୱରବାଦରେ ବିଶ୍ୱାସ କରାଯାଏ ଯେ ଈଶ୍ୱର ଏକ, ଅଦ୍ୱିତୀୟ, ସର୍ବଜ୍ଞ ଓ ସବୁର ସ୍ରଷ୍ଟା । ତେବେ ଏହି ଭାବନା ଆସିବା ପରେ ପ୍ରଶ୍ନ ଉଠିଲା ଈଶ୍ୱର କ'ଣ ଏକ ବ୍ୟକ୍ତିସତ୍ତା ନା ସେ ସଂପୂର୍ଣ୍ଣ ଅବ୍ୟକ୍ତିକ ? କେତେକ ବିଶ୍ୱାସ ଅନୁଯାୟୀ ଈଶ୍ୱରଙ୍କର ବ୍ୟକ୍ତିସତ୍ତା ରହିଛି । ପ୍ରତ୍ୟେକ ମଣିଷ ଯେପରି ଏକ ବ୍ୟକ୍ତି, ଈଶ୍ୱର ମଧ୍ୟ ସେହିପରି ଏକ ବ୍ୟକ୍ତି । ତେବେ ଈଶ୍ୱର ଏକ ବ୍ୟକ୍ତି ସତ୍ତା ହେଲେ ବି ସେ ସର୍ବଜ୍ଞ ଓ ସର୍ବଶକ୍ତିମାନ । ଅନ୍ୟ ବିଶ୍ୱାସ ଅନୁଯାୟୀ ଈଶ୍ୱର ଏକ ବ୍ୟକ୍ତିସତ୍ତା ନୁହନ୍ତି, ସେ ଅବ୍ୟକ୍ତିକ । ସେ ଅଜ୍ଞେୟ, ଅସୀମ ଓ ଅବର୍ଣ୍ଣନୀୟ । ପୁନଶ୍ଚ ମଣିଷ ମନରେ ପ୍ରଶ୍ନ ଆସେ ଯେ ଈଶ୍ୱରଙ୍କ ସହ ମଣିଷ ସମାଜର କଣ ସମ୍ବନ୍ଧ ରହିଛି ? କେତେକ ବିଶ୍ୱାସ କଲେ ଯେ ସମାଜରେ ଈଶ୍ୱର ନ୍ୟାୟ ଓ ଧର୍ମ ଚାହାନ୍ତି । ଯେତେବେଳେ ଅଧର୍ମ ଓ ଅନ୍ୟାୟ ସମାଜରେ ହୁଏ ଈଶ୍ୱର ଅବତାର ନେଇ ଅଧର୍ମୀ ଓ ପାପୀମାନଙ୍କୁ ବିନାଶ କରନ୍ତି । ଅନ୍ୟମାନେ ବିଶ୍ୱାସ କଲେ ଯେ ଯିଏ ସର୍ବଜ୍ଞ ଓ ସର୍ବଶକ୍ତିମାନ ସେ ଜନ୍ମ

ହୋଇ ଏହା କରିବାର ଆବଶ୍ୟକତା ନାହିଁ । ସେ ଯେଉଁଠି ରହିଲେ ବି ଚାହିଁବା ମାତ୍ରେ ତାଙ୍କ ନିର୍ଦ୍ଦେଶରେ ସବୁ ଠିକ୍ ହୋଇପାରିବ । ତାଙ୍କ ନିର୍ଦ୍ଦେଶାନୁଯାୟୀ ସବୁ କିଛି ପରିଚାଳିତ ହୁଏ । ତେବେ ଏକ ଆଦର୍ଶ ଜୀବନର ବାର୍ତ୍ତା ଦେବା ପାଇଁ ଈଶ୍ୱର ତାଙ୍କ ପୁତ୍ରକୁ ଥରେ ଧରାବକ୍ଷକୁ ପଠାଇଥିଲେ, ସେ ହିଁ ଏକାମାତ୍ର ତ୍ରାଣକର୍ତ୍ତା । ଅନ୍ୟମାନେ ବିଶ୍ୱାସ କଲେ ଯେ ଈଶ୍ୱର ତାଙ୍କ ଦୂତକୁ ପଠାଇ ତାଙ୍କ ଜରିଆରେ ତାଙ୍କର ବାର୍ତ୍ତା ପ୍ରଚାର କରିଛନ୍ତି ଯାହା ଧର୍ମଗ୍ରନ୍ଥରେ ଲିପିବଦ୍ଧ ରହିଛି । ଏହିପରି ଭାବନାମାନ ବିଭିନ୍ନ ଭୂଖଣ୍ଡର ସାଂସ୍କୃତିକ ଇତିହାସରେ ଦେଖିବାକୁ ମିଳିଥାଏ । ମଣିଷ ମନକୁ ପ୍ରଶ୍ନ ଆସେ- ଜଗତ ସହିତ ଈଶ୍ୱରଙ୍କର କ'ଣ ସମ୍ପର୍କ ରହିଛି ? କେତେକ ବିଚାର କଲେ ଯେ ଈଶ୍ୱର ଜଗତକୁ ଏପରି ସୃଷ୍ଟି କରିଛନ୍ତି ଯେ ଏହା ଅନନ୍ତ କାଳ ପାଇଁ ଚାଲିପାରିବ । ଈଶ୍ୱର ସୃଷ୍ଟି ସର୍ଜନା କରିଦେଇ ସୃଷ୍ଟିଠାରୁ ନିଜକୁ ବିଛିନ୍ନ କରି ନେଇଛନ୍ତି । ସେ ବିଶ୍ୱାତୀତ । ଅନ୍ୟମାନେ ବିଶ୍ୱାସ କଲେ ଯେ ଈଶ୍ୱର ପ୍ରତ୍ୟେକ ବସ୍ତୁରେ ପ୍ରତିଫଳିତ । ସେ ସବୁଠି ଅଛନ୍ତି, ସେ ସର୍ବବ୍ୟାପୀ । ଅନ୍ୟମାନେ ବିଶ୍ୱାସ କଲେ ଯେ ସେ ବିଶ୍ୱାତୀତ ଓ ସେ ସର୍ବବ୍ୟାପୀ । ଏହିପରି ନାନା କଳ୍ପନା ଈଶ୍ୱରଙ୍କୁ ଆଧାର କରି ବିଭିନ୍ନ ଭୂଖଣ୍ଡରେ ବା ଦର୍ଶନରେ ଥିବା ଜଣାଯାଏ ।

ସାଧାରଣ ଜୀବନ ପ୍ରବାହରେ ବା ଧାର୍ମିକ ଚିନ୍ତନ କ୍ଷେତ୍ରରେ ରହିଥିବା ବିଶ୍ୱାସ ସକଳକୁ ଗୋଟିଏ ଯୁଗରେ ଯୁକ୍ତିନିଷ୍ଠ ଆଧାରରେ ପ୍ରମାଣ କରିବାକୁ ପ୍ରୟାସ ହୋଇଛି । ଦାର୍ଶନିକମାନେ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରମାଣ କରିବାକୁ ଯୁକ୍ତିର ଆଶ୍ରୟ ନେଇଛନ୍ତି । ଏହି ପ୍ରୟାସ ଭିତରେ ଈଶ୍ୱର ଜଗତର ସ୍ରଷ୍ଟା, ସବୁର ଆଦି-କାରଣ, ପ୍ରକୃତିରେ ଥିବା ଶୃଙ୍ଖଳାର ସଂସ୍ଥାପକ ବୋଲି ବିଚାରମାନ ବିକାଶଲାଭ କରିଛି । ତେବେ କାଳକ୍ରମେ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ଦିଆଯାଇଥିବା ପ୍ରମାଣମାନଙ୍କର ଦର୍ଶନସ୍ତରରେ ଗମ୍ଭୀର ଅନୁଶୀଳନ ହୋଇଛି । ଗଭୀର ଅନୁଶୀଳନରୁ ଏହି ଯୁକ୍ତି ଗୁଡିକ କିପରି ତ୍ରୁଟିଯୁକ୍ତ ଓ ଅବୈଧ ଏହା ଚିନ୍ତା ରାଜ୍ୟରେ ଆଲୋଡନ ଆଣିଛି । ଯେତେବେଳେ ଈଶ୍ୱରଙ୍କ ସମ୍ପର୍କିତ ଯୁକ୍ତିମାନ ଭ୍ରମାତ୍ମକ ବୋଲି ସାବ୍ୟସ୍ତ ହୋଇଛି, ସେତେବେଳେ ଈଶ୍ୱରବାଦୀମାନେ ମତ ବଦଳାଇ କହିଛନ୍ତି ଯେ ଈଶ୍ୱର ଅନୁଭବର ବସ୍ତୁ, ଯୁକ୍ତିର ପ୍ରସଙ୍ଗ ନୁହନ୍ତି । ଈଶ୍ୱର ତର୍କରେ ମିଳିବେ ନାହିଁ, ଭକ୍ତିରେ ମିଳିବେ । କେତେକ ରହସ୍ୟବାଦୀ ବ୍ୟକ୍ତି ନିଜର ବ୍ୟକ୍ତିନିଷ୍ଠ ଅନୁଭୂତିରେ ଈଶ୍ୱର କିପରି ଉପଲବ୍ଧ ହୋଇଛନ୍ତି ତାହା ନାନା ଭାବରେ କହିଛନ୍ତି । ତେବେ ଆଧୁନିକ ମନୋବିଜ୍ଞାନ

ବ୍ୟକ୍ତିଗତ ଅନୁଭବ ଗୁଡିକ କିପରି ଏକ ସର୍ତ୍ତବଦ୍ଧ ମନର ପରିଣାମ ତାହା ଦର୍ଶାଇଛି । ନିଜର ବିଶ୍ୱାସ ଆଧାରରେ ଜଣେ ବ୍ୟକ୍ତିର ମନ ସର୍ତ୍ତବଦ୍ଧ ହୋଇଥିଲେ ତାଙ୍କର ଅନୁଭବ ସେହି ବିଶ୍ୱାସାନୁଯାୟୀ ରୂପ ନେଇଥାଏ । ଏହି ଅନୁଭବ କେବଳ ମନସ୍ତାତ୍ତ୍ୱିକ ଓ ଏହାର ବାସ୍ତବ ଭିତ୍ତି ନାହିଁ । ସଭ୍ୟତାର ଆରମ୍ଭ କାଳରୁ ଈଶ୍ୱର ଭାବନା ସମାଜରେ ରହିଥିବାରୁ ଈଶ୍ୱରଙ୍କୁ ନେଇ ନାନା କାହାଣୀ, କିମ୍ବଦନ୍ତୀମାନ ସୃଷ୍ଟି ହୋଇଛି । ବିଭିନ୍ନ ଧର୍ମ ପରଂପରାରେ ନାନା ପୁରାଣ ଓ କାହାଣୀମାନ ସାହିତ୍ୟରେ ବିକାଶଲାଭ କରିଛି । ପୁନଶ୍ଚ ବହୁ ଦେବାଦେବୀ ଭାବନା ଥିବା ସମାଜରେ ଈଶ୍ୱରଙ୍କୁ ପ୍ରତୀକ କରି ନାନା ପ୍ରତିମା ପୂଜାର ପରଂପରା ସୃଷ୍ଟି ହୋଇଛି । ଏହିପରି ନାନା ଭାବରେ ଈଶ୍ୱର ଭାବନା ଓ ଧାର୍ମିକ ବିଶ୍ୱାସ ଜନଜୀବନର ଅଙ୍ଗ ହୋଇଯାଇଛି । ପୁନଶ୍ଚ ଈଶ୍ୱରଙ୍କୁ ନେଇ କେତେ କେତେ ଚମତ୍କାରିତାର କାହାଣୀ ସୃଷ୍ଟି କରାଯାଇଛି । ମୁକ୍ତ ଚିନ୍ତନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଭାବରେ ଈଶ୍ୱର ଭାବନା ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଅଙ୍ଗ ହୋଇଯାଇଛି ।

ବିଭିନ୍ନ ସଭ୍ୟତାରେ ଗୋଟିଏ ଯୁଗରେ ବିଚାର ସୃଷ୍ଟି ହୋଇଛି ଯେ ନୀତି, ନୈତିକତା ଈଶ୍ୱର ଦତ୍ତ । ସତ୍ୟ, ନ୍ୟାୟ, କରୁଣା ଭାବନା ଈଶ୍ୱର ଧର୍ମଗ୍ରନ୍ଥ ଜରିଆରେ ମଣିଷକୁ ଦେଇଛନ୍ତି । ଯେଉଁମାନେ ଈଶ୍ୱର ବିଶ୍ୱାସୀ ନୁହନ୍ତି ସେମାନେ ମୂଢ଼, ଅନୈତିକ । ନିରୀଶ୍ୱରବାଦୀ ବୋଲି କୌଣସି ପରିଚୟ ଦେଲେ ସାମାଜିକ ସ୍ତରରେ ଜଣେ ଭୟଙ୍କର ବିରୋଧର ସମ୍ମୁଖୀନ ହୋଇଥାଏ । ଏପରିକି ଧାର୍ମିକ କୁସଂସ୍କାରକୁ ବିରୋଧ କରୁଥିବା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତିମାନଙ୍କୁ ବି ନାନା କଟାକ୍ଷର ମୁକାବିଲା କରିବାକୁ ହୋଇଛି । ସାମାଜିକ ସ୍ତରରେ ବିଶ୍ୱାସ ରହିଥିଲା ଯେ ଏକ ନୀତିପୂର୍ଣ୍ଣ ଜୀବନ ଧାରଣ ପାଇଁ ଈଶ୍ୱର ବିଶ୍ୱାସ ଅବଶ୍ୟମ୍ଭାବୀ । ପୁନଶ୍ଚ ଜୀବନର ଅନ୍ତିମ ଲକ୍ଷ୍ୟ ନେଇ ବିଭିନ୍ନ ଧର୍ମ ପରଂପରାରେ ନାନା ଭାବନାର ବିକାଶ ହୋଇଛି । ଯେଉଁମାନେ ଉତ୍ତମ ଜୀବନ ବଞ୍ଚନ୍ତି, ନ୍ୟାୟ ପଥରେ ରହନ୍ତି ସେମାନେ ମୃତ୍ୟୁ ପରେ ଈଶ୍ୱରଙ୍କ ସ୍ୱର୍ଗ ରାଜ୍ୟକୁ ଯିବେ ବା ମୁକ୍ତି ଲାଭ କରିବେ, ଅଥଚ ଯେଉଁମାନେ ଅନ୍ୟାୟ ଓ ଅନୈତିକ କାର୍ଯ୍ୟରେ ସଂପୃକ୍ତ ସେମାନେ ମୃତ୍ୟୁପରେ ନରକଗାମୀ ହେବେ ଓ ଈଶ୍ୱରଙ୍କ ଦ୍ୱାରା ଦଣ୍ଡିତ ହେବେ । ଏହି ଭଳି ଧାର୍ମିକ ମାନସିକତାରେ ଈଶ୍ୱର ଓ ନୈତିକତାକୁ ଅଭିନ୍ନ କରାଯାଇଛି । ତେବେ ନୈତିକତା ଓ ଈଶ୍ୱରଙ୍କ ଭାବନାକୁ ନେଇ ଦର୍ଶନ ସ୍ତରରେ ଯେଉଁ ଗମ୍ଭୀର ଚର୍ଚ୍ଚା ହୋଇଛି ସେଥିରୁ ସିଦ୍ଧାନ୍ତ ନିଷ୍ପନ୍ନ ହୋଇଛି ଯେ ଈଶ୍ୱର ଓ ନୈତିକତା ପରସ୍ପରଠାରୁ ଭିନ୍ନ ଓ ସେମାନଙ୍କ ମଧ୍ୟରେ

କୌଣସି ଯୁକ୍ତିଶୀଳ ସମ୍ପର୍କ ନାହିଁ। ଈଶ୍ୱରଙ୍କୁ ବିଶ୍ୱାସ କରୁଥିବା ପ୍ରତ୍ୟେକ ବ୍ୟକ୍ତି ନୀତିଶୀଳ ନୁହଁନ୍ତି ଓ ଏକ ନୀତିନିଷ୍ଠ ଜୀବନ ବଞ୍ଚୁଥିବା ପ୍ରତ୍ୟେକ ବ୍ୟକ୍ତି ଈଶ୍ୱର-ବିଶ୍ୱାସୀ ନୁହନ୍ତି । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ଏକ ସଭ୍ୟ ଜୀବନଦୃଷ୍ଟି, ଏହାସହିତ ଈଶ୍ୱର ବିଶ୍ୱାସର କୌଣସି ସମ୍ପର୍କ ହିଁ ନାହିଁ । ଅବଶ୍ୟ ଈଶ୍ୱର ବିଶ୍ୱାସରୁ ହୁଏତ କେହି ନୀତିବାନ ହେବା ପାଇଁ ପ୍ରେରଣା ପାଇପାରନ୍ତି, ତେବେ ଏହା ସଂପୂର୍ଣ୍ଣ ମନସ୍ତାତ୍ତ୍ୱିକ । ନୀତିନିଷ୍ଠ ଜୀବନ ପାଇଁ ଅନ୍ୟ ସ୍ତରରୁ ପ୍ରେରଣା ମଧ୍ୟ ମିଳିଥାଏ କିମ୍ୱା ନୀତିନିଷ୍ଠ ଜୀବନକୁ ସ୍ୱରୂପତଃ କେହି ମହନୀୟ ଭାବି ଏପରି ଜୀବନ ବଞ୍ଚିବାରେ ଆଗ୍ରହୀ ହୋଇଥାନ୍ତି । ପୁନଶ୍ଚ ଧର୍ମ, ଈଶ୍ୱର ଭାବନାକୁ ନେଇ କେତେକ ସମାଜରେ ସାଂପ୍ରଦାୟିକ ବିଦ୍ୱେଷ ରହିଆସିଛି। ନିଜ ଈଶ୍ୱରଙ୍କ ପୂଜାସ୍ଥଳକୁ ପବିତ୍ର ମନେ କରାଗଲା ବେଳେ ଅନ୍ୟ ଧର୍ମର ପୂଜାସ୍ଥଳକୁ ଭାଙ୍ଗିବାକୁ ମହନୀୟ ମନେ କରାଯାଇଛି । ନିଜ ଧର୍ମର ଈଶ୍ୱରଙ୍କୁ ଆଧାର କରି ଅସଂଖ୍ୟ ଯୁଦ୍ଧ ଓ ବିଭୀଷିକାର ପରିବେଶ ଇତିହାସରେ ସୃଷ୍ଟି କରାଯାଇଛି । ଏହି ଦୃଷ୍ଟିରୁ ବିଚାର କଲେ ଈଶ୍ୱର ଭାବନା ଓ ନୈତିକତା ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ ।

ଆଧୁନିକ ବିଜ୍ଞାନର କ୍ରମବିକାଶ ପୂର୍ବରୁ ସବୁ ସଭ୍ୟତାରେ ବିଶ୍ୱାସ ରହିଥିଲା ଯେ ଈଶ୍ୱର ହିଁ ସବୁର ସ୍ରଷ୍ଟା । ସେ ମଣିଷକୁ ନିଜ ସ୍ୱରୂପରେ ସୃଷ୍ଟି କରିଛନ୍ତି । ଆଧୁନିକ ବିଜ୍ଞାନ ପୃଷ୍ଠଭୂମିରେ ଏହା ବସ୍ତୁନିଷ୍ଠ ଭାବେ ପ୍ରତିଷ୍ଠିତ ହେଲା ଯେ ପୃଥିବୀ କୋଟି କୋଟି ବର୍ଷର ବିବର୍ତ୍ତନ ଧାରାରେ ଆଜିର ସ୍ଥିତିକୁ ଆସିଛି । ମଣିଷକୁ କେଉଁ ଈଶ୍ୱର ସୃଷ୍ଟି କରିନାହାନ୍ତି । କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ମଣିଷର ଉତ୍ପତ୍ତି ହୋଇଛି । ସେହିପରି ଗୋଟିଏ ଆଦିମ ଅବସ୍ଥାରୁ ନାନା ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ମଧ୍ୟ ଦେଇ ସାମାଜିକ ଅନୁଷ୍ଠାନ ମାନ ବିକାଶ ଲାଭ କରିଛି ଓ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଛି । ସ୍ୱର୍ଗ, ନରକ, ଆତ୍ମା, ବିଚାର ଦିବସ, ପୁନର୍ଜନ୍ମବାଦ ଇତ୍ୟାଦି ଭାବନା ଗୁଡିକ ପଛରେ କୌଣସି ବସ୍ତୁନିଷ୍ଠ ଆଧାର ନାହିଁ, ଏଗୁଡିକ କେବଳ ପ୍ରାଚୀନ ଯୁଗର ବିଶ୍ୱାସ ମାତ୍ର ।

ବିଜ୍ଞାନ ଅନୁଯାୟୀ ପ୍ରକୃତିରେ ଯାହା ଅଛି ବା ଜୀବନ ପ୍ରବାହରେ ଯାହା ଘଟେ ତାହାକୁ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ୱନରେ ବ୍ୟାଖ୍ୟା କରାଯାଇପାରିବ । ବୈଜ୍ଞାନିକ ଜ୍ଞାନ ସାର୍ବଜନୀନ, ପରୀକ୍ଷା-ଆଧାରିତ, ପ୍ରଗତିଶୀଳ, ସତ୍ୟ ଓ ବସ୍ତୁନିଷ୍ଠ । ବିଜ୍ଞାନ ଦୃଷ୍ଟିରେ ପ୍ରକୃତିରେ ବହୁ ରହସ୍ୟ ରହିଛି ତେବେ କୌଣସି ଅଲୌକିକତା ବା

ଆଧିଦୈବିକ ଶକ୍ତିର ପ୍ରମାଣ ନାହିଁ । ଈଶ୍ୱର ଯେହେତୁ ଆଧିଦୈବିକ ଭାବନାର ଅନ୍ତର୍ଭୁକ୍ତ ଈଶ୍ୱରଙ୍କ ସମ୍ପର୍କରେ ବୈଜ୍ଞାନିକ ବିଚାର ସମ୍ଭବ ନୁହେଁ ।

ଈଶ୍ୱର ଯେହେତୁ କଳ୍ପନାର ବିଷୟ, ସୁତରାଂ ଈଶ୍ୱରଙ୍କୁ ଆଧାର କରି ବିଭିନ୍ନ ସଭ୍ୟତାରେ ଓ ଧର୍ମରେ ନାନା କାଳ୍ପନିକ ତତ୍ତ୍ୱ ରହିଛି । ତେବେ ଦର୍ଶନ ଏକ ତର୍କଶୀଳ ଅନୁଶୀଳନ ଭାବରେ ପ୍ରଶ୍ନ କରେ-(୧) ଆମର ଜ୍ଞାନ ଅର୍ଜନ କ୍ଷେତ୍ରରେ ଏପରି କୌଣସି ବୈଧ ପ୍ରଣାଳୀ ରହିଛି କି ଯାହାଦ୍ୱାରା ଈଶ୍ୱରଙ୍କ ଅସ୍ତିତ୍ୱକୁ ଜାଣିହେବ ? (୨)ଈଶ୍ୱରଙ୍କୁ ଏକ ଆଦି ସତ୍ତା ବା ଚେତନାମୟ ସତ୍ତା ଭାବେ ଗ୍ରହଣ କରିବା କ୍ଷେତ୍ରରେ ସେପରି କିଛି ଯୁକ୍ତିଶୀଳ ଆଧାର ରହିଛି କି ? (୩)ଈଶ୍ୱରଙ୍କୁ ନୀତି ସଂସ୍ଥାପକ ଓ ପାପ-ପୁଣ୍ୟର ବିଚାରକ ବୋଲି ଗ୍ରହଣ କରାଯିବା ଯଥାର୍ଥ କି ? ଈଶ୍ୱର ବ୍ୟତୀତ ନୈତିକ ମୂଲ୍ୟଚୟ ଅର୍ଥହୀନ କି ? ଏ ପ୍ରତ୍ୟେକ ପ୍ରଶ୍ନର ଏକ ନାସ୍ତିବାଚକ ଉତ୍ତର ଦର୍ଶନ ଦେଇଥିବା ଜଣାଯାଏ ।

ପୁନଶ୍ଚ ଈଶ୍ୱରଙ୍କୁ ଆଧାର କରି ହେତୁବାଦୀ ଜିଜ୍ଞାସାରେ ପ୍ରଶ୍ନ ଉଠେ ଯେ ଯଦି ଈଶ୍ୱର ସର୍ବଶକ୍ତିମାନ ତେବେ ସେ କାହିଁକି ପ୍ରାକୃତିକ ବିପର୍ଯ୍ୟୟକୁ ନିୟନ୍ତ୍ରଣ କରନ୍ତି ନାହିଁ ? ବାତ୍ୟା, ଭୂକମ୍ପ, ସୁନାମି ପରି ବିପର୍ଯ୍ୟୟରେ ପ୍ରାଣୀମାନେ ଅପରିମିତ ଦୁଃଖ ସହୁଥିବା ବା ମୃତ୍ୟୁବରଣ କରୁଥିବା ବେଳେ ଈଶ୍ୱର ଏହାକୁ ନିୟନ୍ତ୍ରଣ କରିବା ଯଥାର୍ଥ ନୁହେଁ କି ? ସେହିପରି ଯଦି ଈଶ୍ୱର କରୁଣାମୟ, ତେବେ ଆମ ସଂସାରରେ ଏତେ ମାନବିକ କ୍ରୂରତା, ଦୁର୍ଦ୍ଦଶା ଓ ଦୁଃଖ କାହିଁକି ରହିଛି ? ଆମ ସଂସାରରୁ ମାନବିକ କ୍ରୂରତା, ଶୋଷଣ, ଦୁର୍ବୁଦ୍ଧି ଯଦି ଲୋପ ପାଆନ୍ତା ତେବେ ସଂସାରରୁ ବହୁ ଦୁଃଖ ଦୂର ହୋଇପାରନ୍ତା । କରୁଣାମୟ ଈଶ୍ୱର ଅନ୍ୟାୟ, ଅନୀତିକୁ ଦୂର ନକରିବା କେତେ ଦୂର ଯଥାର୍ଥ ? ଏହି ପ୍ରସଙ୍ଗ ଉପରେ ଧର୍ମ-ଦର୍ଶନରେ ବହୁ ଚର୍ଚ୍ଚା ହୋଇଛି ଯାହା କି ଏକ ସ୍ୱତନ୍ତ୍ର ପ୍ରବନ୍ଧରେ ବିଚାର କରାଯାଇପାରିବ । ତେବେ ଏତିକି କୁହାଯାଇପାରିବ ଯେ ଏସବୁ ପ୍ରଶ୍ନର କୌଣସି ସନ୍ତୋଷ ଜନକ ଉତ୍ତର ଧର୍ମ-ଦର୍ଶନ ପୃଷ୍ଠଭୂମିରେ ଦିଆଯାଇନାହିଁ । ଯାହା ସବୁ କଳ୍ପିତ ଉତ୍ତର ଦିଆଯାଇଛି ସେ ଗୁଡିକ ତ୍ରୁଟିପୂର୍ଣ୍ଣ ଓ ଅବୈଧ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉପସଂହାରରେ ସଭ୍ୟତାକୁ ଆଗକୁ ନେବାରେ ବା ଜୀବନ ପ୍ରବାହରୁ ଦୁଃଖ ଦୁର୍ଦ୍ଦଶା ଦୂର କରିବାରେ ମଣିଷର ପ୍ରୟାସ ହିଁ ନିର୍ଣ୍ଣାୟକ ହୋଇଛି । ବିକଶିତ ଦେଶମାନଙ୍କରେ ଜୀବନର ମାନ ଉନ୍ନତ ହେବାରେ ଈଶ୍ୱରଙ୍କର ଆଶୀର୍ବାଦ ମିଳି

ନାହିଁ ବା ଯେଉଁଠି ଦାରିଦ୍ର୍ୟର ପ୍ରାବଲ୍ୟ ରହିଛି ତାହା ଈଶ୍ୱରଙ୍କର ଅଭିଶାପରୁ ହୋଇନାହିଁ। ଜଣେ ଜଣେ ଚିନ୍ତାଶୀଳ ବ୍ୟକ୍ତି ନିଜର ପ୍ରଜ୍ଞା ବା ଜୀବନବ୍ୟାପୀ ଗବେଷଣାଦ୍ୱାରା ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଯାଇଛନ୍ତି । ଗୋଟିଏ ଗୋଟିଏ ଉଦ୍‌ଭାବନ ବା ଆବିଷ୍କାର ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିଛି । ବିଦ୍ୟୁତ ଶକ୍ତିର ଉଦ୍ଭାବକ ମାଇକେଲ ଫାରେଡେ, ଟେଲିଭିଜନର ଉଦ୍ଭାବକ ଜନ୍ ବେୟର୍ଡ, ମୋବାଇଲ ଫୋନର ଉଦ୍‌ଭାବକ ମାର୍ଟିନ କୁପର ଇତ୍ୟାଦି ବୈଜ୍ଞାନିକମାନଙ୍କର ସଭ୍ୟତାକୁ ଦାନ ଅତୁଳନୀୟ। ସେହିପରି କୁଷ୍ଠରୋଗର ଚିକିତ୍ସା ବାହାର କରିଥିବା ଜେରହାର୍ଡ ହାନସନ, ନିଶ୍ଚେତକ ବା ଅନାସ୍ଥେସିଆର ଉଦ୍ଭାବକ ଜେମସ ୟଙ୍ଗ ସିମ୍ପସନ, ପୋଲିଓ ପ୍ରତିଷେଧକର ଉଦ୍‌ଭାବକ ଜୋନାସ ଏଡ୍‌ୱାର୍ଡ ସଲକ, ଯକ୍ଷ୍ମାରୋଗର ତ୍ରାଣକର୍ତ୍ତା ରବର୍ଟ କୋଚ ଇତ୍ୟାଦି ହେତୁବାଦୀମାନେ ସେମାନଙ୍କ ଜୀବନବ୍ୟାପୀ ସାଧନା ଦ୍ୱାରା ଜ୍ଞାନ ରାଜ୍ୟକୁ ଯେଉଁ ଅବଦାନ ଦେଇଛନ୍ତି ତାହାଦ୍ୱାରା ଅନେକ ଦୁଃଖ ଯନ୍ତ୍ରଣା ଦୂର ହୋଇପାରିଛି ।

ତେବେ ବିଡମ୍ବନାର ବିଷୟ କଳ୍ପନାର ଈଶ୍ୱରଙ୍କୁ ସବୁଥିରେ ସଂପୃକ୍ତ କରିବା କେତେକ ବ୍ୟକ୍ତିଙ୍କର ମାନସିକତାର ଅଙ୍ଗ ହୋଇଯାଇଛି । ନହେଲେ ହିଗସ୍-ବୋସନ ପରି ଜଟିଳ ବୈଜ୍ଞାନିକ ତତ୍ତ୍ୱରୁ ଈଶ୍ୱରଙ୍କ ସନ୍ଧାନ ମିଳିଲା ବୋଲି କେତେକ ତଥାକଥିତ ବୁଦ୍ଧିଜୀବୀ ପ୍ରଚାର କରନ୍ତେ ନାହିଁ । ଈଶ୍ୱର ସର୍ବଦା ଅଜ୍ଞାତ ଇଲାକା ଭିତରେ ରହିଛନ୍ତି । ଜ୍ଞାନର ଆଲୋକ ଯେତେ ଅଧିକ ପ୍ରସାରିତ ହେଉଛି ଈଶ୍ୱରଙ୍କ ଇଲାକା ସେତିକି ସଙ୍କୁଚିତ ହୋଇଚାଲିଛି । ଯାହା ମଣିଷ ପ୍ରଜ୍ଞାର ବହିର୍ଭୂତ, ତାହା ହିଁ ଈଶ୍ୱରଙ୍କ ସ୍ଥଳ ହୋଇଛି ।



# ଦୁଃଖ, ଇଶ୍ୱର ଓ ହେତୁବାଦ

ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା, ଅଶୁଭ ଓ ମନ୍ଦର ପରିସ୍ଥିତି ରହିଛି । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ଥିଲା, ସେତେବେଳେ ମଣିଷ ସମାଜରେ ଯେପରି ଦୁଃଖ, ଯାତନା ଥିଲା ଆଜି ସଭ୍ୟତାର ଏତେ ବିକାଶ ପରେ ବି ମଣିଷ ସମାଜରେ ଅପ୍ରମିତ ଦୁଃଖ, କଷ୍ଟ ରହିଛି । ଏକ ଦୁଃଖ ରହିତ ଓ ମନ୍ଦଶୂନ୍ୟ ପରିବେଶ ପ୍ରାୟତଃ କେଉଁଠି ହେଲେ ସମ୍ଭବ ହୋଇନାହିଁ । ଜ୍ଞାନ-ବିଜ୍ଞାନରେ ଯଥେଷ୍ଟ ବିକାଶ ହୋଇ ଚାଲିଛି, ନାନା ମହାମାରୀ ରୋଗମାନଙ୍କର ଚିକିତ୍ସା ପାଇଁ ମଣିଷ କ୍ରମବର୍ଦ୍ଧିଷ୍ଣୁ ଭାବେ ଆବଶ୍ୟକୀୟ ଜ୍ଞାନ ଲାଭ କରିବାରେ ସମର୍ଥ ହେଉଛି । ଦୁର୍ଭିକ୍ଷ, ମହାମାରୀ ପୃଥିବୀରୁ ଲୋପ ହୋଇ ଆସୁଛି, ଏସବୁ ସଫଳତା ସତ୍ତ୍ୱେ ତଥାପି ସଂସାରରୁ ଦୁଃଖ, ଅଶୁଭ ଓ ମନ୍ଦ ବା ଇଭିଲ(evil)ର ଲୋପ ହେଉନାହିଁ । ରାଜତନ୍ତ୍ର ଯୁଗରେ ଯୁଦ୍ଧ, ବିଭୀଷିକା, ଅତ୍ୟାଚାର ସମାଜରେ ପ୍ରବଳ ରହିଥିଲା । ଗଣତାନ୍ତ୍ରିକ ବ୍ୟବସ୍ଥାରେ ଏହି ସ୍ଥିତିରେ ଅନେକ ପରିବର୍ତ୍ତନ ଆସିପାରିଛି । ଅତୀତର ପରିବେଶ ଅପେକ୍ଷା ସାଂପ୍ରତିକ ପରିସ୍ଥିତିରେ ଜୀବନ ଅଧିକ ନିରାପଦପୂର୍ଣ୍ଣ ଓ ମର୍ଯ୍ୟାଦାପୂର୍ଣ୍ଣ ହେବାର ପରିବେଶ ରହିଥିଲେ ବି ସମାଜ ଦୁଃଖରହିତ ଓ ମନ୍ଦରହିତ ହୋଇପାରୁ ନାହିଁ ।

ଦୁଃଖ ସୁଖକର ଅନୁଭବର ପ୍ରତିକୂଳ । ଏକ ସୁଖକର ଅନୁଭବ ମୁହଁରେ ହସ, ଆନନ୍ଦ ଆଣିବା ବେଳେ ଏକ ଦୁଃଖର ଅନୁଭବ ମନକୁ ଆନ୍ଦୋଳିତ କରିଥାଏ ବା ଆଖିକୁ ଲୋତକପୂର୍ଣ୍ଣ କରିଥାଏ । ଜୀବନ ସହିତ ଏପରି ଅନେକ ଘଟଣା ସଂପୃକ୍ତ ଯାହା ମନକୁ ଭାରାକ୍ରାନ୍ତ କରିବା ସହ ଦୁଃଖର ଆବେଗ ଆଣିଥାଏ । ଦୁଃଖ ବିଭିନ୍ନ ସ୍ତରର ହୋଇପାରେ ବା ବିଭିନ୍ନ ପ୍ରକାରର ହୋଇପାରେ । ଏହା ବ୍ୟକ୍ତିର, ପରିବାରର ବା ବୃହତ୍ତର ଗୋଷ୍ଠୀର ହୋଇପାରେ । ଦୁଃଖ ଯନ୍ତ୍ରଣା ଏକ ଅସୁଖକର ମାନସିକ

ଅବସ୍ଥାର ସୂଚନା ଦିଏ । ଦୁଃଖ ଯେହେତୁ ଏକ ମାନସିକ ଅନୁଭବ, ସେ ଦୃଷ୍ଟିରୁ ସମସ୍ତ ଦୁଃଖ, ଯନ୍ତ୍ରଣା ସ୍ୱରୂପତଃ ମାନସିକ । ତେବେ ଦୁଃଖର କାରଣ ଶାରୀରିକ ବା ମାନସିକ ଘଟଣାରୁ ହୋଇପାରେ । ଅଭାବ, ଅନାଟନ ଯୋଗୁ ପେଟର ଜ୍ୱାଳା ସହୁଥିବା ମଣିଷ, ରୋଗ ଯନ୍ତ୍ରଣାର କଷ୍ଟ ଭୋଗୁଥିବା ରୋଗୀ ବା ଏକ ଦୁର୍ଘଟଣାରେ ଗୋଟିଏ ଗୋଡ ହରାଇଥିବା ବ୍ୟକ୍ତିଙ୍କର କଷ୍ଟ ଶାରୀରିକ କାରଣ ଜନିତ । ତେବେ ଏପରି ସ୍ଥିତି ନ ଥାଇ ମଧ୍ୟ କେତେକଙ୍କର ଦୁଃଖ ଅତ୍ୟନ୍ତ ମାନସିକ ସ୍ତରର ହୋଇପାରେ । ନିଜର ପ୍ରତିଭାବାନ ପୁତ୍ରର ଆକସ୍ମିକ ବିୟୋଗରେ ପିତା, ମାତାଙ୍କର ଦୁଃଖ, ସକଳ ପ୍ରାଚୁର୍ଯ୍ୟ ସତ୍ତ୍ୱେ ନିଜର ଶିକ୍ଷିତା କନ୍ୟାକୁ ବିବାହ କରାଇ ପାରୁନଥିବାରୁ ଦୁଃଖ ଓ ନିଜର ସମସ୍ତ ସାମର୍ଥ୍ୟ ସତ୍ତ୍ୱେ ସାମାଜିକ ବ୍ୟବସ୍ଥା ଯୋଗୁ ଅସମ୍ମାନିତ ହେଉଥିବା କାରଣ ଜନିତ ଦୁଃଖ ମାନସିକ ସ୍ତରର ଦୁଃଖ । ସମାଜର ସବୁସ୍ତରରେ ଅନ୍ୟାୟ, ଅବକ୍ଷୟ, ବୈଷମ୍ୟ ଯୋଗୁଁ ଜଣେ ସମାଜସେବୀଙ୍କର ଦୁଃଖ ମାନସିକ ସ୍ତରର । ସେ ବ୍ୟକ୍ତିଗତ ଭାବେ ପ୍ରତିକୂଳ ସ୍ଥିତିରେ ନଥିଲେ ମଧ୍ୟ ତାଙ୍କର ଆଦର୍ଶବୋଧ ତାଙ୍କୁ ଦୁଃଖକର ଅନୁଭବ ଦେଉଥାଏ । ପ୍ରତ୍ୟେକଟି ଦୁଃଖକର ଅନୁଭବ ଅପ୍ରୀତିକର ମାନସିକ ଅବସ୍ଥାର ସୂଚନା ଦିଏ, ଯଦି ବା ଏହାର କାରଣ ଶାରୀରିକ, ମାନସିକ ବା ଉଭୟ ଅବସ୍ଥାରୁ ଓ ଏପରିକି ଅବ୍ୟକ୍ତିକ କାରଣରୁ ଆସିଥାଏ ।

ଦୁଃଖ ବ୍ୟକ୍ତିର, ପରିବାରର ବା ଏକ ବୃହତ୍ତର ଜନଗୋଷ୍ଠୀର ହୋଇପାରେ । ବ୍ୟକ୍ତିଗତ ବା ପାରିବାରିକ ଦୁଃଖ, ଦୁର୍ଦ୍ଦଶାର କାହାଣୀ ପ୍ରତ୍ୟେକ ବ୍ୟକ୍ତିର ଅନୁଭବର ବିଷୟ । ସାଂପ୍ରଦାୟିକ ବା ଗୋଷ୍ଠୀଗତ ବିଦ୍ୱେଷ ରହିଥିବା ଏକ ସମାଜରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ବୃହତ୍ତର ବା ଶକ୍ତିଶାଳୀ ଗୋଷ୍ଠୀ ଦ୍ୱାରା ଶୋଷିତ ବା ଅତ୍ୟାଚାରିତ ହୋଇଥାଏ । ଜର୍ମାନୀରେ ଜିଉମାନେ, ଆମେରିକାରେ ନିଗ୍ରୋମାନେ ଓ ଭାରତବର୍ଷରେ ଦଳିତମାନେ କିପରି ଅସମ୍ମାନ ଓ ଅତ୍ୟାଚାରର ସମ୍ମୁଖୀନ ହୋଇଛନ୍ତି ତାହା ସୁବିଦିତ । ନିଜର ଜନ୍ମଗତ ସାମାଜିକ ପରିଚୟ ଗୋଟିଏ ଜନଗୋଷ୍ଠୀକୁ ନାନା ଅସମ୍ମାନର ସମ୍ମୁଖୀନ କରାଇବାର ନାନା ଦୃଷ୍ଟାନ୍ତ ଇତିହାସରେ ରହିଛି । ଜାତିଆଣ ମାନସିକତାର ପ୍ରାବଲ୍ୟ ଥିବା ଆମ ଦେଶର ସାମାଜିକ ପରିବେଶରେ ଦଳିତମାନେ ଅସ୍ପୃଶ୍ୟ ପରିଚୟ ନେଇ ଅସମ୍ମାନଜନକ ସ୍ଥିତିରେ ଯୁଗ ଯୁଗ ଧରି ଜୀବନ ବଞ୍ଚିବାକୁ ବାଧ୍ୟ ହୋଇଛନ୍ତି ।

ଜୀବନରେ ଯେତେ ଦୁଃଖ, ଯନ୍ତ୍ରଣା ରହିଛି ତାହାର ଉତ୍ସ ପ୍ରାକୃତିକ ବା ମାନବିକ ହୋଇପାରେ । ପ୍ରତ୍ୟେକ ବ୍ୟକ୍ତି ରୋଗ, ଶୋକର ଅନୁଭବ ସହିତ ମୃତ୍ୟୁର ସମ୍ମୁଖୀନ ହେବା ଏକ ସ୍ୱାଭାବିକ ପ୍ରକ୍ରିୟା । ଜୀବନ ସହ ମୃତ୍ୟୁ ଅଙ୍ଗାଙ୍ଗୀ ଭାବେ ଜଡିତ, ପ୍ରତ୍ୟେକ ଜନ୍ମିତ ପ୍ରାଣୀର ମୃତ୍ୟୁ ଅବଶ୍ୟମ୍ଭାବୀ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନ ଅବଧି ଭିତରେ ପ୍ରତ୍ୟେକ ବ୍ୟକ୍ତି ସୁଖ ଦୁଃଖର ଅନୁଭବ ଲାଭ କରିବା ଏକ ସ୍ୱାଭାବିକ ଧାରା । ତେବେ ସ୍ଥଳ ବିଶେଷରେ କେତେକ ଅସ୍ୱାଭାବିକ ପ୍ରାକୃତିକ ସ୍ଥିତି ମଣିଷର ସୁଖର ସଂସାରକୁ ଉଚ୍ଛନ୍ନ କରି ଦେଇଥାଏ । ବାତ୍ୟା, ଭୂକଂପ, ସୁନାମି, ମହାମାରୀ ପରି ପ୍ରାକୃତିକ ପରିବେଶ ଦ୍ୱାରା ମଣିଷର ସୁଖର ସଂସାର ଉଜୁଡିଯାଏ । ପ୍ରାକୃତିକ ଦୁର୍ବିପାକ କେବେ, କେଉଁଠି ଓ କିପରି ସୃଷ୍ଟି ହେବ ତାହା ମଣିଷର ନିୟନ୍ତ୍ରଣର ବହିର୍ଭୂତ ଅଟେ । ପ୍ରାକୃତିକ ଦୁର୍ବିପାକ ସୃଷ୍ଟି ହେଉଥିବା ଅଞ୍ଚଳରେ ମୃତ୍ୟୁର ତାଣ୍ଡବ ସୃଷ୍ଟି ହୁଏ ଓ ଭଲ ମନ୍ଦ ନିର୍ବିଶେଷରେ ସବୁ ମଣିଷ ଏହି ପରିସ୍ଥିତିର ଶରବ୍ୟ ହୋଇଥାନ୍ତି । ଏତଦ୍‌ବ୍ୟତୀତ ଆମ ସଂସାରରେ ଅନେକ ଦୁଃଖ ଯନ୍ତ୍ରଣା ମନୁଷ୍ୟକୃତ ଘଟଣାରୁ ଉଦ୍‌ଭବ ହୋଇଥାଏ । ବ୍ୟକ୍ତିସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ ମଣିଷ ହିଁ ମଣିଷର ଦୁଃଖର କାରଣ ହୋଇଥାଏ । ଯୁଦ୍ଧ, ସନ୍ତ୍ରାସବାଦ, ହିଂସା-ପ୍ରତିହିଂସା, ଅନ୍ୟ ପ୍ରତି ବିଦ୍ୱେଷର ମାନସିକତା, ଶୋଷଣ ଓ ଅତ୍ୟାଚାର ଜନିତ କାରଣରୁ ଅନେକ ମଣିଷ ଦୁଃଖରେ ଜର୍ଜରିତ ହୋଇଥାନ୍ତି । ମାନବିକ କ୍ରୂରତା ଅନେକ ଦୁଃଖର କାରଣ ହୋଇଆସିଛି । ଅଜ୍ଞତା ଓ ଅହେତୁକ ମାନସିକତା ଯୋଗୁ ସଂସ୍କାରିତ ଚେତନାର ମୁକ୍ତଚିନ୍ତକ ମାନଙ୍କୁ ନାନା ନିର୍ଯ୍ୟାତନା ଦିଆଯାଇଛି । ମୋଟ ଉପରେ ପ୍ରାକୃତିକ ଦୁର୍ବିପାକ ଓ ମାନବିକ କ୍ରୂରତା ଯୋଗୁ ସଂସାରରେ ଦୁଃଖ, ଯାତନାର ପରିବେଶ ସୃଷ୍ଟି ହୋଇଆସିଛି ।

ବୌଦ୍ଧଧର୍ମ ଓ ଜୈନଧର୍ମ ବ୍ୟତୀତ ପ୍ରତ୍ୟେକ ଧର୍ମରେ ଈଶ୍ୱର ଭାବନା ପ୍ରମୁଖ ସ୍ଥାନ ନେବା ଦେଖାଯାଏ । ଧର୍ମର ପରିଭାଷାରେ ବିଶ୍ୱାସ କରାଯାଏ ଯେ, ଈଶ୍ୱର ସବୁର ସ୍ରଷ୍ଟା । ସେ କେବଳ ସ୍ରଷ୍ଟା ନୁହନ୍ତି ସେ ସର୍ବଶକ୍ତିମାନ ଓ କରୁଣାମୟ । ବିଶ୍ୱରେ ଯାହା କିଛି ଘଟେ ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ହିଁ ହୁଏ । ଏହି ଧାର୍ମିକ ବିଶ୍ୱାସକୁ ଅନେକ ବ୍ୟକ୍ତି ନିଷ୍ଠାର ସହ ବିଶ୍ୱାସ କରନ୍ତି । ତେବେ ବିଚାରଶୀଳ ଅନୁଶୀଳନରେ ମଣିଷର ଦୁଃଖ ଓ ଈଶ୍ୱରଙ୍କ ସ୍ୱରୂପ ନେଇ କେତେକ ଜଟିଳ ପ୍ରଶ୍ନ

ଆସିଥାଏ । ମଣିଷର ଦୁଃଖ ପାଇଁ ଅନୁଭୂତିରୁ ଆମେ ତିନୋଟି କାରଣ ସାଧାରଣତଃ ଦେଇଥାଏ । ଜଣେ ବ୍ୟକ୍ତିର ଦୁଃଖ କ୍ଷେତ୍ରରେ ତାର ଭ୍ରମାତ୍ମକ କାର୍ଯ୍ୟ ବା ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତିକୁ ଦାୟୀ କରାଯାଏ । ଜଣେ ବ୍ୟକ୍ତିର ଦୁଃଖ ପାଇଁ ସେ ହୁଏତ କେତେକାଂଶରେ ଦାୟୀ, ତେବେ ଏପରି କେତେକ ଦୁଃଖ ଆସେ ଯେଉଁଥି ପାଇଁ ବ୍ୟକ୍ତିର କୌଣସି ଭୂମିକା ନଥାଏ । ତାର ଦୁଃଖର କାରଣ ପ୍ରାକୃତିକ ଘଟଣା ଯୋଗୁ ବେଳେବେଳେ ହୋଇଥାଏ । ପ୍ରାକୃତିକ ଦୁର୍ବିପାକ ତାର ଦୁଃଖର କାରଣ ହୋଇପାରେ । ସେହିପରି ଅନ୍ୟ ବ୍ୟକ୍ତିମାନଙ୍କ ଦ୍ୱାରା ନିୟନ୍ତ୍ରିତ ସାମାଜିକ ବ୍ୟବସ୍ଥା, ମାନବିକ ଅଜ୍ଞତା ବା କ୍ରୂରତା ଯୋଗୁ ଅନ୍ୟର ଦୁଃଖ ଆସିଥାଏ । ଶେଷୋକ୍ତ କାରଣ କ୍ଷେତ୍ରରେ ବ୍ୟକ୍ତି ବା ଗୋଷ୍ଠୀ ନିଜର ଦୁଃଖ ଦୁର୍ଦ୍ଦଶା ପାଇଁ ଦାୟୀ ନଥାନ୍ତି, ତଥାପି ସେମାନଙ୍କ ଉପରେ ଦୁଃଖ ଯନ୍ତ୍ରଣାର ପାହାଡ ମାଡିବସେ । ଏହି ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସଂପର୍କରେ ପ୍ରଶ୍ନ ଉଠେ, ଯଦି ଈଶ୍ୱର କରୁଣାମୟ, ତେବେ ମଣିଷର ଅପ୍ରମିତ ଦୁଃଖ ଦୁର୍ଦ୍ଦଶାରେ ଈଶ୍ୱର କାହିଁକି ସେହି ଦୁଃଖକୁ ଦୂର କରନ୍ତି ନାହିଁ । ସବୁ ଯୁଗରେ ସଂସାରରେ ଅପରିସୀମ ଦୁଃଖ ଯାତନା ରହିଛି ତେଣୁ ଈଶ୍ୱର ହୁଏତ ସର୍ବଶକ୍ତିମାନ ନୁହନ୍ତି କିମ୍ବା ସେ କରୁଣାମୟ ନୁହନ୍ତି । ଏହିପରି ଏକ ପ୍ରଶ୍ନ ବିଶିଷ୍ଟ ଦାର୍ଶନିକ ଡାଭିଓ ହ୍ୟୁମ୍ (୧୭୧୧-୧୭୭୬) ଉଠାଇଥିଲେ । ତାଙ୍କର ଯୁକ୍ତି ଥିଲା-

ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ ମଣିଷର ଅବାଂଛିତ ଦୁଃଖକୁ ନିୟନ୍ତ୍ରଣ କରିପାରନ୍ତେ ।

ଯଦି ଈଶ୍ୱର କରୁଣାମୟ ସେ ମଣିଷର ଦୁଃଖକୁ ଲାଘବ କରିପାରନ୍ତେ ।

କିନ୍ତୁ ମଣିଷ ସମାଜରେ(ବ୍ୟକ୍ତିର ହେଉ ବା ଗୋଷ୍ଠୀର ହେଉ) ଅନେକ ଅବାଂଛିତ ଦୁଃଖ ଘଟି ଆସିଛି । ସୁତରାଂ, ଈଶ୍ୱର (ଯଦି ବି ତାଙ୍କର ଅସ୍ତିତ୍ୱକୁ ବିଶ୍ୱାସ କରାଯାଏ)ସର୍ବଶକ୍ତିମାନ ନୁହନ୍ତି କିମ୍ବା କରୁଣାମୟ ନୁହନ୍ତି ।

ଏହି ଯୁକ୍ତି ପୃଷ୍ଠଭୂମିରେ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ସଂସାରରେ ଦୁଃଖ ଯନ୍ତ୍ରଣାକୁ କିପରି ବ୍ୟାଖ୍ୟା କରାଯିବ ? ହ୍ୟୁମଙ୍କ ଏହି ଯୁକ୍ତିଗତ ପ୍ରଶ୍ନ ପୂର୍ବରୁ କେତେକଙ୍କ ମନରେ ଏହି ସନ୍ଦେହ ସୃଷ୍ଟି ହୋଇଛି । ମଣିଷର ଦୁଃଖ, ଯନ୍ତ୍ରଣା, କ୍ରୂରତା ସହ ଈଶ୍ୱରୀୟ ବ୍ୟବସ୍ଥାକୁ କିପରି ସଂଯୋଜିତ କରାଯାଇପାରିବ ? ଈଶ୍ୱରୀୟ ବିଶ୍ୱାସ ନାନା ପ୍ରକାରର ହୋଇଥିଲେ ବି ସକଳ ଈଶ୍ୱର ବିଶ୍ୱାସୀ ଈଶ୍ୱର ଯେ ସର୍ବଶକ୍ତିମାନ ଓ

କରୁଣାମୟ ଏହା ଗ୍ରହଣ କରନ୍ତି । ସେହି ପ୍ରସଙ୍ଗ ପୃଷ୍ଠଭୂମିରେ ଈଶ୍ୱର ଓ ବ୍ୟକ୍ତିର ଦୁଃଖକୁ କିପରି ସମନ୍ୱିତ କରାଯିବ ? ଧାର୍ମିକ ବିଶ୍ୱାସ ଆଧାରରେ କେତେକ ସମାଧାନର ଆଲୋଚନା କରିବା ଏଠାରେ ଆମର ଲକ୍ଷ୍ୟ ।

ଏଠାରେ ତିନୋଟି ପ୍ରମୁଖ ଧର୍ମର ବିଶ୍ୱାସକୁ ନିଆଯାଉ, ଯଥା ହିନ୍ଦୁଧର୍ମ, ଇଶଲାମ୍ ଓ ଖ୍ରୀଷ୍ଟଧର୍ମ । ଏହି ପ୍ରତ୍ୟେକ ଧର୍ମ ଈଶ୍ୱରଙ୍କ ଅସ୍ତିତ୍ୱକୁ ପ୍ରାଧାନ୍ୟ ଦିଏ ଓ ଈଶ୍ୱର ଯେ ସର୍ବଶକ୍ତିମାନ ଓ କରୁଣାମୟ ଏହା ମଧ ସ୍ୱୀକାର କରେ । ହିନ୍ଦୁଧର୍ମ ବହୁ ବିଶ୍ୱାସ ଓ ନାନା ସାଂସ୍କୃତିକ ଧାରାର ଏକ ଧର୍ମ । ଏହି ଧର୍ମର ଏକ ନିର୍ଦ୍ଦିଷ୍ଟ ରୂପରେଖ ନାହିଁ, ଏହାର କେହି ଆଦି ପ୍ରବର୍ତ୍ତକ ନାହାନ୍ତି । କୌଣସି ନିର୍ଦ୍ଦିଷ୍ଟ ଧର୍ମଗ୍ରନ୍ଥ ହିନ୍ଦୁମାନଙ୍କର ନାହିଁ । ସୁତରାଂ ଏକ ସୁବ୍ୟବସ୍ଥିତ ମାର୍ଗ ହିନ୍ଦୁ ଧର୍ମରେ ଦେଖିବାକୁ ମିଳେ ନାହିଁ । ଶୈବବାଦ, ଶାକ୍ତବାଦ, ପିତୁଳା ପୂଜକ, ଅପୌତଳିକ, ଏକେଶ୍ୱରବାଦୀ, ବହୁଇଶ୍ୱରବାଦୀ ଏପରି ଅନେକ ପରସ୍ପର ବିରୋଧୀ ଗୋଷ୍ଠୀ ହିନ୍ଦୁଧର୍ମ ଧାରାରେ ରହିଛନ୍ତି । ବସ୍ତୁତଃ ଏପରି କୌଣସି ନିର୍ଦ୍ଦିଷ୍ଟ ଧରାବନ୍ଧା ମାର୍ଗ, ପନ୍ଥା ବା ବିଶ୍ୱାସ ନାହିଁ ଯାହାକୁ ସମସ୍ତ ହିନ୍ଦୁ ଅବଲମ୍ବନ କରନ୍ତି । ଏପରିକି ହିନ୍ଦୁଧର୍ମର ସ୍ୱନାମ ମଧ ନଥିଲା, ବହୁ ପରେ ଏହି ଧର୍ମକୁ ଗବେଷକମାନେ ହିନ୍ଦୁ ଆଖ୍ୟା ଦେଇଛନ୍ତି । ଏକଦା ଏହାକୁ ବୈଦିକ ଧର୍ମ କୁହାଯାଉଥିଲା । କେତେକ ଏହାକୁ ସନାତନ ଧର୍ମ କହନ୍ତି । ଅନ୍ୟମାନେ ବ୍ରାହ୍ମଣବାଦର ଆଧିପତ୍ୟ ଯୋଗୁ ଏହାକୁ ବ୍ରାହ୍ମଣଧର୍ମ ବୋଲି ଅଭିହିତ କରିଛନ୍ତି । କେହି ସଂସ୍କାରକଙ୍କ ବିଚାର ପୃଷ୍ଠଭୂମିରେ ଏହାକୁ ଆର୍ଯ୍ୟଧର୍ମ କୁହାଯାଏ । ସଂପ୍ରତି ଯାହା ହିନ୍ଦୁଧର୍ମ ଭାବରେ ସୂଚିତ ହେଉଛି ତାହା ଏହିପରି ପରିବର୍ତ୍ତନ ଦେଇ ବିକଶିତ ହୋଇଛି । ହିନ୍ଦୁଧର୍ମରେ ଦୁଃଖ, ଅନ୍ୟାୟ, ଜରା, ବ୍ୟାଧି, ପ୍ରାକୃତିକ ବିପର୍ଯ୍ୟୟ, ସମାଜରେ ଥିବା ନିଷ୍ଠୁରତା, ବିଭୀଷିକା, ହତ୍ୟା, ହିଂସା ଇତ୍ୟାଦି ସକଳ ଅଶୁଭ ବା ଇଭିଲକୁ ବୁଝାଇବାକୁ ସେପରି ସ୍ୱଷ୍ଟ ସିଦ୍ଧାନ୍ତ ନାହିଁ । ତେବେ ଜନ୍ମାନ୍ତରବାଦ ଓ କର୍ମସିଦ୍ଧାନ୍ତ ହିନ୍ଦୁଧର୍ମର ଦୁଇଟି ମୌଳିକ ବିଶ୍ୱାସ । ପ୍ରତ୍ୟେକ ପ୍ରାଣୀର ଏକ ଆତ୍ମା ଅଛି, ଆତ୍ମା ଅମର ଓ ଜନ୍ମ-ମୃତ୍ୟୁର ଚକ୍ରରେ ଏହା ମୁକ୍ତି ପାଇବା ପର୍ଯ୍ୟନ୍ତ ଘୂରିବାକୁ ବାଧ୍ୟ । ତେବେ ଆତ୍ମାର ସ୍ୱରୂପ କଣ ଓ ମୁକ୍ତି କେବେ ଓ କିପରି ମିଳେ ତାହାର ବି ସର୍ବସମ୍ମତ ଉତ୍ତର ହିନ୍ଦୁ ଧର୍ମଦର୍ଶନରେ ଦେଖିବାକୁ ମିଳେନାହିଁ । ଆତ୍ମା ଓ ମୁକ୍ତିର ସ୍ୱରୂପ ନେଇ ହିନ୍ଦୁ ଧର୍ମଧାରାରେ ଭିନ୍ନଭିନ୍ନ ମତ ଓ ଏପରିକି ପରସ୍ପର ବିରୋଧୀ

ବିଶ୍ୱାସର ଅବତାରଣା କରାଯାଇଛି । ସେ ଯାହାହେଉ ନା କାହିଁକି, ଅନେକାଂଶରେ ହିନ୍ଦୁ ଧର୍ମରେ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିର ସୁଖ ଦୁଃଖ ତାର ପୂର୍ବକର୍ମର ଫଳ, ପ୍ରାରବ୍ଧର ପରିଣାମ । କର୍ମର ଫଳ କିପରି ସଞ୍ଚିତ ହୋଇ ରହେ, କେତେ ବ୍ୟବଧାନରେ କର୍ତ୍ତାକୁ ସ୍ୱତଃ ମିଳେ ବା କେହି ପ୍ରଦାନ କରେ ଏସବୁ ପ୍ରଶ୍ନର ସେପରି ସନ୍ତୋଷଜନକ ବ୍ୟାଖ୍ୟା ଦିଆଯାଇପାରେ ନାହିଁ । ପୁନଶ୍ଚ ସବୁ ଆତ୍ମାମାନଙ୍କୁ ଯଦି ଈଶ୍ୱର ସୃଷ୍ଟି କଲେ, ତେବେ ଆତ୍ମାମାନେ କାହିଁକି ପୃଥକ ହୋଇ ଭଲ-ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେଲେ ତାହା ବି ଅସ୍ପଷ୍ଟ ହୋଇ ରହେ । ହୁଏତ ସବୁ ଆତ୍ମାମାନଙ୍କୁ ଈଶ୍ୱର ସମାନ କରି ସୃଷ୍ଟି କରିନାହାନ୍ତି ବା ସମାନ ପରିବେଶରେ ଜନ୍ମ ଦେଇନାହାନ୍ତି, ଫଳରେ କେତେକ ଭଲ ହୋଇଛନ୍ତି ଓ ଅନ୍ୟ କେତେକ ମନ୍ଦ ହୋଇଛନ୍ତି । ଫଳତଃ ସିଦ୍ଧାନ୍ତ ଆସିବ ଯେ ଈଶ୍ୱରଙ୍କ ବୈଷମ୍ୟପୂର୍ଣ୍ଣ ସୃଷ୍ଟି ଯୋଗୁ ଭିନ୍ନ ଭିନ୍ନ ଆତ୍ମା ସେମାନଙ୍କର ଅନ୍ତର୍ନିହିତ ପାର୍ଥକ୍ୟ ଯୋଗୁ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହେଉଛନ୍ତି । ଆତ୍ମା, ଆତ୍ମାର ଅମରତ୍ୱ, କର୍ମବାଦ, ଜନ୍ମାନ୍ତରବାଦ ଆଦି ଭାବନା ସକଳ ହିନ୍ଦୁଧର୍ମର ମୌଳିକ ପ୍ରସଙ୍ଗ ହେଲେ ବି ମଣିଷର ଦୁଃଖ ଦୁର୍ଦ୍ଦଶାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ସେପରି ଅର୍ଥପୂର୍ଣ୍ଣ ସିଦ୍ଧାନ୍ତ ନୁହନ୍ତି । ଏତଦ୍‌ବ୍ୟତୀତ ଏହିସବୁ ସିଦ୍ଧାନ୍ତର ଅନ୍ୟାନ୍ୟ ଅନେକ ଜଟିଳତା ରହିଛି ଯାହାର ଏଠାରେ ଆଲୋଚନା ପ୍ରାସଙ୍ଗିକ ନୁହେଁ । ଏଥିରୁ ଉଦ୍ଭବ ପୂର୍ବନିର୍ଦ୍ଦିଷ୍ଟବାଦ, ଭାଗ୍ୟବାଦ, ସାମାଜିକ ବୈଷମ୍ୟ ଓ ମାନବିକ ଦୁଃଖ ଦୁର୍ଦ୍ଦଶା ପ୍ରତି ଏକ ସ୍ପର୍ଶକାତରଶୂନ୍ୟ ମନୋଭାବ ସୃଷ୍ଟି କରିବା କ୍ଷେତ୍ରରେ ସାହାଯ୍ୟ କରିଛି ଯାହାର ପରିଣାମ ସ୍ୱରୂପ ଭାରତୀୟ ସମାଜ ଅବହେଳିତ ହୋଇ ରହିଆସିଛି ।

ଇଶ୍‌ଲାମ ଧର୍ମର ପ୍ରବର୍ତ୍ତକ ହେଲେ ମହମ୍ମଦ (୫୭୦- ୬୩୨ ଖ୍ରୀଷ୍ଟାବ୍ଦ) ଯାହାଙ୍କର ଜନ୍ମ ଆରବର ମକ୍‌କାଠାରେ । ଇସ୍‌ଲାମର ଅର୍ଥ ହେଲା ଆଲ୍ଲା(ଈଶ୍ୱର)ଙ୍କ ପାଖରେ ପୂର୍ଣ୍ଣ ଶରଣାଗତ ହେବା । ଏହି ଧର୍ମର ବିଶ୍ୱାସାନୁଯାୟୀ ମହମ୍ମଦ ହେଉଛନ୍ତି ଆଲ୍ଲାଙ୍କର ଦୂତ । ଏହା ଏକ ଏକେଶ୍ୱରବାଦୀ ଧର୍ମ । ବହୁ ଦେବାଦେବୀ, ପିତୁଳା ପୂଜା, କର୍ମକାଣ୍ଡ ଇତ୍ୟାଦିକୁ ଏହି ଧର୍ମରେ ସ୍ୱୀକାର କରାଯାଏ ନାହିଁ । ଆଲ୍ଲା ଦେବଦୂତ ଗାବ୍ରିଏଲଙ୍କ ମାଧ୍ୟମରେ ମହମ୍ମଦଙ୍କୁ ଯେଉଁ ବାର୍ତ୍ତା ଦେଲେ ତାହା ଜନମାନସରେ ମହମ୍ମଦ ପ୍ରସାର କରିଛନ୍ତି ଓ ତାହା ଧର୍ମଗ୍ରନ୍ଥ କୋରାନରେ ଲିପିବଦ୍ଧ ହୋଇଛି । ପବିତ୍ରତା, ବିଶ୍ୱଭ୍ରାତୃତ୍ୱ ଏହି ଧର୍ମର ବାର୍ତ୍ତା । ତେବେ ଆଲ୍ଲାଙ୍କୁ ସ୍ୱୀକାର କରୁନଥିବା ବ୍ୟକ୍ତିଙ୍କ ପ୍ରତି ଜିହାଦର ଭାବନା ମଧ୍ୟ ଏହି ଧର୍ମର ପରଂପରାରେ ଦେଖିବାକୁ ମିଳେ ।

ଇଶ୍ଲାମ ଧର୍ମରେ ପ୍ରତ୍ୟେକ ମନୁଷ୍ୟର ଆତ୍ମା ରହିଛି, ଯାହା ବ୍ୟକ୍ତିର ମୃତ୍ୟୁ ପରେ ମଧ୍ୟ ରହେ, ତେବେ ଏହି ଧର୍ମରେ ଜନ୍ମଜନ୍ମାନ୍ତରବାଦ୍ ଭାବନା ନାହିଁ । ଆଲ୍ଲାଙ୍କ ପାଖରେ ସମର୍ପିତ ହେବା ଓ ତାଙ୍କର କରୁଣା କାମନା କରିବା ବ୍ୟକ୍ତିର ମୁଖ୍ୟ କର୍ତ୍ତବ୍ୟ । ତେବେ ମଣିଷ ସମାଜରେ ଏତେ ଦୁଃଖ, ଦୁର୍ଦ୍ଦଶା, ରୋଗ, ବ୍ୟାଧି, ପ୍ରାକୃତିକ ବିପର୍ଯ୍ୟୟ, ହିଂସା କାହିଁକି ଘଟେ ? ସବୁକିଛି ଯଦି ଆଲ୍ଲାଙ୍କ ଦ୍ୱାରା ନିୟନ୍ତିତ ଓ ଆଲ୍ଲା ସର୍ବଶକ୍ତିମାନ, ତେବେ ମଣିଷ ସମାଜରେ ଏତେ ଦୁଃଖ, ଦୁର୍ଦ୍ଦଶା ଓ ବୈଷମ୍ୟ କାହିଁକି ରହିଛି ? ଆଲ୍ଲା କାହିଁକି ଏକ ଦୁଃଖ ରହିତ ପ୍ରୀତିପୂର୍ଣ୍ଣ ବିଶ୍ୱ ଗଠନ କଲେନାହିଁ ! ପ୍ରତ୍ୟେକ ବ୍ୟକ୍ତି ସୁକର୍ମ କରିବାକୁ ଓ କୌଣସି ନିଷ୍ଠୁରତା ପ୍ରଦର୍ଶନ ନକରିବାକୁ ଆଲ୍ଲା କାହିଁକି ମଣିଷକୁ ଏକ ମହତ ହୃଦୟର ଅଧିକାରୀ କଲେ ନାହିଁ । ଇଶ୍ଲାମର ବିଶ୍ୱାସ ଅନୁଯାୟୀ ସଂସାରର ସବୁକିଛି ଘଟଣା ଦିବ୍ୟ ଯୋଜନାନୁଯାୟୀ ହୁଏ । ତେବେ ସଂସାରରେ ଏତେ ଦୁଃଖ ଦୁର୍ଦ୍ଦଶା କାହିଁକି ରହିଛି ବା ଏତେ ପ୍ରାକୃତିକ ବିପର୍ଯ୍ୟୟ କାହିଁକି ଘଟେ, ଏପରି ପ୍ରଶ୍ନ ପଚାରିବା ସଂଗତ ନୁହେଁ । ଈଶ୍ୱରୀୟ ବିଧାନ ରହସ୍ୟମୟ, ତାକୁ ପ୍ରଶ୍ନ କରିବା ବା ସନ୍ଦେହ କରିବା ଅଧାର୍ମିକ କାର୍ଯ୍ୟ । ତେବେ ଇଶ୍ଲାମରେ ବିଶ୍ୱାସ ରହିଛି ଯେ, ଯେ ମନ୍ଦ କାର୍ଯ୍ୟକରେ ସେ ଦୁଃଖ ପାଏ । ଆଲ୍ଲାଙ୍କ ପାଖରେ ବ୍ୟକ୍ତିର ବିଶ୍ୱାସକୁ ପରୀକ୍ଷା କରିବାକୁ ସେ ଦୁଃଖ ଦେଇଥାନ୍ତି । ଦୁଃଖ ଭୋଗ କରୁଥିବା ବ୍ୟକ୍ତି ବିଶ୍ୱାସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ସ୍ୱର୍ଗକୁ ଯାଏ । ତେବେ ଇଶ୍ଲାମରେ ଇବ୍ଲିସ ନାମକ ଏକ ମନ୍ଦ ଦେବଦୂତ(ଡେଭିଲ-devil) ର ବର୍ଣ୍ଣନା ରହିଛି, ଯିଏ ମନୁଷ୍ୟମାନଙ୍କୁ ମନ୍ଦ କାର୍ଯ୍ୟ କରିବାକୁ ଓ ଖରାପ ବାଟରେ ଯିବାକୁ ପ୍ରେରଣା ଦିଏ । ଏହି ମନ୍ଦ ଆତ୍ମା ଯୋଗୁ ସଂସାରରେ ଏତେ ଦୁଃଖ ଘଟୁଛି । ତେବେ ପ୍ରଶ୍ନ ହେବ ଆଲ୍ଲା ଯଦି ସର୍ବଶକ୍ତିମାନ ସେ କାହିଁକି ଇବ୍ଲିସ ପରି ଡେଭିଲମାନଙ୍କୁ ନଷ୍ଟ କରୁ ନାହାନ୍ତି ? ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଇଶ୍ଲାମରେ ମିଳେ ନାହିଁ । ଇଶ୍ଲାମରେ ସ୍ୱର୍ଗ ଓ ନରକର ଭାବନା ରହିଛି । ଅନ୍ତିମ ଦିବସ ପରେ ବିଚାର ଦିବସ ଆସିବ । କବରମାନଙ୍କରୁ ଶବମାନେ ଉଠିବେ, ସେମାନଙ୍କର ଆତ୍ମାମାନେ ସେମାନଙ୍କ ସହ ମିଳିତ ହେବେ । ଦେବଦୂତମାନେ ପୁନର୍ମିଳିତ ମନୁଷ୍ୟମାନଙ୍କୁ ନେଇ ଆଲ୍ଲାଙ୍କ ପାଖରେ ଉପସ୍ଥିତ କରାଇବେ । ସେ ବ୍ୟକ୍ତିମାନଙ୍କର ପାପ-ପୁଣ୍ୟ ବିଚାର କରି ସେମାନଙ୍କୁ ସ୍ୱର୍ଗ ବା ନରକକୁ ପଠାଇବେ । ଏସବୁ ଯୋଜନା ଈଶ୍ୱରକୃତ, ସବୁ ଦୁଃଖ ଯନ୍ତ୍ରଣା ଆମର ପରୀକ୍ଷା ମାତ୍ର, ଏସବୁକୁ ପ୍ରଶ୍ନ କରିବା ଅଧାର୍ମିକ ଓ ଈଶ୍ୱର-ବିରୋଧୀ କାର୍ଯ୍ୟ ।

ଖ୍ରୀଷ୍ଟଧର୍ମ ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ପ୍ରଚାରିତ ଏକ ଧର୍ମ । ଏହାର ଆଦି-ପ୍ରବର୍ତ୍ତକ ଯୀଶୁଖ୍ରୀଷ୍ଟ ଇହୁଦୀ ଧର୍ମାବଲମ୍ବୀ ଥାଇ ସେହି ଧର୍ମରେ ଯେଉଁ ସଂସ୍କାର ଆଣିଲେ ତାହା ପରେ ଏକ ସ୍ୱତନ୍ତ୍ର ଧର୍ମଭାବେ ପ୍ରସାର ଲାଭକଲା । ଏହି ଧର୍ମ ଏକେଶ୍ୱରବାଦରେ ବିଶ୍ୱାସ କରେ । ଈଶ୍ୱର ଏକ, ସେ ସର୍ବଶକ୍ତିମାନ, ସର୍ବଦ୍ରଷ୍ଟା ଓ କରୁଣାମୟ । ସେ ଜଗତକୁ ଶୂନ୍ୟରୁ ସୃଷ୍ଟି କରିଛନ୍ତି । ଈଶ୍ୱର ନିତ୍ୟ, ଅସୀମ ଯଦିବା ତାଙ୍କର ବ୍ୟକ୍ତିସତ୍ତା ରହିଛି । ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିଛନ୍ତି । ଜଗତକୁ ଓ ଜଗତର ସବୁ କିଛିକୁ ଈଶ୍ୱର ସୃଷ୍ଟି କରିସାରିବା ପରେ ଷଷ୍ଠ ଦିନରେ ସେ ପ୍ରଥମ ମନୁଷ୍ୟ ଆଦାମକୁ ସୃଷ୍ଟି କଲେ । ବହୁ ଦିନ ପରେ ଆଦାମକୁ ସେ ସୁସୁପ୍ତିରେ ରଖି ତାହାର ଛାତିରୁ ଏକ ହାଡ ନେଇ ଇଭ୍ ନାମକ ଏକ ନାରୀ ସୃଷ୍ଟି କଲେ । ଈଶ୍ୱର ଏକ ଉଦ୍ୟାନ ସ୍ୱର୍ଗରେ ସୃଷ୍ଟି କରି ଆଦାମ ଓ ଇଭ୍‌କୁ ସେହି ଉଦ୍ୟାନ ଇଡେନରେ ବିଚରଣ କରିବାକୁ କହିଲେ । ତେବେ ଗୋଟିଏ ବୃକ୍ଷର(ଭଲ-ମନ୍ଦ ଜ୍ଞାନର ବୃକ୍ଷ) ଫଳ ନଖାଇବାକୁ ସେମାନଙ୍କୁ କହିଥିଲେ । ଉଦ୍ୟାନରେ ବୁଲୁବୁଲୁ ସତାନ ନାମକ ଆଂଜେଲ ଜ୍ଞାନ ବୃକ୍ଷର ଫଳ ଖଇବାକୁ ଇଭ୍‌କୁ ପ୍ରଲୁବ୍ଧ କଲା । ଇବ୍ ନିଷିଧ ବୃକ୍ଷର ଫଳ ତୋଳି ଖାଇଲେ ଓ ଏହା ଖାଇବାକୁ ଆଦାମକୁ ପ୍ରରୋଚିତ କଲେ । ସେମାନେ ଏହା ଖାଇବା ପରେ ସେମାନଙ୍କ ପାଖରେ ମାନବିକ ପ୍ରବୃତ୍ତି ଦେଖାଦେଲା । ଈଶ୍ୱରଙ୍କ ବାଣୀକୁ ଅବମାନନା କରିଥିବା ଯୋଗୁ ସେମାନେ ଦୁଃଖପୂର୍ଣ୍ଣ ଜୀବନଯାପନ କରିବାକୁ ଅଭିଶପ୍ତ ହେଲେ । ଏହାକୁ ମନୁଷ୍ୟର ମୂଳ-ପାପ କୁହାଯାଏ । ଆଦିପୁରୁଷ ଓ ଆଦିନାରୀ କରିଥିବା ମୂଳପାପ ଯୋଗୁ ମଣିଷ ଜାତି ଶାଶ୍ୱତ ସୁଖରୁ ବଞ୍ଚିତ ହେଲେ । ମଣିଷ ସମାଜର ଦୁଃଖ ଦୁର୍ଦ୍ଦଶା ଏହି ମୂଳ ପାପ ଯୋଗୁ ହେଉଛି । ପ୍ରତ୍ୟେକ ମଣିଷ ପାପୀ ଓ ପ୍ରତ୍ୟେକ ଲୋକ କିଛି ମନ୍ଦ ଗୁଣର ଅଧିକାରୀ । ଏଥିପାଇଁ ପୁରୁଷାନୁକ୍ରମେ ମଣିଷ ଦୁଃଖ ଭୋଗ କରୁଛି । ମଣିଷକୁ ତ୍ରାଣ କରିବାକୁ କରୁଣାମୟ ଈଶ୍ୱର ନିଜ ପୁତ୍ର ଯୀଶୁଙ୍କୁ ପୃଥିବୀକୁ ପଠାଇଥିଲେ । ଯୀଶୁ ଯେଉଁ ପବିତ୍ର ଜୀବନର ପନ୍ଥା ଦେଖାଇଛନ୍ତି ସେହି ପନ୍ଥାକୁ ଅନୁସରଣ କଲେ ବ୍ୟକ୍ତି ମୁକ୍ତି ପାଇବ ଓ ତାର ଆତ୍ମା ସ୍ୱର୍ଗରେ ଈଶ୍ୱରଙ୍କ ସାନ୍ନିଧ ପାଇ ଶାନ୍ତିରେ ରହିପାରିବ । ଈଶ୍ୱରଙ୍କୁ ପ୍ରେମ କରି, ମନୁଷ୍ୟ ସମାଜର ସେବା କଲେ ଓ ଯୀଶୁଙ୍କ ପାଖରେ ଶରଣାପନ୍ନ ହେଲେ ମୁକ୍ତି ମିଳିବ । ଏହି ଧର୍ମରେ ଆତ୍ମା ଅମର ବୋଲି ବିଶ୍ୱାସ କରାଯାଏ, କିନ୍ତୁ ପୁନର୍ଜନ୍ମବାଦରେ ଏହା ବିଶ୍ୱାସ କରେ ନାହିଁ । ବିଶ୍ୱର ଅନ୍ତିମ ଦିବସରେ ଆତ୍ମାମାନେ ଶରୀର ସହ କବରରୁ ଉଠିବେ । ସେମାନଙ୍କର

ପାପ-ପୁଣ୍ୟର ବିଚାର କରାଯିବ ଓ ପବିତ୍ର ଆତ୍ମାମାନଙ୍କୁ ଅନନ୍ତକାଳ ପାଇଁ ସ୍ୱର୍ଗକୁ ପଠାଯିବ ଓ ପାପ ଆତ୍ମାମାନଙ୍କୁ ଅନନ୍ତକାଳ ପାଇଁ ନରକକୁ ପଠାଯିବ । ଖ୍ରୀଷ୍ଟଧର୍ମର ବିଶ୍ୱାସ ଅନୁଯାୟୀ ସଂସାରରେ ଯେତେ ଦୁଃଖ ଯନ୍ତ୍ରଣା ରହିଛି ତାହା ମୂଳ ପାପ ଯୋଗୁଁ ହିଁ ରହିଛି । ତେବେ ଜନ୍ମରୁ ମଣିଷ-ମଣିଷ ଭିତରେ କାହିଁକି ଏତେ ବୈଷମ୍ୟ ରହିଛି, କିଏ ଭଲ ପରିବାରରେ ଜନ୍ମ ହେଉଛି ତ କିଏ ଦୁଃସ୍ଥ ପରିବାରରେ ଜନ୍ମ ହେଉଛି, କିଏ ସୁସ୍ଥ ହୋଇ ଜନ୍ମ ହେଉଛି ତ କିଏ ବିକଳାଙ୍ଗ ହୋଇ ଜନ୍ମ ହେଉଛି- ଏହି ପ୍ରଶ୍ନର କୌଣସି ସନ୍ତୋଷଜନକ ବ୍ୟାଖ୍ୟା ଖ୍ରୀଷ୍ଟଧର୍ମରେ ନାହିଁ । ଈଶ୍ୱର କାହାକୁ କେଉଁ ସ୍ଥିତିରେ ଜନ୍ମ ଦେଇ ତାର ପରୀକ୍ଷା ନିଅନ୍ତି ତାହା ଆମ ଚିନ୍ତାର ବହିର୍ଭୂତ ।

ଏହି ତିନୋଟି ଧର୍ମ(ହିନ୍ଦୁଧର୍ମ, ଇଶ୍‌ଲାମ, ଖ୍ରୀଷ୍ଟଧର୍ମ) ଯେଉଁ ଯୁଗରେ ଚିନ୍ତା ରାଜ୍ୟରେ ଏକଏକ ସାଂସ୍କୃତିକ ଆଲୋଡ଼ନ ଭାବେ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା, ସେ ସମୟରେ ମଣିଷର ବୌଦ୍ଧିକ ସ୍ତର ଅତି ସୀମିତ ରହିଥିଲା । ଜୀବନର ଘନଘଟା, ପ୍ରାକୃତିକ ଘଟଣାବଳୀ ଓ ପ୍ରକୃତିର ବିଶାଳତା ତଥା ଜଟିଳତାକୁ ବିଚାରଶୀଳ ଓ ବିଜ୍ଞାନ ସମ୍ମତ ଧାରାରେ ବୁଝିବାର ସାମର୍ଥ୍ୟ ମଣିଷର ନଥିଲା । ସେହି ସମୟରେ ଜୀବନର ଦୁଃଖ, ଦୁର୍ଦ୍ଦଶାକୁ ବୁଝିବାକୁ ଧର୍ମ ପରଂପରାରେ ଈଶ୍ୱରକୈନ୍ଦ୍ରିକ ବିଚାର ଆଧାରରେ କିଛି କିଛି କଳ୍ପନା ସୃଷ୍ଟି ହୋଇଥିଲା । ସେହି କଳ୍ପନା ଆଧାରରେ ଦୁଃଖ ଯନ୍ତ୍ରଣା ଓ ପ୍ରାକୃତିକ ବିପର୍ଯ୍ୟୟକୁ ଦୈବୀ ଦଣ୍ଡ ବୋଲି ଗ୍ରହଣ କରାଯାଇଥିଲା । ଧର୍ମ ଯେଉଁ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡ଼ନ ସୃଷ୍ଟି କରିଥିଲା, ତାହାର ପରିସୀମା ଭିତରେ ଦୁଃଖ ବା ମନ୍ଦର ଏକ ଏକ ବୋଧଗମ୍ୟ ବ୍ୟାଖ୍ୟା ବିଭିନ୍ନ ପରଂପରାରେ ଗ୍ରହଣ କରାଯାଇଥିଲା । ଧାର୍ମିକ ବିଶ୍ୱାସ, ଈଶ୍ୱରଙ୍କ ପ୍ରତି ସମର୍ପିତ ଜୀବନ ଓ କିଛି ନୀତିବୋଧ ମହତ୍ତର ଜୀବନର ମାନଦଣ୍ଡ ଥିଲା । ଈଶ୍ୱର ହିଁ ଆମର ରକ୍ଷକ ଓ ଉଦ୍ଧାରକ ଏହି ଭାବନା ଧର୍ମର ମୂଳମନ୍ତ୍ର ଥିଲା । ମାନବିକ ପ୍ରୟାସ ଦ୍ୱାରା ଜୀବନରୁ ଅନେକ ଦୁଃଖ ଯନ୍ତ୍ରଣା ଦୂର ହୋଇପାରିବ- ଏହି ବିଚାରବୋଧର ଭିତ୍ତି ଦୃଢ଼ ହୋଇନଥିଲା । "ସବୁକିଛି ଈଶ୍ୱରକୃତ, ଯାହା କରିବେ ସାଇଁ, ତାହା କାହାରି ମନରେ ନାହିଁ" ଏହି ପ୍ରକାରର ଜୀବନଦୃଷ୍ଟି ଧାର୍ମିକ ଜୀବନଦୃଷ୍ଟିର ମୂଳତତ୍ତ୍ୱ ଥିଲା । ବହୁ ପରେ ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ଏସବୁ ଗୁଡ଼ିକ କିପରି କଳ୍ପନା ତାହା ଜଣାଗଲା ।

ଧର୍ମର ପରିସର ବାହାରେ ଦର୍ଶନ ଚିନ୍ତା ଜଗତରେ କିଛି ବୌଦ୍ଧିକ ଆଲୋଡ଼ନ ସୃଷ୍ଟି କରିଛି । ଜୀବନର ଘନଘଟା ବିଷୟରେ କିଛି ନୂତନ ବିଚାର ବିଭିନ୍ନ ସମୟରେ

ଓ ବିଭିନ୍ନ ସଭ୍ୟତାରେ ଦାର୍ଶନିକମାନେ ଦେଇଛନ୍ତି । ତେବେ ଯେଉଁ ଯୁଗରେ ଈଶ୍ୱରୀୟ ଭାବନା ବୌଦ୍ଧିକ ମାନସପଟରେ ଗଭୀର ଭାବେ ରହିଥିଲା, ସେହି ଯୁଗର କିଛି ଦାର୍ଶନିକ ଈଶ୍ୱର-ବିଶ୍ୱାସ ସହ ଦୁଃଖ ଯନ୍ତ୍ରଣା ଓ ଇଭିଲକୁ ବାଖ୍ୟା କରିବାକୁ ପ୍ରୟାସ କରିଛନ୍ତି । ଦୁଃଖ ଯନ୍ତ୍ରଣା, ପ୍ରାକୃତିକ ବିପର୍ଯ୍ୟୟ, ମାନବିକ କ୍ରୂରତା ଇତ୍ୟାଦି ମନ୍ଦ ଓ ଅଶୁଭ ଘଟଣାରାଜୀ ଈଶ୍ୱରଙ୍କ ବ୍ୟବସ୍ଥା ଭିତରେ କିପରି ବ୍ୟାଖ୍ୟା ହୋଇପାରିବ ? ଈଶ୍ୱରଙ୍କୁ ସର୍ବ ଶକ୍ତିମାନ ଓ କରୁଣାମୟ ବୋଲି ବିଶ୍ୱାସ କରି ମନ୍ଦ ଓ ଅଶୁଭକୁ କିପରି ବୁଝାଇହେବ ? ଏଠାରେ କେତେକ ଦାର୍ଶନିକ ମତର ସଂକ୍ଷିପ୍ତ ଆଲୋଚନା କରାଯାଉ ।

ଗୋଟିଏ ଦାର୍ଶନିକ ମତରେ ଈଶ୍ୱର ମହତ ଉଦ୍ଦେଶ୍ୟରେ ସବୁକିଛି ସୃଷ୍ଟି କରିଛନ୍ତି । ପ୍ରକୃତିରେ ଯାହା କିଛି ଅଛି ସବୁର ମହତ୍ତ୍ୱ ଓ ମୂଲ୍ୟ ରହିଛି । ତେବେ ବିଭିନ୍ନ ବସ୍ତୁମାନଙ୍କର ମହତ୍ତ୍ୱ ଓ ମୂଲ୍ୟରେ ଗୁଣାତ୍ମକ ଓ ପରିମାଣାତ୍ମକ ପ୍ରଭେଦ ରହିଛି । ସବୁସ୍ତରରେ ସଂଗତି ଓ ଶୃଙ୍ଖଳାର ସହ ଈଶ୍ୱର ସବୁ ସୃଷ୍ଟି କରିଥିଲେ । କିନ୍ତୁ କାଳକ୍ରମେ ବସ୍ତୁ ଭିତରେ ଅପରିପୂର୍ଣ୍ଣତା ସୃଷ୍ଟି ହେଲା ଓ ସେହି ପରିଣାମରୁ ଧୀରେ ଧୀରେ ମନ୍ଦର ଉତ୍ପତ୍ତି ହେଲା । ଈଶ୍ୱର ପ୍ରାଣୀକୁ ଚକ୍ଷୁ ଦେଇଛନ୍ତି ସବୁକଥା ଦେଖିବାକୁ, କିନ୍ତୁ ଚକ୍ଷୁର ଧୀରେ ଧୀରେ ଅବକ୍ଷୟ ଯେପରି ହେବା ସମ୍ଭବ, ସେହିପରି କାଳକ୍ରମେ ମନ୍ଦର ଉତ୍ପତ୍ତି ହେବା ସମ୍ଭବ । ଏତଦ୍‌ବ୍ୟତୀତ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେଇଛନ୍ତି ଓ ଈଶ୍ୱର ମଣିଷକୁ ତାଙ୍କ ହାତରେ ଖେଳନା କରିନାହାନ୍ତି । କିନ୍ତୁ ମଣିଷ ଈଶ୍ୱର ଦତ୍ତ ସ୍ୱାଧୀନତାର ଅପପ୍ରୟୋଗ କରିବା ଦ୍ୱାରା ସମାଜରେ ଦୁଃଖ ଯନ୍ତ୍ରଣାର ପରିସ୍ଥିତି ସୃଷ୍ଟି କରିଛି । ତେଣୁ ସଂସାରରେ ଯଦି ଦୁଃଖ, ମନ୍ଦ ରହିଛି ସେଥିପାଇଁ ଈଶ୍ୱର ଦାୟୀ ନୁହନ୍ତି, ବରଂ ମଣିଷ ହିଁ ଦାୟୀ । ମନ୍ଦ କାର୍ଯ୍ୟଦ୍ୱାରା ମଣିଷ ଯେଉଁ ପାପ ସୃଷ୍ଟି କରୁଛି, ସେହି ପାପର ପ୍ରାୟଶ୍ଚିତ ସ୍ୱରୂପ ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଉଛି । ତେବେ ଇତିହାସର ଅନ୍ତିମ କାଳରେ ଈଶ୍ୱରୀୟ ବିଚାରଦ୍ୱାରା ପୁଣ୍ୟମାନେ ଶାଶ୍ୱତ ଜୀବନର ଅଧିକାରୀ ହେବେ ଓ ଅଧାର୍ମିକ ମାନେ ଅନନ୍ତକାଳ ପାଇଁ ଯନ୍ତ୍ରଣା ପାଇବେ, ଫଳତଃ ସଂସାରରେ ନୈତିକ ପରିପୂର୍ଣ୍ଣତା ଆସିପାରିବ । ଏହି ପ୍ରକାରର ବିଚାରବୋଧ ବିଭିନ୍ନ ସାଂସ୍କୃତିକ ଜନଗୋଷ୍ଠୀରେ ଭିନ୍ନଭିନ୍ନ ପରିଭାଷାରେ ବି ବ୍ୟକ୍ତ ହୋଇଛି । କେଉଁଠି ବିଶ୍ୱାସ କରାଯାଇଛି ଯେ ସମାଜରେ ପାପର ଭାର ଅଧିକ ହେଲେ ଈଶ୍ୱର ଅବତାର ନେଇ ପାପୀମାନଙ୍କୁ ସଂହାର କରିବେ ଓ ଧର୍ମ, ନ୍ୟାୟର ପରିବେଶ ସ୍ଥାପନ କରିବେ ।

ଅଧର୍ମର ପରିବେଶ ଆସିଲେ ଈଶ୍ୱର ଧରାପୃଷ୍ଠକୁ ଆସି ବା ନିଜର ଦୂତ ବା ପୁତ୍ରକୁ ପଠାଇ ସବୁ ମନ୍ଦକୁ ଧ୍ୱଂସ କରି ପୁଣ୍ୟ ପ୍ରତିଷ୍ଠା କରିବେ ।

ଏହି ଯୁକ୍ତିର ଅନେକ ଅନ୍ତର୍ନିହିତ ଦୁର୍ବଳତା ରହିଥିବା ମନେହୁଏ । ଯଦି ପ୍ରଥମରୁ ସବୁ ବିଷୟ ସୁସଂହତ ଓ ଶୃଙ୍ଖଳିତ ଥିଲା, ସେହି ସ୍ଥିତିରେ ମନ୍ଦ କିପରି ଓ କାହିଁକି ସୃଷ୍ଟି ହେଲା ତାର ଉତ୍ତର କଣ ହେବ ? ମନ୍ଦ ବା ଇଭିଲ ଯେ ସ୍ୱସୃଷ୍ଟ ଏହା ଈଶ୍ୱରୀୟ ବିଧାନକୁ ଆହ୍ୱାନ ଦେଉ ନାହିଁ କି ? ଏକ ସୁସଂହତ ବ୍ୟବସ୍ଥାରେ ତ୍ରୁଟି ରହିବା ସମୀଚୀନ ନୁହେଁ, ଯଦି ଏକ ସୃଷ୍ଟ ବସ୍ତୁ ଓ ବ୍ୟବସ୍ଥା କାଳକ୍ରମେ ନଷ୍ଟ ଦିଗରେ ଯାଉଛି ତେବେ ଏହାର ନୈତିକ ଉତ୍ତରଦାୟିତ୍ୱ ସ୍ରଷ୍ଟା ଈଶ୍ୱରଙ୍କୁ ଦିଆଯିବ କି ନାହିଁ ? ଯଦି କୁହାଯାଏ ଯେ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେବାଦ୍ୱାରା ଏପରି ପରିସ୍ଥିତି ଆସିଛି, ତେବେ ଈଶ୍ୱର ଏପରି ମଣିଷ ସୃଷ୍ଟି କରିଥାନ୍ତେ ଯେଉଁମାନେ ସ୍ୱାଧୀନତା ଉପଭୋଗ କରିବେ, ଅଥଚ ସ୍ୱାଧୀନତାର ଅପପ୍ରୟୋଗ କରିବେ ନାହିଁ । ଯୁକ୍ତିରେ ଯାହା କୁହାଯାଉଛି ଯେ ଏକ ଉତ୍ତମ ଓ ସୁସଂହତ ପରିସ୍ଥିତିରୁ କାଳକ୍ରମେ ମନ୍ଦର ଉଦ୍ଭବ ହୋଇଛି ତାହା ଆମର ବାସ୍ତବ ଅନୁଭୂତିରେ ଭ୍ରମାତ୍ମକ ମନେ ହୁଏ । ସଭ୍ୟତାର କ୍ରମ ବିକାଶକୁ ଯଦି ଲକ୍ଷ୍ୟ କରାଯାଏ ତେବେ ମଣିଷ ଜାତି ଯେ ଏକ ଅସଭ୍ୟ ଓ ଅସଂସ୍କୃତ ସ୍ଥିତିରୁ ସଭ୍ୟ ଓ ସଂସ୍କୃତିସଂପନ୍ନ ଜୀବନ ଆଡକୁ ଅଗ୍ରସର କରିଛି ଏହା ନିଃସନ୍ଦେହ ମନେହୁଏ । ମଣିଷର ନୈତିକ ଦୃଷ୍ଟି ଧୀରେ ଧୀରେ କ୍ଷୁଦ୍ର ଗୋଷ୍ଠୀରୁ ବୃହତ୍ତର ସମାଜ ଓ ସମଗ୍ର ମାନବଜାତି ପ୍ରତି ପ୍ରସାରିତ ହେବାରେ ଲାଗିଛି । ସୁତରାଂ ମଣିଷର ପ୍ରାରମ୍ଭିକ ଜୀବନ ମହତ୍ତର ଥିଲା ଓ ଧୀରେ ଧୀରେ ମନ୍ଦ ହୋଇ ଚାଲିଲା ବସ୍ତୁନିଷ୍ଠ ଓ ବାସ୍ତବ ଅନୁଭୂତିରେ ମିଥ୍ୟା ମନେହୁଏ ।

ଅନ୍ୟ ଏକ ଦାର୍ଶନିକ ମତାନୁଯାୟୀ ଈଶ୍ୱର ମଣିଷ ମାନଙ୍କ ପାଇଁ ଏକ ଦୁଃଖ ରହିତ ସ୍ୱର୍ଗ କରିନାହାନ୍ତି, ସେପରି କରିଥିଲେ ମଣିଷ ପ୍ରୟାସର କିଛି ଅର୍ଥ ରହିନଥାନ୍ତା । ମଣିଷ ଭିତରେ ବୁଦ୍ଧି ଦେଇଛନ୍ତି ଯଦ୍ୱାରା ସେ ନିଜର ନୈତିକ ଓ ଆଧ୍ୟାତ୍ମିକ ବିକାଶ ଘଟାଇ ପାରିବ । ବଡ ହୋଇ ଜନ୍ମ ହେବା ଓ ସାଧନା ପଥରେ ସଂଗ୍ରାମ କରି ମହନୀୟ ହେବା ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଈଶ୍ୱର ମଣିଷକୁ ନାନା ସମ୍ଭାବନା ଭିତରେ ରଖିଛନ୍ତି ଯେଉଁଠି ପ୍ରତିବନ୍ଧକ, ପ୍ରତିକୂଳ ସ୍ଥିତିରେ ବ୍ୟକ୍ତି ଆତ୍ମପରୀକ୍ଷା ଦେଇ ଆତ୍ମଶୁଦ୍ଧି ଲାଭ କରିପାରିବ, ଏହି ଯୁକ୍ତିରେ ଏକଥା କୁହାଯାଇଛି ଯେ ଆମର

ପୃଥିବୀଟି ସମ୍ଭବତଃ ସବୁଠାରୁ ଅଧିକ ଅର୍ଥପୂର୍ଣ୍ଣ । ଏକ ଦୁଃଖରହିତ ପୃଥିବୀର ପରିକଳ୍ପନା ଭିତରେ ପ୍ରାକୃତିକ ନିୟମ କାର୍ଯ୍ୟକାରୀ ହୋଇପାରିବ କି ? ମନେ କରାଯାଉ ଈଶ୍ୱର ଦୁଃଖ, ଶୋକ, ଜରାବିହୀନ ଏକ ପୃଥିବୀ ନିର୍ମାଣ କରିଥାନ୍ତେ ଓ ମନୁଷ୍ୟଙ୍କୁ ସେଠାରେ ସର୍ବଦା ସୁଖକର ସ୍ଥିତି ଭିତରେ ରଖିଥାନ୍ତେ । ସେହି ପ୍ରକାରର ସମ୍ଭାବ୍ୟ ପୃଥିବୀଟି କେତେ଼୍କ ଦୂର ଅର୍ଥପୂର୍ଣ୍ଣ ହୋଇଥାନ୍ତା ? ସେଠାରେ ପ୍ରାକୃତିକ ନିୟମ ପରିବର୍ତ୍ତନଶୀଳ ହୋଇଥାନ୍ତା, ଯାହାଦ୍ୱାରା ତାହା ଏକ ଅବୋଧଗମ୍ୟ ପୃଥିବୀର ଚିତ୍ର ଦିଅନ୍ତା । ଅଗ୍ନିର ସ୍ପର୍ଶ ପୀଡାଦାୟକ, କିନ୍ତୁ ଯଦି ଦୁଃଖ ରହିବ ନାହିଁ, ତେବେ ଅଗ୍ନିର ସ୍ପର୍ଶ କାହାକୁ ଯନ୍ତ୍ରଣା କରିବ ନାହିଁ । ଜଣେ ଗଛ ଉପରୁ ପଡିଲେ କଷ୍ଟ ହେବ ବୋଲି ଗଛରୁ ପଡିବ ନାହିଁ । ଅର୍ଥାତ୍ ସେହି ସାମ୍ଭାବ୍ୟ ପୃଥିବୀଟି ଅର୍ଥପୂର୍ଣ୍ଣ ନହୋଇ ଅର୍ଥଶୂନ୍ୟ ହେବ । ପୁନଶ୍ଚ ଜୀବନରେ ଦୁଃଖ, କଷ୍ଟ, ଶୋକ, ବିଫଳତା, ପରାଜୟ ରହିଛି ବୋଲି ତ ସୁଖ, ସଫଳତା, ପ୍ରୀତିଭାବ, ଭ୍ରାତୃତ୍ୱଭାବ ଇତ୍ୟାଦି ବେଶ୍ ଆନନ୍ଦର ଅନୁଭବ ଦେଇଥାଏ । ବିଫଳତା, ଦୁଃଖ କଷ୍ଟ ନଥିଲେ ସଫଳତା ଓ ସୁଖର ମୂଲ୍ୟ ପ୍ରାୟ ରହନ୍ତା ନାହିଁ । ତେଣୁ ଆମ ସଂସାରରେ ଦୁଃଖ କଷ୍ଟ ଯନ୍ତ୍ରଣା ରହିଥିଲେ ମଧ୍ୟ ଏହାଠାରୁ ଏକ ଅଧିକ ମହତ୍ତର ବିଶ୍ୱର ପରିକଳ୍ପନା କରାଯାଇନପାରେ । ପୁନଶ୍ଚ ମୃତ୍ୟୁ ପରେ ମୁକ୍ତି ବା ଅନନ୍ତ ସୁଖର ଯେଉଁ ସମ୍ଭାବନା ରହିଛି ତାହା ତୁଳନାରେ ଆମର ଦୁଃଖ, କଷ୍ଟ ଯେ ଅତି ନଗଣ୍ୟ ଏହା ମନେ ହୁଏ ।

ଈଶ୍ୱର ନିୟନ୍ତ୍ରିତ ବ୍ୟବସ୍ଥାକୁ ଗ୍ରହଣ କରି ଦୁଃଖ, କଷ୍ଟକୁ କିପରି ଏହି ଭାବଧାରାରେ ଉଚିତ ବୋଲି ଗ୍ରହଣ କରାଯାଇପାରିବ, ତାହାର ସମ୍ଭାବ୍ୟ ବାଖ୍ୟା ଦାର୍ଶନିକମାନେ ଚିନ୍ତା କରିଛନ୍ତି । ଏ କ୍ଷେତ୍ରରେ ଯେଉଁ ସବୁ ବିଚାରର ଅବତାରଣା କରି ଦୁଃଖ ଯନ୍ତ୍ରଣାକୁ ଈଶ୍ୱରଙ୍କ ଅସ୍ତିତ୍ୱ ସହ ସଂଗତ କରିଛନ୍ତି ତାହା ଆମର କଳ୍ପନାକୁ କିଛିଟା ଯୁକ୍ତିଶୀଳ ଆଧାର ଦେବାର ପ୍ରୟାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଏହି ପ୍ରତ୍ୟେକଟି ସମ୍ଭାବ୍ୟ ବ୍ୟାଖ୍ୟା ତ୍ରୁଟିଯୁକ୍ତ ଓ ସମ୍ବେଦନଶୀଳ ଦୃଷ୍ଟିର ପରିପନ୍ଥୀ । ଆମ ଜଗତର ପରିବେଶକୁ ଏକ କାଳ୍ପନିକ ସ୍ୱର୍ଗ କରିବା କେହି ଈଶ୍ୱରଙ୍କ ପାଖରୁ ଆଶା କରୁନାହିଁ । ତେବେ ଯଦି ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ତାଙ୍କୁ ସର୍ବଶକ୍ତିମାନ ବୋଲି ଚିତ୍ରଣ କରାଯିବ, ତେବେ ଈଶ୍ୱର ପ୍ରାକୃତିକ ଦୁର୍ବିପାକକୁ ନିୟନ୍ତ୍ରଣ କରିବା ବା ମଣିଷ ଭିତରର କ୍ରୂରତାକୁ ଦୂର କରିବା ତାଙ୍କଠାରୁ କାହିଁକି ଆଶା କରାନଯିବ ? ଯୁଦ୍ଧ, ବିଭୀଷିକା, ଭୂକମ୍ପଜନିତ ବିପର୍ଯ୍ୟୟ ଇତ୍ୟାଦି ଯଦି ପୃଥିବୀରେ କେବେ ଘଟି

ନଥାନ୍ତା, ତେବେ ପୃଥିବୀର ଇତିହାସ ଭିନ୍ନ ହୋଇଥାନ୍ତା । ମହାମାରୀ ଘଟୁଥିବା ଯୁଗରେ ଅଗଣିତ ମଣିଷ ଯନ୍ତ୍ରଣାରେ ଜର୍ଜରିତ ହୋଇ ମରୁଥିବା ବେଳେ ମଣିଷ ତାର ଉପାୟ ଚିନ୍ତା କରିଛି । ଏହି ପ୍ରୟାସଦ୍ୱାରା ଆଧିଦୈବିକ ଦଣ୍ଡରୁ ମଣିଷକୁ ରକ୍ଷା କରିବା ବେଳେ ଏକ କରୁଣାମୟ ଈଶ୍ୱର ଏଥିରୁ କ୍ଷାନ୍ତ ରହିବାକୁ କିପରି ଯୁକ୍ତିସିଦ୍ଧ ଆଧାର ଦିଆଯିବ ? ସେହିପରି ଯେଉଁମାନେ ମନ୍ଦ କାର୍ଯ୍ୟରେ ସଂପୃକ୍ତ ବା ଈଶ୍ୱରଙ୍କ ବ୍ୟବସ୍ଥା ପ୍ରତି ସନ୍ଦେହୀ ସେମାନଙ୍କୁ ଅନନ୍ତକାଳ ପାଇଁ ନରକକୁ ପଠାଇବାର ଚିନ୍ତା କେତେଦୂର ମାନବିକ । ଅଧିକାଂଶ ଧର୍ମ ନରକର ପରିକଳ୍ପନା କରି ଧର୍ମବିରୋଧୀ ମାନଙ୍କୁ ଅନନ୍ତକାଳ ପାଇଁ ନରକକୁ ପଠାଇବାର ଯେଉଁ ବାଣୀ ଶୁଣାଇଛନ୍ତି ତାହା ସଭ୍ୟ ଦୃଷ୍ଟିଭଙ୍ଗୀର ପ୍ରତିକୂଳ । ଅଗଣିତ ନିଷ୍ପାପ ଶିଶୁ ଦୁରାରୋଗ୍ୟ ବ୍ୟାଧିରେ ଜର୍ଜରିତ ହେବା, ସତ୍ୟ-ନ୍ୟାୟ ପଥରେ ଥାଇ ଯନ୍ତ୍ରଣାର ଜୀବନ ବଞ୍ଚିବା, ଜଣେ ଜଣେ ହିଟଲରଙ୍କ ପାଇଁ ପୃଥିବୀ ବକ୍ଷ ରକ୍ତରଂଜିତ ହେବା କେଉଁ ଈଶ୍ୱରୀୟ ବିଧାନର ପ୍ରମାଣ ଦିଏ ? ଈଶ୍ୱର କାହିଁକି କେତେକ ମଣିଷଙ୍କୁ ରାକ୍ଷସୀ ମାନସିକତା ଦେଇଛନ୍ତି ଓ ତାହାଦ୍ୱାରା କେଉଁ ଲକ୍ଷ୍ୟ ପୂରଣ ହେଉଛି ? ଏହି ସ୍ଥିତି କେଉଁ ଈଶ୍ୱରୀୟ-ନ୍ୟାୟ ପ୍ରତିଷ୍ଠା କରୁଛି ! ଧର୍ମୀୟ ଭାବନାରେ ଓ ଦାର୍ଶନିକ ଚିନ୍ତନରେ ମନ୍ଦ, ଅଶୁଭ, ବିପର୍ଯ୍ୟସ୍ତ ଇତ୍ୟାଦି ଈଶ୍ୱରୀୟ ବ୍ୟବସ୍ଥା ସହ କିପରି ସଂଯୋଜିତ ହୋଇ ରହିପାରିବ ସେ ବିଷୟରେ ବହୁ ଚର୍ଚ୍ଚା ହୋଇଛି । ଏ ସତ୍ତ୍ୱେ ସମସ୍ୟାର ସମାଧାନ ମିଳି ନାହିଁ । ଈଶ୍ୱରଙ୍କୁ ଯଦି ସତ୍ୟ, ନ୍ୟାୟର ପ୍ରତୀକ ଭାବେ ନିଆଯିବ, ତେବେ ସଂସାର ଈଶ୍ୱରୀୟ ନ୍ୟାୟଠାରୁ ଯେ ଯୋଜନ ଦୂରରେ ରହିଛି ଏହା କହିବା ଅସମୀଚୀନ ହେବ ନାହିଁ । ମୋଟ ଉପରେ ଆମ ସଂସାରରେ ଯେତେଦିନ ପର୍ଯ୍ୟନ୍ତ ଅନ୍ୟାୟ, ଅବାଂଛିତ ଦୁଃଖ ଯନ୍ତ୍ରଣା, ପ୍ରାକୃତିକ ବିପର୍ଯ୍ୟୟ ଜନିତ ବିଭୀଷିକା ପରି ଘଟଣାମାନ ଥିବ, ସେ ପର୍ଯ୍ୟନ୍ତ ଈଶ୍ୱରୀୟ ନ୍ୟାୟ ବ୍ୟବସ୍ଥା ପ୍ରତି ସନ୍ଦେହ ରହିବ । ଈଶ୍ୱରଙ୍କୁ ସର୍ବଶକ୍ତିମାନ ଓ କରୁଣାମୟ ବୋଲି ବିଶ୍ୱାସ କରିବା ଓ ବାସ୍ତବ ସ୍ଥିତିରେ ମଣିଷର ରାଶି ରାଶି ଅହେତୁକ ଦୁଃଖ ଯନ୍ତ୍ରଣା ଓ ସାମାଜିକ ସ୍ତରରେ ଅନ୍ୟାୟ ଓ କ୍ରୂରତା ଦେଖୁଥିବା ଏକ ସମ୍ବେଦନଶୀଳ ଓ ଚିନ୍ତାଶୀଳ ବ୍ୟକ୍ତିର ମନରେ ଈଶ୍ୱରୀୟ ବ୍ୟବସ୍ଥା ପ୍ରତି ସନ୍ଦେହ ସୃଷ୍ଟି ହେବା ଅତି ସ୍ୱାଭାବିକ ମନେହୁଏ ।

ସଭ୍ୟତାର କ୍ରମବିକାଶ ଓ ବଞ୍ଚିବାର ମାନରେ କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତିରୁ ଏହା ଜଣାପଡେ ଯେ ମଣିଷ ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଦେଇ ସଭ୍ୟ ଜୀବନ

ସ୍ତରକୁ ଆସିଛି । ମଣିଷର ବିଚାରଶୀଳ ସାମର୍ଥ୍ୟ, ବୈଜ୍ଞାନିକ ଉଦ୍‌ଭାବନ ଓ ଆବିଷ୍କାର, ନୂଆ ନୂଆ ପ୍ରଯୁକ୍ତିର ପ୍ରୟୋଗ ଓ ସାମାଜିକ ଚେତନାର ବିକାଶ ଦ୍ୱାରା ସଭ୍ୟତା ଆଗକୁ ଯାଇଛି । ଏକ ଶଙ୍କାକୁଳ ପରିବେଶରୁ ଏକ ସୁସଂହତ ସାମାଜିକ ଜୀବନର କ୍ରମ ଅଭ୍ୟୁଦୟ ଘଟିଛି । ବିଭିନ୍ନ ସଭ୍ୟତାରେ ମାନବୀୟ ସଙ୍କଟରୁ ଜନଗଣଙ୍କୁ ଉନ୍ନତ କରିବାରେ ମଣିଷ ତାର ବିଚାର ବୁଦ୍ଧି ପ୍ରୟୋଗ କରି ପନ୍ଥାର ଅନ୍ୱେଷଣ କରିଛି । ମଣିଷର ପ୍ରୟାସଦ୍ୱାରା ନୂଆ ବାଟର ସନ୍ଧାନ ମିଳିଛି, ରୋଗବାଧକ ମାନଙ୍କୁ ନିୟନ୍ତ୍ରଣ ପାଇଁ ଜ୍ଞାନର ବିକାଶ ଦ୍ୱାରା ଗଣମୃତ୍ୟୁର ତାଣ୍ଡବରୁ ମଣିଷ ରକ୍ଷା ପାଇଛି, ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ପୀଡିତ ଜନଗୋଷ୍ଠୀକୁ ସହାନୁଭୂତିର ହାତ ପ୍ରସାରିତ ହୋଇଆସୁଛି, ସମଗ୍ର ମାନବଜାତି ଭିତରେ ଭ୍ରାତୃତ୍ୱ ମନୋଭାବ ବୃଦ୍ଧିପାଇଛି । ଏହିସବୁ ହେତୁବାଦୀ ଜୀବନ ଦୃଷ୍ଟିରୁ ସମ୍ଭବ ହୋଇଛି । ହେତୁବାଦ ଅହେତୁକ ବିଶ୍ୱାସରୁ ଦୃଷ୍ଟି ଫେରାଇ ପ୍ରୀତିପୂର୍ଣ୍ଣ ବିଶ୍ୱ ଓ ଗୁଣାତ୍ମକ ଜୀବନ ବଞ୍ଚିବା ପାଇଁ ସର୍ବଦା ଆବେଦନ ସୃଷ୍ଟି କରିଆସିଛି । ଏହା ଏହି ବିଶ୍ୱାସ ସୃଷ୍ଟି କରିଛି ଯେ ମଣିଷର ପ୍ରୟାସଦ୍ୱାରା ଓ ସତ୍‌ବିଚାର ଦ୍ୱାରା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇପାରିବ, ଦୁଃଖ ଦୁର୍ଦ୍ଦଶାକୁ ଦୂର କରାଯିବା ସମ୍ଭବ ହେବ ତଥା ମାନବିକ ସମ୍ବେଦନଶୀଳ ମୂଲ୍ୟବୋଧକୁ ପ୍ରସାର କରାଯାଇପାରିବ । ଶିକ୍ଷାର ବିକାଶ ଦ୍ୱାରା ଜୀବନର ମୂଲ୍ୟ ନେଇ ସାମାଜିକ ଚେତନାକୁ ଉନ୍ନତ କରିହେବ, ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥାକୁ ନ୍ୟାୟପୂର୍ଣ୍ଣ ଓ ଜନହିତକାରୀ ଲକ୍ଷ୍ୟ ଦିଗରେ ଅଭିପ୍ରେତ କରିହେବ । ସମାଜରେ ଯାହା ସମସ୍ୟା ଓ ସଂକଟ ରହିଛି ତାର ଯଥାର୍ଥ ଅନୁଶୀଳନ ଦ୍ୱାରା ପରିସ୍ଥିତିରେ ଉନ୍ନତି ବିଧାନ କରାଯାଇପାରିବ । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦା, ମାନବିକ ଅଧିକାରକୁ ସାମାଜିକ ଜୀବନରେ ସ୍ୱୀକୃତି ଦିଆଯାଇପାରିବ । ଏକ ନ୍ୟାୟପୂର୍ଣ୍ଣ, ପ୍ରୀତିପୂର୍ଣ୍ଣ ଓ ଉତ୍ତରଦାୟୀ ସାମାଜିକ ପରିବେଶକୁ ମଣିଷ ପ୍ରୟାସରେ ରୂପ ଦିଆଯିବା ସମ୍ଭବ । ଆମର ସମସ୍ୟାକୁ କେଉଁ କଳ୍ପିତ ଦେବତା ବା ଈଶ୍ୱର ସମାଧାନ କରିବେ ନାହିଁ ବା ଅତୀତରେ କରିନାହାନ୍ତି । ମଣିଷର ପ୍ରୟାସଦ୍ୱାରା ବ୍ୟବସ୍ଥାର ଉନ୍ନତି ସମ୍ଭବ ହେବ ଓ ଜୀବନର ମହତ୍ତ୍ୱ ବୃଦ୍ଧିପାଇବ । ସମାଜରେ ନାଗରିକ ଶୃଙ୍ଖଳାବୋଧ ଓ ଉତ୍ତରଦାୟୀତ୍ୱବୋଧ ପରି ମୂଲ୍ୟଚୟକୁ ସାର୍ବଜନୀନ କରାଯାଇପାରିବ ।

ଉପସଂହାରରେ ମଣିଷ ସମାଜରେ ଯାହା ଦୁଃଖ, ଦୁର୍ଦ୍ଦଶା ରହିଛି ତାହାକୁ କେଉଁ କଳ୍ପିତ ଦୈବୀଶକ୍ତି ସମାଧାନ କରିଦେବେ ନାହିଁ । ବରଂ ଆମର ସଂଘବଦ୍ଧ

ପ୍ରୟାସ ଓ ଆନ୍ତରିକ ଉଦ୍ୟମରେ ଆମେ ସମାଧାନର ପନ୍ଥା ବାହାର କରିପାରିବା । ଧର୍ମ, ଜାତି, ଜାତୀୟତା ଗୋଟିଏ ସମୟରେ ଯେଉଁ ଆବେଗ ସୃଷ୍ଟି କରି ସମାଜକୁ ଭାଗ ଭାଗ କରୁଥିଲା ଓ ତାହାକୁ ଈଶ୍ୱରୀୟ ସ୍ୱୀକୃତି ଦେବାକୁ ଉଦ୍ୟମ ହେଉଥିଲା, ସେହି ଦୃଷ୍ଟିଭଙ୍ଗୀରେ ଯଥେଷ୍ଟ ପରିବର୍ତ୍ତନ ହେଲାଣି । ମାନବବାଦୀ ବିଚାରବୋଧ ଆମ ସଂସାରକୁ ଏକତ୍ୱର ବନ୍ଧନରେ ଯୋଡିବାକୁ ସମର୍ଥ ବୋଲି ଭାବନା ଯଥେଷ୍ଟ ଦୃଢ ଭିତ୍ତି ନେଲାଣି । ପ୍ରାକୃତିକ ଦୁର୍ବିପାକକୁ ପ୍ରତିହତ କରିବା ପାଇଁ କିଛି ଜ୍ଞାନକୌଶଳ ମଣିଷ ନିଜର ପ୍ରୟାସଦ୍ୱାରା ଜାଣିବାକୁ ସମର୍ଥ ହେଲାଣି, ତଥାପି ଆହୁରି ଅନେକ ବାଟ ଯିବାକୁ ରହିଛି । ସଭ୍ୟତାର ଅଗ୍ରଗତି ସହ ନୂଆ ନୂଆ ସଂକଟ ବି ସୃଷ୍ଟି ହୋଇ ଚାଲିଛି, ତେବେ ଯେ କୌଣସି ସଂକଟ ପାଇଁ ମଣିଷ ଅସହାୟ ହୋଇ କେଉଁ ଈଶ୍ୱରଙ୍କ ପାଖରେ ଶରଣ ପଶୁ ନାହିଁ, ବିଚାର ବୁଦ୍ଧି ଖଟାଇ ବାଟ ଖୋଜୁଛି, ସମାଧାନର ସୂତ୍ର ବାହାର କରିବାକୁ ପ୍ରୟାସ କରୁଛି । ପରିବେଶ ଜନିତ ସଂକଟ, ସନ୍ତ୍ରାସବାଦ ଜନିତ ମାନବିକତା ବିରୋଧୀ ଭାବଧାରା, ନୂତନ ସାମ୍ରାଜ୍ୟବାଦ ଜନିତ ଶୋଷଣ ବିରୁଦ୍ଧରେ ବିଶ୍ୱରେ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱର ଚିନ୍ତାଶୀଳ, ମାନବହିତୈଷୀ ହେତୁବାଦୀମାନେ ମଣିଷ ଜାତିର ଏକତ୍ୱର ବାର୍ତ୍ତା ଦେଇ ପୃଥିବୀରୁ ଅସହିଷ୍ଣୁତା, ହିଂସା, ସନ୍ତ୍ରାସବାଦ, ଅମାନବିକତାକୁ ଦୂର କରିବାକୁ ପ୍ରୟାସ ଜାରି ରଖିଛନ୍ତି । ବୈଜ୍ଞାନିକ କ୍ରିୟାଶୀଳତାଦ୍ୱାରା ସାରା ପୃଥିବୀ ଗୋଟିଏ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ ହେବାରେ ଲାଗିଛି । ଆଧୁନିକ ବିଜ୍ଞାନ ପୃଥିବୀରୁ ଦୂରତ୍ୱ କମାଇବାରେ ସମର୍ଥ ହେଲାଣି । ସାରା ବିଶ୍ୱରେ ଜନଗଣଙ୍କ ଭିତରେ ଆଦାନ ପ୍ରଦାନ ବୃଦ୍ଧି ପାଇବାରେ ଲାଗିଛି । ତେବେ ଏହି ସ୍ଥିତିରେ ଆମେ ହୃଦୟବତ୍ତାରେ ମଧ୍ୟ ଏକତ୍ର ହୋଇପାରିବା । ସାରା ବିଶ୍ୱର ଜନଗଣଙ୍କ ଭିତରେ ଭାତୃତ୍ୱର ଭାବନା ସୃଷ୍ଟି କରି ସମସ୍ତଙ୍କୁ ମାନସିକ ସ୍ତରରେ ମାନବିକ ପ୍ରୀତି ବନ୍ଧନରେ  ଯୋଡିବା ପାଇଁ ବିଶ୍ୱର ଜ୍ଞାନୀ, ଗୁଣୀ, ଦରଦୀ ମଣିଷମାନେ କେତେ ଆନ୍ତରିକତା ସୃଷ୍ଟି କରିଚାଲିଛନ୍ତି । ଯେଉଁଠି ଯାହା ଜ୍ଞାନର ବିକାଶ ହେଉଛି ତାର ସୁଫଳ ସମଗ୍ର ମଣିଷ ଜାତି ଲାଭ କରିପାରୁଛି । ଏହା ସଭ୍ୟତାର ସବୁଠାରୁ ବଡ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୈଜ୍ଞାନିକ ବିଚାରବୋଧ ଓ ମାନବବାଦର ସମନ୍ୱିତ ଅଭିବ୍ୟକ୍ତି ହେଉଛି ହେତୁବାଦ । କହିବା ନିଷ୍ପ୍ରୟୋଜନ  ଯେ ଏ ପ୍ରତ୍ୟେକଟି ଭାବଧାରା ସାର୍ବଜନୀନ ଓ ସତ୍ୟ ପ୍ରତି ସର୍ବଦା ଉନ୍ମୁକ୍ତ । ବିଜ୍ଞାନ ପ୍ରକୃତିର ରହସ୍ୟକୁ ଉଦ୍‌ଘାଟିତ କରି ଜ୍ଞାନର

ଦିଗନ୍ତକୁ ବିସ୍ତାର କରିଚାଲିଛି । ଫଳତଃ ସଂସାରରୁ ଅନେକ ଦୁଃଖ ଦୁର୍ଦ୍ଦଶାର ଅନ୍ତ ହୋଇପାରିଛି । କୁଷ୍ଠ, ବସନ୍ତ, ପ୍ଲେଗ ଇତ୍ୟାଦି ମାରାତ୍ମକ ରୋଗକୁ ଦୈବୀ ଦଣ୍ଡ କହି ସେଥିରୁ ତ୍ରାଣ ପାଇଁ ପ୍ରାର୍ଥନା କରିବା ଦ୍ୱାରା ସମାଜର ଉପକାର ହୋଇନାହିଁ । ବରଂ ବର୍ଷ ବର୍ଷର ଗବେଷଣା ଦ୍ୱାରା ତାହାର କାରଣ ଜାଣିବା ଯୋଗୁଁ ଏସବୁ ରୋଗର ଯନ୍ତ୍ରଣାରୁ ମଣିଷ ଜାତି ଅନେକ ସୁଫଳ ଲାଭ କରିଛି । ଏହା ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ସେହିପରି ମାନବବାଦ ମଣିଷ ମଣିଷ ଭିତରର ପ୍ରାଚୀର ଓ ଭେଦଭାବକୁ ଦୂର କରି ବିଶ୍ୱ ଭାତୃତ୍ୱର ଭାବନା ସୃଷ୍ଟି କରିବାରେ ସହାୟକ ହୋଇଛି । ଅଜ୍ଞତା ଓ ଅମାନବିକତା ଦୂର କରିବା ପାଇଁ ହେତୁବାଦ ବୌଦ୍ଧିକ ଆବେଦନ ସର୍ବଦା ଦେଇଆସିଛି । ତାର ପରିଣତି ସ୍ୱରୂପ ସଭ୍ୟତା ଆଗକୁ ଯାଇଛି, ବିଚାରଧାରାରେ କ୍ରାନ୍ତି ଆସିଛି ଓ ବିଶ୍ୱ ଏକ ପରିବାରରେ ରୂପାନ୍ତରିତ ହେବାର ସମ୍ଭାବନା ସୃଷ୍ଟି ହୋଇଛି । ମୋଟ ଉପରେ ଏକ ଦୁଃଖରହିତ ବିଶ୍ୱ ସମାଜ ପାଇଁ ହେତୁବାଦ ସର୍ବଦା ନିଜର ସଂପୃକ୍ତି ଓ ପ୍ରତିବଦ୍ଧତା ବ୍ୟକ୍ତ କରି ଆସିଛି । ସବୁ ସଭ୍ୟତାରେ ହେତୁବାଦୀମାନେ ସଂସ୍କାରିତ ଚେତନାର ଅଗ୍ରଦୂତ ଓ ଦୁଃଖରହିତ ସମତା-ଆଧାରିତ ପ୍ରୀତିପୂର୍ଣ୍ଣ ବିଶ୍ୱର ପଥଦ୍ରଷ୍ଟା । ମୁକ୍ତମନ, ବିଚାରଶୀଳ ଦୃଷ୍ଟି, ମାନବବାଦୀ ଜୀବନଦର୍ଶନ ଓ ବୈଜ୍ଞାନିକ ମାନସିକତା ହେତୁବାଦର ଅନ୍ତଃସ୍ୱର ।



# ହେତୁବାଦୀଙ୍କ ଧର୍ମ

ହେତୁବାଦ ଏକ ଜୀବନ-ଦର୍ଶନ ଓ ସେହି ଜୀବନ-ଦର୍ଶନରେ ଆସ୍ଥା ସ୍ଥାପନ କରୁଥିବା ବ୍ୟକ୍ତିମାନେ ହିଁ ହେତୁବାଦୀ। ହେତୁବାଦ ଦୁଇଟି ଆଦର୍ଶ ଉପରେ ଦଣ୍ଡାୟମାନ, ଯାହା ହେଲା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ। ମୁକ୍ତ ମନ, ଜ୍ଞାନଲାଭ କ୍ଷେତ୍ରରେ ଏକ ସାର୍ବଜନୀନ ପ୍ରଣାଳୀ ଓ ସତ୍ୟ ପ୍ରତି ପ୍ରତିବଦ୍ଧତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସାରମର୍ମ। ସେହିପରି ମାନବିକ ଅଧିକାର ଜନିତ ବ୍ୟକ୍ତିମର୍ଯ୍ୟାଦାବୋଧ, ସମତାର ଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ମାନବବାଦର ଅନ୍ତର୍ନିହିତ ଆଦର୍ଶ। ଏହି ପରିପ୍ରେକ୍ଷୀରେ ପ୍ରଶ୍ନ ଆସେ: ହେତୁବାଦୀମାନେ ଧର୍ମବିଶ୍ୱାସୀ ବା ଧର୍ମବିରୋଧୀ ? ଶଂସିତ ପ୍ରବନ୍ଧଟିରେ ଧର୍ମର ସଂକ୍ଷିପ୍ତ ବ୍ୟାଖ୍ୟା ସହ ହେତୁବାଦ ଧର୍ମ ସହ ସମତାଳ କି ନୁହେଁ ତାହା ଆଲୋଚନା କରିବା ଆମର ଉଦ୍ଦେଶ୍ୟ। ପ୍ରସଙ୍ଗଟି ବେଶ୍ ଜଟିଳ ଓ ଗମ୍ଭୀର ହୋଇଥିବା ଯୋଗୁ ଏହାର ଏକ ପୂର୍ଣ୍ଣାଙ୍ଗ ବିଶ୍ଳେଷଣ ଏଠାରେ ସମ୍ଭବ ନୁହେଁ, ତେବେ ଏ କ୍ଷେତ୍ରରେ କେତେକ ସାଧାରଣ ପ୍ରସଙ୍ଗର ଅବତାରଣା କରି ହେତୁବାଦ ସହ ଧର୍ମର ସଂପର୍କକୁ ଦର୍ଶାଇବା ଆମର ଲକ୍ଷ୍ୟ।

ସାଧାରଣ ପରିଭାଷାରେ 'ଧର୍ମ' ଏକ ଅନେକାର୍ଥକ ଶବ୍ଦ। 'ଧର୍ମ' ବହୁ ଅର୍ଥରେ ବ୍ୟବହୃତ ହେଉଥିବାରୁ ସ୍ଥଳ ବିଶେଷରେ ଧର୍ମର ଯଥାର୍ଥ ତାତ୍ପର୍ଯ୍ୟ ନେଇ କିଛି ଅସ୍ପଷ୍ଟତା ସୃଷ୍ଟି ହୋଇଥାଏ। ଗୁଣ (Property), ନୈତିକତା ( Morality) ଓ ଇଂରାଜୀ ଶବ୍ଦ ରିଲିଜିଅନ(religion) ପଦଗୁଡିକ ପାଇଁ ଧର୍ମ ଶବ୍ଦ ବ୍ୟବହୃତ ହୋଇଥାଏ। ସାଧାରଣରେ ବ୍ୟବହୃତ ଏହି ପଦଗୁଡିକୁ ବାଦ୍ ଦେଲେ ଧର୍ମର କେତେକ ବୈଷୟିକ ଅର୍ଥ ମଧ୍ୟ ଦର୍ଶନ ଶାସ୍ତ୍ରରେ ଦେଖିବାକୁ ମିଳେ। ଆମର ଆଲୋଚନା ପରିପ୍ରେକ୍ଷୀରେ ଧର୍ମକୁ ଆମେ ଏକ ନିର୍ଦ୍ଦିଷ୍ଟ ଅର୍ଥରେ ଏଠାରେ ବ୍ୟବହାର କରିବା। ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ,

ବୌଦ୍ଧଧର୍ମ, ଜୈନଧର୍ମ...ଇତ୍ୟାଦି କ୍ଷେତ୍ରରେ ଧର୍ମ ଶବ୍ଦଟି ଯେଉଁ ଅର୍ଥରେ ବ୍ୟବହୃତ ହେଉଛି ଆମେ ଏଠାରେ ସେହି ଅର୍ଥରେ ଧର୍ମକୁ ବ୍ୟବହାର କରିବା ।

କେତେକ ସମାଜବିଜ୍ଞାନୀ ସଭ୍ୟତାର କ୍ରମବିକାଶକୁ ଧର୍ମର ମାନଦଣ୍ଡରୁ ଚାରୋଟି କାଳରେ ବିଭକ୍ତ କରିଥାନ୍ତି, ଯଥା-ପ୍ରାଗ୍‌ଧର୍ମୀୟ ସମାଜ, ଧର୍ମୀୟ ସମାଜ, ଧର୍ମନିରପେକ୍ଷ ସମାଜ ଓ ଧର୍ମୋତ୍ତର ସମାଜ । ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶ ଓ ଦୃଢ଼ୀକରଣ ପୂର୍ବରୁ ଯେଉଁ ସମାଜ ବ୍ୟବସ୍ଥା ବିଭିନ୍ନ ସଭ୍ୟତାରେ କ୍ରମବିକଶିତ ହୋଇଥିଲା ତାହାକୁ ପ୍ରାକ୍‌ଧର୍ମୀୟ ସମାଜ (prereligious society) କୁହାଯାଏ । ବହୁ ଅତୀତରେ ଲୋକମାନେ ବଣ ଜଂଗଲରେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ରହୁଥିଲେ ଓ କାଳକ୍ରମେ କୃଷିର ଜ୍ଞାନ ସହ ଗ୍ରାମୀଣ ଜୀବନର ପରିବେଶ ଆସିଲା । ମଣିଷର ଅଜ୍ଞତା ଓ ପ୍ରକୃତିର ବିଶଳତା ଅଦୃଷ୍ଟର ରୋମାଞ୍ଚ ମଣିଷ ଭିତରେ ସୃଷ୍ଟି କରିଥିଲା । ନାନା ଭୟ ଜନିତ କାରଣ ଓ ଶାରୀରିକ ଯନ୍ତ୍ରଣାରୁ ରକ୍ଷା ପାଇଁ ସେ ଅଦୃଷ୍ଟ ଜାଗତିକ ଶକ୍ତିକୁ କଳ୍ପନା କରିଛି । ଯାହାଠାରୁ ସାହାଯ୍ୟ ପାଇଛି ତାକୁ ଆରାଧ୍ୟ ଭାବି ପୂଜା କରିଛି । ବିଭିନ୍ନ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଅଗ୍ନି, ସୂର୍ଯ୍ୟ, ବାୟୁ ଇତ୍ୟାଦି ପ୍ରାକୃତିକ ବସ୍ତୁ ବା ସତ୍ତାମାନଙ୍କ ସଂପର୍କରେ ପ୍ରାର୍ଥନା ରହିଥିବା ଦୃଷ୍ଟିଗୋଚର ହୁଏ । ପ୍ରାକୃତିକ ବସ୍ତୁମାନଙ୍କ ପ୍ରତି କୃତଜ୍ଞତା ସ୍ୱରୂପ ବା ପ୍ରାକୃତିକ ଦୂର୍ବିପାକରୁ ସୁରକ୍ଷା ପାଇଁ ସେମାନଙ୍କୁ ଭକ୍ତି-ନୈବେଦ୍ୟ ଅର୍ପଣ କରିବାର ମାନସିକତା ପ୍ରାଗ୍‌ଧର୍ମୀୟ ସମାଜରେ ସୃଷ୍ଟି ହୋଇଥିବା ଜଣାଯାଏ । ଏହା ସହିତ ଧୀରେ ଧୀରେ ବହୁ ଦେବବାଦର ଭାବନା ଆସିଛି । ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର ଓ ଜୀବନର ପ୍ରତ୍ୟେକ ଘଟଣା କୌଣସି ଈଶ୍ୱରୀୟ ଶକ୍ତି ବା ଦେବ-ଦେବୀଦ୍ୱାରା ନିୟନ୍ତ୍ରିତ ବୋଲି ବିଚାର କିଛି ବ୍ୟକ୍ତି ସୃଷ୍ଟି କରିଛନ୍ତି ଯାହା ଜନଗୋଷ୍ଠୀରେ ସ୍ୱୀକୃତି ଲାଭ କରିଛି । ଏହି ଯୁଗରେ ଶରୀରଠାରୁ ପୃଥକ୍ ଏକ ସତ୍ତା ରହିଛି, ଯାହା ବ୍ୟକ୍ତିର ମୃତ୍ୟୁ ପରେ ଭୂତ ବା ପ୍ରେତ ହୋଇ ରହେ ବୋଲି ଭାବନାର ଉଦ୍‌ଭାବନ ହୋଇଛି । ପବନ ଯେପରି ଅଦୃଶ୍ୟ, ଭୂତ ବି ସେହିପରି ଅଦୃଶ୍ୟ । ପବନ ପରି ଏହା କୋମଳ ହୋଇପାରେ ବା ଭୟଙ୍କର ଓ ନିଷ୍ଠୁର ହୋଇପାରେ । ସୁତରାଂ ପ୍ରେତକୁ ସନ୍ତୁଷ୍ଟ କରିବା ପାଇଁ ବିଭିନ୍ନ ପୂଜା ଓ ପ୍ରାର୍ଥନାର ପରଂପରା ସୃଷ୍ଟି ହୋଇଛି । ପରିବାରରେ ମୃତ ବ୍ୟକ୍ତିର ପ୍ରେତାତ୍ମାଠାରୁ ସଦିଚ୍ଛା ଓ କରୁଣା ଲାଭ କରିବାକୁ ତାକୁ ପ୍ରାର୍ଥନା କରାଯାଇଛି ଓ ତାର ଦାହ ବା କବର ସ୍ଥାନରେ ତାକୁ ଖାଦ୍ୟ ଦିଆଯାଇଛି । ଏହି ସବୁ ବିଶ୍ୱାସକୁ ଆଧାର କରି ବିଭିନ୍ନ ସଭ୍ୟତାରେ ନାନା ପ୍ରକାରର

ଧାର୍ମିକ ଆବେଗ, ପରମ୍ପରା ସୃଷ୍ଟି ହୋଇଛି ଓ ସେସବୁ ଜୀବନ ପ୍ରବାହର ଅଙ୍ଗ ହୋଇଯାଇଛି । ଗ୍ରାମୀଣ ଜୀବନ ପ୍ରବାହରୁ କେତେକ ଗ୍ରାମକୁ ନେଇ ରାଜ୍ୟ ଭାବନା ଆସିଛି ଓ ରାଜତନ୍ତ୍ର ଶାସନର ଯୁଗ ସୃଷ୍ଟି ହୋଇଛି । ରାଜତନ୍ତ୍ର ବ୍ୟବସ୍ଥାରେ ନୀତି, ନିୟମ, ଶୃଂଖଳିତ ଗୋଷ୍ଠୀ ଜୀବନ ଓ ଧାର୍ମିକ ପରମ୍ପରାର ପରିବେଶ ଯେତେ ସଙ୍କୁଚିତ ଅର୍ଥରେ ହେଲେ ମଧ୍ୟ କିଛିଟା ଦୃଢ଼ ଭିତ୍ତି ନେଇଛି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଗଢ଼ି ଉଠିଥିବା ସଭ୍ୟତାର ଆଦିମ କାଳର ପରିବେଶ ଏହି ଧାରାରେ ଆଗକୁ ଯାଇଛି । ବସ୍ତୁତଃ ଏକ ପ୍ରାକୃତିକ ଧାରାରେ ନାନା ସାମାଜିକ ଓ ମନସ୍ତାତ୍ତ୍ୱିକ କାରଣରୁ ମହାଜାଗତିକ ସତ୍ତାରେ ବିଶ୍ୱାସ, ବହୁ ଦେବବାଦ, ଆତ୍ମାର ସ୍ଥିତି ଇତ୍ୟାଦି ଭାବନା ଭିନ୍ନ ଭିନ୍ନ ଧାରାରେ ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଛି ।

ଖ୍ରୀ.ପୂ. ଏକ ହଜାର ପରଠାରୁ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସମାଜର ଦୃଢ଼ୀକରଣ ସହ ଏକ ଧାର୍ମିକ ସୃଜନଶୀଳତା ଓ କ୍ରିୟାଶୀଳତାର ପରିବେଶ ଆସିଛି । ସେହି ସମୟର ଜୀବନ ପ୍ରବାହରେ ଏପରି କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ହୋଇଛି ଯେଉଁମାନେ ନିଜ ସମସାମୟିକ ସମାଜରେ ଏକ ନୂତନ ଜାଗରଣର ପରିବେଶ ସୃଷ୍ଟି କରିଛନ୍ତି । ସାମାଜିକ ଜୀବନ ପ୍ରବାହ ଓ ଚିନ୍ତନଶୈଳୀକୁ ସେମାନେ ଏତେ ଗଭୀର ଭାବେ ପ୍ରଭାବିତ କରିଛନ୍ତି ଯଦ୍ୱାରା ବିଭିନ୍ନ ଅଞ୍ଚଳରେ ଧର୍ମର ଉଦ୍‌ଭବ ହୋଇଛି । ଭାରତ ଭୂଖଣ୍ଡରେ ଉପନିଷଦମାନଙ୍କର ରଚନା, ଗୌତମବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବ ଭାରତୀୟ ଚିନ୍ତାମାନସକୁ ଧର୍ମୀୟ ଆଦର୍ଶରେ ପ୍ରଭାବିତ କରିଛି । ସେହି ସମସାମୟିକ କାଳରେ ହିବ୍ରୁ ସନ୍ଥମାନଙ୍କର ଆବିର୍ଭାବଦ୍ୱାରା ଇସ୍ରାଏଲରେ ପବିତ୍ର ଜୀବନ ଓ ନ୍ୟାୟବୋଧ ନେଇ ଭାବନା ସୃଷ୍ଟି ହୋଇଛି । ଅନ୍ୟ ଏକ ଭୂଖଣ୍ଡରେ ଜୋରାଷ୍ଟରଙ୍କର ଆବିର୍ଭାବ ଦ୍ୱାରା ଅନ୍ୟ ଏକ ଧାର୍ମିକ ଆଲୋଡନର ପରିବେଶ ଉଦ୍‌ଭବ ହୋଇଛି । ଚୀନ୍‌ରେ କନଫୁସିଅସଙ୍କ ବୈଚାରିକ ଆଲୋଡନକୁ ନେଇ ଟାଓବାଦ ଏକ ଶୃଂଖଳିତ ନୈତିକ ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇଛି । ଖ୍ରୀଷ୍ଟପୂର୍ବ ୮୦୦ରୁ ଖ୍ରୀଷ୍ଟାବ୍ଦ ଆରମ୍ଭ ଭିତରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଏହି ଆଲୋଡନ ଗୁଡିକ ଧର୍ମୀୟ ଚେତନାର ବିକାଶ କ୍ଷେତ୍ରରେ ପଥ ପ୍ରଦର୍ଶକ ହୋଇଥିବା ମନେହୁଏ । ହିବ୍ରୁ ଧର୍ମଧାରା ଭିତରୁ ଆଉ ଦୁଇଟି ବଡ ସାଂସ୍କୃତିକ ଆଲୋଡନ ସୃଷ୍ଟି ହୋଇଛି ଯାହା ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମ ଭାବରେ ପରେ ବିସ୍ତାର ଲାଭ କରିଛି । ଯୀଶୁଖ୍ରୀଷ୍ଟଙ୍କର ଆବିର୍ଭାବ ଓ ନୈତିକ ପରାକାଷ୍ଠା ଏକ ବଳିଷ୍ଠ ସାଂସ୍କୃତିକ ପ୍ରବାହ ଭାବେ ୟୁରୋପୀୟ

ଚିନ୍ତାମାନସକୁ ଗଭୀର ଭାବେ ପ୍ରଭାବିତ କରିଛି। ସପ୍ତମ ଶତାବ୍ଦୀରେ ମହମ୍ମଦଙ୍କର ଆରବ ଭୂଖଣ୍ଡରେ ଆବିର୍ଭାବ ପରେ ତାଙ୍କ ଚିନ୍ତାଧାରାକୁ ଆଧାର କରି ଇସଲାମ୍ ଏକ ବିଶାଳ ଭୂଖଣ୍ଡରେ ପରିବ୍ୟାପ୍ତ ହୋଇଛି। ବୌଦ୍ଧଧର୍ମର ପ୍ରଭାବରେ ଭାରତ ଭୂଖଣ୍ଡରେ ବୈଦିକ ହିନ୍ଦୁଧର୍ମର ଯେଉଁ ଅବକ୍ଷୟ ସୃଷ୍ଟି ହୋଇଥିଲା, ଅଷ୍ଟମ ଶତାବ୍ଦୀରେ ଶଙ୍କରଙ୍କ ଆବିର୍ଭାବ ଫଳରେ ବର୍ଣ୍ଣବ୍ୟବସ୍ଥାର ପ୍ରଚଳନ ପୂର୍ବକ ହିନ୍ଦୁଧର୍ମର ପୁନରୁତ୍ଥାନ ହେଲା ଓ ବୌଦ୍ଧଧର୍ମ ଭାରତ ଭୂଖଣ୍ଡରୁ ବିଲୁପ୍ତ ପ୍ରାୟ ହୋଇଗଲା। ଏହି ଭଳି ବିଭିନ୍ନ ଧର୍ମ ଏକ ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ସାଂସ୍କୃତିକ ଆଲୋଡନ ଭାବେ ସୃଷ୍ଟି ହୋଇ ନାନା କାରଣରୁ କାଳକ୍ରମେ ବିଭିନ୍ନ ଅଞ୍ଚଳକୁ ବ୍ୟାପି ଥିବା ଏକ ଐତିହାସିକ ସତ୍ୟ ଅଟେ।

ପ୍ରତ୍ୟେକ ଧର୍ମ ଏକ ସାମାଜିକ ଓ ବୌଦ୍ଧିକ କ୍ରାନ୍ତି ଭାବରେ ଏକ କାଳଖଣ୍ଡରେ ଓ ଏକ ନିର୍ଦ୍ଦିଷ୍ଟ ଭୌଗୋଳିକ ପରିବେଶରେ ଉଦ୍‌ଭବ ହୋଇଛି । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବାରେ ଧର୍ମର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ରାଜତନ୍ତ୍ର ଯୁଗରେ ଶାସନତନ୍ତ୍ରର ସମର୍ଥନ ପାଇ ଏହା କାଳକ୍ରମେ ଏକ ବୃହତ୍ତର ଅଞ୍ଚଳକୁ ବ୍ୟାପିଛି ଓ ଜନମାନସରେ ଏକ ସାଂସ୍କୃତିକ ଅସ୍ମିତାର (Cultural identity) ମାନସିକତା ଆଣିଛି । ଏତଦ୍‌ବ୍ୟତୀତ ଜୀବନ ଓ ଜଗତକୁ ଅବବୋଧ କରିବାକୁ ତାହା ଏକ ବୌଦ୍ଧିକ ଆବେଦନ ସୃଷ୍ଟି କରିଛି । ସେହି ଯୁଗରେ ମଣିଷର ବୌଦ୍ଧିକ ଅବବୋଧ ଅତି ସୀମିତ ଥିବାରୁ ମହାଜାଗତିକ ବା ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ଏକ ସାଧାରଣ ଘଟଣା ହୋଇ ରହିଥିଲା । ଦୃଷ୍ଟିର ଅନ୍ତରାଳରେ ଥିବା ଅଥଚ ସବୁ କିଛିକୁ ନିୟନ୍ତ୍ରିତ କରୁଥିବା ଐଶ୍ୱରିକ ଶକ୍ତିରେ ବିଶ୍ୱାସ ଜଗତ ଓ ଜୀବନର ଘଟଣା ପ୍ରବାହକୁ ବୁଝିବାରେ ସାହାଯ୍ୟ କରିଛି। ସମାଜରେ ଏକ ବଡ ପଥପ୍ରଦର୍ଶକଙ୍କୁ ଈଶ୍ୱରପ୍ରେରିତ ବ୍ୟକ୍ତି ଭାବେ ଚିତ୍ରଣ କରାଯାଇଛି । ଈଶ୍ୱରଙ୍କ ପୁତ୍ର, ଈଶ୍ୱରଙ୍କ ଦୂତ, ଈଶ୍ୱରଙ୍କ ଅବତାର ଭାବନା ବିଭିନ୍ନ ଧର୍ମ ସହ ସଂଶ୍ଳିଷ୍ଟ ହୋଇଛି ଓ ପ୍ରତ୍ୟେକଙ୍କ କାର୍ଯ୍ୟକୁ ନାନା ଚମତ୍କାରିତାରେ ଚିତ୍ରଣ କରାଯାଇଛି । ସାଧାରଣ ଜନମାନସକୁ ପ୍ରଭାବିତ କରିବାରେ ଓ ସେହି ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବାରେ ତାହା ବଳିଷ୍ଠ ଭିତ୍ତି ଯୋଗାଇଛି । ଧର୍ମ ପ୍ରତି ଏକ ସକାରାତ୍ମକ ଆଭିମୁଖ୍ୟ ନେଲେ ଏହା ପ୍ରତୀୟମାନ ହେବ ଯେ ଗୋଟିଏ ଅଞ୍ଚଳର ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ଐକ୍ୟ ସ୍ଥାପନ କରିବାରେ ସାମାଜିକ ଜୀବନ ପ୍ରବାହକୁ ଏକ ସୁନିୟନ୍ତ୍ରିତ ଧାରାରେ ପରିଚାଳିତ କରିବାରେ, ନୀତିବୋଧର ଭାବନା

ଆଣିବାରେ, ଯେତେ ଭ୍ରମାତ୍ମକ ହେଲେ ମଧ୍ୟ ଜୀବନର ଲକ୍ଷ୍ୟକୁ ଅବବୋଧ କରିବାରେ ଧର୍ମର ବଳିଷ୍ଠ ପ୍ରଭାବ ରହିଛି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତାର ବିକାଶ ହେବା ଯେପରି ଏକ ଐତିହାସିକ ଘଟଣା, ସେହିପରି ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଥିବା ଧର୍ମ ଜନିତ ସାଂସ୍କୃତିକ ଜାଗରଣ ମଧ୍ୟ ଏକ ଐତିହାସିକ ଘଟଣା । ଏହି ଦୃଷ୍ଟିରୁ ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ପ୍ରବାହ ଓ ଏକ ଜୀବନଧାରା । ଏକ ଆଦିମ ସମାଜରୁ ଏକ ସଭ୍ୟ ସମାଜର ଅଗ୍ରଗତି ପଶ୍ଚାତରେ, ବହୁ ଦେବବାଦ (Polytheism) ଓ ଏକୈକାଧିଦେବବାଦ(henotheism)ରୁ ଏକେଶ୍ୱରବାଦର ଭାବନା ଆସିବାରେ ଓ ଜନଜାତୀୟ ଆଇନ ଓ ନୈତିକତା (tribal law and morality)ରୁ ଏକ ସାର୍ବଜନୀନ ଆଇନ ଓ ନୀତିବୋଧର ଆବେଦନ ସୃଷ୍ଟି କରିବାରେ ଧର୍ମ ମାନଙ୍କର ଯେ ଏକ ବଳିଷ୍ଠ ଅବଦାନ ରହିଛି ଏହା ଅସ୍ୱୀକାର କରି ହେବ ନାହିଁ।

ପ୍ରତ୍ୟେକ ଧର୍ମକୁ ଏକ ଭୌଗୋଳିକ ଭୂଖଣ୍ଡର ଏକ ସାଂସ୍କୃତିକ ପ୍ରବାହ ଭାବେ ଓ ସେହି ଭୂଖଣ୍ଡର ଜନସମୂହର ଜୀବନଧାରା ଭାବେ ଗ୍ରହଣ କଲେ ଏଥିରୁ ଅନୁମିତ ହେବ ଯେ ପ୍ରତ୍ୟେକ ଧର୍ମର ବିକାଶ ଅନ୍ୟ ଧର୍ମ-ସଂସ୍କୃତି ବିଷୟରେ ଅଜ୍ଞତାରୁ ସମ୍ଭବ ହୋଇଛି । ପରବର୍ତ୍ତୀ ସମୟରେ ଗୋଟିଏ ଅଞ୍ଚଳର ଧର୍ମ, ସଂସ୍କୃତିର ପ୍ରସାର ଫଳରେ ଧର୍ମ-ଧର୍ମ, ସଂସ୍କୃତି-ସଂସ୍କୃତି ଭିତରେ ସଂପର୍କ ସ୍ଥାପନ ହୋଇଛି । ବ୍ୟକ୍ତି ବିଶେଷ ପୃଷ୍ଠଭୂମିରେ ଜଣେ ବ୍ୟକ୍ତି ତାର ବୃତ୍ତିକୁ ମନୋନୀତ କଲା ପରି ତାର ଧର୍ମକୁ ସ୍ଥିର କରିନଥାଏ। ସେ ଏହାକୁ ଉତ୍ତରାଧିକାରୀ ଭାବେ ଲାଭ କରିଥାଏ । ଜଣେ ଇଚ୍ଛାକୃତ ଭାବେ ନିଜର ଧର୍ମ ତ୍ୟାଗ ନକଲେ ସେ ତାର ପୂର୍ବପୁରୁଷଙ୍କ ଧର୍ମର ପରିଚୟ ବହନ କରେ । ଏହି ବିଷୟଟିକୁ ଅନ୍ୟ ଭାବରେ କହିଲେ ମୁଁ ଭାରତରେ ଜନ୍ମଲାଭ କରିଥିବାରୁ ମୋର ଧର୍ମ ଜନିତ ସାମାଜିକ ପରିଚୟଟି ହେଉଛି ମୁଁ ଜଣେ ହିନ୍ଦୁ, ମୁଁ ଯଦି ଇରାକରେ ଜନ୍ମ ହୋଇଥାନ୍ତି ତେବେ ମୁଁ ଜଣେ ମୁସଲମାନର ପରିଚୟ ନେଇଥାନ୍ତି, ଯଦି ଶ୍ରୀଲଙ୍କାରେ ଜନ୍ମ ହୋଇଥାନ୍ତି ତେବେ ଜଣେ ବୌଦ୍ଧ ଧର୍ମାବଲମ୍ବୀ ହୋଇଥାନ୍ତି ବା ଯଦି ଫ୍ରାନ୍ସରେ ଜନ୍ମ ହୋଇଥାନ୍ତି ତେବେ ଜଣେ ଖ୍ରୀଷ୍ଟିୟାନର ଅସ୍ମିତା ବହନ କରିଥାନ୍ତି । ସୁତରାଂ ଏହି ଦୃଷ୍ଟିରୁ ଧର୍ମ ଜଣେ ବ୍ୟକ୍ତିର ଏକ ଆକସ୍ମିକ ପରିଚୟ ମାତ୍ର । ଜଣେ ବ୍ୟକ୍ତି ଯେଉଁ ସାମାଜିକ ଓ ସାଂସ୍କୃତିକ ପରିବେଶରେ ଜନ୍ମ ହୋଇ ଜୀବନ ଧାରଣ କରେ ତାହାର ଏକ ଧର୍ମଗତ ଅସ୍ମିତା ରହିଥାଏ । ତେବେ ପରିତାପର ବିଷୟ ଧର୍ମଗତ ଅସ୍ମିତାକୁ ନେଇ ସାଂପ୍ରଦାୟିକ ବିଦ୍ୱେଷ ଓ ଘୃଣାର ପରିବେଶ ବହୁ ସମାଜରେ ରହିଆସିଛି ।

ବିଭିନ୍ନ ଦେଶରେ ବିଶ୍ୱବିଦ୍ୟାଳୟ ମାନ ସ୍ଥାପନ ପରେ ସମାଜ ବିଜ୍ଞାନ ଅଧ୍ୟୟନ ପୃଷ୍ଠଭୂମିରେ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନ ପ୍ରାୟ ଦେଢ଼ ଶହ ବର୍ଷ ତଳେ ଆରମ୍ଭ ହୋଇଥିବାରୁ ସମାଜ ବିଜ୍ଞାନର ବିଭିନ୍ନ ବିଭାଗରେ ଧର୍ମମାନଙ୍କର ଅଧ୍ୟୟନ ହୋଇଛି । ପ୍ରତ୍ୟେକ ଧର୍ମର ଐତିହାସିକ କ୍ରମବିକାଶ ସହିତ ଏହାର ତାତ୍ତ୍ୱିକ ବିଷୟ, ନୀତିବୋଧ, କର୍ମକାଣ୍ଡ, ମୁଖ୍ୟ ଗୋଷ୍ଠୀ ବା ସଂପ୍ରଦାୟ ବିଷୟରେ ବସ୍ତୁନିଷ୍ଠ ଅନୁଶୀଳନ ହୋଇଛି । ଇତିହାସ, ସାମାଜବିଜ୍ଞାନ, ନୃତତ୍ତ୍ୱବିଜ୍ଞାନ, ମନୋବିଜ୍ଞାନ, ଦର୍ଶନଶାସ୍ତ୍ର ଧର୍ମମାନଙ୍କର ଅନୁଶୀଳନ ନିଜସ୍ୱ ମାନଦଣ୍ଡରୁ କରିଛନ୍ତି । ପରିଣାମ ସ୍ୱରୂପ ପ୍ରତ୍ୟେକ ଧର୍ମର ଐତିହାସିକ ଓ ପ୍ରତ୍ୟୟଗତ ଢ଼ାଞ୍ଚା ବା ସ୍ୱରୂପ (Conceptual framework) ଟିର ଏକ ସ୍ପଷ୍ଟ ଚିତ୍ର ଜଣାପଡିଛି । ଏହାଫଳରେ କେଉଁ ଭୌଗୋଳିକ ପରିସରରେ ଓ କେଉଁ କାଳଖଣ୍ଡରେ ଗୋଟିଏ ଧର୍ମର ଉଦ୍‌ଭବ ହୋଇଥିଲା ତାହାର ସ୍ପଷ୍ଟ ଚିତ୍ର ଜଣାଯାଏ । କାଳକ୍ରମେ ଏହାର ବିକାଶ, ଅଭିବୃଦ୍ଧି ବା ପ୍ରସାର ତଥା ଏହାର ମୁଖ୍ୟ ମୁଖ୍ୟ ଗୋଷ୍ଠୀ, ସଂପ୍ରଦାୟ ବା ବିଭାଜନ ନେଇ ବହୁ ତଥ୍ୟ ପଦାକୁ ଆସିଛି । ପ୍ରତ୍ୟେକ ଧର୍ମର କେତେକ ମୌଳିକ ତାତ୍ତ୍ୱିକ ବିଚାର ରହିଛି । ପରମସତ୍ତାର ସ୍ୱରୂପ ଓ ପ୍ରକୃତି; ଆତ୍ମାର ସ୍ୱରୂପ, ଅନ୍ତିମ ପରିଣତି, ଜୀବନର ଲକ୍ଷ୍ୟ, ଦୁଃଖ ଓ ମନ୍ଦର କାରଣ ତଥା ନିରାକରଣ, ବିଶ୍ୱ ବ୍ରହ୍ମାଣ୍ଡର ଉତ୍ପତ୍ତି ଓ ଏହାର ଆଦି କାରଣ ଇତ୍ୟାଦି ପ୍ରସଙ୍ଗ ଉପରେ ପ୍ରତ୍ୟେକ ଧର୍ମର ନିଜସ୍ୱ ବିଚାର ଓ ଭାବନା ରହିଛି । ପ୍ରତ୍ୟେକ ଧର୍ମର ମୌଳିକ ଭାବନାମାନ ଏହାର ଧର୍ମଗ୍ରନ୍ଥରେ ଲିପିବଦ୍ଧ ହୋଇଛି ଓ ପ୍ରତ୍ୟେକ ଧର୍ମର ଏକ ବା ଏକାଧିକ ପବିତ୍ର ଗ୍ରନ୍ଥ (Holy scripture) ରହିଛି । ପୁନଶ୍ଚ ପ୍ରତ୍ୟେକ ଧର୍ମସହ କେତେକ କର୍ମକର୍ମାଣି, କର୍ମକାଣ୍ଡ ସଂଲଗ୍ନ ହୋଇ ରହିଆସିଛି। ଜନ୍ମ, ମୃତ୍ୟୁ, ବିବାହ ପରି ଗରୁତ୍ୱପୂର୍ଣ୍ଣ ଘଟଣାମାନଙ୍କୁ ପାଳନ କରିବା ପାଇଁ ପ୍ରତ୍ୟେକ ଧର୍ମର ସ୍ୱତନ୍ତ୍ର ବିଧି ବିଧାନ ରହିଛି । ଏତଦ୍‌ବ୍ୟତୀତ ଭଲ-ମନ୍ଦ, ନୀତି-ଅନୀତିର ପ୍ରାର୍ଥକ୍ୟ, ନୀତିନିଷ୍ଠ ଜୀବନର ଲକ୍ଷଣ, ସାମାଜିକ ଚରିତ୍ରରେ ଉତ୍କର୍ଷ ସାଧନ ପାଇଁ ଅଭିପ୍ରେରଣା ନେଇ ଅନୁଜ୍ଞା ପ୍ରତ୍ୟେକ ଧର୍ମରେ ରହିଛି । ମୋଟ ଉପରେ ପ୍ରତ୍ୟେକ ଧର୍ମର ଐତିହାସିକ ଭିତ୍ତି, ଧର୍ମଗ୍ରନ୍ଥ, ପ୍ରବର୍ତ୍ତକ ବା ପୁନରୁତ୍‌ଥାନ କରାଇଥିବା ବ୍ୟକ୍ତି, ତାତ୍ତ୍ୱିକ ଆଧାର, କର୍ମକାଣ୍ଡ ଓ କେତେକ ନୈତିକ ଅନୁଜ୍ଞା ରହିଛି । ଗୋଟିଏ ଧର୍ମର ବୌଦ୍ଧିକ ବା ପ୍ରତ୍ୟୟଗତ ଆଧାରଟି ଏହି ସବୁ ଲକ୍ଷଣକୁ ନେଇ ପରିପୁଷ୍ଟ ହୋଇଥିବା ବିଷୟଟି ଧର୍ମର ସମାଜଶାସ୍ତ୍ରୀୟ ଅନୁଶୀଳନରୁ ସ୍ପଷ୍ଟ ହୋଇଛି ।

ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନ ହୋଇନଥିବା ବେଳେ ଓ ଧର୍ମ-ଧର୍ମ ମଧ୍ୟରେ କୌଣସି ଆଦାନ ପ୍ରଦାନର ପରିବେଶ ଅଭାବରେ ପ୍ରତ୍ୟେକ ଧର୍ମ ନିଜର ଭାବନାକୁ ଚିରନ୍ତନ ଓ ନିଜର ବାଣୀକୁ ଅଲଂଘ୍ୟ ମନେ କରୁଥିଲା । ପ୍ରତ୍ୟେକ ଧର୍ମ ନିଜର ଧର୍ମଗ୍ରନ୍ଥର ବାଣୀକୁ ଈଶ୍ୱର-ପ୍ରେରିତ ଶାଶ୍ୱତ ସତ୍ୟ ବୋଲି ମାନି ନେଇଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀର ବିଶ୍ୱାସ ଥିଲା ଯେ ତାଙ୍କର ଧର୍ମଗ୍ରନ୍ଥରେ ଯାହା ଉଲ୍ଲେଖ ରହିଛି ତାହା ଈଶ୍ୱରଦତ୍ତ ସତ୍ୟ, ଈଶ୍ୱର ମଣିଷ ସମାଜକୁ ଯେଉଁ ଜ୍ଞାନ ଦେବାକୁ ଚାହିଁଛନ୍ତି ତାହା ହିଁ ପ୍ରକଟିତ (revealed) ହୋଇଛି ତାଙ୍କ ଧର୍ମଗ୍ରନ୍ଥରେ । ଏହାକୁ ସନ୍ଦେହ କରିବା ବା ଅସତ୍ୟ ବୋଲି ଭାବିବା ଏକ ଈଶ୍ୱର-ବିରୋଧୀ ମନୋଭାବ। ଯେଉଁମାନେ ଏହି ମନୋଭାବ ସୃଷ୍ଟି କରନ୍ତି ସେମାନେ ଅପବିତ୍ର ଓ ଏହି ଅଧାର୍ମିକ ବ୍ୟକ୍ତିମାନେ ଦଣ୍ଡ ପାଇବା ଯୋଗ୍ୟ । ଏପରିକି ନିଜ ଧର୍ମର ବିଶ୍ୱାସ, ଧର୍ମଗ୍ରନ୍ଥର ବାଣୀ ଓ ତାତ୍ତ୍ୱିକ ବିଚାର ହିଁ ଚିରନ୍ତନ ସତ୍ୟ, ଏହା ଛଡା ଅନ୍ୟ ସବୁ କିଛି ଅସତ୍ୟ, ଅପବିତ୍ର । ଜୀବନର ସର୍ବୋତ୍ତମ ଲକ୍ଷ୍ୟ କେବଳ ଧର୍ମର ପନ୍ଥାରେ ଗଲେ ପ୍ରାପ୍ତ ହୋଇପାରିବ । ଧର୍ମର ପନ୍ଥା ହିଁ ଜୀବନର ଏକମାତ୍ର ଶ୍ରେୟ, ଧର୍ମଗ୍ରନ୍ଥର ବାଣୀ ହିଁ ଚିରନ୍ତନ ସତ୍ୟ, ନିଜ ଧର୍ମଗୋଷ୍ଠୀ ହିଁ ଈଶ୍ୱରଙ୍କ ଦ୍ୱାରା ମନୋନୀତ ଗୋଷ୍ଠୀ । ଏହିଭଳି ଏକ ଜୀବନଦୃଷ୍ଟି ପ୍ରାୟତଃ ପ୍ରତ୍ୟେକ ଧର୍ମଧାରା ଭିତରେ ଅଭିନ୍ନ ହୋଇ ରହିବା ଦେଖାଯାଏ । ଶହଶହ ବର୍ଷର ସାମାଜିକ ବିକାଶଧାରାରେ ଧର୍ମର ଅଖଣ୍ଡ ପ୍ରଭାବ ହେତୁ ପ୍ରତ୍ୟେକ ଧର୍ମ ପରଂପରାରେ ଏହିପରି ଏକ ମାନସିକତା ସୃଷ୍ଟି ହୋଇଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀର ପ୍ରଭାବଶାଳୀ ପୂଜକ ଗୋଷ୍ଠୀ ଈଶ୍ୱରୀୟ ବ୍ୟବସ୍ଥାର ପ୍ରତିନିଧି ଭାବେ ସମାଜରେ ଅଖଣ୍ଡ ପ୍ରଭାବ ବିସ୍ତାର କରି ରହିଥିଲେ । ରାଜତନ୍ତ୍ର ଓ ଧର୍ମ-କୈନ୍ଦ୍ରିକ ଶାସନ ବ୍ୟବସ୍ଥାରେ ଶାସକ ଓ ପୂଜକମାନେ ସମାଜର ସବୁଠାରୁ ବଡ଼ ପ୍ରଭାବଶାଳୀ ଗୋଷ୍ଠୀ ହୋଇ ନିଜର ଆଧିପତ୍ୟ ବିସ୍ତାର କରିଥିଲେ । ୟୁରୋପୀୟ ନବଜାଗରଣ ଓ ନବସଂସ୍କାରର (ରିନାସାଁ ଓ ଏନଲାଇଟେନ୍‌ମେଣ୍ଟର) ଯୁଗ ଆସିବା ପର୍ଯ୍ୟନ୍ତ ମଧ୍ୟଯୁଗୀୟ ଜୀବନଧାରାରେ ଧର୍ମର ଅଖଣ୍ଡ ପ୍ରଭାବ ସବୁସ୍ତରରେ କାୟା ବିସ୍ତାରକରି ରହିଥିଲା । ଧର୍ମ ହିଁ ସବୁ ସଭ୍ୟତାରେ ସାମାଜିକ ଓ ରାଜନୈତିକ ନିୟନ୍ତ୍ରଣର ଏକମାତ୍ର ଭିତ୍ତି ହୋଇଥିଲା । ସବୁ ଜ୍ଞାନର ମୂଳ ଆଧାର ଭାବେ ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜର ଧର୍ମଗ୍ରନ୍ଥକୁ ନେଉଥିଲେ ଓ ଧର୍ମଗ୍ରନ୍ଥ ବାହାରେ ଯେ କିଛି ଜ୍ଞାନ ସମ୍ଭବ ଏହା ମଧ୍ୟଯୁଗୀୟ ଚିନ୍ତାମାନସକୁ ସ୍ପର୍ଶ କରିନଥିଲା ।

ଏହି ସନ୍ଧିକ୍ଷଣରେ ୟୁରୋପୀୟ ନବଜାଗରଣ ଏକ ସାଂସ୍କୃତିକ ଜାଗୃତିର ପଥପ୍ରଦର୍ଶକ ହେଲା। ମଧ୍ୟଯୁଗୀୟ ଆଦର୍ଶ, ଜୀବନଦୃଷ୍ଟି, ଧର୍ମକୈନ୍ଦ୍ରିକ ରାଜତନ୍ତ୍ର ବିରୁଦ୍ଧରେ ବିଦ୍ରୋହ ସ୍ୱରୂପ ଏକ ନୂତନ ସାଂସ୍କୃତିକ ବିପ୍ଲବ ପାଶ୍ଚାତ୍ୟ ଭୂଖଣ୍ଡରେ ଭିତ୍ତି ନେଲା। ମଣିଷ ଧାର୍ମିକ ରହସ୍ୟମୟତା ଓ ପ୍ରାକୃତିକ ଶକ୍ତିର କ୍ରୀଡନକ ନ ହୋଇ ପ୍ରକୃତିର ରହସ୍ୟକୁ ଜାଣିବା ପାଇଁ ଅନୁସନ୍ଧିତ୍ସୁ ହେଲା। "ଜ୍ଞାନ ହିଁ ଶକ୍ତି" ଭାବନାରୁ ସେ ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ-ପରୀକ୍ଷଣ କରି ତାହାର ଅନ୍ତର୍ନିହିତ କାରଣକୁ ଜାଣିବାକୁ ପ୍ରୟାସ କଲା। ପ୍ରାକୃତିକ ଶକ୍ତିର ଅନୁଶୀଳନଦ୍ୱାରା ଯେ ସକଳ କୁସଂସ୍କାରରୁ ମୁକ୍ତି ମିଳିବ ଏହି ଚିନ୍ତା ବୈଜ୍ଞାନିକ ଅନୁଶୀଳନ ପାଇଁ ପ୍ରେରଣା ଯୋଗାଇଲା। ଏହି ସମୟରେ ଚିନ୍ତାରାଜ୍ୟରେ ବୈଜ୍ଞାନିକ ପଦ୍ଧତିର ସାଧନ ବିଷୟରେ ଯେଉଁ ଭାବନା ବ୍ୟକ୍ତ ହେଲା ତାହାକୁ ଆଧାର କରି ପ୍ରକୃତିର ବହୁ ଲୁକାୟିତ ରହସ୍ୟ ଧୀରେ ଧୀରେ ଉନ୍ମୋଚିତ ହେବାକୁ ଲାଗିଲା। ଆମ ପୃଥିବୀକୁ ଈଶ୍ୱର ଶୂନ୍ୟରୁ କେତୋଟି ଦିନରେ କେତେ ହଜାର ବର୍ଷ ତଳେ ସୃଷ୍ଟିକରିନାହାନ୍ତି; କୋଟି କୋଟି ବର୍ଷର ରାସାୟନିକ ଓ ଜୈବିକ ପରିବର୍ତ୍ତନ ମଧ ଦେଇ ପୃଥିବୀ ଆଜିର ସ୍ଥିତିକୁ ଆସିଛି - ବିଜ୍ଞାନର ଏହି ସିଦ୍ଧାନ୍ତ ଧର୍ମ ଓ ବିଜ୍ଞାନ ମଧ୍ୟରେ ଏକ ସଂଘର୍ଷମୟ ପରିସ୍ଥିତି ଆଣିଲା। ସେହିପରି ମଣିଷକୁ ଈଶ୍ୱର ନିଜ ସ୍ୱରୂପରେ ସୃଷ୍ଟି କରିଛନ୍ତି - ଧାର୍ମିକ ଭାବନା ବୈଜ୍ଞାନିକ ତଥ୍ୟ ପାଖରେ ଅସତ୍ୟ ପ୍ରମାଣିତ ହେଲା। 'ପୃଥିବୀ ସ୍ଥିର ଓ ସୂର୍ଯ୍ୟ ଘୂର୍ଣ୍ଣାୟମାନ'- ଧର୍ମର ସିଦ୍ଧାନ୍ତକୁ ମିଥ୍ୟା ପ୍ରମାଣିତ କରି ସୂର୍ଯ୍ୟ ସ୍ଥିର ଓ ପୃଥିବୀ ଓ ଅନ୍ୟ ଗ୍ରହ ସକଳ ସୂର୍ଯ୍ୟ ଚାରିପାଖେ ଘୂର୍ଣ୍ଣାୟମାନ ବୈଜ୍ଞାନିକ ପଦ୍ଧତିରେ ସାବ୍ୟସ୍ତ ହେବାକୁ ଲାଗିଲା। ସ୍ୱର୍ଗ, ନରକ, ବିଚାର ଦିବସ, ମୁକ୍ତି, ମୋକ୍ଷ ଇତ୍ୟାଦି ଭାବନା ଗୁଡିକ ଯେ ଆଈ ମା କାହାଣୀ ଓ ପ୍ରାଚୀନ ଯୁଗର କଳ୍ପନା ଏହା ଧୀର ଧୀରେ ଚିନ୍ତାରାଜ୍ୟରେ ଜଣାପଡିଲା। ବିଜ୍ଞାନର ଆଦିପର୍ବଟିରେ ବହୁ ପ୍ରତିଭାବନ୍ତ  ସତ୍ୟ ଅନ୍ୱେଷଣକାରୀ ବୈଜ୍ଞାନିକଙ୍କୁ ନାନା ନିର୍ଯ୍ୟାତନା ସହ୍ୟ କରିବାକୁ ହେଲା, ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରାଗଲା। ମାନବ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା ଚିନ୍ତାନାୟକ, ବୈଜ୍ଞାନିକମାନେ କିପରି ଧର୍ମଧ୍ୱଜାଧାରୀଙ୍କ ଦ୍ୱାରା ନିନ୍ଦିତ ଓ ନିର୍ଯ୍ୟାତିତ ହୋଇଛନ୍ତି ତାହାର ଦୁଃଖଦ କାହାଣୀ ମର୍ମାନ୍ତିକ ଓ ହୃଦୟବିଦାରକ; ତେବେ ସେ ପ୍ରସଙ୍ଗଟି ଏଠାରେ ଆମର ଆଲୋଚ୍ୟ ବିଷୟ ନୁହେଁ। ଧର୍ମ ବିଜ୍ଞାନର ବିକାଶରେ ପ୍ରତିବନ୍ଧକ ହୋଇଥିଲେ ବି ବିଜ୍ଞାନର ବିଜୟଯାତ୍ରା ଅବ୍ୟାହତ ରହିଲା ଓ ଜୀବନର ଗୁଣାତ୍ମକ ମାନରେ  ଉଲ୍ଲେଖନୀୟ

ପରିବର୍ତ୍ତନ ଆସିଲା । ପ୍ରାୟ ଅଢେଇ ଶହ ବର୍ଷ ଧରି ( ୧୪୫୩ ରୁ ୧୬୯୦ ) ଯେଉଁ ପୁନର୍ଜାଗରଣ ଯୁଗର ଅବଧିଟିକୁ ଐତିହାସିକ ମାନେ ନିରୂପଣ କରିଛନ୍ତ, ତାହାପରେ ବିଜ୍ଞାନର ବିଜୟ ପର୍ବ ନାନା ଦିଗନ୍ତକୁ ସ୍ପର୍ଶକରି ଜ୍ଞାନର ଦିଗ୍‌ବଳୟକୁ ବିସ୍ତାରିତ କରିଚାଲିଲା । ନବଜାଗରଣ ଯୁଗର ଦୁଇଟି ମୌଳିକ ନିର୍ଯ୍ୟାସ ଜ୍ଞାନର ବିକାଶରେ ଓ ସଭ୍ୟ ଜୀବନଦୃଷ୍ଟିର ଅଭ୍ୟୁଦୟରେ ପ୍ରେରଣା ଦାୟୀ ହେଲା ସେହି ଦୁଇ ନିର୍ଯ୍ୟାସ ହେଲା-ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଓ ମାନବବାଦର ପ୍ରତିଷ୍ଠା । କହିବା ନିଷ୍ପ୍ରୟୋଜନ ଯେ ଏହା ହିଁ ହେତୁବାଦୀ ଜୀବନଦର୍ଶନର ମୂଳମନ୍ତ୍ର ।

ମାନବବାଦ ଏକ ମହତ୍ତର ଜୀବନବୋଧ ଭାବେ ସାର୍ବଜନୀନ ମୂଲ୍ୟବୋଧର ବିକାଶ ପାଇଁ ପ୍ରେରଣାଦାୟକ ହେଲା । ଗଣତାନ୍ତ୍ରିକ ଜୀବନଶୈଳୀ, ବ୍ୟକ୍ତିମର୍ଯ୍ୟାଦାବୋଧ, ମାନବିକ ଅଧିକାର, ଏକ ଭେଦଭାବରହିତ ସମାଜ ବ୍ୟବସ୍ଥା ଓ ସାମାଜିକ ନ୍ୟାୟ ମାନବବାଦୀ ଜୀବନ-ଦର୍ଶନରୁ ନିଷ୍ପନ୍ନ ହୋଇ ଚିନ୍ତା ରାଜ୍ୟରେ ଓ ସମାଜ-ବ୍ୟବସ୍ଥାରେ କ୍ରାନ୍ତିକାରୀ ଆଲୋଡନମାନ ଆଣିଲା । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ନେଇ ଯେଉଁ ସାମାଜିକ ପରିବେଶ ରହିଥିଲା ଓ ଯାହାକୁ କେତେକ ଧର୍ମ ପରଂପରାରେ ଏକ ଈଶ୍ୱରୀୟ ବିଧାନ କହି ସ୍ୱୀକୃତି ଦିଆ ଯାଉଥିଲା, ତାହା ବିରୁଦ୍ଧରେ ଆଇନଗତ କଟକଣା ହେଲା । ବୌଦ୍ଧିକ ସ୍ତରରେ ମଣିଷର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ସମତାର ଅଧିକାର ଗୃହୀତ ହେଲା । ମାନବବାଦ ବିଶ୍ୱସ୍ତରରେ ସବୁ ମଣିଷଙ୍କୁ ଭାତୃତ୍ୱର ବନ୍ଧନରେ ଯୋଡିବାକୁ ଆବେଦନ ସୃଷ୍ଟି କଲା । ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ସଂପ୍ରତି ନାନା ଆନ୍ତର୍ଜାତିକ ସଂଗଠନ, ମିଳିତ ଜାତିସଂଘ, ବିଶ୍ୱସେବା ପ୍ରତିଷ୍ଠାନ ଯେପରି ସଂପୃକ୍ତି ବ୍ୟକ୍ତ କରିଚାଲିଛନ୍ତି, ତାହା ଯେ ମାନବବାଦୀ ବିଚାରର ପ୍ରତିଫଳନ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବୈଜ୍ଞାନିକ ଚିନ୍ତାଧାରାର କ୍ରମବିକାଶ ଓ ମାନବବାଦୀ ଜୀବନ-ଦର୍ଶନର ଅଭ୍ୟୁଦୟର ପରିଣାମରୁ "ଧର୍ମନିରପେକ୍ଷତା" ଏ ଯୁଗର ଏକ ସାର୍ବଜନୀନ ଆଦର୍ଶ ଭାବେ ଚିନ୍ତାରାଜ୍ୟରେ ଗୃହୀତ ହେବାକୁ ଲାଗିଲା । ଧର୍ମ ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ରହିଲା ଓ ରାଷ୍ଟ୍ରର ଶାସନତନ୍ତ୍ର ଓ ରାଜନୀତି ଏହାଠାରୁ ମୁକ୍ତ ରହିବା ଏ ଯୁଗର ଏକ ସର୍ବମାନ୍ୟ ଆଦର୍ଶ ହେଲା । ଧର୍ମଗୋଷ୍ଠୀ ଭିତରେ ସହନଶୀଳତା ଓ ଭାତୃତ୍ୱଭାବକୁ ପ୍ରାଧାନ୍ୟ ଦିଆଗଲା ଓ ମୌଳବାଦ ତଥା ସାଂପ୍ରଦାୟିକତାବାଦ ଯେ ସଭ୍ୟ ଜୀବନଧାରାର

ପରିପନ୍ଥୀ, ଏହା ବୌଦ୍ଧିକ ସ୍ୱୀକୃତିଲାଭ କଲା । ଧର୍ମକୁ ଆଧାର କରି ଅତୀତରେ ସଂଘଟିତ ହୋଇଥିବା ବହୁ ଯୁଦ୍ଧ, ରକ୍ତପାତ, ସାଂପ୍ରଦାୟିକ ବିଦ୍ୱେଷ ଜନିତ ସଂଘର୍ଷ, ରାଷ୍ଟ୍ର ବିଭାଜନ ଏ ଯୁଗର ଆଦର୍ଶରେ ଅମାନବିକ ବୋଲି ବିଶ୍ୱ ସ୍ତରରେ ସ୍ୱୀକୃତ ହେବାକୁ ଲାଗିଲା । ଧର୍ମ ମଣିଷ ସମାଜରେ ସଂହତି ପରିବର୍ତ୍ତେ ସଂଘର୍ଷର ବାତାବରଣ ଯେ ସୃଷ୍ଟି କରି ଆସିଛି ଏହା ନାନା ଐତିହାସିକ ଘଟଣାରୁ ସୁବିଦିତ । ଧର୍ମନିରପେକ୍ଷତା ଏକ ସହିଷ୍ଣୁତାର ସଂସ୍କୃତି ହୋଇଥିବା ବେଳେ ଧର୍ମାନ୍ଧତା ଓ ତାର ସହୋଦର ଭାଇ ସାଂପ୍ରଦାୟିକତା ଆମ ସଂସାରରେ ନାନା ବର୍ବରତା ସୃଷ୍ଟି ପାଇଁ ଇନ୍ଧନ ଯୋଗାଇଛି । ଧର୍ମର ଏହା ଏକ ବିଡମ୍ବନା ଯେ ବିଭିନ୍ନ ସମୟରେ ହିଂସ୍ର କଟ୍ଟରପନ୍ଥୀ କିଛି ବ୍ୟକ୍ତି ଧର୍ମର ମୁଖା ପିନ୍ଧି ସାଂପ୍ରଦାୟିକତାର ଯେଉଁ ବିଷ ମଂଜି ବୁଣନ୍ତି ସେଥିରୁ ସୃଷ୍ଟିହୁଏ ବର୍ବରତା । ଯେଉଁ ସମାଜରେ ଧାର୍ମିକ ଭାବପ୍ରବଣତା ଅକ୍ଳେଶରେ ଅହେତୁକ ଆବେଗ ସୃଷ୍ଟି କରେ ଓ ଜନଗଣଙ୍କୁ ଧାର୍ମିକ ବିଶ୍ୱାସ ଆଧାରରେ ଭାଗ କରିଦିଏ, ତାହା ଯେ ଏକ କ୍ଷୟଶୀଳ ସମାଜ ଏହା ଅନୁମିତ ହୁଏ । ସୁତରାଂ ଧର୍ମନିରପେକ୍ଷତା, ହେତୁବାଦ ଓ ମାନବବାଦ ପରସ୍ପରର ପରିପୂରକ ଓ ପରସ୍ପର ସହ ସମତାଳ ହୋଇଥିବାବେଳେ ମୌଳବାଦ ଓ ସାଂପ୍ରଦାୟିକତାବାଦ ଏହି ସବୁ ଆଦର୍ଶର ବିପରୀତ ମନେହୁଏ । ସୁତରାଂ ଏକ ଧର୍ମଭିତ୍ତିକ ସମାଜ ବ୍ୟବସ୍ଥା ଓ ଧର୍ମତାନ୍ତ୍ରିକ ଶାସନ ବ୍ୟବସ୍ଥାରୁ (Theocratic State) ଏକ ଧର୍ମନିରପେକ୍ଷ ସମାଜ ବ୍ୟବସ୍ଥା ଓ ଗଣତାନ୍ତ୍ରିକ ଶାସନ ପଦ୍ଧତିକୁ ପରିବର୍ତ୍ତନ ସଭ୍ୟତାର ଏକ ବଡ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାୟତଃ ଧାର୍ମିକ ବିଶ୍ୱାସରେ ପାରଲୌକିକ ଜଗତର ଚିତ୍ର ଦେଖିବାକୁ ମିଳେ । ଜୀବନର ଅନ୍ତିମ ଲକ୍ଷ୍ୟର ପ୍ରସଙ୍ଗକୁ ନେଇ ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି କଳ୍ପନା ଧର୍ମମାନଙ୍କରେ ଦେଖାଯାଏ । ତେବେ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରେ ଏହି ବିଶ୍ୱାସକୁ ନେଇ ଧର୍ମମାନେ କିପରି ପରସ୍ପରବିରୋଧୀ ମତ ଦେଇଥାନ୍ତି, ତାହା ଜଣାଯାଏ । ପ୍ରତ୍ୟେକ ଧର୍ମରେ ମୃତ୍ୟୁ ପରେ ଆତ୍ମାର ସଚେତନ ଅସ୍ତିତ୍ୱ ରହୁଥିବା କଥାକୁ ବିଶ୍ୱାସ କରାଯାଏ । ତେବେ,କେତେକ ଧର୍ମରେ ପୁନର୍ଜନ୍ମର ଭାବନା ନାହିଁ । ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ ଇତ୍ୟାଦିରେ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିର ମୃତ୍ୟୁପରେ ତାର ଆତ୍ମା ବିଚାର ଦିବସ ପରେ ସ୍ୱର୍ଗକୁ ଯାଏ ବା ନରକଗାମୀ

ହୁଏ । ପୁନର୍ଜନ୍ମର ଭାବନା ଏ ସବୁ ଧର୍ମରେ ନାହିଁ । ତେବେ ସ୍ୱର୍ଗ, ନରକର ସ୍ଥିତି, ବିଚାର ଦିବସର ଭାବନା ଇତ୍ୟାଦି ବିଷୟରେ ଖ୍ରୀଷ୍ଟଧର୍ମ ଓ ଇସଲାମର ମତ ସମାନ ନୁହେଁ । ହିନ୍ଦୁଧର୍ମ, ଜୈନଧର୍ମ, ବୌଦ୍ଧଧର୍ମରେ ପୁନର୍ଜନ୍ମର ଭାବନା ରହିଛି । ବ୍ୟକ୍ତି ନିର୍ବାଣ ପାଇବା ପର୍ଯ୍ୟନ୍ତ ଜନ୍ମ-ମୃତ୍ୟୁ ଚକ୍ରରେ ଘୂରୁଥାଏ । ତେବେ ନିର୍ବାଣ ଦ୍ୱାରା କ'ଣ ହୁଏ ଓ ଏହା ବ୍ୟକ୍ତିକୁ ସ୍ୱତଃ ମିଳେ ନା କେହି ବିଚାରକରି ଦିଏ ପ୍ରସଙ୍ଗ ଉପରେ ଏହି ଧର୍ମଗୁଡିକ ସହମତ ନୁହନ୍ତି । ପୁନର୍ଜନ୍ମରେ ବିଶ୍ୱାସ କରୁଥିବା ଧର୍ମମାନ ଆତ୍ମାର ସ୍ୱରୂପ ନେଇ ପରସ୍ପରବିରୋଧୀ ମତପୋଷଣ କରିବା ବି ଦେଖାଯାଏ । ଆତ୍ମା, ଆତ୍ମାର ଅମରତ୍ୱ, ସ୍ୱର୍ଗ-ନରକ, ନିର୍ବାଣ, ମୋକ୍ଷ ଇତ୍ୟାଦି କେବଳ କାଳ୍ପନିକ ତତ୍ତ୍ୱ ହୋଇଥିବାରୁ ଏସବୁ ପ୍ରସଙ୍ଗ ଉପରେ ଧର୍ମମାନେ ସହମତ ନୁହନ୍ତି । ମୃତ୍ୟୁପରେ ଆତ୍ମାର ଅସ୍ତିତ୍ୱ ନେଇ କୌଣସି ବସ୍ତୁନିଷ୍ଠ ବା ଯୁକ୍ତିନିଷ୍ଠ ଆଧାର ନଥିବାରୁ ହେତୁବାଦୀମାନେ ତାହା ବିଶ୍ୱାସ କରନ୍ତି ନାହିଁ । ସେମାନେ ସର୍ବଦା ଏହି ଜୀବନକୁ ସରସ, ସୁନ୍ଦର, ପ୍ରୀତିପଦ ଓ ସମାଜ ଉତ୍ତରଦାୟୀ କରିବାକୁ ନିଜର ସଂପୃକ୍ତି ବ୍ୟକ୍ତ କରନ୍ତି । ବ୍ୟକ୍ତି ମରଣଶୀଳ, ମୃତ୍ୟୁଦ୍ୱାରା ବ୍ୟକ୍ତିର ସଚେତନ ଅସ୍ତିତ୍ୱ ଲୋପପାଏ, କିନ୍ତୁ ମଣିଷ ସମାଜ ଚିରସ୍ଥାୟୀ । ମଣିଷ ସମାଜ କିପରି ଅଧିକରୁ ଅଧିକ ପ୍ରୀତିପଦ ଓ ଶାନ୍ତିପୂର୍ଣ୍ଣ ପରିବେଶ ଦିଗରେ ଅଗ୍ରଗତି କରିବ ତଥା ଜୀବନର ଗୁଣାତ୍ମକ ମାନ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତତର ହୋଇଚାଲିବ ତାହା ହିଁ ହେତୁବାଦୀଙ୍କ ପାଇଁ ବଡ ଆହ୍ୱାନ ଅଟେ ।

ଧାର୍ମିକ ଭାବନା ସହ ପୂର୍ବନିର୍ଦ୍ଧିଷ୍ଟବାଦ, ଭାଗ୍ୟବାଦ ଭାବନା କେତେକାଂଶରେ ଜଡିତ । ଯେଉଁ ଧର୍ମମାନଙ୍କରେ ଈଶ୍ୱର-କର୍ତ୍ତୃତ୍ୱ ବିଧାନକୁ ସ୍ୱୀକାର କରାଯାଏ, ଈଶ୍ୱର ସର୍ବଶକ୍ତିମାନ ହୋଇଥିବାରୁ ଏକ ତାର୍କିକ ପରିଣାମ ସ୍ୱରୂପ ପୂର୍ବନିର୍ଦ୍ଧିଷ୍ଟବାଦର ଭାବନା ଆସିଥାଏ । ଯାହା ଘଟେ ତାହା ଈଶ୍ୱରଙ୍କ ଇଚ୍ଛାରୁ ଘଟେ । ହେତୁବାଦ ଏହି ସିଦ୍ଧାନ୍ତକୁ ସ୍ୱୀକାର କରେ ନାହିଁ । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ଓ ଏକ ଆଦିମ ସ୍ଥିତିରୁ ମଣିଷ ଯେପରି ଉନ୍ନତିର ପଥରେ ଆଗେଇ ଚାଲିଛି ତାହା ମଣିଷର ପ୍ରୟାସରୁ ସମ୍ଭବ ହୋଇଛି । ମଣିଷ ନିଜର ବୁଦ୍ଧି ଓ ସୃଜନଶୀଳ ସାମର୍ଥ୍ୟକୁ ପ୍ରୟୋଗ କରି ସମାଜରୁ ନାନା ଦୁଃଖ, ଦୁର୍ଦ୍ଦଶା ଦୂର କରିବାକୁ ସମର୍ଥ ହୋଇଛି । ନାନା ଦୂରାରୋଗ୍ୟ ବ୍ୟାଧିର ଚିକିତ୍ସା ମଣିଷ ପ୍ରୟାସ କରି ବାହାର କରିଛି, ପ୍ରାକୃତିକ ବିପଦ ଘଟିଲେ

ମଣିଷ ସହାନୁଭୂତିର ହାତ ବଢ଼ାଇଛି । ଜୀବନକୁ ଅଧିକ ନିରାପଦ କରିବାକୁ ଓ ଅଧିକ ସୁଖ ଶାନ୍ତିରେ ରହିବାକୁ ଉଦ୍ୟମ କରିଛି । ଯେଉଁ ରାଷ୍ଟ୍ରମାନେ ବିକଶିତ ହୋଇଛନ୍ତି ସେମାନଙ୍କୁ ଈଶ୍ୱରୀୟ ଆଶୀର୍ବାଦ ମିଳିନାହିଁ, ଯେଉଁମାନେ ଅନୁନ୍ନତ ହୋଇ ଦୁଃଖ ଦୁର୍ଦ୍ଦଶା ଭୋଗ କରୁଛନ୍ତି ସେମାନଙ୍କୁ ଈଶ୍ୱରଙ୍କ ଅଭିଶାପ ମିଳିନାହିଁ । ମଣିଷର ପ୍ରୟାସ ଓ ସାମାଜିକ ପରିବେଶଦ୍ୱାରା ବିକାଶ ସମ୍ଭବ ହୋଇଛି । ମଣିଷର ପ୍ରୟାସଦ୍ୱାରା ବିକାଶ, ସମୃଦ୍ଧି ହାସଲକରି ଉନ୍ନତ ଜୀବନର ଅଧିକାରୀ ହେବା ଯେ ସମ୍ଭବ ଏହା ହିଁ ହେତୁବାଦୀ ଜୀବନଦୃଷ୍ଟିର ନିଷ୍କର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ହେତୁବାଦରେ ବିଶ୍ୱାସ କରାଯାଏ ଯେ ବୁଦ୍ଧି ଏକ ସାଧନ ମାତ୍ର, ଏହାକୁ ଭଲ ଦିଗରେ ବିନିଯୋଗ କରାଯାଇପାରେ ବା ମନ୍ଦ ଲକ୍ଷ୍ୟ ଦିଗରେ ପ୍ରୟୋଗ କରାଯାଇପାରେ। ଆମ ସଂସାରରେ ପ୍ରେମ, ମାନବିକତା, ସମ୍ବେଦନଶୀଳତାର ମନୋଭାବ ଯେପରି ରହିଛି, ସେହିପରି ମଣିଷ ସମାଜରେ ହିଂସା, ଅବିବେକିତା ଓ କ୍ରୂରତା ମଧ୍ୟ ରହିଛି । ଆମର ବିଚାର ବୁଦ୍ଧିକୁ କିପରି ମହତ୍ତର ଓ ମାନବିକ ଶ୍ରେୟ ସାଧନ ଦିଗରେ ବିନିଯୋଗ କରାଯାଇ ପାରିବ ତାହା ଉପରେ ହେତୁବାଦ ପ୍ରାଧାନ୍ୟ ଦେଇଆସିଛି ।

କେତେକ ପ୍ରଶ୍ନ କରିଥାନ୍ତି : ଧର୍ମ ଭାବନାରୁ ବ୍ୟକ୍ତିକୁ ଏକ ନୀତିନିଷ୍ଠ ଜୀବନ ପାଇଁ ପ୍ରେରଣା ମିଳେ ନାହିଁ କି ? ମଣିଷ ମନରୁ ଧର୍ମ, ଈଶ୍ୱର ଭାବନା ଦୂର ହୋଇଗଲେ ସମାଜରେ ଅନୈତିକତାର ପ୍ରସାର ହେବ ନାହିଁ କି ? ନୈତିକତା ଓ ଧର୍ମ, ଈଶ୍ୱର ଭାବନା ଉପରେ ଦର୍ଶନଶାସ୍ତ୍ରରେ ବହୁ ଆଲୋଚନା ହୋଇଛି । ଦର୍ଶନଶାସ୍ତ୍ରରେ ଏହା ଏକ ସ୍ୱୀକୃତ ସିଦ୍ଧାନ୍ତ ଯେ ଧର୍ମ ଓ ଈଶ୍ୱର ବିଶ୍ୱାସ ଭିତରେ ତର୍କସମ୍ମତ ସଂପର୍କ ନାହିଁ । ପ୍ରତ୍ୟେକ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ନୀତିବାଦୀ ନୁହନ୍ତି, ସେହିପରି ପ୍ରତ୍ୟେକ ନୀତିବାଦୀ ବ୍ୟକ୍ତି ଧର୍ମ ପରାୟଣ ବା ଈଶ୍ୱର ବିଶ୍ୱାସୀ ନୁହନ୍ତି । ଅବଶ୍ୟ କେତେକ ବ୍ୟକ୍ତି ସେମାନଙ୍କ ଈଶ୍ୱର ବିଶ୍ୱାସରୁ ନୈତିକ ଜୀବନ ପାଇଁ ପ୍ରେରଣା ପାଇଥାନ୍ତି । ଏହାକୁ କେହି ଅସ୍ୱୀକାର କରୁନାହିଁ । ଏଠାରେ ଏହି ବିଶ୍ୱାସ ସଂପୂର୍ଣ୍ଣ ମନସ୍ତାତ୍ତ୍ୱିକ ଅଟେ । ତେବେ ନିଜ ଈଶ୍ୱରଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅନ୍ୟର ପୂଜାସ୍ଥଳୀକୁ ଧ୍ୱଂସ କରିବା, ନିଜ ଧର୍ମରୁ ପ୍ରେରଣା ପାଇ ସାଂପ୍ରଦାୟିକ ହିଂସାରେ ବ୍ୟାପୃତ ହେବା ଓ ଧର୍ମ ନାମରେ କ୍ରୁସେଡ୍, ଧର୍ମଯୁଦ୍ଧ ସୃଷ୍ଟି କରିବା ସଭ୍ୟତାର ଇତିହାସରେ ବହୁବାର ଘଟିଛି । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ, ଯାହା ବିବେକ ଓ ବିଚାରଶୀଳତା ଦେଇ ବ୍ୟକ୍ତି ଭିତରେ ଦୃଢ଼ ହୋଇଥାଏ । "ଆମ ପ୍ରତି ଯେଉଁ ଆଚରଣ ଆମକୁ

ଆଘାତ ଦେଇଥାଏ, ସେହି ଆଚରଣ ଅନ୍ୟ ପ୍ରତି ପ୍ରଦର୍ଶନ ନ କରିବା ହିଁ ଆମର କର୍ତ୍ତବ୍ୟ"- ହେତୁବାଦୀ ନୈତିକତାର ନିଷ୍କର୍ଷ ମନେହୁଏ । ଧର୍ମ ମଣିଷ ସମାଜକୁ ବହୁ ଭାଗ କରିବା ଏକ ବାସ୍ତବତା । ଅପରପକ୍ଷରେ ହେତୁବାଦୀ ଜୀବନଦୃଷ୍ଟିରୁ ନିଷ୍ପନ୍ନ ମାନବବାଦ ମଣିଷ ସମାଜରେ ଯେ ଏକତ୍ୱବୋଧ ସୃଷ୍ଟି କରିପାରିବ ଏହା ନିଃସନ୍ଦେହ ଅଟେ । ମଣିଷ ସମାଜରେ ରହିଥିବା ଦୌରାତ୍ମ୍ୟ ଓ ଅମାନବିକତାକୁ ଦୂର କରି ବିଶ୍ୱବ୍ୟାପୀ ମାନବଜାତିକୁ ଭାତୃତ୍ୱ ଓ ଏକତ୍ୱର ବନ୍ଧନରେ ବାନ୍ଧିବା ପାଇଁ ମାନବବାଦ ଓ ହେତୁବାଦ ହିଁ ପ୍ରେରଣାର ଉତ୍ସ ହୋଇପାରିବ ।

ଧର୍ମ ଓ ହେତୁବାଦ ପ୍ରସଙ୍ଗରେ ଏହି ଆଲୋଚନା ପରେ ଆମେ ଆମର ମୂଳ ପ୍ରଶ୍ନଟିକୁ ଆସିବା-ହେତୁବାଦୀ ମାନେ ଧର୍ମ ବିଶ୍ୱାସୀ ନା ଧର୍ମବିରୋଧୀ ? ଆମେ ଆମ ଆଲୋଚନା ପୃଷ୍ଠଭୂମିରେ ମତ ରଖୁଛେ ଯେ ପ୍ରତ୍ୟେକ ଧର୍ମ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡର ଗୋଟିଏ ସାଂସ୍କୃତିକ ଆଲୋଡନ ଓ ଏକ ଜୀବନଧାରା । ଗୋଟିଏ ଭୂଖଣ୍ଡର ଜନଜୀବନ, ସାମାଜିକ ବ୍ୟବସ୍ଥା, ସାଂସ୍କୃତିକ ପ୍ରବାହ ଇତ୍ୟାଦି ଧର୍ମଦ୍ୱାରା ପ୍ରଭାବିତ । ଯେଉଁ କାଳଖଣ୍ଡରେ ବିଭିନ୍ନ ସଭ୍ୟତାରେ ଧର୍ମମାନଙ୍କର ଉଦ୍‌ଭବ ହୋଇଥିଲା, ସମ୍ଭବତଃ ତାହା ଗୋଟିଏ ଗୋଟିଏ ନବଜାଗରଣର ସନ୍ଦେଶ ଆଣିଥିଲା ଯାହାକୁ ଆଧାର କରି ସମାଜ ଦୃଢ଼ ଭିତ୍ତି ନେଇଥିଲା ଓ ଜନଗଣଙ୍କ ଭିତରେ ସାଂସ୍କୃତିକ ସଂହତିର ପରିବେଶ ଆସିଥିଲା । ଏହି ଦୃଷ୍ଟିରୁ ଏହା ଥିଲା ଏକ ଐତିହାସିକ ଅପରିହାର୍ଯ୍ୟତା । ତେବେ କାଳକ୍ରମେ ଧର୍ମସହ ରୂଢ଼ିବାଦ, ଧର୍ମାନ୍ଧତା, କୁସଂସ୍କାର, ଜ୍ଞାନବିରୋଧୀ ମାନସିକତା ସଂଶ୍ଳିଷ୍ଟ ହୋଇଗଲା । ଅବଶ୍ୟ ଶହ ଶହ ବର୍ଷ ଧରି ସାମାଜିକ ଜୀବନକୁ ନିୟନ୍ତ୍ରିତ କରିବା ଭିତରେ ଧର୍ମମାନଙ୍କ ଭିତରେ କେତେକ ମହତ୍ତର ଚିନ୍ତା ଓ ମାନବବାଦୀ ଆଭିମୁଖ୍ୟର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଯେଉଁ ଭାବନା ମାନବ ସମାଜକୁ ସଂପ୍ରୀତି, ଭାତୃତ୍ୱ, ଶାନ୍ତିପୂର୍ଣ୍ଣ ସହାବସ୍ଥାନର ବାର୍ତ୍ତା ଦିଏ ତାହା ସାର୍ବଜନୀନ ଭାବେ ଗ୍ରହଣଯୋଗ୍ୟ । ହେତୁବାଦୀମାନେ ସେହି ଦୃଷ୍ଟିଭଙ୍ଗୀର ସମର୍ଥକ ଓ ପ୍ରବର୍ତ୍ତକ । ଏଠାରେ ଧର୍ମଶାସ୍ତ୍ର ମାନଙ୍କରୁ କେତୋଟି ଉଦାହରଣ ବା ଉଦ୍ଧୃତି ଦିଆଯାଇପାରେ ।

ପଞ୍ଚତନ୍ତ୍ର ବା ମହାଉପନିଷଦ୍‌ର ବାର୍ତ୍ତା-ସମଗ୍ର ବିଶ୍ୱ ଗୋଟିଏ ପରିବାର (ବସୁଧୈବ କୁଟୁମ୍ବକମ୍), ଏକ ପ୍ରାଚୀନ ଭାରତୀୟ ଶାସ୍ତ୍ରର ବାର୍ତ୍ତା-ସମସ୍ତେ ସୁଖରେ ରୁହନ୍ତୁ, ସମସ୍ତେ ନୀରୋଗ ରୁହନ୍ତୁ, ସମସ୍ତଙ୍କର କଲ୍ୟାଣ ହେଉ, କେହି ଦୁଃଖରେ ନ

ରହନ୍ତୁ; (ସର୍ବେ ଭବନ୍ତୁ ସୁଖିନ ସର୍ବେସନ୍ତୁ ନିରାମୟା । ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ) କିମ୍ବା ବୈଦିକ ମନ୍ତ୍ର ଆମକୁ ଅସତ୍ୟରୁ ସତ୍ୟ ଆଡକୁ ନିଅ, ଅନ୍ଧକାରରୁ ଆଲୋକ ଆଡକୁ ନିଅ ଓ ମୃତ୍ୟୁରୁ ଅମୃତତ୍ୱ ଆଡକୁ ନିଅ ଓ ସର୍ବତ୍ର ଶାନ୍ତି ବିରାଜମାନ କରୁ (ଅସତୋ ମା ସଦ୍‌ଗମୟ, ତମସୋ ମା ଜ୍ୟୋତିର୍ଗମୟ ମୃତ୍ୟୋର୍ମା ଅମୃତଂ ଗମୟ । ଓଁ ଶାନ୍ତି । ବୃହଦାରଣ୍ୟକ ଉପନିଷଦ-୧.୩.୨୮) ମାନବବାଦୀ ଜୀବନଦୃଷ୍ଟିର ପ୍ରତିଫଳନ। ସେହିପରି ବାଇବେଲର ବାଣୀ- ନିଜର ପ୍ରତିବେଶୀକୁ ଭଲପାଅ ଓ ଶତ୍ରୁକୁ କ୍ଷମାକର (Love thy neighbour as thy self; Forgive thy enemy); ସମ୍ବେଦନଶୀଳ ଲୋକମାନେ ହିଁ ଈଶ୍ୱରଙ୍କ କରୁଣା ଲାଭକରିବେ; ପବିତ୍ର ହୃଦୟର ଲୋକମାନେ ହିଁ ଈଶ୍ୱରଙ୍କୁ ଦର୍ଶନ କରିବେ; ଶାନ୍ତିସ୍ଥାପନ କରୁଥିବା ଲୋକମାନଙ୍କୁ ହିଁ ଈଶ୍ୱରଙ୍କ ସନ୍ତାନ କୁହାଯିବ; ମହମ୍ମଦଙ୍କ ବାଣୀ- ଆମେ ଆମ ସ୍ରଷ୍ଟାଙ୍କୁ ଭଲ ପାଉକି ? ତେବେ ପ୍ରଥମେ ଆମେ ମଣିଷମାନଙ୍କୁ ଭଲ ପାଇବା ଆବଶ୍ୟକ; ଓ କୋରାନରେ ବିଶ୍ୱଭାତୃତ୍ୱର ଯେଉଁ ଭାବନା ବିଭିନ୍ନ ସ୍ଥାନରେ ପ୍ରତିଫଳିତ ହୋଇଛି ଏ ସବୁ ସଭ୍ୟ ଓ ମାନବବାଦୀ ଦୃଷ୍ଟିଭଙ୍ଗୀର ପରିପ୍ରକାଶ । ସେହିପରି ନୈତିକ ଜୀବନ ପାଇଁ ପ୍ରତ୍ୟେକ ଧର୍ମରେ କିଛି ମହତ୍ତ୍ୱପୂର୍ଣ୍ଣ ବାଣୀ ରହିଛି । ବୁଦ୍ଧଙ୍କର ଅଷ୍ଟାଙ୍ଗ ମାର୍ଗ ସତ୍ ଦୃଷ୍ଟି, ସତ୍ ସଂକଳ୍ପ, ସତ୍ ବାକ୍, ସତ୍ କର୍ମ, ସତ୍ ଜୀବିକା ଅର୍ଜନ, ସତ୍ ପ୍ରୟାସ, ସତ୍ ସ୍ମୃତି ଓ ସତ୍ ସମାଧି ଉପରେ ଗୁରୁତ୍ୱ ମହାବୀରଙ୍କର ସଦାଚାର ଜୀବନ ପାଇଁ ସତ୍ୟ, ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ସଦାଚାର ଉପରେ ପ୍ରାଧାନ୍ୟ ଓ ଶିଖ୍‌ଧର୍ମର ପାଞ୍ଚଟି ପ୍ରାର୍ଥନା - ସତ୍ୟବାଦିତା, ନିଜର ଯେତିକି ପ୍ରାପ୍ୟ ସେତିକି ନେବା, ସମସ୍ତଙ୍କ ପ୍ରତି ସଂପ୍ରୀତିର ଭାବନା ରଖିବା (Goodwill towards all) ଶୁଦ୍ଧ ଲକ୍ଷ୍ୟ ପୋଷଣ କରିବା ଓ ଶେଷରେ ଈଶ୍ୱରଙ୍କୁ ପ୍ରାର୍ଥନା କରିବା ବେଶ୍ ମହତ୍ତ୍ୱପୂର୍ଣ୍ଣ । ଏହିପରି ଦେଖିଲେ ଅଧିକାଂଶ ଧର୍ମଗ୍ରନ୍ଥରେ ମହତର ଜୀବନବୋଧ ନେଇ ଅନେକ ପ୍ରେରଣାଦାୟକ ଉକ୍ତି ବା ଉଦ୍ଧୃତି ମିଳିପାରିବ । ଧର୍ମମାନଙ୍କର ଏହି ଦିଗଟି ସହିତ ହେତୁବାଦୀ ଜୀବନ ଦର୍ଶନର କୌଣସି ବିରୋଧ ନାହିଁ, ବରଂ ହେତୁବାଦ ଏହି ଦୃଷ୍ଟିଭଙ୍ଗୀକୁ ନିଷ୍ଠାର ସହ ସ୍ୱୀକାର କରେ ।

ହେତୁବାଦର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଆଦର୍ଶ ହେଉଛି ବିଚାରଶୀଳତାକୁ ପ୍ରାଧାନ୍ୟ ଦେବା । ବିଚାରଶୀଳତାର ତାତ୍ପର୍ଯ୍ୟ ହେଉଛି ମୁକ୍ତ ମନ ଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସତ୍ୟ ପ୍ରତି ପ୍ରତିବଦ୍ଧତା । ଯେଉଁ ମହାପୁରୁଷଙ୍କ ବାଣୀରେ ବା ଧର୍ମଗ୍ରନ୍ଥରେ ଏହି

ଆଦର୍ଶର ପ୍ରତିଫଳନ ଦେଖିବାକୁ ମିଳେ ତାହାକୁ ହେତୁବାଦ ସ୍ୱୀକାର କରିବାରେ ଅସଙ୍ଗତି ନାହିଁ । ହେତୁବାଦ ସର୍ବଦା ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀକୁ ପ୍ରାଧାନ୍ୟ ଦେଉଥାଏ । ଏଠାରେ ଦୁଇଟି ଉଦାହରଣ ଦେଇ ଏହି ଲେଖାଟି ଶେଷ କରିବା । ଋଗ୍‌ବେଦର ନାସଦୀୟ ସୂକ୍ତରେ ଏହି ପ୍ରଶ୍ନଟି ଉଠିଛି-

ସବୁ କିଛି କିପରି ସୃଷ୍ଟି ହେଲା କିଏ କହିପାରିବ ?

ସୃଷ୍ଟିର ଆରମ୍ଭ କିପରି ହେଲା କିଏ କହିବ ?

ସୃଷ୍ଟିପରେ ଦେବତାମାନେ ଆସିଲେ କି ?

କ'ଣ କେହି ଈଶ୍ୱର ଏ ସବୁ କରିଛନ୍ତି ନା ଈଶ୍ୱର କରିନାହାନ୍ତି ?

ଏହି ପ୍ରଶ୍ନର ଉତ୍ତର କେହି ଦେବା ସମ୍ଭବ ନୁହେଁ।

ଋଗ୍‌ବେଦରେ ଏହି ଯେଉଁ କୌତୂହଳତା ପ୍ରକାଶ ପାଇଛି ତାହା ହିଁ ହେତୁବାଦୀ ବିଚାରଦୃଷ୍ଟିର ଆଦର୍ଶ। ହେତୁବାଦ ସର୍ବଦା ସତ୍ୟକୁ ଅନ୍ୱେଷଣ କରିବାକୁ ଆହ୍ୱାନ ରଖିଛି।

ସେହିପରି କୌଣସି କଥାକୁ ବିନା ପରୀକ୍ଷଣରେ ବା ତର୍କଶୀଳ ଆଧାର ବ୍ୟତୀତ ବିଶ୍ୱାସ କରିବା ଯଥାର୍ଥ ନୁହେଁ। ବରଂ ଯାହା ଯୁକ୍ତିସଂଗତ, ପରୀକ୍ଷିତ ତାହା ହିଁ ଗ୍ରହଣ ଯୋଗ୍ୟ। ଏହା ହିଁ ହେତୁବାଦର ଆଦର୍ଶ। ଏହି ପରିପ୍ରେକ୍ଷୀରେ ବୁଦ୍ଧଙ୍କର ବାଣୀ ଉଲ୍ଲେଖ କରାଯାଇପାରେ-

Believe nothing, no matter where you read it or who said it- even if I have said it- unless it agrees with your reason. Believe not because some old manuscripts have told it, believe not because it is your national belief, believe not because you have been made to believe from your childhood, but reason truth out, and after you have analyzed it, then if you find it will do good to one and all, believe it, live up to it and help others live up to it.

(The Budhha)

ଏହାର ଓଡିଆ ଅନୁବାଦ ହେବ:-

ତୁମେ ଯାହା ପଢ଼ିଛ, କିମ୍ବା ଯାହା ତୁମକୁ କୁହାଯାଇଛି
-- ତାହା ମୁଁ କହିଥିଲେ ମଧ୍ୟ - ତାହା ବିଶ୍ୱାଂସ କରିନିଅ ନାହିଁ।
ବରଂ ଯାହା ତୁମକୁ ଯୁକ୍ତିସଂଗତ ମନେ ହେଉଛି, ତାହା ହିଁ ଗ୍ରହଣକର ।
ଯାହା ପ୍ରାଚୀନ ପାଣ୍ଡୁଲିପିରେ କୁହାଯାଇଛି,
ଯାହା ତୁମ ରାଜ୍ୟରେ ବିଶ୍ୱାସ କରାଯାଉଛି,
ଯାହା ପିଲାଟି ବେଳୁ ତୁମକୁ ବିଶ୍ୱାସ କରିବା ପାଇଁ କୁହାଯାଇଛି,
ତାହା ବିଶ୍ୱାସ କରିନିଅ ନାହିଁ ।
ସତ୍ୟ ବିଷୟରେ ଅନୁଶୀଳନ କର,
ସେହି ଅନୁସନ୍ଧାନରୁ ଯଦି ଅନୁଭବ କର ଯେ ଏହି ଭାବନା
ପ୍ରତ୍ୟେକଙ୍କର ମଙ୍ଗଳ ସାଧନ କରିପାରିବ,
ତେବେ ତାହା ବିଶ୍ୱାସ କର ।
ଯେଉଁ ସତ୍ୟରେ ଉପନୀତ ହେଲ,
ସେହି ଆଦର୍ଶରେ ଜୀବନକୁ ପରିଚାଳିତ କର,
ଅନ୍ୟମାନେ ସେହି ଆଦର୍ଶରେ ବଞ୍ଚିବା ପାଇଁ ସେମାନଙ୍କୁ ସାହାଯ୍ୟ କର ।
ବୁଦ୍ଧଙ୍କର ଏହି ବକ୍ତବ୍ୟରେ ହେତୁବାଦର ଆଦର୍ଶ ନିହିତ ।

ଉପସଂହାରରେ ଏହା କହିବା ଉଚିତ ମନେକରୁଛି ଯେ ହେତୁବାଦୀମାନେ ଧର୍ମବିରୋଧୀ ନୁହନ୍ତି, କିନ୍ତୁ ଧର୍ମ ଯେତେବେଳେ ମାନବିକତା ବିରୋଧୀ ହୁଏ କିମ୍ବା କୁସଂସ୍କାର ଓ ରୂଢ଼ିବାଦର ପ୍ରସାର କରେ, ସେହି ଧର୍ମକୁ ହେତୁବାଦୀମାନେ ସର୍ବାନ୍ତଃକରଣରେ ବିରୋଧ କରିଥାନ୍ତି ।



# ବୁଦ୍ଧି, ବ୍ୟକ୍ତି ଓ ବିକାଶ

ଜୀବ ଜଗତରେ ଯେତେ ପ୍ରାଣୀ ରହିଛନ୍ତି ସେମାନଙ୍କ ମଧ୍ୟରେ ମଣିଷ ଶ୍ରେଷ୍ଠ । ମଣିଷ ଏହି ଦୃଷ୍ଟିରୁ ଶ୍ରେଷ୍ଠ ଯେ ଅନ୍ୟ ସବୁ ପ୍ରାଣୀ ଲକ୍ଷ ଲକ୍ଷ ବର୍ଷ ତଳେ ଯେପରି ରହୁଥିଲେ ଆଜି ମଧ୍ୟ ସେହିପରି ରହିଛନ୍ତି । ସେମାନଙ୍କର ଜୀବନଧାରାରେ କୌଣସି ଗୁଣାତ୍ମକ ପରିବର୍ତ୍ତନ ହୋଇ ନାହିଁ । କିନ୍ତୁ ମଣିଷ ସର୍ବଦା ବିକାଶର ଧାରାରେ ଅଗ୍ରଗତି କରିଚାଲିଛି । ଭାଷା, ସାହିତ୍ୟ, ଧର୍ମ, ଦର୍ଶନ, ଜ୍ଞାନ-ବିଜ୍ଞାନ, ନୂଆ ନୂଆ ପ୍ରଯୁକ୍ତି ମଣିଷ ସୃଷ୍ଟି କରିଛି । ସଭ୍ୟତା, ସଂସ୍କୃତି ନିର୍ମାଣ କରିଛି । ଗୋଟିଏ ଶତାବ୍ଦୀ ତଳେ ଜୀବନର ମାନ ଯେଉଁ ସ୍ତରରେ ଥିଲା, ସେଥିରେ ନାନା ପରିବର୍ତ୍ତନ ସଂପ୍ରତି ସମ୍ଭବ ହୋଇଛି । ପ୍ରକୃତିର ରହସ୍ୟକୁ ବୁଝିବାକୁ ମଣିଷ ଅବିରତ ପ୍ରୟାସ କରିଚାଲିଛି ଓ ନିଜର ପରିବେଷ୍ଟନୀ ସହିତ ନିଜକୁ ଖାପ ଖୁଆଇ ଓ ସେଥିରେ ଉନ୍ନତି ଆଣିବାକୁ ଉଦ୍ୟମ କରଆସିଛି । ନୂଆ ନୂଆ ଉଦ୍ଭାବନ ଓ ଆବିଷ୍କାର ଦ୍ୱାରା ଜୀବନର ଧାରା ସହଜ ଓ ସୁଗମ ହୋଇଛି । ନାନା ପ୍ରାକୃତିକ ବିପର୍ଯ୍ୟୟକୁ ସମ୍ମୁଖୀନ ହୋଇ ନିଜର ଜ୍ଞାନ ବଳରେ ସେ ସବୁ ପରିସ୍ଥିତି ଉପରେ ନିଜର ଆଧିପତ୍ୟ ସାବ୍ୟସ୍ତ କରିବାକୁ ମଣିଷ ଉଦ୍ୟମ କରିଆସିଛି । ଏସବୁ ଯୋଗୁଁ ଏକଦା ବଣ ଜଙ୍ଗଲରେ ପଶୁ ଭଳି ଜୀବନ ବଞ୍ଚୁଥିବା ମଣିଷ ନାନା ବିକାଶ ଓ ପରିବର୍ତ୍ତନର ସ୍ତର ଦେଇ ଆଜିର ଉନ୍ନତ ସ୍ଥିତିକୁ ଆସିବା ସମ୍ଭବ ହୋଇଛି । ମଣିଷ "ବୁଦ୍ଧିମାନ" ହୋଇଥିବାରୁ ନିଜର ବୁଦ୍ଧି ପ୍ରୟୋଗ କରି ଏସବୁ ବିକାଶ କରିବାକୁ ସମର୍ଥ ହୋଇଛି । ବୁଦ୍ଧିର ପ୍ରୟୋଗ ଯୋଗୁଁ ମଣିଷ ଅନୁସନ୍ଧିତ୍ସୁ ମନୋଭାବ ରଖିଆସିଛି ଓ ଉଦ୍ଭାବନଶୀଳ ହୋଇଛି । ଉଦ୍ଭାବନଶୀଳ ହୋଇଥିବାରୁ ସଭ୍ୟତାର ବିକାଶ ସମ୍ଭବ ହୋଇଛି ଓ ବିକାଶର ଧାରା କ୍ରମବର୍ଦ୍ଧିଷ୍ଣୁ ଭାବେ ଆଗକୁ ଯାଇଛି । ଏସବୁ ସମ୍ଭବ ହୋଇଛି ମଣିଷର ବୁଦ୍ଧି ଓ ଚିନ୍ତା କରିବାର

ସାମର୍ଥ୍ୟ ଯୋଗୁଁ । ତେବେ "ବୁଦ୍ଧି" କହିଲେ କ'ଣ ବୁଝାଏ ଓ ଚିନ୍ତନର ପ୍ରକୃତ ତାତ୍ପର୍ଯ୍ୟ କ'ଣ ? ଶଂସିତ ପ୍ରବଂଧଟିରେ ବୁଦ୍ଧି କ'ଣ ଓ ଏହା ସହ ଆମ ବିକାଶର ସଂପର୍କ କ'ଣ ତାହାର ସଂକ୍ଷିପ୍ତ ଆଲୋଚନା ଆମର ଲକ୍ଷ୍ୟ ।

(୧)

ବୁଦ୍ଧି କ'ଣ ବୁଝାଇବା ହୁଏତ କଷ୍ଟକର ନ ହେଲେ ବି ବୁଦ୍ଧିର ଏକ ସଂଜ୍ଞା ନିରୂପଣ କରିବା ସହଜସାଧ୍ୟ ନୁହେଁ । ବୁଦ୍ଧି ଏକ ମାନସିକ ସାମର୍ଥ୍ୟ ବା ଦକ୍ଷତା ବୋଲି ସାଧାରଣ ଭାବେ ଆମେ ଭାବିଥାଏ । ଜଣେ ନିଜର ମାନସିକ ଦକ୍ଷତାକୁ ବିଭିନ୍ନ ସ୍ତରରେ ପ୍ରୟୋଗ କରିଥାଏ । କୌଣସି ବିଷୟରେ ତର୍କଗତ ଅସଂଗତି ନ ରଖି ଯୁକ୍ତି ଯୁକ୍ତ ଭାବରେ ଚିନ୍ତାକରିବା ଏକ ମାନସିକ ଦକ୍ଷତା । ଆମେ ଯାହା ଭାବୁ, ଚିନ୍ତା କରୁ ବା କୌଣସି କ୍ଷେତ୍ରରେ କିଛି ସିଦ୍ଧାନ୍ତରେ ଉପନୀତ ହେଉ, ଏହା ସମ୍ଭବ ହୁଏ ଆମର ବୁଦ୍ଧିର ପ୍ରୟୋଗ ଯୋଗୁ । ସେହିପରି କୌଣସି ଲକ୍ଷ୍ୟ ସାଧନ ପାଇଁ ଉଦ୍ଦେଶ୍ୟମୂଳକ ଭାବେ କାର୍ଯ୍ୟ କଲାବେଳେ ଆମେ ବୁଦ୍ଧିର ପ୍ରୟୋଗ କରିଥାଏ । ଅର୍ଥାତ୍ ଉଦ୍ଦେଶ୍ୟ-ପ୍ରଣୋଦିତ ହୋଇ କାର୍ଯ୍ୟ କଲାବେଳେ ଆମେ ବୁଦ୍ଧି ଖଟାଇଥାଏ ଯାହାଦ୍ୱାରା କି ଆମେ ଆମର ଅଭିଳଷିତ ଲକ୍ଷ୍ୟ ପୂରଣ କରିପାରିବା । ସେହିପରି ଆମର ପରିବେଶ ଓ ପରିବେଷ୍ଟନୀ ସହ ନିଜକୁ ନିୟୋଜିତ ବା ଖାପ ଖୁଆଇବାର ସାମର୍ଥ୍ୟ ଆମର ବୁଦ୍ଧି ଯୋଗୁ ସମ୍ଭବ ହୋଇଥାଏ । ପ୍ରାକୃତିକ ପରିବେଶରେ ଘଟୁଥିବା ପରିବର୍ତ୍ତନ ସହ ନିଜକୁ କିପରି ସମାଯୋଜ୍ୟ କରିହେବ ଏହା ମଣିଷ ନିଜର ବୁଦ୍ଧି ବଳରେ ଚେଷ୍ଟା କରିଥାଏ । ମୋଟ ଉପରେ କହିଲେ ବିଚାର ସ୍ତରରେ ସୂକ୍ଷ୍ମତା ଆଣିବା, କୌଣସି ଲକ୍ଷ୍ୟ ପ୍ରାପ୍ତି ପାଇଁ ଯୋଜନାବଦ୍ଧ ଭାବରେ କାର୍ଯ୍ୟ କରିବା ଓ ପରିବେଷ୍ଟନୀ ସହ ସଫଳତାର ସହ ନିଜକୁ ଖାପ ଖୁଆଇବାର ପ୍ରୟାସ ବୁଦ୍ଧିଦ୍ୱାରା ସମ୍ଭବ ହୋଇଥାଏ । ଏହି ଦୃଷ୍ଟିରୁ ଦେଖିଲେ ବୁଦ୍ଧି କେତେକ ନିର୍ଦ୍ଦିଷ୍ଟ ସାମର୍ଥ୍ୟର ସମଷ୍ଟି ବୋଲି ମନେ ହୋଇପାରେ ।

ମଣିଷ ଭିତରେ ଥିବା ବୁଦ୍ଧିର ଉତ୍ସ ସଂପର୍କରେ କୁହାଯାଇପାରେ ଯେ ଏହା ବ୍ୟକ୍ତି ନିଜର ବାପା-ମା ଓ ବଂଶାନୁକ୍ରମିକ ଧାରାରେ ପ୍ରାପ୍ତ ହୋଇଥାଏ ଓ ପରିବେଷ୍ଟନୀର ପ୍ରଭାବରେ ପୁଷ୍ଟ ହୋଇଥାଏ । ଜଣେ ବ୍ୟକ୍ତି ତାହାର ଜୈବିକ ଶରୀରଟିକୁ ବାପା-ମାଙ୍କର ଶାରୀରିକ ସଂପର୍କରୁ ପ୍ରାପ୍ତ ହୋଇଥାଏ ଓ ତାର ମାନସିକ ବିକାଶ ପରିବେଷ୍ଟନୀର

ପ୍ରଭାବରୁ ହୋଇଥାଏ । ଶିଶୁଟିଏ ଜନ୍ମ ନେବାପରେ ତାହାର ଶାରୀରିକ ବିକାଶ ସହ ବୁଦ୍ଧିର ବିକାଶ ମଧ୍ୟ ଘଟିଥାଏ । ବୟସର ବୃଦ୍ଧି ସହ ମାନସିକ ବିକାଶ ସମତାଳ ରକ୍ଷା କରି ହେଉଥିଲେ ତାର ବୁଦ୍ଧି ସାଧାରଣ ବୋଲି ମନେହୁଏ । ମନୋବିଜ୍ଞାନୀ ମାନେ ବିଭିନ୍ନ ପଦ୍ଧତି ଜରିଆରେ ଜଣକର ମାନସିକ ବିକାଶ ଠିକ୍ ଭାବରେ ହେଉଛି କି ନାହିଁ ତାହାକୁ ପରୀକ୍ଷା କରି ଜାଣିପାରନ୍ତି। କାହା ପାଖରେ ବୁଦ୍ଧିର ଯଥାର୍ଥ ବିକାଶ ହେଉଛି ବା କିଏ ଅଳ୍ପ-ବୁଦ୍ଧିଆ ବା କିଏ ବୁଦ୍ଧିହୀନତାରେ ଆକ୍ରାନ୍ତ ତାହା ବିଭିନ୍ନ ପରୀକ୍ଷା ମାଧ୍ୟମରେ ମନୋବିଜ୍ଞାନରେ ନିରୂପଣ କରାଯାଇପାରେ । ଜଣେ ବ୍ୟକ୍ତିର ମାନସିକ ବିକାଶ ଠିକ୍ ଅଛି କି ନାହିଁ ତାହା ତାର ବୁଦ୍ଧ୍ୟଙ୍କ ବା ଆଇ.କ୍ୱିଉ (IQ) ମାପି କୁହାଯାଇ ପାରିବ ବୋଲି ମନୋବିଜ୍ଞାନରେ ଗ୍ରହଣ କରାଯାଏ । ମନୋବୈଜ୍ଞାନିକ ପ୍ରଣାଳୀରେ କିଏ ବୁଦ୍ଧିମାନ, କିଏ ସାଧାରଣ, କିଏ ବୋକା, କିଏ ବୁଦ୍ଧିହୀନ ବୁଦ୍ଧ୍ୟଙ୍କର ପରିମାଣ ଆଧାରରେ ନିରୂପଣ କରାଯାଏ । ମନୋବିଜ୍ଞାନରେ ବୁଦ୍ଧ୍ୟଙ୍କର ଗଣନା ପରିପ୍ରେକ୍ଷୀରେ "ମାନସିକ ବୟସ"ର ଭାବନା ରହିଛି । ଗୋଟିଏ ପିଲା ଯଦି ତାର ବୟସ ଅନୁଯାୟୀ କାର୍ଯ୍ୟକରେ ତେବେ ତାର ଶାରୀରିକ ବୟସ ସହିତ ମାନସିକ ବୟସ ସମାନ ଅଛି ବୋଲି ଗ୍ରହଣ କରାଯାଏ । ଗୋଟିଏ ପିଲା ଚାରି ମାସ ବେଳକୁ ହସିବା, ନଅ ମାସ ବେଳକୁ ଛିଡା ହେବା ବା ଗୁରୁଣ୍ଡିବା, ବର୍ଷେ ବେଳକୁ ଚାଲିବା, ଦୁଇ ବର୍ଷ ବେଳକୁ ଭଲ ଭାବେ କଥା କହିପାରିବା, ତିନି ବର୍ଷ ବେଳକୁ ବାକ୍ୟ କହିପାରିବା, ପାଞ୍ଚ-ଛ' ବର୍ଷ ବେଳକୁ ସଂଖ୍ୟା ଗଣିପାରିବା ଇତ୍ୟାଦି କରିବା ସ୍ୱାଭାବିକ ହୋଇପାରେ । ଜଣେ ଯାହା ତିନିବର୍ଷରେ କରିବା କଥା ତାହା ଯଦି ସେ ପାଞ୍ଚବର୍ଷ ପରେ ବି କରିପାରୁ ନାହିଁ ତେବେ ତାହାର ମାନସିକ ବିକାଶ ଠିକ୍ ହୋଇନାହିଁ ବୋଲି ଧରାଯାଏ । ଶାରୀରିକ ବିକାଶ ଠିକ୍ ଭାବେ ହେଉ ନଥିଲେ ମାନସିକ ବିକାଶ ବି ବାଧାପ୍ରାପ୍ତ ହେଉଥାଏ । ସୁତରାଂ ମାନସିକ ବୟସ ଶାରୀରିକ ବୟସ ସହ ସମାନ ଥିଲେ ଜଣେ ସାଧାରଣ ବୁଦ୍ଧିସଂପନ୍ନ, ମାନସିକ ବୟସ ଶାରୀରିକ ବୟସଠାରୁ କମ୍ ହେଲେ ଜଣେ ଅଳ୍ପ ବୁଦ୍ଧିର ପିଲା ଓ ମାନସିକ ବୟସ ଶାରୀରିକ ବୟସଠାରୁ ଅଧିକ ହେଲେ ଜଣେ ବୁଦ୍ଧିମାନ ବୋଲି ବିଚାର କରାଯାଏ । ଜନ୍ମ ପରଠାରୁ ଶିଶୁଟି ବିଭିନ୍ନ ବିଷୟ ଧୀରେ ଧୀରେ ଜାଣିବା ଆରମ୍ଭ କରେ ଓ ଷୋହଳ-ସତର ବର୍ଷ ବେଳକୁ ତାର ବୁଦ୍ଧି ବୟସ୍କ ଲୋକଙ୍କ ସହ ସମାନ ହୋଇଯାଏ । ଶିକ୍ଷଣ ପ୍ରକ୍ରିୟାରେ ତଥା ସାମାଜିକ ପରିସ୍ଥିତିର ପ୍ରଭାବରେ ବୁଦ୍ଧିର ଉତ୍କର୍ଷ ଆସିଥାଏ । ଅତ୍ୟନ୍ତ ବୁଦ୍ଧିମାନ ପିଲାଙ୍କର ବୌଦ୍ଧିକ ସାମର୍ଥ୍ୟ ଶାରୀରିକ

ଅଭିବୃଦ୍ଧିରୁ ଜଣାପଡେ ନାହିଁ । ବରଂ ତାହାର ଜ୍ଞାନ, ବୋଧଶକ୍ତି, ଭାଷାଜ୍ଞାନ, କୌଣସି ଆଲୋଚନାରେ ସ୍ୱଚ୍ଛତା ଇତ୍ୟାଦିରୁ ତାହାର ଅସାଧାରଣ ବୁଦ୍ଧି ବିଷୟ ଜଣାଯାଏ ।

ମନୋବୈଜ୍ଞାନିକ ଅନୁଶୀଳନରେ ବୁଦ୍ଧି ଓ ବୁଦ୍ଧ୍ୟଙ୍କକୁ ବ୍ୟାଖ୍ୟା ଓ ବିଶ୍ଳେଷଣ କରାଯାଏ । ବୁଦ୍ଧି ଓ ବୁଦ୍ଧ୍ୟଙ୍କ ସମାନ ଭାବନା ନୁହନ୍ତି । ବୁଦ୍ଧିର ପରୀକ୍ଷା ପାଇଁ ଏକ ପ୍ରକ୍ରିୟା ସାହାଯ୍ୟରେ ଗଣନା କରାଯାଇ ଏକ ସୂତ୍ର ମାଧମରେ ବୁଦ୍ଧ୍ୟଙ୍କକୁ ପ୍ରକାଶ କରାଯାଏ। ଏଥିପାଇଁ ଭିନ୍ନ ଭିନ୍ନ ପ୍ରକ୍ରିୟା ନିଆଯାଏ, ତେବେ ପ୍ରତ୍ୟେକ ପରୀକ୍ଷାରୁ ବୁଦ୍ଧ୍ୟଙ୍କ ଭିନ୍ନ ଭିନ୍ନ ହେବାର ସମ୍ଭାବନା ଦେଖାଯାଏ । ବୁଦ୍ଧିର ବିକାଶ ପ୍ରକ୍ରିୟାରେ ଅନୁବଂଶୀୟ ଗୁଣ ଓ ପରିବେଷ୍ଟନୀର ପ୍ରଭାବ ସମ୍ମିଳିତ ଭାବେ କାର୍ଯ୍ୟକରେ। ତେବେ କେତେ ଅନୁବଂଶୀୟ ଓ କେତେ ପରିବେଷ୍ଟନୀର ପ୍ରଭାବ ତାହା ନିର୍ଣ୍ଣୟ କରିବା କଷ୍ଟସାଧ। ବୁଦ୍ଧିହୀନତା ବି ଏକ ମାନବୀୟ ଓ ସାମାଜିକ ସମସ୍ୟା । ପୁନଶ୍ଚ ବୁଦ୍ଧିହୀନ ଲୋକଙ୍କର ବୁଦ୍ଧ୍ୟଙ୍କ ମପାଯାଇ ସେମାନଙ୍କୁ ବିଭିନ୍ନ ଶ୍ରେଣୀରେ ବିଭାଜନ କରାଯାଏ । ମନୋବିଜ୍ଞାନୀମାନେ ବୁଦ୍ଧିହୀନତାର ନାନା କାରଣ ଦର୍ଶାଇଥାନ୍ତି । ମାନସିକ ଅନଗ୍ରସରତାର କାରଣ ନିର୍ଣ୍ଣୟ କରିବା ଏକ ଜଟିଳ ବ୍ୟାପାର । ଭାଇ ଭଉଣୀ ମାନଙ୍କ ଭିତରୁ କେହି ବୁଦ୍ଧିମାନ ହେବା ଓ ସେହି ପରିବେଶରେ ଜଣେ ମାନସିକ ଅନଗ୍ରସର ହେବା ମଧ୍ୟ ସମ୍ଭବ ।

ମଣିଷ ଭିତରେ ବୁଦ୍ଧିର ବିକାଶ ଓ ଭାଷା କହିବାର ସାମର୍ଥ୍ୟ ଯୋଗୁ ମଣିଷ ହିଁ ଚିନ୍ତା କରିପାରେ । ଚିନ୍ତନ ଧାରାରେ ଜ୍ଞାନ-ବିଜ୍ଞାନର ବିକାଶ, ସାହିତ୍ୟ, ଦର୍ଶନ, କଳା ଭଳି ସୃଜନଶୀଳ ଅଭିବ୍ୟକ୍ତି ସମ୍ଭବ ହୋଇଛି । ସଭ୍ୟତାର ବିକାଶ ପରଠାରୁ ବିଭିନ୍ନ ସ୍ତରରେ ଓ ନାନା ବିଷୟରେ ମଣିଷର ବୌଦ୍ଧିକ ସୃଜନଶୀଳତା ଚିନ୍ତନ ମଧ ଦେଇ ବିକଶିତ ହୋଇଛି । ତେବେ ଚିନ୍ତନ କ'ଣ, ଆମେ କାହିଁକି ଓ କିପରି ଚିନ୍ତାକରୁ, ଏହା ମସ୍ତିଷ୍କର ଏକ ମାନସିକ କ୍ରିୟା ନା ଆଉ କିଛି ପ୍ରଶ୍ନ ଗୁଡିକ ବି ବେଶ୍ ଜଟିଳ । ମନୋବିଜ୍ଞାନ, ସ୍ନାୟୁବିଜ୍ଞାନ ଓ ଦର୍ଶନ ପରିସରରେ ଏହି ବିଷୟ ଗୁଡିକର ବିଭିନ୍ନ ଅନୁଶୀଳନ ଭିନ୍ନ ଭିନ୍ନ ପୃଷ୍ଠଭୂମିରୁ ହୋଇଥାଏ । ଏଠାରେ କୌଣସି ଜଟିଳ ସୈଦ୍ଧାନ୍ତିକ ପ୍ରସଙ୍ଗକୁ ନ ଯାଇ ଚିନ୍ତନର କେତେକ ସାଧାରଣ ଲକ୍ଷଣର ସୂଚନା ଦିଆଯାଇପାରେ ।

ଦର୍ଶନ ପରିସରରେ ମାନସ ପ୍ରତ୍ୟୟ ଗୁଡିକର ତାର୍କିକ ଅନୁଶୀଳନ କରାଯାଏ । ମନ ସଂକ୍ରାନ୍ତୀୟ ପ୍ରତ୍ୟୟ ଗୁଡିକର ଭ୍ରମାତ୍ମକ ବିଶ୍ଳେଷଣ ଦର୍ଶନ ପରିସରରେ ବହୁ ଜଟିଳ ସମସ୍ୟା ସୃଷ୍ଟି କରିଆସିଛି । ଜଣକୁ ଚିନ୍ତାଶୀଳ, ଚତୁର, ବୁଦ୍ଧିମାନ, ମେଧାବୀ କହିଲା ବେଳେ ତା ମନର କୌଣସି ନିଭୃତ ସାମର୍ଥ୍ୟକୁ ବୁଝାଯାଏ ନାହିଁ । ସେହିପରି ଭାବିବା, ହୃଦୟଙ୍ଗମ କରିବା, ଅନୁଶୋଚନା କରିବା, ଚିନ୍ତା କରିବା ଇତ୍ୟାଦି କାର୍ଯ୍ୟ ନିଭୃତ ମନର କୌଣସି ଗୁପ୍ତ ପ୍ରକ୍ରିୟାକୁ ସୂଚାଏ ନାହିଁ। ଖେଳିବା, ଦୌଡିବା, ପହଁରିବା, ଲେଖିବା ଯେପରି ଶାରୀରିକ କ୍ରିୟାର ସୂଚନାଦିଏ, ଭାବିବା, ହୃଦୟଙ୍ଗମ କରିବା, ଅନୁତାପ କରିବା କୌଣସି ଘଟଣା ଜନିତ ମାନସିକ କ୍ରିୟାକୁ ବୁଝାଏ ନାହିଁ । ଜଣକୁ ଚତୁର ବା ବୁଦ୍ଧିମାନ କହିବାର ଅର୍ଥ ନୁହଁ ତା ଶରୀର ଅନ୍ତରାଳରେ ମନ ଭିତରେ କୌଣସି ଗୁପ୍ତ କାର୍ଯ୍ୟକୁ ବୁଝିବା । ବରଂ ଜଣଙ୍କୁ ବୁଦ୍ଧିମାନ କହିବାର ଅର୍ଥ ସେହି ବ୍ୟକ୍ତି କେତେକ ବିଷୟରେ ସୁଚିନ୍ତିତ ମତ ଦେଇ ପାରୁଛନ୍ତି, ଗୋଟିଏ ସମସ୍ୟାର ସମାଧାନ ଦର୍ଶାଇ ପାରୁଛନ୍ତି, ଏକ ଜଟିଳ ପ୍ରଶ୍ନକୁ ସହଜରେ ବ୍ୟାଖ୍ୟା କରି ଦେଉଛନ୍ତି ଇତ୍ୟାଦି । ସୁତରାଂ ବୌଦ୍ଧିକ ବା ପ୍ରଜ୍ଞାତ୍ମକ ପ୍ରତ୍ୟୟ ଗୁଡିକ ସଂପାଦନାତ୍ମକ କାର୍ଯ୍ୟକୁ ବୁଝାଏ, ମନ ଗହ୍ୱରର କ୍ରିୟାତ୍ମକ କାର୍ଯ୍ୟକୁ ବୁଝାଏ ନାହିଁ ।

ମନୋବିଜ୍ଞାନରେ ଚିନ୍ତନର ଗୁଣ ଓ ଲକ୍ଷଣ ବିଷୟରେ ନାନା ବସ୍ତୁନିଷ୍ଠ ବିଶ୍ଳେଷଣ କରାଯାଇଥାଏ । ବ୍ୟକ୍ତି ପ୍ରତ୍ୟକ୍ଷ କରିବା ଦ୍ୱାରା, କିଛି ଶିକ୍ଷା କରିବା ଦ୍ୱାରା, ସ୍ମରଣ କରିବା ଦ୍ୱାରା ଚିନ୍ତା କରିଥାଏ । ମନୋବିଜ୍ଞାନ ଅନୁଯାୟୀ ଚିନ୍ତନ ଏକ ଜଟିଳ ବହୁମୁଖୀ କ୍ରିୟା । ଆମର ପ୍ରତ୍ୟକ୍ଷ, ଶିକ୍ଷା, ସ୍ମରଣ ଇତ୍ୟାଦି ଆମ ଭିତରେ ଯେଉଁ ଉଦ୍ଦୀପନା ସୃଷ୍ଟି କରେ ସେଥିରୁ ଚିନ୍ତନ ସମ୍ଭବ ହୋଇଥାଏ । ସେହିପରି ବ୍ୟକ୍ତିର ପରିବେଷ୍ଟନୀ ଓ ଅତୀତର ଅଭିଜ୍ଞତା ବ୍ୟକ୍ତି ଭିତରେ ଚିନ୍ତା କରିବାର ଉଦ୍ଦୀପନା ବି ସୃଷ୍ଟି କରିପାରେ । ମନୋବିଜ୍ଞାନ ମାନଦଣ୍ଡରୁ ଚିନ୍ତନ ଏକ ଅଦୃଶ୍ୟ ଓ ଅନ୍ତରୀଣ ପ୍ରକ୍ରିୟା ହେଲେ ବି ଏହାର ଅଭିବ୍ୟକ୍ତି ଆମର ବ୍ୟବହାରରେ ହୋଇଥାଏ । ଜଣଙ୍କର ବ୍ୟବହାର ଆଧାରରେ ତାହାର ମାନସିକ ଅବସ୍ଥା ବିଷୟରେ ଜାଣିହୁଏ ।

ସ୍ନାୟୁବିଜ୍ଞାନୀ ମାନେ ଚିନ୍ତନ ପ୍ରକ୍ରିୟାରେ ମସ୍ତିଷ୍କ କିପରି କାର୍ଯ୍ୟକରିଥାଏ ତାହା ଦର୍ଶାଇଥାନ୍ତି । ମସ୍ତିଷ୍କକୁ ଚିନ୍ତନ ପ୍ରକ୍ରିୟାର ଆଧାର ବା ଅବୟବ ଭାବେ ନିଆଯାଏ । ସ୍ନାୟୁ ବିଶେଷଜ୍ଞଙ୍କ ମତରେ ମସ୍ତିଷ୍କରୁ ଅବିରତ ବୈଦ୍ୟୁତିକ ତରଙ୍ଗ

ନିସୃତ ହେଉଥାଏ । ମସ୍ତିଷ୍କ ତରଙ୍ଗକୁ ଆଧୁନିକ ଯନ୍ତ୍ର ସାହାଯ୍ୟରେ ଲିପିବଦ୍ଧ କରି ମାନସିକ ସ୍ଥିତିର ସୂଚନା ଦିଆଯାଇପାରେ । ନିଦ୍ରା, ନିଶ୍ଚେତକ ବା ନିଦକାରକ ଔଷଧର ପ୍ରଭାବ ଯୋଗୁ ମସ୍ତିଷ୍କ ତରଙ୍ଗର ଆକୃତିରେ ପରିବର୍ତ୍ତନ ଘଟେ, ସେହିପରି ଉତ୍ତେଜିତ ଅବସ୍ଥାରେ, କ୍ଷୀପ୍ରତା କ୍ଷେତ୍ରରେ ଏହି ତରଙ୍ଗର ସ୍ଥିତିରେ ଭିନ୍ନତା ଲକ୍ଷ୍ୟ କରିହୁଏ । ମସ୍ତିଷ୍କର ନିର୍ଗତ ତରଙ୍ଗକୁ ଲିପିବଦ୍ଧ କରି ସେଥିରୁ ଚିନ୍ତା, ମାନସିକ ସ୍ଥିତି ଇତ୍ୟାଦି ସଂପର୍କରେ ଧାରଣା କରିହୁଏ । ଜଣେ ସତ କହୁଛନ୍ତି ବା ମିଥ୍ୟାର ଆଶ୍ରୟ ନେଉଛନ୍ତି ତାହାକୁ ଅତ୍ୟାଧୁନିକ ପ୍ରକ୍ରିୟାରେ ମସ୍ତିଷ୍କରୁ ନିର୍ଗତ ତରଙ୍ଗକୁ ଅନୁଶୀଳନ କରି ଜାଣିହୁଏ ।

ମଣିଷର ମସ୍ତିଷ୍କ ସମସ୍ତ ଇତର ପ୍ରାଣୀଙ୍କ ମସ୍ତିଷ୍କଠାରୁ ଅଧିକ ବିକଶିତ। ସୁତରାଂ ଚିନ୍ତା କରିବା ମଣିଷର ବିଶେଷତ୍ୱ । କେତେକ ପ୍ରାଣୀ ଯଥା ସିଂପାଜୀ, ମାଙ୍କଡ ଇତ୍ୟାଦି ଜୀବଙ୍କ ବ୍ୟବହାରରେ ଚିନ୍ତନ ପ୍ରକ୍ରିୟା ପ୍ରାଥମିକ ସ୍ତରରେ ଥିବାର ସୂଚନା ମିଳେ, ତେବେ ଏ କ୍ଷେତ୍ରରେ ମଣିଷ ଅନନ୍ୟ ମନେହୁଏ । ସୃଜନଶୀଳ ଚିନ୍ତନ ମଣିଷର ବିଶେଷତ୍ୱ । ମଣିଷର ଅନ୍ୟ ଏକ ବିଶେଷତ୍ୱ ହେଉଛି ଭାଷାର ବ୍ୟବହାର । ଚିନ୍ତନ ଭାଷା ମାଧ୍ୟମରେ ହୁଏ, ସେ ଦୃଷ୍ଟିରୁ ଭାଷା ଓ ଚିନ୍ତନ ପ୍ରାୟତଃ ଅଙ୍ଗାଙ୍ଗୀ ଭାବେ ସଂପୃକ୍ତ । ଭାଷା ଓ ଚିନ୍ତନ ଘନିଷ୍ଠ ଭାବେ ସମ୍ବନ୍ଧିତ ହେଲେ ବି ସେମାନେ ଅଭେଦ ନୁହନ୍ତି । ତେବେ ଯେଉଁ ଲୋକମାନେ କାଲା ବା ବଧିର ସେମାନେ ଭାଷା ଜାଣନ୍ତି ନାହିଁ, କିନ୍ତୁ ସେମାନେ ଯେ ଚିନ୍ତାରହିତ ଏହା କୁହାଯାଇ ପାରିବ ନାହିଁ । ଚିନ୍ତନ ସହିତ ଭାଷାର ନିବିଡ ସଂପର୍କ ରହିଥିଲେ ମଧ୍ୟ ଚିନ୍ତନ ସହିତ ଅନ୍ୟାନ୍ୟ ବିଷୟ ବି ସଂପୃକ୍ତ । ସମ୍ବେଦନ, ଅନୁଭବ ଓ ରୂପକଳ୍ପ ବି ଚିନ୍ତନ ସହିତ ଜଡିତ। ସମ୍ବେଦନ ହେଉଛି ଇନ୍ଦ୍ରିୟ-ଆଧାରିତ ଜ୍ଞାନ ଓ ସେହି ଜ୍ଞାନରୁ ରୂପକଳ୍ପ ଆସିଥାଏ। ଏକ ହାତୀକୁ ପ୍ରତ୍ୟକ୍ଷ କଲାବେଳେ ଆମେ ହାତୀର ସମ୍ବେଦନ (impression) ଲାଭ କରିଥାଏ, ହାତୀକୁ ନ ଦେଖିବା ସମୟରେ ହାତୀ ବିଷୟକ ଚିନ୍ତନ ହେଉଛି ରୂପକଳ୍ପ । ଚିନ୍ତନ ଶବ୍ଦ ସାହାଯ୍ୟରେ ହୋଇପାରେ, ରୂପକଳ୍ପ ସାହାଯ୍ୟରେ ମଧ୍ୟ ହୋଇପାରେ । ସୁତରାଂ ଚିନ୍ତନ ସହିତ ଭାଷାର ନିବିଡ ସଂପର୍କ ଥିଲେ ବି ଚିନ୍ତନ ଓ ଭାଷା ଅଭେଦ ନୁହନ୍ତି ।

ମଣିଷ ଯାହା ସବୁ ଚିନ୍ତା କରେ ସେ ସବୁ ବାସ୍ତବ ହୋଇପାରେ, କଳ୍ପନା ବି ହୋଇପାରେ । ଚିନ୍ତନକୁ ବାସ୍ତବାଭିମୁଖୀ ବା କଳ୍ପନାଶ୍ରୟୀ ଭାବରେ ବିଭାଜନ

କରାଯାଇପାରେ । ଯେଉଁ ଚିନ୍ତନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ ଓ ଯୁକ୍ତିସଂଗତ ତାହା ବାସ୍ତବାଭିମୁଖୀ ହୋଇଥାଏ । ବାସ୍ତବାଭିମୁଖୀ ଚିନ୍ତନ ଆଧାରରେ ବିଜ୍ଞାନର ବିକାଶ ହୋଇଥିବା ମନେହୁଏ । ଜଣେ ବୈଜ୍ଞାନିକ ନିଜର ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଆଧାରରେ କୌଣସି ପ୍ରକଳ୍ପ ବା ସିଦ୍ଧାନ୍ତର କଳ୍ପନା କରିପାରନ୍ତି । ତେବେ ତାଙ୍କର ସମ୍ଭାବ୍ୟ ପ୍ରକଳ୍ପଟି ପରୀକ୍ଷାଦ୍ୱାରା ସତ୍ୟସିଦ୍ଧ ନ ହେଲେ ତାହା ଗ୍ରହଣଯୋଗ୍ୟ ହୁଏ ନାହିଁ । ଜଣେ ଅତି ପ୍ରତିଭାଧର ବ୍ୟକ୍ତି କୌଣସି ବିଷୟରେ ଗଭୀର ମନୋନିବେଶରୁ ଚମକପ୍ରଦ ତଥ୍ୟ ବା ସିଦ୍ଧାନ୍ତରେ ଉପନୀତ ହୋଇପାରନ୍ତି । କଳ୍ପନାଶ୍ରୟୀ ଚିନ୍ତନ କ୍ଷେତ୍ରରେ ଆମର ଅନୁମାନ, କଳ୍ପନା, ନାନା ରୂପକଳ୍ପ, ଅଭିଗୃହୀତ ବିଷୟ ଥାଏ । ଧର୍ମ ସଂପର୍କିତ ଅନେକ ବିଶ୍ୱାସ କେବଳ କଳ୍ପନାଶ୍ରୟୀ ଚିନ୍ତନ ଅଟେ । ସ୍ୱର୍ଗ, ନରକ, ମୁକ୍ତି, ପାରଲୌକିକ ବିଶ୍ୱାସ, ଆତ୍ମା, ଆତ୍ମାର ଅମରତ୍ୱ, ଭୂତ, ପ୍ରେତ ଏସବୁ ବିଷୟ ଗୁଡିକ କେବଳ କଳ୍ପନାଶ୍ରୟୀ ଚିନ୍ତନ । ଏହି ସବୁ ଚିନ୍ତନ ତଥ୍ୟଭିତ୍ତିକ ହୋଇ ନଥିବାରୁ ସେ ସବୁ କେବଳ କଳ୍ପନା । ସୃଜନଶୀଳ ସାହିତ୍ୟର ଅନେକ ଦିଗନ୍ତ ରହିଛି ଓ ସାହିତ୍ୟ ବି କଳ୍ପନା ଆଧାରିତ । ସାହିତ୍ୟ ଜଣେ ସ୍ରଷ୍ଟାର କଳ୍ପନା ହେଲେ ବି ଏଥିରେ ରହିଥାଏ କଳାତ୍ମକ ଅଭିବ୍ୟକ୍ତି । କୌଣସି ମାନବୀୟ ସମସ୍ୟା, ସାମାଜିକ ବାସ୍ତବତା, ଜୀବନର ହସ-କାନ୍ଦ, ସୁଖ-ଦୁଃଖ, ସଂଘର୍ଷ ଓ ସଂକଳ୍ପକୁ ଭାଷା ମାଧମରେ ସ୍ରଷ୍ଟା ଏକ ନାନ୍ଦନିକ ଅଭିବ୍ୟକ୍ତି ଦେଇଥାଏ । ଏହା କଳ୍ପନା ହେଲେ ବି ଏଥିରେ ରହିଥିବା ବାର୍ତ୍ତା, ମହତ୍ତର ଜୀବନବୋଧ ଓ କଳାତ୍ମକ ଅଭିବ୍ୟକ୍ତି ଏହାକୁ ମହନୀୟ କରିଥାଏ । ସାହିତ୍ୟ ପରି ସୃଜନ-କଳା ବି ଏକ କାଳ୍ପନିକ ପରିପ୍ରକାଶ । ତେବେ ଏହି କଳ୍ପନା ଭିତରେ ଯେଉଁ ସୃଜନ ମୂଲ୍ୟ ନିହିତ ଥାଏ ତାହା ତାହାର ସୌନ୍ଦର୍ଯ୍ୟବୋଧ ପାଇଁ ବେଶ୍ ଉପଭୋଗ୍ୟ ହୋଇଥାଏ । ମୋଟ ଉପରେ କହିଲେ ଆମର ଚିନ୍ତନ ବାସ୍ତବାଭିମୁଖୀ, ସୃଜନାତ୍ମକ ବା କଳାତ୍ମକ ହୋଇପାରେ କିମ୍ବା ଏହା ସଂପୂର୍ଣ୍ଣ ଭାବେ କାଳ୍ପନିକ ହୋଇପାରେ ।

(୨)

ସପ୍ତଦଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଯେଉଁ ସଭ୍ୟତାମାନ ଗଢ଼ି ଉଠିଥିଲା ତାହା ଥିଲା କୃଷିଭିତ୍ତିକ ଓ ମୁଖ୍ୟତଃ ଗ୍ରାମ-କୈନ୍ଦ୍ରିକ । ସବୁ ଜାଗାରେ ରାଜତନ୍ତ୍ର ରହିଥିଲା ଓ ସାମାଜିକ ବ୍ୟବସ୍ଥା ଧାର୍ମିକ ବିଶ୍ୱାସ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ଜାଗରଣ ଭାବେ

ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା । କୌଣସି କ୍ରାନ୍ତିକାରୀ ଚିନ୍ତାନାୟକଙ୍କର ବିଚାରବୋଧ ଓ ଏକ ମହତ୍ତର ଜୀବନଦୃଷ୍ଟି ସମସାମୟିକ ସମାଜରେ ଯେଉଁ ଆଲୋଡ଼ନ ଆଣିଥିଲା, ତାହା ପରେ ଏକ ସାଂସ୍କୃତିକ ଅନୁଷ୍ଠାନର ରୂପ ନେଲା । ରାଜତନ୍ତ୍ରର ସମର୍ଥନରେ ଗୋଟିଏ ସାଂସ୍କୃତିକ ଆଲୋଡ଼ନ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହେଲା ଓ ଜନଗଣଙ୍କ ଭିତରେ ଏକ ସାମାଜିକ ସଂହତି ସୃଷ୍ଟି କଲା । ପ୍ରତ୍ୟେକ ଧର୍ମ ଜୀବନ ସହ ସଂଶ୍ଳିଷ୍ଟ ବହୁ ଘନଘଟାର ଏକ ତାତ୍ତ୍ୱିକ ବ୍ୟାଖ୍ୟା ଦେବା ସହ ପୃଥିବୀର ଉତ୍ପତ୍ତି ନେଇ ନିଜସ୍ୱ ଅବବୋଧ ସୃଷ୍ଟି କଲା । ଯେଉଁ ଯୁଗରେ ସଭ୍ୟତା ସଭ୍ୟତା ଭିତରେ କୌଣସି ଆଦାନ-ପ୍ରଦାନର ଅବକାଶ ସୃଷ୍ଟି ହୋଇନଥିଲା, ସେହି ଯୁଗରେ ନିଜର ଧର୍ମକୁ ଈଶ୍ୱର-ପ୍ରେରିତ ବ୍ୟବସ୍ଥା ଓ ନିଜର ଧର୍ମଗ୍ରନ୍ଥକୁ ଈଶ୍ୱରଦତ୍ତ ଜ୍ଞାନ ବୋଲି ଭାବନା ରହିଥିଲା । ଈଶ୍ୱର ସବୁ କିଛି ସୃଷ୍ଟି କରିଛନ୍ତି, ଜୀବନର ସବୁ ଘଟଣା ପ୍ରବାହକୁ ସେ ହିଁ ନିୟନ୍ତ୍ରଣ କରୁଛନ୍ତି, ଯାହା ଧର୍ମସମ୍ମତ ତାହା ହିଁ ନୈତିକ, ଧର୍ମଗ୍ରନ୍ଥର ବାଣୀକୁ ପ୍ରଶ୍ନ କରିବା ଈଶ୍ୱର-ବିରୋଧୀ କାର୍ଯ୍ୟ ଏହି ବିଚାର ପ୍ରାୟତଃ ମଧ୍ୟଯୁଗୀୟ ମାନସିକତାରେ ସର୍ବତ୍ର ରହିଥିଲା । ଏପରିକି କେତେକ ଭୂଖଣ୍ଡରେ ବିଶ୍ୱାସ ଥିଲା ଯେ ରାଜା ହିଁ ଈଶ୍ୱରଙ୍କ ପ୍ରତିନିଧି ଓ ରାଜାଙ୍କ ପ୍ରତି ଅନୁରକ୍ତି ଈଶ୍ୱରଙ୍କ ପ୍ରତି ଅନୁରକ୍ତି ସହ ସମାନ । ସମସ୍ତ ରୋଗ ବାଧକ ଓ ମହାମାରୀ ମଣିଷର ପାପମୋଚନ ପାଇଁ ଦୈବୀ ଦଣ୍ଡ ଓ ବନ୍ୟା, ବାତ୍ୟା, ଭୂକଂପ ଜନିତ ପ୍ରାକୃତିକ ବିପର୍ଯ୍ୟୟ ଈଶ୍ୱରୀୟ କ୍ରୋଧର ପରିଣାମ । ଜୀବନର ସମସ୍ତ ଘଟଣା ପୂର୍ବନିର୍ଦ୍ଧାରିତ ଓ ଭାଗ୍ୟ, କର୍ମଫଳ ଅଲଂଘ୍ୟ । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ କଳା, ସାହିତ୍ୟ ଓ ସମସ୍ତ ସୃଜନାତ୍ମକ ଅଭିବ୍ୟକ୍ତି ଥିଲା ଧର୍ମକୈନ୍ଦ୍ରିକ । ରାଜତନ୍ତ୍ର, ସାମନ୍ତବାଦ, ଧର୍ମଭିତ୍ତିକ ସମାଜ ବ୍ୟବସ୍ଥା ଓ ଧର୍ମକୈନ୍ଦ୍ରିକ ନୀତି ନୈତିକତା ଥିଲା ସବୁ ସମାଜର ଆଦର୍ଶ । ସପ୍ତଦଶ ଶତାବ୍ଦୀ ବେଳକୁ ପୃଥିବୀର ଲୋକସଂଖ୍ୟା ଥିଲା ମାତ୍ର ପଚାଶ କୋଟି ଓ ପୃଥିବୀର ବିସ୍ତୃତ ଅଞ୍ଚଳ ବଣଜଙ୍ଗଲରେ ଭରପୂର ଥିଲା । ଏକ ଭୌଗୋଳିକ ଭୂଖଣ୍ଡ ସହିତ ଅନ୍ୟ ଭୂଖଣ୍ଡର କୌଣସି ସଂପର୍କ ସମ୍ଭବ ନ ଥିଲା । ତେବେ ଯୁଦ୍ଧ, ରାଜ୍ୟ ଜୟ ରାଜତନ୍ତ୍ରର ଆଦର୍ଶ ଥିଲା । ଗ୍ରାମୀଣ ଜୀବନଧାରାରେ କୃଷି ଓ କୁଟୀରଶିଳ୍ପ ସେ ଯୁଗର ଅର୍ଥନୀତିର ମୁଖ୍ୟ ଆୟୁଧ ଥିଲା ।

ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ୟୁରୋପ ଭୂଖଣ୍ଡରେ ଯେଉଁ ନବଜାଗରଣର ପରିବେଶ ଆସିଥିଲା ତାହା ଦୁଇ ଶହ ପଚାଶ ବର୍ଷ ଧରି ସପ୍ତଦଶ ଶତାବ୍ଦୀ ବେଳକୁ ବୌଦ୍ଧିକ ଜଗତରେ ଗୋଟିଏ ନୂତନ ଆଲୋଡ଼ନ ସୃଷ୍ଟି କଲା । ସପ୍ତଦଶ ଶତାବ୍ଦୀରୁ

ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ବିଜ୍ଞାନର ଆଦିପର୍ବ ଟି ଥିଲା ଏକ ସଂଘର୍ଷର ସମୟ । ବିଜ୍ଞାନର ନୂଆ ନୂଆ ଉଦ୍ଭାବନ ଓ ଆବିଷ୍କାର ଚିନ୍ତାରାଜ୍ୟରେ ତୁମୁଳ ଦ୍ୱନ୍ଦ୍ୱ ସୃଷ୍ଟି କଲା । ଧର୍ମଗ୍ରନ୍ଥର ବାଣୀ ଯେ ଅସତ୍ୟ ଓ ମନଗଢ଼ା କାହାଣୀ, ଏହା ଏକ ସମୟରେ ମଣିଷ ବିଶ୍ୱାସ କରିପାରୁ ନଥିଲା । ମଣିଷକୁ କେଉଁ ଈଶ୍ୱର ନିଜସ୍ୱ ସ୍ୱରୂପରେ ସୃଷ୍ଟି କରିନାହାନ୍ତି ବରଂ କୋଟି କୋଟି ବର୍ଷର ଜୈବିକ ଓ ପ୍ରାକୃତିକ ପରିବର୍ତ୍ତନ ଦେଇ ମଣିଷର ଉତ୍ପତ୍ତି ହୋଇଛି, ଏହି ଭାବନା ନାନା ଆଲୋଡନ ସୃଷ୍ଟିକଲା । ସେହିପରି ସୂର୍ଯ୍ୟ ସ୍ଥିର ଓ ଗ୍ରହମାନ (ଆମ ପୃଥିବୀ ସହ) ସୂର୍ଯ୍ୟ ଚାରିପଟେ ଘୂର୍ଣ୍ଣାୟମାନ, ପୃଥିବୀର ପ୍ରାକୃତିକ ପରିବେଶ ପରିବର୍ତ୍ତନଶୀଳ, ନଦୀ, ସମୁଦ୍ର, ପାହାଡ, ପର୍ବତ ପୃଥିବୀ ଉତ୍ପତ୍ତିର ବହୁପରେ ସମ୍ଭବ ହୋଇଛି, ସ୍ୱର୍ଗ, ନରକ କେବଳ କଳ୍ପନାର ବସ୍ତୁ ଏହି ସବୁ ଭାବନା ଚିନ୍ତାରାଜ୍ୟରେ ବୈପ୍ଳବିକ ଥିଲା । ବିଜ୍ଞାନର ସିଦ୍ଧାନ୍ତ ମାନ ଯେହେତୁ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ, ପରୀକ୍ଷିତ ଥିଲା ସେସବୁକୁ ଅସ୍ୱୀକାର କରିବା ସମ୍ଭବ ନଥିଲା । ବୈଜ୍ଞାନିକ ଜ୍ଞାନ ଯେହେତୁ ପ୍ରଗତିଶୀଳ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ ଥିଲା, ବିଜ୍ଞାନର ସିଦ୍ଧାନ୍ତମାନ ଧୀରେ ଧୀରେ ସ୍ୱୀକୃତ ହେଲା । ପୁନଶ୍ଚ ବିଭିନ୍ନ ରୋଗ, ମହାମାରୀ ଯେ ଦୈବୀ ଦଣ୍ଡ ନୁହଁ ଏସବୁ ଜୀବାଣୁ-ଭୂତାଣୁ ଜନିତ ବା ସେପରି କିଛି କାରଣରୁ ସୃଷ୍ଟ ଏହା ଜଣାପଡିବା ପରେ ବିଭିନ୍ନ ରୋଗର ଚିକିତ୍ସା ସମ୍ଭବ ହେଲା । ବିଂଶଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ସ୍ଥଳଭାଗରେ ମଣିଷ ଘଣ୍ଟାକୁ ଅତି ବେଶୀରେ ଷାଠିଏ କି.ମି. ଯାଇ ପାରୁଥିଲା, ଯାନ-ବାହାନର ଉଦ୍ଭାବନ ଓ ତଦାଶ୍ରୟୀ ପ୍ରଯୁକ୍ତି-ଜ୍ଞାନ ଗମନାଗମନ ସ୍ତରରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଲା ।

ବିଜ୍ଞାନର ବିକାଶ ପର୍ବ ପଶ୍ଚାତରେ କେତେକ ମୌଳିକ ଚିନ୍ତନ ରହିଥିଲା । ବିଶେଷତଃ ଦୁଇଟି ମୌଳିକ ବିଚାର ବିଜ୍ଞାନର ଅଗ୍ରଗତିରେ ପଥପ୍ରଦର୍ଶକ ହେଲା । ପ୍ରଥମତଃ ବୈଜ୍ଞାନିକ ଅନୁଶୀଳନରୁ ଏହା କ୍ରମବର୍ଦ୍ଧିଷ୍ଣୁ ଭାବେ ସ୍ୱୀକୃତ ହେଲା ଯେ ପ୍ରକୃତିରେ ଯାହା କିଛି ଅଛି ବା ଯେଉଁ ଘଟଣାମାନ ସୃଷ୍ଟି ହେଉଛି ସେ ସବୁ ପ୍ରାକୃତିକ । ପ୍ରତ୍ୟେକଟି ପ୍ରାକୃତିକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ରହିଛି, କୌଣସି ଦୈବୀ ବା ଅତିପ୍ରାକୃତିକ(supernatural) କାରଣ ନାହିଁ । ପ୍ରକୃତି ବିଶାଳ ଓ ଜଟିଳ, ସୁତରାଂ ସବୁ କିଛିକୁ ବ୍ୟାଖ୍ୟା କରିବା ସହଜ ନୁହେଁ । ତେବେ କୌଣସି ଘଟଣାର କେବଳ ପ୍ରାକୃତିକ ବ୍ୟାଖ୍ୟା ସମ୍ଭବ, ଏହାର ଆଧିଦୈବିକ ବ୍ୟାଖ୍ୟା ଅସତ୍ୟ ଓ ଆମ୍ଭର କଳ୍ପନା ମାତ୍ର । ପ୍ରାକୃତିକ ବ୍ୟାଖ୍ୟାନ ହିଁ ବିଜ୍ଞାନର ସାରମର୍ମ । ଦ୍ୱିତୀୟରେ

ବିଶାଳ ବିଶ୍ୱ ବା ଘଟଣାମାନଙ୍କୁ ବୈଜ୍ଞାନିକ ଧାରାରେ ବ୍ୟାଖ୍ୟା କରିବାକୁ ହେଲେ ଆମକୁ ପର୍ଯ୍ୟବେକ୍ଷଣ-ପରୀକ୍ଷଣର ସହାୟତା ନେବାକୁ ହେବ । ଯେଉଁ ଘଟଣାର କାରଣ ବ୍ୟାଖ୍ୟା କରିହେଉ ନାହିଁ ସେ କ୍ଷେତ୍ରରେ ସମ୍ଭାବ୍ୟ କାରଣ ବା ପ୍ରକଳ୍ପ କରାଯାଏ । ସେହି ସମ୍ଭାବ୍ୟ କାରଣକୁ ପରୀକ୍ଷା-ନିରୀକ୍ଷା କଲାପରେ ତାହା ସତ୍ୟ କି ଅସତ୍ୟ ଜଣାପଡେ । ବିଜ୍ଞାନ ସର୍ବଦା ବାସ୍ତବ ତଥ୍ୟ ବା ଘଟଣା ପ୍ରତି ଅନୁରକ୍ତ ରହେ । ପର୍ଯ୍ୟବେକ୍ଷଣ-ପରୀକ୍ଷଣ, ପ୍ରକଳ୍ପ ପ୍ରଣୟନ, ପ୍ରକଳ୍ପର ସତ୍ୟାସତ୍ୟ ନିରୂପଣ ଆଧାରରେ ବିଜ୍ଞାନର ବିକାଶ ସମ୍ଭବ ହୋଇଛି । ଆଧୁନିକ ବିଜ୍ଞାନର ଆରମ୍ଭ ପରଠାରୁ ଏହି ତିନି ଶହ ବର୍ଷ ଭିତରେ ବିଜ୍ଞାନ ଏକ ନୂଆ ଦୁନିଆଁ ଗଢ଼ିବାକୁ ସମର୍ଥ ହୋଇଛି । ବିଜ୍ଞାନର ବିକାଶ ପଶ୍ଚାତରେ ଯେ ଏହି ଚିନ୍ତନ ରହିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଜ୍ଞାନର ବିକାଶ ପଶ୍ଚାତରେ ଯେପରି କେତେକ ମୌଳିକ ଚିନ୍ତନ ରହିଥିଲା ସେହିପରି ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ କିଛି ମୌଳିକ ଭାବନା ୟୁରୋପୀୟ ନବଜାଗରଣରୁ ଉଦ୍ଭବ ହୋଇଥିଲା । ସାମାଜିକ ବ୍ୟବସ୍ଥା ଓ ଦୃଷ୍ଟିଭଙ୍ଗୀରେ ଅଭିନବ ପରିବର୍ତ୍ତନ କ୍ଷେତ୍ରରେ "ମାନବବାଦୀ ଜୀବନଦୃଷ୍ଟି" ଗଭୀର ପ୍ରେରଣା ଯୋଗାଇଥିବା ମନେହୁଏ । ମାନବବାଦ ଅନୁଯାୟୀ ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ ରହିଛି । ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବା ତାର ଏକ ପ୍ରାକୃତିକ ଅଧିକାର । ପ୍ରତ୍ୟେକ ବ୍ୟକ୍ତି ମାନବିକ ଅଧିକାର ଉପଭୋଗ କରିବା, ଶିକ୍ଷା ପାଇବାର ସୁଯୋଗ ପାଇବା, ଆବଶ୍ୟକ ବେଳେ ଚିକିତ୍ସାର ସୁଯୋଗ ନେବା, କୌଣସି ଭେଦଭାବର ଶିକାର ନହେବା, ନିଜ ସୃଜନଶୀଳ ସାମର୍ଥ୍ୟର ବିକାଶ କରାଇବା ଓ ସ୍ୱାବଲମ୍ବୀ ହୋଇ ବଞ୍ଚିବା ତାର ଜନ୍ମଗତ ଅଧିକାର । ବ୍ୟକ୍ତିର ସ୍ୱାଧୀନତା ସହ ଅନ୍ୟର ଅଧିକାର ଭିତରେ ସମନ୍ୱୟକୁ ମାନବବାଦରେ ପ୍ରାଧାନ୍ୟ ଦିଆଯାଏ । ମାନବବାଦ ଯେ ଏକ ମହତ୍ତର ଜୀବନବୋଧ ଏହି ଚିନ୍ତନରୁ ସାମାଜିକ ଜୀବନରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ବିଶେଷକରି ରାଷ୍ଟ୍ର-ଚେତନାର ବିକାଶ ସହ ଜନ-ମଙ୍ଗଳକାରୀ ଆଭିମୁଖ୍ୟ ରାଷ୍ଟ୍ରର ଆଦର୍ଶ ହେଲା । ସାମ୍ରାଜ୍ୟବାଦ, ସାମନ୍ତବାଦ, ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବର ପରିବେଶ ଆସିଲା । ସାମାଜିକ ଭେଦଭାବ, ଶୋଷଣ, ଜାତିବାଦ, ବର୍ଣ୍ଣବୈଷମ୍ୟବାଦ ଯେ ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ ଏହା ନେଇ ଆନ୍ତର୍ଜାତିକ ସ୍ତରରେ ସଚେତନତା ଆସିଲା । ଗଣତାନ୍ତ୍ରିକ ଜୀବନଧାରା, ଧର୍ମନିରପେକ୍ଷ ଜୀବନଦୃଷ୍ଟି, ଭେଦଭାବ ରହିତ ସମାଜ ବ୍ୟବସ୍ଥା ବୃହତ୍ତର ପୃଥିବୀରେ ଧୀରେ ଧୀରେ ସ୍ୱୀକୃତ ହେବାକୁ ଲାଗିଲା । ସାମାଜିକ

ନ୍ୟାୟ, ସମତାଭାବ, ବ୍ୟକ୍ତିମର୍ଯ୍ୟାଦାବୋଧ ପରି ମୂଲ୍ୟଚୟ ସାର୍ବଜନୀନ ହେବାକୁ ଲାଗିଲା । ମାନବବାଦୀ ଜୀବନଦୃଷ୍ଟିରୁ ଉଦ୍‌ଭବ ଏହି ବିଚାରବୋଧ ଜୀବନର ଗୁଣାତ୍ମକ ମାନରେ ଯେ କ୍ରାନ୍ତିକାରୀ ପରିବର୍ତ୍ତନର ସୂତ୍ରପାତ କରାଇଲା ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ଆଧୁନିକ ବିଜ୍ଞାନ ଆଜି ଏକବିଂଶ ଶତାବ୍ଦୀରେ ଏକ ନିର୍ଣ୍ଣାୟକ ସ୍ଥିତିରେ ପହଞ୍ଚିଥିବା ମନେହୁଏ । ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚନ କରିବାରେ ବିଜ୍ଞାନ ଏକ ପ୍ରମୁଖ ଜ୍ଞାନ-କ୍ଷେତ୍ର ଭାବେ ସ୍ୱୀକୃତ । ସେହିପରି ବୈଜ୍ଞାନିକ ପଦ୍ଧତିରେ ସାମାଜିକ ବ୍ୟବସ୍ଥାର ବିଶ୍ଳେଷଣରୁ ସମାଜ, ମାନବିକ ସମ୍ବନ୍ଧ, ମାନବ-ସମୁଦାୟ ଇତ୍ୟାଦି ବିଷୟରେ ନାନା ତଥ୍ୟ ସଂପ୍ରତି ଉପଲବ୍ଧ । ଏହି ବିଶ୍ଳେଷଣରୁ ଏହା ଗୃହୀତ ଯେ ସଭ୍ୟତାରେ ଯାହା କିଛି ବିକାଶଲାଭ କରିଛି ସେ ସବୁ ମଣିଷର ପ୍ରୟାସ ଓ ଉଦ୍ୟମରେ ସମ୍ଭବ ହୋଇଛି । କୌଣସି ଦିଅଁ, ଦେବତାଙ୍କ ଆଶୀର୍ବାଦରୁ ଏହି ବିକାଶ ହୋଇନାହିଁ ବା ଏସବୁ ଆକାଶରୁ ଖସି ନାହିଁ । ଯେଉଁ ଦେଶମାନେ ବିକଶିତ ଓ ଯେଉଁଠି ଜୀବନର ଗୁଣାତ୍ମକ ମାନ ଉନ୍ନତ ସେ ସବୁ ଦୈବୀ ଆଶୀର୍ବାଦରୁ ହୋଇନାହିଁ ଓ ଯେଉଁ ରାଷ୍ଟ୍ରମାନେ ଅନଗ୍ରସର (ବିଶେଷକରି ତୃତୀୟ ବିଶ୍ୱର ରାଷ୍ଟ୍ରମାନେ) ସେମାନଙ୍କୁ ଦୈବୀ ଅଭିଶାପ ମିଳି ନାହିଁ । ମଣିଷର ସଂଘବଦ୍ଧ ପ୍ରୟାସ, ରାଜନୈତିକ ଘଟଣା ପ୍ରବାହ, ସାମାଜିକ ପରିସ୍ଥିତି, ଅର୍ଥନୈତିକ ବ୍ୟବସ୍ଥା, ଲୋକଚରିତ୍ର ଇତ୍ୟାଦିର ସମ୍ମିଳିତ ପ୍ରଭାବରୁ କେତେକ ରାଷ୍ଟ୍ର ବିକଶିତ ଓ ଆଉ କେତେକ ରାଷ୍ଟ୍ର ଗରିବ ବା ଅନଗ୍ରସର । ସେହିପରି ସମାଜରେ ଯେତେ ସବୁ ଦୁଃଖ, ଦୁର୍ଦ୍ଦଶା, ହିଂସା, ଯୁଦ୍ଧ, ବିଭୀଷିକା, କ୍ରୂରତା ରହିଛି ସେସବୁ ମଣିଷକୃତ କାର୍ଯ୍ୟର ପରିଣାମ । ଏସବୁକୁ ଦୂର କରିବାକୁ ହେଲେ ମାନବବାଦ ଓ ମାନବୀୟ ସମ୍ବେଦନଶୀଳତାକୁ ପ୍ରସାର କରିବାକୁ ହେବ । ଅର୍ଥାତ୍ ମଣିଷର ପ୍ରୟାସରେ ସାମାଜିକ ସମ୍ବନ୍ଧ ଉନ୍ନତ, ଭାତୃତ୍ୱପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ହୋଇପାରିବ ।

ଏକ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ମଧ୍ୟ ଦେଇ ମଣିଷ ଆଜିର ଅତ୍ୟାଧୁନିକ ସ୍ଥିତିକୁ ଆସିପାରିଛି । ଏହି ଉତ୍ତରଣ ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି । ଜ୍ଞାନ-ବିଜ୍ଞାନର ବିକାଶ କ୍ଷେତ୍ରରେ ହେଉ ବା ମାନବିକ ମୂଲ୍ୟବୋଧର ପ୍ରସାର ଦିଗରେ ହେଉ କେତେକ ବ୍ୟକ୍ତି ସଭ୍ୟତାକୁ ଅପୂର୍ବ ଅବଦାନ ଦେଇଛନ୍ତି ।

ଇଂରାଜୀରେ ଗୋଟିଏ କଥା ଅଛି ଯାହାର ତାତ୍ପର୍ଯ୍ୟ ହେଲା- ଆବଶ୍ୟକତା ହିଁ ସକଳ ଉଦ୍‌ଭାବନର ଜନନୀ ଓ ଅନୁସନ୍ଧିତ୍ସୁ ଦୃଷ୍ଟି ହିଁ ଏହାର ଜନକ । ଜଣେ ଜଣେ ବ୍ୟକ୍ତିଙ୍କର ବୌଦ୍ଧିକ କୌତୂହଳତା ଓ ଅନୁସନ୍ଧିତ୍ସୁ ପ୍ରୟାସରୁ ବହୁ ଅଭିନବ ଉଦ୍‌ଭାବନମାନ ହୋଇଛି, ଯାହାକି ସଭ୍ୟତାର ରୂପରେଖ ବଦଳାଇ ଦେଇଛି । ପ୍ରିଣ୍ଟିଂପ୍ରେସ୍, ବିଜୁଳି ଆଲୋକ, ବାଷ୍ପଚାଳିତ ଇଂଜିନରୁ ରେଳଗାଡି ଇତ୍ୟାଦି ଅସଂଖ୍ୟ ଉଦ୍ଭାବନ ସଭ୍ୟତାର ବିକାଶଧାରାରେ ଗୋଟିଏ ଗୋଟିଏ ମାଇଲଖୁଣ୍ଟ । ଗୋଟିଏ ଶତାବ୍ଦୀ ତଳେ ମୋବାଇଲ ଫୋନ୍, କଂପ୍ୟୁଟର, ଟେଲିଭିଜନ, ଇଣ୍ଟରନେଟ, ଅନ୍ୟ ଗ୍ରହକୁ ଯାନ ପ୍ରେରଣ ଇତ୍ୟାଦି କଳ୍ପନାତୀତ ଥିଲା । ସେହିପରି ରକ୍ତ ଭଣ୍ଡାର, ଅଙ୍ଗ ପ୍ରତିରୋପଣ, ହାର୍ଟ ସର୍ଜେରି ପରି ଅତ୍ୟାଧୁନିକ ଚିକିତ୍ସା ଏସବୁ ମଣିଷର ଉଦ୍ୟମରେ ହିଁ ସମ୍ଭବ ହୋଇଛି । ଯାହା ଗୋଟିଏ ଶତାବ୍ଦୀ ତଳେ ଚିନ୍ତା ସ୍ତରକୁ ବି ଆସିନଥିଲା ଆଜି ସେସବୁ ବାସ୍ତବତାରେ ପରିଣତ ହୋଇଛି । ଏସବୁ ପଶ୍ଚାତରେ ରହିଛି ମଣିଷର ନିଷ୍ଠା, ଅନୁସନ୍ଧିତ୍ସା ଓ ଅବିରତ ପ୍ରୟାସ । ସୁଖର କଥା ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଯାହା ନୂତନତ୍ୱ ଆସୁଛି ତାହା ସାର୍ବଜନୀନ ହେଉଛି ଓ ତାହାର ସୁଫଳ ସମସ୍ତ ମଣିଷ ସମାଜ ପାଇପାରୁଛି ।

ଏ ସବୁ ସତ୍ତ୍ୱେ ମଣିଷ ସମାଜରେ ସବୁ ସମୟରେ କିଛି ନା କିଛି ସଂକଟ ରହିଛି । ସାଂପ୍ରତିକ ସ୍ଥିତିରେ ଜନସଂଖ୍ୟାର ବିସ୍ଫୋରଣ, ପରିବେଶ ପ୍ରଦୂଷଣ, ରାଷ୍ଟ୍ରୀୟ ନିରାପତ୍ତା ନାମରେ ଗଣବିଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ, ଅଭିନବ ଧାରାରେ ନବସାମ୍ରାଜ୍ୟବାଦ ଓ ପୁଂଜିବାଦୀ ଶୋଷଣ, ସଂତ୍ରାସବାଦ, ଧାର୍ମିକ ଆବେଗରୁ ସାଂପ୍ରଦାୟିକ ବିଦ୍ୱେଷ ପରି ଅନେକ ମନ୍ଦସ୍ଥିତି (ବା evil) ଆମ ସଂସାରରେ ରହିଛି । ଏବେ ବି ଜନସଂଖ୍ୟାର କିଛି ଭାଗ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟିରେ ଆକ୍ରାନ୍ତ ହୋଇ ବହୁ କଷ୍ଟକର ସ୍ଥିତିରେ ଜୀବନ ନିର୍ବାହ କରୁଛନ୍ତି । ବିଶେଷକରି ଅନଗ୍ରସର ଦେଶମାନଙ୍କରେ ବହୁ ଲୋକ ଅବମାନବୀୟ ସ୍ତରରେ ଜୀବନ ନର୍ବାହ କରୁଛନ୍ତି । ଅଗଣିତ ଶିଶୁ କଅଁଳ ବୟସରୁ ପେଟର ଜ୍ୱାଳାରେ ଶ୍ରମିକ ପାଲଟୁଛନ୍ତି, କିଶୋରୀ ଝିଅ ବେଶ୍ୟାବୃତ୍ତିର ଶିକାର ହେଉଛନ୍ତି । ଏହି ସବୁ ସ୍ଥିତିରେ ପରିବର୍ତ୍ତନ ପାଇଁ ତଥା ଜୀବନର ଗୁଣାତ୍ମକ ମାନର ଅଭିବୃଦ୍ଧି ପାଇଁ ସମ୍ମିଳିତ ପ୍ରୟାସର ଆବଶ୍ୟକତା ରହିଛି । ସମାଜରେ ଯେତେ ସବୁ ଦୁଃସ୍ଥିତି ରହିଛି ସେସବୁ ମଣିଷର ପ୍ରୟାସରେ ଦୂର ହୋଇ ପାରିବ । ସମବେତ ପ୍ରୟାସ, ଯୋଜନାବଦ୍ଧ କାର୍ଯ୍ୟକ୍ରମ, ଆଧୁନିକ ଜ୍ଞାନକୌଶଳ ଓ ମାନବବାଦୀ ଦୃଷ୍ଟି ଏ କ୍ଷେତ୍ରରେ ପଥ-ପ୍ରଦର୍ଶକ ହୋଇପାରିବ ।

ମଣିଷର ବୁଦ୍ଧି, ଚିନ୍ତନ ଓ ବିବେକବୋଧରୁ ବିକାଶର ଧାରା ଆଗକୁ ଯାଇଛି, ସଭ୍ୟ ମୂଲ୍ୟବୋଧର ପ୍ରସାର ହୋଇଛି ଓ ଜୀବନ ଧାରଣର ମାନରେ କ୍ରମୋନ୍ନତି ଘଟିଚାଲିଛି । ମଣିଷର ବୁଦ୍ଧି, ସୃଜନଶୀଳତା ଯଦି ମହତ୍ତର ଲକ୍ଷ୍ୟ ଦିଗରେ ବିନିଯୋଗ ହୋଇପାରିବ ଓ ସକଳ ଭେଦଭାବ ସୃଷ୍ଟିକାରୀ ଭାବନାର ବିଲୋପ ହେବ, ତେବେ ସମ୍ଭବତଃ ସଭ୍ୟତାର ଏକ ନୂତନ ଉତ୍ତରଣ ହେବ । ଯଦି ଜ୍ଞାନବିଜ୍ଞାନର ଅପପ୍ରୟୋଗ ହେବ, ବିଭିନ୍ନ କାରଣକୁ ନେଇ ମଣିଷ ସମାଜରେ ତିକ୍ତତା ଓ ବିଦ୍ୱେଷର ପ୍ରସାର ହେବ ତେବେ ସଭ୍ୟତା ଆତ୍ମହତ୍ୟା କରିବ । ବ୍ୟକ୍ତି ମରଣଶୀଳ, କିନ୍ତୁ ମଣିଷ ସମାଜ, ସଭ୍ୟତା ଚିରସ୍ଥାୟୀ । ଆମର ଆଗାମୀ ବଂଶଧର ମାନେ କିପରି ଏକ ଭ୍ରାତୃତ୍ୱପୂର୍ଣ୍ଣ ଓ ଅଧିକ ପ୍ରୀତିପଦ ଅବସ୍ଥାରେ ଜୀବନ ବଞ୍ଚିବେ ଓ କ୍ରମୋନ୍ନତ ଭାବେ ଜୀବନର ମାନକୁ ଅଧିକ ଉନ୍ନତ କରିବେ ଏହି ଭାବନାକୁ ସବୁ ସ୍ତରରେ ପ୍ରସାର କରାଯିବା ଆବଶ୍ୟକ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମଗ୍ର ପୃଥିବୀକୁ ଏକ ବିଶ୍ୱଗ୍ରାମରେ ରୂପାନ୍ତରିତ କରିଚାଲିଛି । ସେହି ଧାରାରେ ଯଦି ହେତୁବାଦୀ-ମାନବବାଦୀ ବିଚାରବୋଧ ସାର୍ବଜନୀନ ହୋଇପାରିବ, ତେବେ ଆମ ସଂସାର ଅଧିକ ପ୍ରୀତିପଦ ହୋଇପାରିବ । ଏହି ପୃଷ୍ଠଭୂମିରେ ବିକାଶକୁ ଦୁଇଟି ଦିଗରୁ ବିଚାର କରାଯିବା ଆବଶ୍ୟକ ଯଥା ଭୌତିକ ଓ ମାନବିକ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଭୌତିକ ସ୍ତରରେ ସଭ୍ୟତାକୁ ଅନେକ ଆଗକୁ ନେଇପାରିଛି । ଯଦି ଏହା ସହ ମାନବିକ ବିଚାରବୋଧ ସମତାଳରେ ଅଗ୍ରସର ହେବ ତେବେ ଆଗାମୀ ବିଶ୍ୱ ମଧୁମୟ ହୋଇପାରିବ । ଏହି ପରିପ୍ରେକ୍ଷୀରେ ମାନବବାଦୀ ଚେତନାର ସାର୍ବଜନୀନ ପ୍ରସାର ଆଜି ପାଇଁ ସବୁଠାରୁ ବଡ଼ ଆହ୍ୱାନ ମନେହୁଏ ।



# ବୌଦ୍ଧିକ ବିକାଶଧାରାରେ ଧର୍ମ, ବିଜ୍ଞାନ ଓ ହେତୁବାଦ

ମାନବ ସଭ୍ୟତା ନାନା ସ୍ତର ଦେଇ ଆଜିର ସ୍ଥିତିକୁ ଆସିଛି । ଆଜିର ସ୍ଥିତିକୁ ଆସିବା ପଛରେ ଯେଉଁ ସୁଦୀର୍ଘ ଇତିହାସ ରହିଛି ତାହାର ଅନୁଶୀଳନ ବେଶ୍ ରୋମାଞ୍ଚକର । ମଣିଷର ବୌଦ୍ଧିକ ଜିଜ୍ଞାସା ଓ ବୈଜ୍ଞାନିକ ସାଧନ ଏହି ଇତିହାସକୁ ଅନାବୃତ କରିବାରେ ଅନେକାଂଶରେ ସମର୍ଥ ହୋଇଛି, ତଥାପି ଅନେକ କିଛି ଏବେ ବି ଉନ୍ମୋଚିତ ହୋଇପାରି ନାହିଁ । ମଣିଷର ବୌଦ୍ଧିକ ଦିଗନ୍ତ ଟି କିପରି ଧୀର ମନ୍ଥର ଗତିରେ ଆଗକୁ ଯାଇଛି ଓ ସଭ୍ୟତା ଆଜିର ସ୍ଥିତିକୁ ଆସିଛି ତାହାର ଏକ ମୋଟାମୋଟି ଚିତ୍ର ବିଜ୍ଞାନ ଯୋଗୁ ଜାଣିବା ସମ୍ଭବ ହୋଇଛି । ସେହିପରି ସାମାଜିକ ବିକାଶଧାରା, ଅର୍ଥନୈତିକ ଅଭିବୃଦ୍ଧି, ରାଜନୈତିକ ବ୍ୟବସ୍ଥାର ଦୃଢ଼ୀକରଣ, ସାଂସ୍କୃତିକ ଅଭ୍ୟୁଦୟ, ଶୈକ୍ଷିକ ପରିବେଶ ଇତ୍ୟାଦି ନାନା କ୍ଷେତ୍ର ବୌଦ୍ଧିକ ବିକାଶର ପ୍ରଭାବରୁ ଉନ୍ନତତର ହୋଇଚାଲିଛି । ଅତୀତର ଆଦିମ ସାମାଜିକ ସ୍ଥିତିରୁ ଆଜିର ଆନ୍ତର୍ଜାତିକ ଚେତନାର ବିକାଶ ପଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ଗୋଟିଏ ଗୋଟିଏ ବୌଦ୍ଧିକ ପ୍ରବାହ ଜନଜୀବନରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଛି ଓ ସଭ୍ୟତାର ବିକାଶ ପ୍ରକ୍ରିୟାକୁ ନିର୍ଣ୍ଣାୟକ ମୋଡ ଦେଇଛି । ଏହି ପୃଷ୍ଠଭୂମିରେ ଧର୍ମ, ବିଜ୍ଞାନ ଓ ଦର୍ଶନ ସାମାଜିକ ଜୀବନ ପ୍ରବାହର ବିଭିନ୍ନ ଦିଗନ୍ତକୁ କିପରି ପ୍ରଭାବିତ କରିଛି ତାର ସଂକ୍ଷିପ୍ତ ସୂଚନା ଦେବାକୁ ଏହି ପ୍ରବଂଧରେ ଲକ୍ଷ୍ୟ ରଖାଯାଇଛି । ଶେଷରେ ହେତୁବାଦ କିପରି ଏକ ମହତ୍ତର ଜୀବନବୋଧର ବାର୍ତ୍ତାବହ ଭାବେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ସମ୍ଭାବନା ସୃଷ୍ଟି କରିଛି ତାହା ଦର୍ଶାଇବା ଲେଖାଟିର ଉଦ୍ଦେଶ୍ୟ ।

ନୃତାତ୍ତ୍ୱିକ ଅନୁସନ୍ଧାନରୁ ଜଣାଯାଏ ଯେ କୃଷି ଜନିତ ଜ୍ଞାନ ପୂର୍ବରୁ ମଣିଷ ମାନେ ବଣ ଜଂଗଲରେ ରହୁଥିଲେ ଓ ଏକ ଯାଯାବର ଜୀବନ ଅତିବାହିତ କରୁଥିଲେ । କୃଷିର ଜ୍ଞାନ ପରେ ଗ୍ରାମୀଣ ଜୀବନ ନଦୀକୂଳ ମାନଙ୍କରେ ବିକାଶଲାଭ କଲା ଓ ମଣିଷ ମାନେ ସ୍ଥାୟୀ ଭାବେ ବାସ କରିବାକୁ ଲାଗିଲେ । ଆଜକୁ ପ୍ରାୟ ଦଶ ହଜାର ବର୍ଷ ତଳେ କୃଷି କରିବାର ଜ୍ଞାନ ଦକ୍ଷିଣ ଏସିଆ ଓ ଇଜିପ୍ଟର ଲୋକମାନେ ଲାଭ କରିଥିଲେ ବୋଲି ଅନୁମାନ କରାଯାଏ । ପରେ ଏହା ଅନ୍ୟ ଭୂଖଣ୍ଡକୁ ଯାଇଥିବା କୁହାଯାଏ । କୃଷିର ଆବଶ୍ୟକତାରୁ ମାଟି ଖୋଳିବାକୁ, ଫସଲ କାଟିବାକୁ ଉପକରଣ ନିର୍ମାଣ କରିବାକୁ ଓ ପଶୁପାଳନ ପାଇଁ ଆବଶ୍ୟକତା ସୃଷ୍ଟି ହୋଇଛି । ଆଜକୁ ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ କୃଷି ଭିତ୍ତିକ ଗ୍ରାମୀଣ ସଭ୍ୟତା ଗଢ଼ି ଉଠିଥିବା ଅନୁମାନ କରାଯାଏ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ଲୋକମାନେ ରହିଥିଲେ । ପୃଥିବୀ ନଦୀ, ପର୍ବତ, ପାହାଡ, ସମୁଦ୍ର ଯୋଗୁଁ ଭାଗ ଭାଗ ହୋଇ ରହିଥିଲା ଓ ଗୋଟିଏ ଅଞ୍ଚଳର ଲୋକମାନେ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନଥିଲା । ଏଥିପାଇଁ ପୃଥିବୀରେ ପାଖା ପାଖି ପାଞ୍ଚହଜାର ଭାଷା ବି ସୃଷ୍ଟି ହୋଇଥିଲା । ଗ୍ରାମୀଣ ଗୋଷ୍ଠୀ ଜୀବନ କାଳକ୍ରମେ ବିସ୍ତାର ଲାଭ କରି ରାଜ୍ୟ ସୃଷ୍ଟି ହେବା ଓ ରାଜତନ୍ତ୍ର ଆସିବା ଇତିହାସରୁ ଜଣାପଡେ ।

ଆଦିମ ସମାଜ ଓ ପ୍ରାଗ୍‌ଐତିହାସିକ ଯୁଗର ମନୁଷ୍ୟ-ମାନଙ୍କର ଜୀବନଶୈଳୀ, ବିଶ୍ୱାସ, ଭାବନା, ସାମାଜିକ ଜୀବନ ସଂପର୍କରେ ନାନା ଅଧ୍ୟୟନ ବିଭିନ୍ନ ସ୍ତରରେ ଗତ ଦୁଇଶତାବ୍ଦୀ ଭିତରେ କରାଯାଇଛି । ବଣଜଂଗଲ ଭରା ପରିବେଶ, ହିଂସ୍ର ଜୀବଜନ୍ତୁଙ୍କ ଆକ୍ରମଣ, ବିଭିନ୍ନ ରୋଗବୈରାଗ ଜନିତ ଅସୁସ୍ଥତା ଇତ୍ୟାଦି ନାନା କାରଣରୁ ଜୀବନ ଅତ୍ୟନ୍ତ ବିପଦସଂକୁଳ ଥିଲା । ଦିନ, ରାତି, ଝଡ, ବତାସ, ବର୍ଷା, ଋତୁରେ ପରିବର୍ତ୍ତନ, ବିଜୁଳି, ଘଡଘଡି ଇତ୍ୟାଦି ପ୍ରାକୃତିକ ଘଟଣାମାନଙ୍କର କାରଣ ବୁଝିବା ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା । ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଜଳ, ବାୟୁ ଇତ୍ୟାଦି ସବୁ କିଛି ଯେ ଦୈବୀ ଶକ୍ତି ଏହି ଭାବନା ସେହି ଯୁଗରେ ସୃଷ୍ଟି ହୋଇଥିଲା । ଏପରିକି ଗଛ, ପାହାଡ, ଝରଣା, ନଦୀ ବି ଦେବତାର ସ୍ଥାନ ନେଇଥିଲେ ଓ ସେମାନଙ୍କୁ ଆଦିମାନବମାନେ ପୂଜା କରୁଥିଲେ । ଦେବତା ପ୍ରସନ୍ନ ରହିଲେ ସେମାନଙ୍କର ମଙ୍ଗଳ ହେବ ଓ ଦେବତା ବିଷର୍ଣ୍ଣ ହେଲେ ବିପଦ ସୃଷ୍ଟି ହେବ ଏହା ଲୋକ ବିଶ୍ୱାସରେ ସ୍ଥାନ

ପାଇଲା । ଚିନ୍ତା ଚେତନାରେ ସାମାନ୍ୟ ଅଗ୍ରଗତି ଘଟିଲା ପରେ ମଣିଷ ନିଜ ବିଷୟରେ ଭାବିଲା । କେତେକ ବିଚାର ଦେଲେ ଯେ ମଣିଷ ଭିତରେ ଥିବା ପ୍ରାଣଶକ୍ତି ଏକ ଜୀବାତ୍ମା । ପ୍ରଭୁ ଯେପରି ଭୃତ୍ୟକୁ ନିର୍ଦ୍ଦେଶ ଦିଏ, ସେହିପରି ଜୀବାତ୍ମା ଶରୀରକୁ ନିର୍ଦ୍ଦେଶ ଦିଏ ଓ ଶରୀରକୁ ପରିଚାଳନା କରେ । ଏହି ଭାବନା ଅଧିକ ବିକଶିତ ହୋଇ ମୃତ୍ୟୁପରେ ଜୀବାତ୍ମା ବଞ୍ଚି ରହିବାର ଭାବନା ସୃଷ୍ଟି ହେଲା । ମୃତ ବ୍ୟକ୍ତିକୁ ସ୍ୱପ୍ନରେ ଦେଖିବା, ସ୍ମୃତି ଭିତରେ ରଖିବା ଭିତରୁ ବିଶ୍ୱାସ ସୃଷ୍ଟି ହେଲା ଯେ ଆତ୍ମା ବୃଦ୍ଧ ହୁଏ ନାହିଁ, ତାକୁ ପବନ ଉଡାଇପାରେ ନାହିଁ, ନିଆଁ ଦାହ କରିପାରେ ନାହିଁ, ସେ ଅଜୟ ଓ ଅମର । ଆମେ ପୋଷାକ ପରିବର୍ତ୍ତନ କଲାପରି ଆତ୍ମା ଶରୀର ପରିବର୍ତ୍ତନ କରିଥାଏ । ନିଜ ପୂର୍ବ ପୁରୁଷଙ୍କର ଆଶୀର୍ବାଦ ଲାଭ କରିବା ପାଇଁ ସେମାନଙ୍କର ପ୍ରେତାତ୍ମାମାନଙ୍କ ସମାଧି ପାଖରେ ସେ ଖାଦ୍ୟ ଦ୍ରବ୍ୟ ଦେଇ, ଶ୍ରାଦ୍ଧକରି ସେମାନଙ୍କୁ ଦେବତାରୂପେ ପୂଜା କଲା । ଗୋଟିଏ ସମୟରେ ପ୍ରତ୍ୟେକ ନଦୀ, ପାହାଡ, ପର୍ବତ, ବୃକ୍ଷ ଏକ ଏକ ଦୈବୀ ସତ୍ତା ଥିଲା, ପରେ ସାମଗ୍ରିକ ଭାବେ ଜଳ ପାଇଁ ଜଳ ଦେବତା, ବଣଜଙ୍ଗଲ ପାଇଁ ଜଣେ ବନ୍ୟଦେବତା, ନଭମଣ୍ଡଳ ପାଇଁ ଆକାଶ ଦେବତା, ନିଆଁ ପାଇଁ ଅଗ୍ନିଦେବତା ଇତ୍ୟାଦି ଭାବନା ସୃଷ୍ଟି ହେଲା । ପ୍ରାକୃତିକ ଦେବତା ପରି ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ନିୟନ୍ତ୍ରଣ କରୁଥିବା ବିଭିନ୍ନ ଦେବତାର ଭାବନା ଆସିଲା । ସୁସ୍ଥ ଜୀବନ ପାଇଁ, ରୋଗରୁ ପରିତ୍ରାଣ ପାଇଁ, କାରିଗରୀ ବିଦ୍ୟା ପାଇଁ, ଧନଲାଭ ପାଇଁ, ବିଦ୍ୟାଲାଭ ପାଇଁ, ସୁଖମୟ ବୈବାହିକ ଜୀବନ ପାଇଁ ଏହିପରି ପ୍ରତ୍ୟେକ କ୍ଷେତ୍ର ପାଇଁ କିଛି ଦେବ-ଦେବୀଙ୍କୁ କଳ୍ପନା କରାଗଲା । ଦେବ-ଦେବୀଙ୍କର ସନ୍ତୁଷ୍ଟି ପାଇଁ ବିଭିନ୍ନ ପୂଜା, କର୍ମକାଣ୍ଡ, ନାନା ଉପାଖ୍ୟାନ, କିମ୍ବଦନ୍ତୀ, ବଳିପ୍ରଥା ଇତ୍ୟାଦି ସୃଷ୍ଟି ହେଲା । କାଳକ୍ରମେ ଦେବୀ-ଦେବତାମାନେ ମଣିଷ ପରି ବ୍ୟକ୍ତିସତ୍ତାର ରୂପ ନେଲେ । ପ୍ରତ୍ୟେକ ଦେବୀ, ଦେବତାଙ୍କର ବ୍ୟକ୍ତି-ସତ୍ତା ରହିଛି ଓ ଜୀବନର ପ୍ରତ୍ୟେକଟି ଘଟଣାଠାରୁ ପ୍ରାକୃତିକ ଘଟଣା ପର୍ଯ୍ୟନ୍ତ ଦେବୀ-ଦେବତାଙ୍କର ନିର୍ଦ୍ଦେଶରେ ସବୁ ଘଟୁଛି ବୋଲି ଗୋଟିଏ ସମୟରେ ବିଶ୍ୱାସ ସୃଷ୍ଟି ହୋଇଥିଲା ।

ବହୁ ଦେବ ଦେବୀରେ ବିଶ୍ୱାସ, ପୂଜା, ଆରାଧନା, ନାନା କର୍ମକାଣ୍ଡ, ଦେବ-ଦେବୀଙ୍କୁ ଭିତ୍ତିକରି ନାନା କାଳ୍ପନିକ କାହାଣୀ, ସ୍ୱପ୍ନାଦେଶ, ଚମତ୍କାରିତାର ଭାବନା ସୃଷ୍ଟି ହେଲା । ଧୀରେ ଧୀରେ ଦେବୀ-ଦେବତାଙ୍କ ରୂପ କଳ୍ପନା କରାଯାଇ

ସେମାନଙ୍କୁ ପୌତଳିକ ରୂପ ଦିଆଗଲା । ପ୍ରତିମା ବା ପ୍ରତିଛବି ଭିତରେ କଳ୍ପିତ ଦେବ ବା ଦେବୀ ଯେ ଲୁକାୟିତ ଭାବେ ରହିଛନ୍ତି ଏହାକୁ ବିଶ୍ୱାସ କରାଗଲା । ଗୋଟିଏ ଶିଶୁ ତା'ର କଣ୍ଢେଇଟିକୁ ଯେପରି ଏକ ଜୀବନ୍ତ ପ୍ରାଣୀ ଭାବେ ଶ୍ରଦ୍ଧା କରିଥାଏ, ସେହିପରି ମଣିଷମାନେ ପୌତଳିକ ମୂର୍ତ୍ତିକୁ ଜୀବନ୍ତ ଦେବତା ଭଳି ପୂଜା କରିବାକୁ ଲାଗିଲେ । ମଣିଷ ହାତରେ ନିର୍ମିତ ପିତୁଳାଟି ଦେବତା ପାଲଟି ଗଲାପରେ କେତେ କେତେ ପୂଜା, ଆରାଧନା, ପ୍ରାର୍ଥନା, ଆଳତିର ବ୍ୟବସ୍ଥା ହେଲା ଓ ଏ ସବୁ ଧୀରେ ଧୀରେ ପରଂପରାର ରୂପ ହେଲା । କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତା ଭିତରେ ମଣିଷର ସାଂସ୍କୃତିକ ଜୀବନଧାରା ଏହିଭଳି ବିକଶିତ ହୋଇଥିଲା । ରାଜନୈତିକ ଦୃଶ୍ୟପଟରେ କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳରେ ରହିଥିବା ଦଳପତିମାନେ ପରବର୍ତ୍ତୀ ପର୍ଯ୍ୟାୟରେ ରାଜତନ୍ତ୍ର ପ୍ରତିଷ୍ଠା କଲେ । ରାଜତନ୍ତ୍ରର ଯୁଗ ଆସିବା ପରେ ବଳଶାଳୀ ରାଜାମାନେ କୌଶଳ କ୍ରମେ ନିଜର ସାମ୍ରାଜ୍ୟ ବିସ୍ତାର କଲେ ଓ ଜନସଂଖ୍ୟାର ବୃଦ୍ଧି ସହ ନାନା ରାଜ୍ୟମାନ ସୃଷ୍ଟି ହେଲା । ରାଜତନ୍ତ୍ର ଲୋକମାନଙ୍କର ବିଶ୍ୱାସ, ସାଂସ୍କୃତିକ ପରଂପରାକୁ ସୁଦୃଢ଼ ଭିତ୍ତି ଦେଇ ପ୍ରତିଷ୍ଠା କରିବାରେ ବେଶ୍ ସହାୟକ ହେଲା । ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ପୂର୍ବରୁ ପାଗ୍‌ଧର୍ମୀୟ ଓ ପ୍ରାଗ୍-ଐତିହାସିକ ଯୁଗର ସାମାଜିକ ଜୀବନ ପ୍ରବାହ ଏହି ଧାରାରେ ବିକଶିତ ହୋଇଥିବା ଜଣାଯାଏ । ସେହି ଯୁଗରେ ରାଜାଙ୍କଠାରୁ ସାଧାରଣ ମଣିଷ ପର୍ଯ୍ୟନ୍ତ କୌଣସି ପ୍ରତିକୂଳ ପରିସ୍ଥିତି ବା ଦୁର୍ଭାଗ୍ୟର ସମ୍ମୁଖୀନ ହେବା ବେଳେ ବା ରୋଗବାଧକରେ ପୀଡିତ ହେବା ବେଳେ ଦୈବୀ କରୁଣା ପାଇଁ ନିଜ ଈପ୍‌ସିତ ଦେବଦେବୀଙ୍କୁ ପ୍ରାର୍ଥନା କରିବା ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ ହୋଇ ଉଠିଥିଲା ।

ଖ୍ରୀ.ପୂ. ଏକ ହଜାର ବର୍ଷ ବେଳକୁ ଗ୍ରାମୀଣ ପରିବେଶ, ରାଜତନ୍ତ୍ର, ପାରିବାରିକ ଜୀବନ ଦୃଢ଼ ଭିତ୍ତି ବିଭିନ୍ନ ଭୂଖଣ୍ଡରେ ନେଉଥିବା ଜଣାଯାଏ । ଏହାପରେ ବିଭିନ୍ନ ଭୂଖଣ୍ଡରେ କେତେକ କ୍ରାନ୍ତିକାରୀ ଆଲୋଡନ ଆସିଥିବା ଜଣାପଡେ । ସେହି ସମୟରେ ଏକେଶ୍ୱରବାଦର ଭାବନା, ନୀତି-ନୈତିକତାର ବିଚାର, ଜୀବନର ପାରଲୌକିକ ସ୍ଥିତି ଇତ୍ୟାଦି ବେଶ୍ ବୈପ୍ଳବିକ ଥିଲା । କେତେକ ପ୍ରାଚୀନ ସଭ୍ୟତାରେ ସେ ଯୁଗର ମାନଦଣ୍ଡରେ କେତେକ ଜ୍ଞାନଦୀପ୍ତ ବ୍ୟକ୍ତିଙ୍କର ଆବିର୍ଭାବ ଜନଜୀବନକୁ ଏକ ଅର୍ଥପୂର୍ଣ୍ଣ ମୋଡ ଦେବାରେ ସହାୟକ ହେଇଥିଲା । ଭାରତ ବର୍ଷରେ ଉପନିଷଦମାନଙ୍କର

ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବ ଗୋଟିଏ ଗୋଟିଏ ପ୍ରଭାବଶାଳୀ ସାଂସ୍କୃତିକ ଆଲୋଡନ ଥିଲା । ସେହିପରି ମଧ୍ୟପ୍ରାଚ୍ୟରେ ଖ୍ରୀ.ପୂ.ଷଷ୍ଠ ଶତାବ୍ଦୀରେ ଜୋରାଷ୍ଟରଙ୍କ ଆବିର୍ଭାବରୁ ପାର୍ଶୀଧର୍ମ ବିକଶିତ ହୋଇଥିଲା । ବହୁ ଦେବ-ଦେବୀ ପୂଜା ପରିବର୍ତ୍ତେ ଏକେଶ୍ୱରବାଦ ଭାବନା ପରବର୍ତ୍ତୀ ସମୟରେ ଖ୍ରୀଷ୍ଟଧର୍ମ, ଜୁଡାଇଜିମ ଓ ଇସଲାମକୁ ଗଭୀର ଭାବେ ପ୍ରଭାବିତ କରିଥିଲା । ହିବ୍ରୁ ସଭତାରେ ଜୁଡାଇଜିମ୍‌ର ଯେଉଁ ସାଂସ୍କୃତିକ ଆଲୋଡନଟି ସୃଷ୍ଟି ହୋଇଥିଲା ତାହା ଇହୁଦୀମାନଙ୍କର ଧର୍ମ ହେଲା । ମୋଜେସ ଏହି ଧର୍ମର ପୈଗମ୍ବର ଭାବେ ଈଶ୍ୱରଙ୍କର ବାର୍ତ୍ତା ପ୍ରଚାର କରିଥିଲେ। ଚୀନରେ କନ୍‌ଫୁସିଅସଙ୍କ ଆବିର୍ଭାବ ଓ ତାଙ୍କର ମାନବବାଦୀ ଦର୍ଶନ ସେ ଭୂଖଣ୍ଡରେ ଏକ ସାଂସ୍କୃତିକ ଜାଗରଣ ଆଣିବାରେ ସହାୟକ ହୋଇଥିଲା । ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବ ପରେ ସେ ଈଶ୍ୱର-କୈନ୍ଦ୍ରିକ ମାନବ--ଦରଦୀ ଜୀବନବୋଧର ଯେଉଁ ଅବତାରଣା କରିଥିଲେ ତାହା ଏକ ବଡ ସାଂସ୍କୃତିକ ଆଲୋଡନର ରୂପ ନେଇ ଏକ ବିଶାଳ ଭୂଖଣ୍ଡରେ ପରିବ୍ୟାପ୍ତ ହେଲା । ଷଷ୍ଠ ଶତାବ୍ଦୀରେ ଆରବ ଭୂଖଣ୍ଡରେ ମହମ୍ମଦଙ୍କୁ ନେଇ ଅନ୍ୟ ଏକ ସାଂସ୍କୃତିକ ପ୍ରବାହ ସୃଷ୍ଟି ହେଲା । ବିଶ୍ୱାସ ସୃଷ୍ଟିହେଲା ଯେ ମହମ୍ମଦ ହେଉଛନ୍ତି ଈଶ୍ୱରଙ୍କ ପ୍ରେରିତ ସର୍ବଶେଷ ପୈଗମ୍ବର । ଖ୍ରୀଷ୍ଟଧର୍ମରେ ଏକେଶ୍ୱରବାଦର ଭାବନା ଥିଲେ ମଧ୍ୟ ଏଥିରେ ଈଶ୍ୱରଙ୍କୁ ପିତା, ଯୀଶୁଙ୍କୁ ପୁତ୍ର ଓ ପବିତ୍ର ଆତ୍ମା ନେଇ ତ୍ରିସତ୍ତାର ଭାବନା ରହିଛି । ଉପନିଷଦ୍‌ମାନଙ୍କରେ ଏକେଶ୍ୱରବାଦର ଭାବନା ଥିଲେ ମଧ୍ୟ ହିନ୍ଦୁମାନେ ନାନା ଦେବଦେବୀ ଜନିତ ପିତୁଳା ପୂଜା କରିଆସିଛନ୍ତି । ଇସଲାମ ଏସବୁ ଭାବନାକୁ ଈଶ୍ୱରବିରୋଧୀ ଭାବନା ଭାବେ ନେଇ କେବଳ ଆଲ୍ଲାଙ୍କୁ ସର୍ବଶକ୍ତିମାନ ଓ ସର୍ବଜ୍ଞାତା ବୋଲି ଗ୍ରହଣ କରେ। ବସ୍ତୁତଃ ସଂପ୍ରତି ଯାହାକୁ "ଧର୍ମ" (ଯେପରି ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ, ଖ୍ରୀଷ୍ଟଧର୍ମ....ଇତ୍ୟାଦି)କୁହାଯାଉଛି ତାହାଁ ବହୁ ଅତୀତରେ ଗୋଟିଏ ଗୋଟିଏ ସାଂସ୍କୃତିକ ଆଲୋଡନ ଥିଲା । ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡରେ ଏକ ସାଂସ୍କୃତିକ ଜୀବନଦୃଷ୍ଟି ଭାବେ ଉଦ୍‌ଭବ ହୋଇ କାଳକ୍ରମେ ଏକ ବୃହତ୍ତର ଅଞ୍ଚଳକୁ ପ୍ରସାରଲାଭ କରି ଗୋଟିଏ ଜନଗୋଷ୍ଠୀ ଭିତରେ ସାମାଜିକ ଐକ୍ୟ ସ୍ଥାପନ କରିଥିଲା । ଯେଉଁ ସମୟରେ ଏକ ଅଞ୍ଚଳର ଜନଗଣ ଅନ୍ୟ ଅଞ୍ଚଳ ବିଷୟରେ ଜାଣିବାର ଅବକାଶ ନଥିଲା, ସେହି ଯୁଗରେ ସେହି ସମୟର ସାମାଜିକ, ନୈତିକ ବିଚାରବୋଧ କ୍ଷେତ୍ରରେ

ଧର୍ମ ଗୋଟିଏ ସାଂସ୍କୃତିକ ଆଲୋଡନ ଭାବେ ଏକ ଏକ ଭୌଗୋଳିକ ଭୂଖଣ୍ଡରେ ଉଦ୍‌ଭବ ହୋଇଥିଲା । ଆଦିମାନବର ଓ ପ୍ରାଗଐତିହାସିକ ଯୁଗର କାଳ୍ପନିକ ବିଶ୍ୱାସ, ପୂଜା, ଆରାଧନା ଐତିହାସିକ କାଳଖଣ୍ଡରେ ସାଂଗଠନିକ ଧର୍ମମାନଙ୍କର ବିକାଶ ଫଳରେ ଶୃଂଖଳିତ ଜୀବନଧାରାରେ ରୂପାନ୍ତରିତ ହେଲା । ଶହଶହ ବର୍ଷ ଧରି ଏକ ଜନଗୋଷ୍ଠୀର ବିଶ୍ୱାସ, କର୍ମକାଣ୍ଡ, ଜୀବନବୋଧ, ଅତୀନ୍ଦ୍ରିୟ ଭାବନା, ପାରଲୌକିକ ଦର୍ଶନ ଏବ ସୁସଂହତ ସାଂସ୍କୃତିକ ଆଲୋଡନ ଭାବେ ଦୃଢ଼ ଭିତ୍ତି ନେଲା । ସଂପ୍ରତି ଯାହାକୁ ଧର୍ମ କୁହାଯାଉଛି ତାହା ବହୁ ବିଶ୍ୱାସ, ଧାରା, ଜୀବନଦୃଷ୍ଟିର ଏକ ସମ୍ମିଳିତ ପ୍ରତ୍ୟୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ହିନ୍ଦୁଧର୍ମ ପୃଷ୍ଠଭୂମିରେ ଦେଖିଲେ ଏଥିରେ ବେଦାନ୍ତର ବ୍ରହ୍ମ ଭାବନା ରହିଛି ଓ ଅବତାରବାଦର କଳ୍ପନା ରହିଛି, ଏକେଶ୍ୱରବାଦ ଦର୍ଶନ ରହିଛି ଓ ବହୁ ଦେବପୂଜାର ଭାବନା ରହିଛି, ଶୈବବାଦ ରହିଛି, ଶାକ୍ତବାଦ ବି ରହିଛି, ସର୍ବେ ଭବନ୍ତୁ ସୁଖୀନର ବାର୍ତ୍ତା ସହ ବର୍ଣ୍ଣବ୍ୟବସ୍ଥା ଓ ଜାତିବାଦ ବି ରହିଛି । ଏସବୁ ଭାବନା ପରସ୍ପରବିରୋଧୀ ହେଲେ ବି ଶହ ଶହ ବର୍ଷର ଏକ ସାଂସ୍କୃତିକ ଆଲୋଡନ ଭିତରେ ବହୁ ଧାରା, ଉପଧାରା ଏଥିରେ ସମ୍ମିଳିତ ହୋଇଛି । ଏପରିକି ଶହଶହ ବର୍ଷର ବ୍ୟବଧାନ ଭିତରେ ପ୍ରତ୍ୟେକ ଧର୍ମ ପରଂପରା ଭିତରେ ବିଭିନ୍ନ ସଂପ୍ରଦାୟ ସୃଷ୍ଟି ହୋଇଛି ।

ଉନବିଂଶ ଶତାବ୍ଦୀରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ସହ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ପ୍ରତ୍ୟେକ ଧର୍ମର ବୌଦ୍ଧିକ ପରିସରଟିକୁ ସୁନିର୍ଦ୍ଦିଷ୍ଟ କରାଯାଇ ପାରିଲା । ଏହି ପୃଷ୍ଠଭୂମିରେ ବିଚାର କଲେ ପ୍ରତ୍ୟେକ ଧର୍ମର ଐତିହାସିକ ବିକାଶଧାରା, ତାତ୍ତ୍ୱିକ ଅବବୋଧ, କର୍ମକାଣ୍ଡ, ସଂପ୍ରଦାୟ, ନୈତିକ ଭାବନା ସକଳକୁ ପ୍ରକାଶ କରାଗଲା । ବିଶ୍ୱର ସୃଷ୍ଟି କିପରି ହେଲା, ଈଶ୍ୱରଙ୍କ ସ୍ୱରୂପ କ'ଣ, ଅତ୍ମାର ଲକ୍ଷଣ ଓ ମୃତ୍ୟୁପର ସ୍ଥିତି କ'ଣ ହୁଏ ଇତ୍ୟାଦି ତାତ୍ତ୍ୱିକ ଭାବନା ସକଳ ଉପରେ ପ୍ରତ୍ୟେକ ଧର୍ମ ନିଜସ୍ୱ ବିଚାର-ମଣ୍ଡଳ ସୃଷ୍ଟି କରିଥିଲା । ଧର୍ମମାନଙ୍କର ତୁଳନାତ୍ମକ ବିଶ୍ଳେଷଣରୁ ଏହି ସବୁ ଭାବନା କିପରି ସମତାଳଯୁକ୍ତ ନୁହନ୍ତି ଓ ପରସ୍ପରବିରୋଧୀ ତାହା ସ୍ପଷ୍ଟ ହେଲା । କେତେକ ଧର୍ମ ଜନ୍ମାନ୍ତରବାଦରେ ବିଶ୍ୱାସ କଲା ବେଳେ ଅନ୍ୟ କେତେକ ଧର୍ମ ଏହାକୁ ଗ୍ରହଣ କରନ୍ତି ନାହିଁ । ଆତ୍ମାର ସ୍ଥିତି, ଈଶ୍ୱରଙ୍କ ସ୍ୱରୂପ, ଜଗତର ଉତ୍ପତ୍ତି, ଦୁଃଖର କାରଣ ଇତ୍ୟାଦି ତାତ୍ତ୍ୱିକ ପ୍ରସଙ୍ଗ ଉପରେ ଭିନ୍ନ ଭିନ୍ନ ଧର୍ମ ଭିନ୍ନ ଭିନ୍ନ ସିଦ୍ଧାନ୍ତର

ଅବତାରଣ କରିବା ଦେଖାଯାଏ । ସୁତରାଂ ଏଗୁଡିକ ଯେ କେବଳ ପ୍ରାଚୀନ ଯୁଗର କଳ୍ପନା ଓ ସେ ଯୁଗରେ ଜୀବନର ଘଟଣା ପ୍ରବାହକୁ ଅବବୋଧ କରିବାର ଏକ ବୌଦ୍ଧିକ ଆବେଦନ ତାହା ମନେହୁଏ । ପୃଥିବୀ କିପରି ସୃଷ୍ଟିହେଲା, ମଣିଷର ଉତ୍ପତ୍ତି କିପରି ହୋଇଛି, ନୀତି-ଅନୀତିର ବିଚାରକ କିଏ, କିଏ ବିପଦବେଳେ ସୁରକ୍ଷା ଦେବେ-ଏ ସକଳ ପ୍ରଶ୍ନର ଉତ୍ତର ହେଲା "ଈଶ୍ୱର" । ମଣିଷର ବୌଦ୍ଧିକ ଦିଗନ୍ତ ବିସ୍ତାରିତ ହୋଇନଥିବା ଯୁଗରେ ଓ ତର୍କସଂଗତ ଭାବନାର ଅଭାବରେ ପାରଲୌକିକ ସତ୍ତାରେ ବିଶ୍ୱାସ ଓ ସକଳ ଘଟଣା ପ୍ରବାହକୁ ଦୈବୀ ବିଧାନ ଆଧାରରେ ବୁଝିବା ମଣିଷ ପାଇଁ ବେଶ୍ ସହଜସାଧ୍ୟ ଥିଲା । ଈଶ୍ୱର, ଦେବୀ ଦେବତା, ସ୍ୱର୍ଗ, ନରକ, ଅଲୌକିକ ଘଟଣା, ଚମତ୍କାରିତାକୁ ଆଧାରକରି ବିଭିନ୍ନ ଧର୍ମଗୋଷ୍ଠୀରେ ଅସଂଖ୍ୟ କାବ୍ୟ, କବିତା, ଧର୍ମଗ୍ରନ୍ଥ, ପୁରାଣମାନ ସୃଷ୍ଟି ହେବାକୁ ଲାଗିଲା ଓ ମଣିଷର ବୌଦ୍ଧିକ ଦିଗନ୍ତଟି ଏହାରି ଭିତରେ ସୀମାବଦ୍ଧ ହୋଇଗଲା । ରାଜତନ୍ତ୍ରର ପୃଷ୍ଠପୋଷକତା ପାଇ ଏସବୁ ଭାବନା ଶିକ୍ଷା, ସଂସ୍କୃତି ଓ ପରଂପରାର ମୂଳମନ୍ତ୍ର ହେଲା । ସମାଜର ଶିକ୍ଷା, ନୀତିବୋଧ, ଶାସନକଳ ସବୁ ସ୍ତରରେ ଧାର୍ମିକ ବିଶ୍ୱାସ ପ୍ରାଧାନ୍ୟ ନେଲା ଓ ଧର୍ମ ଜୀବନ ପ୍ରବାହର ଅବିଚ୍ଛେଦ୍ୟ ଅଂଗ ହୋଇଗଲା ।

'ଦର୍ଶନ' ହେଉଛି ଏକ ବୌଦ୍ଧିକ ଜିଜ୍ଞାସା । ତେବେ ଏହାର ସଂଜ୍ଞା ଓ ପରିଭାଷା ସମୟକୁ ସମୟ ବଦଳି ଚାଲିଛି । ଏକ ସମୟରେ ମୌଳିକ ସତ୍ତାର ସ୍ୱରୂପ, ଜ୍ଞାନର ଆଧାର ଓ ସୌନ୍ଦର୍ଯ୍ୟର ବିଶ୍ଳେଷଣ କରିବା ଦର୍ଶନର ମୁଖ୍ୟ ପ୍ରସଙ୍ଗ ଥିଲା । ଏ ସବୁର ତର୍କସଂଗତ ବ୍ୟାଖ୍ୟା କରିବା ସହ ବୈଧ ଯୁକ୍ତିର ନିୟମ ଓ ପରିସରକୁ ଦର୍ଶାଇବା ଦାର୍ଶନିକ ଅନୁଶୀଳନର ଆଭିମୁଖ୍ୟ ଥିଲା । ତେବେ ଯେଉଁ ଯୁଗରେ ବୌଦ୍ଧିକ ସ୍ତରରେ ଯେଉଁ ପ୍ରସଙ୍ଗ ଗୁଡିକ ଚିନ୍ତାରାଜ୍ୟରେ ଆଲୋଡନ ଆଣିଥିଲା ସେ ସବୁକୁ ଏକ ଯୁକ୍ତିଶୀଳ ଆଧାର ଦେବାରେ ଦର୍ଶନର ଏକ ଭୂମିକା ରହିଥିଲା । ସଂପ୍ରତି ଦର୍ଶନର ପରିସର, ବିଷୟ, ସଂଜ୍ଞା ଓ ସ୍ୱରୂପ ଯାହା, ମଧ୍ୟଯୁଗରେ ଦର୍ଶନର ସେହି ଭାବନା ନଥିଲା । ମଧ୍ୟଯୁଗରେ ଯେତେବେଳେ ଧର୍ମର ଗଭୀର ପ୍ରଭାବ ରହିଥିଲା, ସେତେବେଳେ ଧର୍ମର ମୁଖ୍ୟ ବିଷୟକୁ ତର୍କଶୀଳ ଆଧାରରେ ଏକ ବୌଦ୍ଧିକ ଭିତ୍ତି ଦେବା ଦର୍ଶନର ଆଭିମୁଖ୍ୟ ହୋଇଥିଲା । ଈଶ୍ୱରଙ୍କ ଅସ୍ତିତ୍ୱ, ଆତ୍ମାର ଅମରତ୍ୱ, ଜୀବନର ପୁରୁଷାର୍ଥ ଇତ୍ୟାଦି ତାତ୍ତ୍ୱିକ ଭାବନାମାନଙ୍କୁ ପ୍ରମାଣ କରିବାକୁ ଦର୍ଶନରେ

ପ୍ରୟାସ ହୋଇଥିଲା । ଗୋଟିଏ ଯୁଗରେ ବିଶ୍ୱାସ ଥିଲା ଯେ ଏସବୁ ବିଶ୍ୱାସ ଯୁକ୍ତିନିଷ୍ଠ ଓ ଧର୍ମଗ୍ରନ୍ଥର ଭାବନାମାନ ସାର୍ବଜନୀନ ଭାବେ ସତ୍ୟ । ବିଜ୍ଞାନର ଯୁଗ ଆସିବା ପର୍ଯ୍ୟନ୍ତ ଦର୍ଶନ ଧର୍ମର ପୃଷ୍ଠପୋଷକତା ପାଇଁ ବିନିଯୋଗ ହେଉଥିଲା ।

ବିଜ୍ଞାନର ଯୁଗଟି ସଭ୍ୟତାର ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା ଥିଲା । ଇଉରୋପରେ ଯେଉଁ ନବଜାଗରଣର ଯୁଗ ଆସିଲା, ତାହା ଚିନ୍ତାରାଜ୍ୟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ନବଜାଗରଣ ଯୁଗର ପ୍ରଭାବରୁ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭହେଲା ଓ ତିନିଶହ ବର୍ଷ ଭିତରେ ମାନବସଭ୍ୟତାର ଦୃଶ୍ୟପଟ ସଂପୂର୍ଣ୍ଣ ବଦଳି ଯିବାକୁ ଲାଗିଲା । ଯୁଗ ଯୁଗର ଧାର୍ମିକ ଭାବନା ଓ ବିଶ୍ୱାସ ସକଳକୁ ବିଜ୍ଞାନ ଅସତ୍ୟ ବୋଲି ପ୍ରମାଣ କଲା । ମଣିଷ ସମାଜ, ଜୀବ ଜଗତ, ପୃଥିବୀ ଓ ଗ୍ରହମଣ୍ଡଳକୁ କେଉଁ ଈଶ୍ୱର କେତୋଟି ଦିନ ଭିତରେ ସୃଷ୍ଟି କରିନାହାନ୍ତି । ପୃଥିବୀର ଯେଉଁ ପ୍ରାକୃତିକ ଓ ଭୌଗୋଳିକ ସ୍ଥିତି ରହିଛି ତାହା ସର୍ବଦା ଏହି ସ୍ଥିତିରେ ନାହିଁ, ଏଥିରେ ସର୍ବଦା ପରିବର୍ତ୍ତନ ହୋଇଚାଲିଛି । ସୂର୍ଯ୍ୟ, ଚନ୍ଦ୍ର କୌଣସି ଦେବତା ନୁହନ୍ତି । ସ୍ୱର୍ଗ, ନରକ, ଦେବୀ, ଦେବତା ଏସବୁର ଅସ୍ତିତ୍ୱ ହିଁ ନାହିଁ । ଧର୍ମଗ୍ରନ୍ଥର ବାଣୀ ଓ ଭାବନା ଈଶ୍ୱରପ୍ରଦତ୍ତ ଜ୍ଞାନ ନୁହେଁ, ଏସବୁ ମଣିଷ-ମସ୍ତିଷ୍କର ଭାବନା । ବିଜ୍ଞାନ ନିଜର ଗବାକ୍ଷକୁ ମୁକ୍ତ ରଖିଲା ଓ ତଥ୍ୟ-ଆଧାରିତ ପରୀକ୍ଷା ଉପରେ ଏହାର ସିଦ୍ଧାନ୍ତ ସକଳକୁ ରଚନା କଲା । ଏ ବିଶାଳ ପ୍ରକୃତିକୁ ଜାଣିବା ପାଇଁ ବିଜ୍ଞାନ ପର୍ଯ୍ୟବେକ୍ଷଣ, ପରୀକ୍ଷଣକୁ ସାଧନ ଭାବେ ଗ୍ରହଣ କଲା । ବିଜ୍ଞାନ ପ୍ରକୃତିର ନିୟମ ଓ ଏକରୂପତାକୁ ଆବିଷ୍କାର କରି ଚାଲିଲା । ବିଜ୍ଞାନ ଏହି ସିଦ୍ଧାନ୍ତରେ ଉପନୀତ ହେଲା ଯେ ପ୍ରକୃତିରେ ଯାହା କିଛି ଅଛି, ବିଶ୍ୱରେ ଯାହା କିଛି ଘଟୁଛି ସେସବୁ ପ୍ରାକୃତିକ ଘଟଣା ମାତ୍ର । ସକଳ ପ୍ରାକୃତିକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ରହିଛି, ତାହା ଜ୍ଞାନ ସ୍ତରକୁ ଆସିଥାଉ ବା ଆସିନଥାଉ । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁ ସବୁ ଘଟଣାର କାରଣ ମଣିଷ ଜାଣିବାକୁ ସମର୍ଥ ହୋଇନାହିଁ । ତେବେ ସଭ୍ୟତା ଯେତିକି ଅଗ୍ରସର ହେଉଥିବ, ଜ୍ଞାନର ପରିସର ସେତିକି ବୃଦ୍ଧି ପାଉଥିବ । ଅତୀତରେ ଯାହା ଅଜ୍ଞାତ ଥିଲା, ତାହା ଆଜି ଜ୍ଞେୟ ହୋଇପାରିଛି, ଆଜି ଯାହା ଅଜ୍ଞାତ ରହିଛି ଆଗାମୀ ଦିନରେ ଜ୍ଞେୟ ହୋଇ ପାରିବ । ପ୍ରାକୃତିକ ନିୟମ ବିରୋଧୀ ଏପରି କୌଣସି ଚମତ୍କାରିତା ବା ଅଲୌକିକତା ନାହିଁ । ତେବେ ବିଜ୍ଞାନ

ପ୍ରକୃତି ଓ ଜୀବନ ବିଷୟରେ ଯେଉଁ ଜ୍ଞାନ ଦେଇ ଆସିଛି ତାହା ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ବୈଜ୍ଞାନିକ ଜ୍ଞାନ ଏହାର ପ୍ରଣାଳୀ ଆଧାରରେ ସ୍ୱସଂଶୋଧନାତ୍ମକ । ବସ୍ତୁତଃ ବୈଜ୍ଞାନିକ ଜ୍ଞାନ ମୁକ୍ତ, ତଥ୍ୟାଧାରିତ, ସାର୍ବଜନୀନ, ପରୀକ୍ଷାସାପେକ୍ଷ ଓ ସ୍ୱସଂଶୋଧନାତ୍ମକ । ବୈଜ୍ଞାନିକ ପ୍ରଣାଳୀ ଆଧାରରେ ପ୍ରକୃତି ବିଷୟରେ ହେଉ ବା ମାନବ ସମାଜ ବିଷୟରେ ହେଉ ବସ୍ତୁନିଷ୍ଠ ଜ୍ଞାନ ହିଁ ସମ୍ଭବ । ବୈଜ୍ଞାନିକ ଅନୁଶୀଳନ, ଗବେଷଣା ଯେଉଁ ସବୁ ଆବିଷ୍କାର ଓ ଉଦ୍ଭାବନ କଲା ତାହା ଜ୍ଞାନର ଦିଗନ୍ତକୁ ନାନା ଭାବରେ ବିସ୍ତାର କରିବାରେ ସହାୟକ ହେଲା ଓ ସଭ୍ୟତାର ରୂପରେଖ ବଦଳିବାକୁ ଲାଗିଲା ।

ବିଜ୍ଞାନର ଯୁଗ ଆରମ୍ଭ ହେବାର ଦୁଇ ଶହ ବର୍ଷ ପରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା । ବୈଜ୍ଞାନିକ ନିୟମକୁ ପ୍ରୟୋଗ କରି ପ୍ରାଯୁକ୍ତିକ ବିଜ୍ଞାନରେ ବହୁ ଉନ୍ନତି ସାଧିତ ହେଲା । ଶିଳ୍ପବିପ୍ଳବ ଆସିଲା, ଉତ୍ପାଦନ ବହୁ ଭାବରେ ବୃଦ୍ଧି ପାଇଲା । ଗୋଟିଏ ଗୋଟିଏ ଉଦ୍‌ଭାବନ ଓ ଆବିଷ୍କାର ଜୀବନର ମାନରେ ଗୁଣାତ୍ମକ ପରିବର୍ତ୍ତନ ଆଣିଲା । ପ୍ରିଣ୍ଟିଂ ପ୍ରେସର ଉଦ୍ଭାବନ ଜ୍ଞାନର ସାମାଜିକୀକରଣରେ ସହାୟତା କଲା । ବିଜୁଳି ଆଲୋକର ଉଦ୍ଭାବନ କେତେ କେତେ ବିକାଶର ଦିଗନ୍ତ ସୃଷ୍ଟି କଲା । ବହୁ ମହାମାରୀ ରୋଗମାନଙ୍କର ନିୟନ୍ତ୍ରଣ ସମ୍ଭବ ହେଲା ଓ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆସିଲା । ଆଜକୁ ଦୁଇଶହ ବର୍ଷ ତଳେ ସ୍ଥଳଭାଗରେ ମଣିଷର ସବୁଠାରୁ ଦ୍ରୁତଗାମୀ ସାଧନ ଥିଲା ଗୃହପାଳିତ ଘୋଡା । ବାଷ୍ପଚାଳିତ ଇଂଜିନର ବ୍ୟବହାରରୁ ରେଳଗାଡି ଜନିତ ଯାତ୍ରା ସମ୍ଭବ ହେଲା । ଶହେବର୍ଷ ଭିତରେ ଗମନାଗମନ କ୍ଷେତ୍ରରେ ଅଭୂତପୂର୍ବ ସଫଳତା ମିଳିପାରିଛି । ଆକାଶମାର୍ଗରେ ଯାତ୍ରା କରିବାର ଜ୍ଞାନକୌଶଳରୁ ପୃଥିବୀରୁ ଦୂରତା କମିଯାଇଛି ଓ ଆମ ସଂସାର ଗୋଟିଏ ଗ୍ରାମରେ ପରିବର୍ତ୍ତିତ ହୋଇଯାଇଛି । ଏପରିକି ପୃଥିବୀର ଜଳ, ସ୍ଥଳ, ଆକାଶ ମାର୍ଗରେ ଗତି କରିସାରି ମଣିଷ ଅନ୍ୟ ଗ୍ରହକୁ ଯିବାର ଜ୍ଞାନ ହାସଲ କରିଛି । ଅନ୍ତରୀକ୍ଷ ଯାତ୍ରା ବାସ୍ତବତାରେ ପରିଣତ ହୋଇଛି । କୃଷି କ୍ଷେତ୍ରରେ ବୈଜ୍ଞାନିକ ଜ୍ଞାନକୌଶଳ ପ୍ରୟୋଗ କରି କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତାକୁ ପୂରଣ କରାଯାଇ ପାରୁଛି । ସଂପ୍ରତି ଟେଲିଭିଜନ, କଂପୁଟର, ସାଟେଲାଇଟ କମୁନିକେସନ, ମୋବାଇଲ ଫୋନ ଟେଲି କମୁନିକେସନ କ୍ଷେତ୍ରରେ ବୈପ୍ଳବାତ୍ମକ ପରିବର୍ତ୍ତନ ସୃଷ୍ଟି କରିପାରିଛି । ମୋଟ ଉପରେ

କହିଲେ ବିଜ୍ଞାନ ମଣିଷ ଜ୍ଞାନର ଦିଗନ୍ତକୁ ବିସ୍ତାର କରିବା ସହ ଜୀବନର ମାନରେ ଗୁଣାତ୍ମକ ପରିବର୍ତ୍ତନ ଆଣିପାରିଛି । ମାନବ ଜାତି ଯେଉଁ ସବୁ ସଂକଟର ସମ୍ମୁଖୀନ ହେଉଛି ତାର ସମାଧାନ ପାଇଁ ବିଜ୍ଞାନର ଶାନ୍ତିପୂର୍ଣ୍ଣ ପ୍ରୟୋଗ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଅବଶ୍ୟମ୍ଭାବୀ ମନେ ହେଉଛ । ଚାରିଶତାବ୍ଦୀ ଭିତରେ ବିଜ୍ଞାନ ବୌଦ୍ଧିକ ସ୍ତରରେ ଯେଉଁ ଉତ୍ତରଣ ଆଣିଛି ତାହାର ଯେ ସୁଦୂରପ୍ରସାରୀ ପ୍ରଭାବ ରହିଛି ଏହା ନିଃସନ୍ଦେହ ।

ହେତୁବାଦ ସାଂପ୍ରତିକ ସ୍ଥିତିରେ ଏକ ଅଗ୍ରଗାମୀ ଦର୍ଶନ । ବିକାଶର କ୍ରମବିକାଶ ଧାରାରେ ସଭ୍ୟତା ଯେଉଁ ସ୍ଥିତିରେ ପହଞ୍ଚିଛି, ସେଥିରେ ହେତୁବାଦୀ ଜୀବନ-ଦର୍ଶନର ପ୍ରସାରଦ୍ୱାରା ହିଁ ଏକ ମହତ୍ତର ଭବିଷ୍ୟତର ସମ୍ଭାବନା ସୃଷ୍ଟି ହେବ । ଗୋଟିଏ ଯୁଗରେ ଧର୍ମମାନଙ୍କର ଉତ୍ପତ୍ତି ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସାଂସ୍କୃତିକ ସଂହତିର ପରିବେଶ ସୃଷ୍ଟି କରିଥିଲେ ବି ତାହା ପରବର୍ତ୍ତୀ ସମୟରେ ବିଭିନ୍ନ ଧର୍ମଗୋଷ୍ଠୀ ଭିତରେ ହିଂସା, ବିଦ୍ୱେଷ, ଅସହିଷ୍ଣୁତାର ବାତାବରଣ ସୃଷ୍ଟି କରିଛି । ଧର୍ମ ରୂପାନ୍ତରିତ ହୋଇଛି ସାଂପ୍ରଦାୟିକତାରେ । କେବଳ ସେତିକି ନୁହେଁ ଏହା ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ପ୍ରତିବଂଧକ ହେବା ସହ ସାମାଜିକ ସଂସ୍କାର ଓ ବ୍ୟକ୍ତିମର୍ଯ୍ୟାଦାବୋଧ ପ୍ରତି ମଧ୍ୟ ପ୍ରତିକୂଳ ହୋଇଆସିଛି । ସାଂପ୍ରତିକ ଅନ୍ୱେଷାରେ ଧର୍ମନିରପେକ୍ଷ ଆଦର୍ଶ ସାର୍ବଜନୀନ ହେବାରେ ଲାଗିଛି ଅଥଚ ମୌଳବାଦ, ସାଂପ୍ରଦାୟିକତାବାଦ ଓ କୁସଂସ୍କାର ମାନବିକତା ବିରୋଧୀ ଭାବେ ସ୍ୱୀକୃତ ହେଉଛି । କହିବା ନିଷ୍ପ୍ରୟୋଜନ ଯେ ଶେଷୋକ୍ତ ଧାରାଗୁଡିକ ଧର୍ମୀୟ ମାନସିକତାରୁ ନିଷ୍ପନ୍ନ ହୋଇଥାଏ । ବିଜ୍ଞାନ ସଭ୍ୟତାକୁ ନୂଆ ରୂପ ଦେଇଛି, ପ୍ରକୃତିର ରହସ୍ୟକୁ ଅନାବରଣ କରିଛି, ମଣିଷକୁ ସତ୍ୟସଂଧାନୀ କରାଇଛି, ବୌଦ୍ଧିକ ଜିଜ୍ଞାସା ସୃଷ୍ଟି କରିଛି, ଜ୍ଞାନର ଦିଗନ୍ତକୁ ବିସ୍ତାର କରିଛି ଓ ଜୀବନର ମାନକୁ ଉନ୍ନତ କରିଛି । ତେବେ ବିଜ୍ଞାନର ଅପପ୍ରୟୋଗ ସଭ୍ୟତାର ଧ୍ୱଂସ ସାଧନ ପାଇଁ ବାଟ ଦେଖାଇଛି । ଏହି ସ୍ଥିତିରେ ମାନବ ସଭ୍ୟତାର ଭବିଷ୍ୟତ ହେତୁବାଦର ପ୍ରସାର ଉପରେ ଅନେକାଂଶରେ ନିର୍ଭର କରୁଛି । ହେତୁବାଦ ଏକ ବିଚାରଶୀଳ ଦୃଷ୍ଟି ତଥା ଏକ ମହତ୍ତର ଜୀବନବୋଧ । ଏହାର ସୈଦ୍ଧାନ୍ତିକ ଭିତ୍ତି ଦୁଇଟି ବିଚାରବୋଧ ଉପରେ ଦଣ୍ଡାୟମାନ, ତାହା ହେଲା ବୈଜ୍ଞାନିକ ମନୋଭାବ ଓ ମାନବବାଦ । ବୈଜ୍ଞାନିକ ମନୋଭାବ ବ୍ୟକ୍ତିକୁ ସତ୍ୟସଂଧାନୀ କରିଥାଏ । ମୁକ୍ତ

ମନ, ଜିଜ୍ଞାସାବୋଧ, ସତ୍ୟପ୍ରତି ପ୍ରତିବଦ୍ଧତା ଓ ତର୍କଶୀଳତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତର୍ନିହିତ ତାତ୍ପର୍ଯ୍ୟ । ମାନବବାଦ ହେତୁବାଦର ଅନ୍ୟ ଏକ ନିଷ୍କର୍ଷ, ଯାହାର ତାତ୍ପର୍ଯ୍ୟ ହେଉଛି ସମ୍ବେଦନଶୀଳତା ଓ ମାନବିକ ମର୍ଯ୍ୟାଦା ପ୍ରତି ସମ୍ମାନବୋଧ । ନ୍ୟାୟବୋଧ, ଭ୍ରାତୃତ୍ୱଭାବ ଓ ସାମାଜିକ ସମତା ଏହାର ଅନ୍ତର୍ନିହିତ ଆଦର୍ଶ । ଯେଉଁ ଭାବନା, ଆଦର୍ଶ ମଣିଷ ମଣିଷ ଭିତରେ ବିଭେଦ ସୃଷ୍ଟିକରେ, ପ୍ରାଚୀର ଛିଡା କରାଏ, ପ୍ରତିହିଂସାର ମନୋଭାବ ଆଣେ ସେସବୁ ମାନବବାଦର ପରିପନ୍ଥୀ । ହେତୁବାଦ ଜ୍ଞାନକୁ ମାନବିକ ଶ୍ରେୟ ସାଧନ ଦିଗରେ ବିନିଯୋଗ କରିବାକୁ ପ୍ରେରଣା ଦିଏ ଓ ଏକ ସମତାପୂର୍ଣ୍ଣ, ଭ୍ରାତୃତ୍ୱପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ଚିତ୍ର ଅଙ୍କନକରେ । ଅତୀତରେ ରଙ୍ଗଭେଦ, ଲିଙ୍ଗଭେଦ, ଧର୍ମଭେଦ, ଯୁଦ୍ଧ, ବିଭୀଷିକା, ନିଷ୍ଠୁରତା, ବିଦ୍ୱେଷର ପରିବେଶ ମାନବ ଇତିହାସକୁ ଯେପରି କଳଙ୍କିତ କରିଛି ତାହାର ପୂର୍ଣ୍ଣଚ୍ଛେଦ ଆଣି ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ଚିତ୍ର ପ୍ରଦାନ କରେ ।

ହେତୁବାଦ ଏହି ସନ୍ଦେଶ ଦିଏ ଯେ ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେସବୁ ମାନବୀୟ ପ୍ରୟାସରେ ହିଁ ସାଧିତ ହୋଇଛି । ଏକ ଆଦିମ ସ୍ଥିତିରୁ ଅତ୍ୟାଧୁନିକ ସ୍ଥିତିକୁ ଉତରଣ କରିବା ପଶ୍ଚାତରେ ରହିଛି ମଣିଷର ଜିଜ୍ଞାସା ଓ ନିଷ୍ଠାପର ଉଦ୍ୟମ । ଆମେ ଯେଉଁ ସ୍ଥିତିରେ ଆଜି ରହିଛେ, ଏହା ପଶ୍ଚାତରେ ଆମ ପିତାମହ, ପ୍ରପିତାମହଙ୍କର ଅବଦାନ ହିଁ ରହିଛି । ସେହିପରି ଆମ ପ୍ରୟାସରେ ଆମର ଆଗାମୀ ପିଢ଼ି ଆହୁରି ଉନ୍ନତତର ଓ ମହତ୍ତର ସ୍ଥିତିକୁ ଯାଇପାରିବ । ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ଜାତି ଚିରସ୍ଥାୟୀ । ସୁତରାଂ ବୃହତ୍ତର ମାନବ ସମୁଦାୟର ମଙ୍ଗଳ ପ୍ରତି ପ୍ରତିବଦ୍ଧ ରହିବା ଯେ ଆମର ନୈତିକ କର୍ତ୍ତବ୍ୟ ଏହା ହିଁ ହେତୁବାଦୀ ଆଦର୍ଶବୋଧର ସାରମର୍ମ ଅଟେ ।

ଗତ ଗୋଟିଏ ଶତାବ୍ଦୀ ଭିତରେ ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ବିସ୍ଫୋରଣ ଘଟିଛି, ପ୍ରଯୁକ୍ତି ଉତ୍ତୁଙ୍ଗ ଶିଖରକୁ ଯାଇଛି, ଭୌତିକ ସୁଖ ସ୍ୱାଚ୍ଛନ୍ଦ୍ୟ ଆଶାତୀତ ଭାବେ ବୃଦ୍ଧି ପାଇଛି । ଏସବୁ ସହିତ ଗଣ ବିଧ୍ୱଂସକାରୀ ଆଣବିକ ଅସ୍ତ୍ର ମଣିଷ ନିର୍ମାଣ କରିଛି ଓ ଅବିଚାରିତ ଭାବେ ଭୋଗବିଳାସକୁ ବୃଦ୍ଧି କରିଛି । କିନ୍ତୁ ମାନବିକ ମୂଲ୍ୟବୋଧ ଆଧାରରେ ସମାଜର ଦୃଶ୍ୟପଟକୁ ପରିବର୍ତ୍ତନ କରିବା ନେଇ ଯଥେଷ୍ଟ ପ୍ରୟାସ ହୋଇନାହିଁ । ବିଜ୍ଞାନର ଏତେ ବିକାଶ ସତ୍ତ୍ୱେ ବି ବୈଜ୍ଞାନିକ ମାନସିକତା ପ୍ରସାର

କ୍ଷେତ୍ରରେ ସମାଜ ଯଥେଷ୍ଟ ସଫଳ ହୋଇନାହିଁ । ରାଶି ରାଶି କୁସଂସ୍କାର, ଅପସଂସ୍କୃତି ଓ ଆଧାରହୀନ ବିଶ୍ୱାସ ସମାଜରେ ବ୍ୟାପକ ଭାବେ ରହିଛି । ବିଚାରଶୀଳ ମନୋଭାବ ଓ ତର୍କଶୀଳ ଦୃଷ୍ଟି ସମାଜରେ ସାର୍ବଜନୀନ ହେବା ସମ୍ଭବ ହୋଇନାହିଁ । ପାରଲୌକିକ ଜୀବନଦୃଷ୍ଟି ଏବେ ବି ସମାଜରେ ବିସ୍ତାରିତ ହୋଇ ରହିଛି । ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ ଯେପରି କାୟା ବିସ୍ତାରକରି ରହିଛି ସେହିପରି ମାନସିକ ଦାରିଦ୍ର୍ୟ ଉତ୍କଟ ହୋଇରହିଛି । ସମାଜର ଅଗଣିତ ବ୍ୟକ୍ତି, ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ, ଭାଗ୍ୟ, କର୍ମଫଳ, ଫଳିତ ଜ୍ୟୋତିଷ, ବାସ୍ତୁ, ଚମତ୍କାରିତା ଇତ୍ୟାଦି ଅବୈଜ୍ଞାନିକ ବିଶ୍ୱାସରେ ନାନା ଆସ୍ଥା ପୋଷଣ କରୁଛନ୍ତି । ଆମ ସମାଜରେ ଜାତିପ୍ରଥା, ଭେଦଭାବ ମୂଳକ ମାନସିକତା, ସାଂପ୍ରଦାୟିକ ଭାବଧାରା, ଭ୍ରଷ୍ଟାଚାର ବ୍ୟାପକ ଭାବେ ରହିଛି । ଏହି ସବୁ ମନ୍ଦ ବା ଇଭିଲ ଗୁଡିକୁ ଦୂର କରିବା ପାଇଁ ହେତୁବାଦୀ ମୂଲ୍ୟବୋଧର ପ୍ରସାର ଆମ ପାଇଁ ବଡ଼ ଆବଶ୍ୟକତା ହୋଇ ରହିଛି । ହେତୁବାଦୀ ଜୀବନାଦର୍ଶର ପ୍ରସାର ଦ୍ୱାରା ହିଁ ସମାଜରୁ ଅପସଂସ୍କୃତି ଓ ବୌଦ୍ଧିକ ଜଡତାର ବିଲୋପ ହୋଇପାରିବ। ତେବେ ଏହା ଯେ କେତୋଟି ବର୍ଷ ଭିତରେ ବା କେତେକ ପଦକ୍ଷେପଦ୍ୱାରା ତତ୍‌କ୍ଷଣାତ୍ ହୋଇଯିବ ତାହା ନୁହେଁ । ହେତୁବାଦୀ ବିଚାରବୋଧର ପ୍ରସାର ପାଇଁ ଯାତ୍ରା ଏକ ଅବାରିତ ଧାରା । ସମ୍ଭବତଃ ଏହି ଯାତ୍ରାର ପରିସମାପ୍ତି ନାହିଁ । ଏହି ଯାତ୍ରାରେ ଯେଉଁମାନେ ଇତିହାସରେ ସାମିଲ ହୋଇଛନ୍ତି ସେମାନେ ଏକ ମହତ୍ତର ପନ୍ଥାର ପଥ ପ୍ରଦର୍ଶକ ଓ ଏକ ମହତ୍ତର ଜୀବନବୋଧର ବାର୍ତ୍ତାବହ ହୋଇଛନ୍ତି ।



# ହେତୁବାଦ ଓ ସମାଜସଂସ୍କାର

ହେତୁବାଦ ଏକ ବିଚାର ଓ ଏକ ଜୀବନଧାରା । ଏହା ଏକ ବିଚାର କାରଣ ଏହା ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ବିଚାରଶୀଳତାର ପ୍ରାଧାନ୍ୟକୁ ସ୍ୱୀକାର କରେ । ବିଚାରଶୀଳତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବକୈନ୍ଦ୍ରିକ ଦର୍ଶନ ଉପରେ ଆଧାରିତ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ ହେଉଛି ମୁକ୍ତ ମନ ପୋଷଣ କରିବା, ବସ୍ତୁନିଷ୍ଠ ଭାବରେ ପ୍ରାକୃତିକ ଘଟଣା ପ୍ରବାହ ଓ ସାମାଜିକ ବ୍ୟବସ୍ଥାର ଅନୁଶୀଳନ କରିବା ଓ ଏକ ସାର୍ବଜନୀନ ପ୍ରଣାଳୀ ଆଧାରରେ ଜଗତ ଓ ଜୀବନ ବିଷୟରେ ସିଦ୍ଧାନ୍ତରେ ଉପନୀତ ହେବା । ବୈଜ୍ଞାନିକ ପ୍ରଣାଳୀ ଆଧାରରେ ଉପଲବ୍ଧ ହେଉଥିବା ଜ୍ଞାନ ନିରପେକ୍ଷ, ନିର୍ଭରଶୀଳ, ସତ୍ୟାଧାରିତ, ବସ୍ତୁନିଷ୍ଠ ଓ ସାର୍ବଜନୀନ । ତେବେ ବିଜ୍ଞାନ ସର୍ବଦା ପ୍ରାକୃତିକ ଓ ସାମାଜିକ ପିରିବେଶ ବିଷୟରେ ପ୍ରଗତିଶୀଳ ଜ୍ଞାନ ଦେଇଥାଏ । କୌଣସି ବୈଜ୍ଞାନିକ ନିଜର ସିଦ୍ଧାନ୍ତକୁ ଚିରନ୍ତନ ମନେ କରେ ନାହିଁ । ପ୍ରକୃତିର ବିଶାଳତା ଓ ଜଟିଳତା ଯୋଗୁଁ ଆମର ଅନୁଭୂତି ଓ ପର୍ଯ୍ୟବେକ୍ଷଣର ସ୍ତର ଯେତିକି ପ୍ରସାରିତ ହେଉଥାଏ, ଆମର ଜ୍ଞାନର ପରିସର ସେତିକି ବ୍ୟାପକ ହେଉଥାଏ । ସୁତରାଂ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ପରିବର୍ତ୍ତନ ସାପେକ୍ଷ । ତେବେ ଏହାର ମୂଳ ଭିତ୍ତି ହେଉଛି ମୁକ୍ତ ମନ ଜନିତ ଅନୁସନ୍ଧିତ୍ସା ଓ ପର୍ଯ୍ୟବେକ୍ଷଣ ଆଧାରିତ ଏକ ସାର୍ବଜନୀନ ପ୍ରଣାଳୀ ।

ହେତୁବାଦ ଏକ ଜୀବନଧାରା କାରଣ ଏହା ଏକ ମାନବକୈନ୍ଦ୍ରିକ ଦର୍ଶନ ଉପରେ ନିର୍ଭର କରେ । ଏହି ଦର୍ଶନର ତାତ୍ପର୍ଯ୍ୟ ହେଉଛି ଯେ ମଣିଷର ପ୍ରୟାସ ଓ ସଂଘବଦ୍ଧ ପ୍ରଚେଷ୍ଟା ଦ୍ୱାରା ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରିବ । ମଣିଷର ପ୍ରୟାସ ଦ୍ୱାରା ସାମାଜିକ ଜୀବନ ପ୍ରବାହ ପ୍ରୀତିପଦ, ସୁନ୍ଦର ଓ ମଙ୍ଗଳକର

ହୋଇପାରିବ । ଏକ ଆଦିମ ସ୍ତରରୁ ସମାଜର ବିକାଶ ଓ କ୍ରମୋନ୍ନତିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସଭ୍ୟତାରେ ଯାହା କିଛି ପ୍ରଗତି ହୋଇଛି ତାହା ପଶ୍ଚାତରେ ମଣିଷର ପ୍ରୟାସ ରହିଛି । ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି କ୍ଷେତ୍ରରେ ହେଉ କିମ୍ବା ନୀତିବୋଧ, ଗଣତାନ୍ତ୍ରିକ ଆଦର୍ଶ, ସମତାବୋଧ, ମାନବିକ ସମ୍ବେଦନଶୀଳତା, ଭ୍ରାତୃତ୍ୱଭାବ ପରି ଆଦର୍ଶଚୟ ହେଉ ସେସବୁ ମଣିଷର ବୌଦ୍ଧିକ କ୍ରିୟାଶୀଳତାରୁ ସମ୍ଭବ ହୋଇଛି । ମଣିଷର ନିରନ୍ତର ପ୍ରୟାସ ଓ ମାନବିକ ପ୍ରଚେଷ୍ଟା ଦ୍ୱାରା ହିଁ ସଭ୍ୟତାର କ୍ରମୋନ୍ନତି ଘଟିଛି। ସାମାଜିକ ଜୀବନ ପ୍ରବାହକୁ ଅଧିକ ସୁଖପ୍ରଦ, ମଙ୍ଗଳକର ଓ ମାନବିକ କରିବା ମଣିଷର ପ୍ରଚେଷ୍ଟା ଉପରେ ନିର୍ଭର କରେ । ହେତୁବାଦୀ ଜୀବନଧାରାର ବୈଶିଷ୍ଟ୍ୟ ହେଉଛି ମଣିଷର ପ୍ରୟାସ ଦ୍ୱାରା ଜୀବନର ଗୁଣାତ୍ମକ ମାନ ଉନ୍ନତ ହେବା ବେଳେ ମଣିଷର ଅପଚେଷ୍ଟା ଓ ଅହେତୁକ ଦୃଷ୍ଟିଭଙ୍ଗୀ ଯୋଗୁ ସମାଜରେ ନାନା ଦୁଃଖ, ଦୁର୍ଦ୍ଦଶା, ଶୋଷଣ ଓ ବୈଷମ୍ୟ ରହିପାରେ ।

ଏହି ପୃଷ୍ଠଭୂମିରେ ବିଚାର କଲେ ବିଚାରଶୀଳତା ଓ ମାନବିକତା ହେତୁବାଦର ଦୁଇଟି ମୌଳିକ ତାତ୍ପର୍ଯ୍ୟ । ବୁଦ୍ଧିର ପ୍ରୟୋଗ, ଜ୍ଞାନାନୁରାଗ ଓ ସତ୍ୟନିଷ୍ଠା ବିଚାରଶୀଳତା ସହିତ ସଂପୃକ୍ତ । ବିଚାରଶୀଳତାର ପ୍ରାଧାନ୍ୟକୁ ଗ୍ରହଣ କରିବା ଦ୍ୱାରା ନିଜର ପରିବେଶ ଓ ସାମାଜିକ ଜୀବନ ପ୍ରବାହର ଅନ୍ତର୍ନିହିତ ତାତ୍ପର୍ଯ୍ୟକୁ ଅବବୋଧ କରିବାକୁ ମଣିଷ ପ୍ରୟାସ କରେ। ଏହା ହିଁ ବ୍ୟକ୍ତି ଭିତରେ ଜ୍ଞାନ ପ୍ରତି ଅନୁରାଗ ସୃଷ୍ଟି କରିଥାଏ । ପୁନଶ୍ଚ ମଣିଷର ଜ୍ଞାନାନୁରାଗ ଓ ଜିଜ୍ଞାସାବୋଧ ଦେଇ ସତ୍ୟ ପ୍ରତି ଆକର୍ଷଣ ଆସିଥାଏ । ସତ୍ୟ ସିଦ୍ଧାନ୍ତରେ ଉପନୀତ ହେବାକୁ ବୈଜ୍ଞାନିକ ପ୍ରଣାଳୀକୁ ଅନୁସରଣ କରାଯାଏ। ମାନବିକତା ଏକ ଉତ୍କୃଷ୍ଟ ଜୀବନର ଆଧାର ହୋଇଥାଏ । ମାନବିକତା ଏକ ସଂସ୍କାରବାଦୀ ଚେତନା ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ପ୍ରସାର ଦିଗରେ ସହାୟକ ମନେହୁଏ । ମାନବିକତା ନୈତିକ ଉତ୍କର୍ଷର ସ୍ୱାକ୍ଷର ବହନ କରେ । କର୍ତ୍ତବ୍ୟନିଷ୍ଠା, ସାଧୁତା, ସତ୍ୟବାଦିତା, ଅନ୍ୟ ପ୍ରତି ସମ୍ମାନବୋଧ ଇତ୍ୟାଦି ମୂଲ୍ୟଚୟ ଗୁଡିକ ମାନବିକତାର ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ହେତୁବାଦ ଐହିକ ଜୀବନ ଉପରେ ହିଁ ପ୍ରାଧାନ୍ୟ ଦେଇଥାଏ । ଧାର୍ମିକ ଦୃଷ୍ଟିଭଙ୍ଗୀରେ ସ୍ୱର୍ଗ, ନରକ, ପୁନର୍ଜନ୍ମ, ବିଚାର ଦିବସ ଇତ୍ୟାଦି ଯେଉଁ ଭାବନା ଗୁଡିକ ରହିଛି ସେଗୁଡିକର କୌଣସି ବୈଜ୍ଞାନିକ ଆଧାର ନଥିବାରୁ ହେତୁବାଦ ସେ

ସବୁ ବିଶ୍ୱାସକୁ କେବଳ କଳ୍ପନା ବୋଲି ନିଏ । ଭିନ୍ନ ଭିନ୍ନ ଧର୍ମରେ ଏହି କଳ୍ପନା ଗୁଡିକ ଭିନ୍ନ ଭିନ୍ନ ଥିବା ଜଣାପଡେ । ଧର୍ମ ମାନଙ୍କରେ ପାରଲୌକିକ ଜୀବନର ଯେଉଁ ସ୍ୱପ୍ନ ରହିଥାଏ ତାହା ହେତୁବାଦୀ ବିଚାରବୋଧର ପରିପନ୍ଥୀ ବୋଧହୁଏ । ଏହି ଜୀବନକୁ ସରସ, ସୁନ୍ଦର, ସୁଖମୟ କରିବାକୁ ହେତୁବାଦୀମାନେ ସର୍ବଦା ଗଭୀର ଚିନ୍ତା ପ୍ରକଟ କରିଥାନ୍ତି । ସାମାଜିକ ଜୀବନ ପ୍ରବାହକୁ ନ୍ୟାୟଯୁକ୍ତ, ସମତାଭିତ୍ତିକ, ଶୋଷଣମୁକ୍ତ ଓ ସମ୍ବେଦନମୂଳକ କରିବା ପାଇଁ ହେତୁବାଦୀ ମାନେ ସର୍ବଦା ଆଶା ପୋଷଣ କରିଛନ୍ତି । ସାମାଜିକ ବ୍ୟବସ୍ଥା ଯେତେ ଅଧିକ ନୀତିପୂର୍ଣ୍ଣ, ମାନବିକ ଓ ଉତ୍ତରଦାୟୀ ହେବ, ତାହାର ସୁପ୍ରଭାବ ବ୍ୟକ୍ତିର ଜୀବନଧାରାକୁ ସେତେ ଭଲ ଦିଗରେ ପ୍ରଭାବିତ କରିବ ଆଜିର ଜୀବନଧାରା ଆମର ପୂର୍ବସୂରି ମାନଙ୍କର ପ୍ରଦତ୍ତ ଜ୍ଞାନ, ପ୍ରଯୁକ୍ତି, ସାମାଜିକ ବ୍ୟବସ୍ଥା, ମାନବବାଦୀ ଦୃଷ୍ଟିଦ୍ୱାରା ଅନେକାଂଶରେ ପ୍ରଭାବିତ । ସେହିପରି ଆମେ ଯଦି ଆମରି ପ୍ରୟାସରେ ଆମର ରାଜନୈତିକ, ଅର୍ଥନୈତିକ, ଶୈକ୍ଷିକ ଓ ସାଂସ୍କୃତିକ ପରିବେଶକୁ ଉନ୍ନତ କରିବା ତେବେ ତାର ଏକ ସୁଦୂରପ୍ରସାରୀ ପ୍ରଭାବ ରହିବ । ଆମର ଆଦର୍ଶ ଓ ମାନବିକତାବୋଧ ଆଗାମୀ ପିଢ଼ିକୁ ଭଲ ଦିଗରେ ପ୍ରଭାବିତ କରିବ । ହେତୁବାଦୀମାନେ କୌଣସି ଦେହାତୀତ ମୁକ୍ତି ବା ସ୍ୱର୍ଗର କଳ୍ପନା କରନ୍ତି ନାହିଁ, ବରଂ ଏକ ସୁନ୍ଦରତର, ମହତ୍ତର ଓ ପ୍ରୀତିପୂର୍ଣ୍ଣ ପୃଥିବୀର ସ୍ୱପ୍ନ ଦେଖନ୍ତି । ଏହା ଯେ ପରସ୍ପରର ସହଯୋଗରେ ସମ୍ଭବ ଏହା ବି ସେମାନେ ଆଶା କରନ୍ତି। ଏକ ଅହିଂସ, ସମତାପୂର୍ଣ୍ଣ ଓ ମମତାପୂର୍ଣ୍ଣ ସାମାଜିକ ପରିବେଶ ମଣିଷର ପ୍ରୟାସରେ ସମ୍ଭବ ହୋଇ ପାରିବ । ଏହିପରି ଏକ ପରିବେଶଦ୍ୱାରା ବ୍ୟକ୍ତି ଜୀବନ ଓ ଗୋଷ୍ଠୀ ଜୀବନର ଗୁଣାତ୍ମକ ମାନ ଯେ ଉନ୍ନତ ହୋଇପାରିବ ଏହା ହିଁ ହେତୁବାଦର ନିଷ୍କର୍ଷ ଅଟେ ।

ବିଡମ୍ବନାର ବିଷୟ ମଣିଷ ସମାଜରେ ନାନା ଅହେତୁକ ବିଶ୍ୱାସ, ଶୋଷଣ ଓ ଅମାନବିକ ପ୍ରଥା ଯୁଗ ଯୁଗ ଧରି ରହିଆସିଛି। ତେବେ ପ୍ରାକୃତିକ ଦୁର୍ବିପାକ ଅପେକ୍ଷା ମଣିଷକୃତ ଅନ୍ୟାୟ, ବର୍ବରତା, କ୍ରୂରତା, ହିଂସା ସମାଜରେ ସବୁ ସମୟରେ ରହିଆସିଛି । କେତେକ ଅମାନବୀୟ ପ୍ରଥାକୁ ପରଂପରା କହି ତାହାକୁ ସମାଜରେ ଦୃଢ଼ କରାଯାଇଛି । ଅଜ୍ଞତା ଜନିତ ବିଶ୍ୱାସରୁ ସମାଜରେ ନାନା କୁସଂସ୍କାର ଗୋଷ୍ଠୀ-ଚେତନାକୁ କବଳିତ କରି ଆସିଛି । କେତେକ ଆଧାରହୀନ ବିଶ୍ୱାସ ପିଢ଼ି ପରେ ପିଢ଼ି ଦେଇ ସମାଜରେ ବିଶାଳ ଦ୍ରୁମରେ ପରିଣତ ହୋଇଛି। ଏପରିକି କୌଣସି ଅନ୍ୟାୟ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦର ସ୍ୱର ନ ଉଠିବାକୁ ସେ ସବୁକୁ ଧାର୍ମିକ ସ୍ୱୀକୃତି

ଦେବାକୁ ପ୍ରୟାସ ହୋଇଛି । ଧର୍ମଗ୍ରନ୍ଥର ବାଣୀକୁ ଈଶ୍ୱରୀୟ ଅନୁଜ୍ଞା କହି ସେ ସବୁ ଯେ ଚିରନ୍ତନ ଏହି ଭାବନା ବିଭିନ୍ନ ଧାର୍ମିକ ପରଂପରାରେ ବିଶ୍ୱାସ କରାଯାଇଛି । ଯଦି କୌଣସି ନୂତନ ବିଚାର ଧାର୍ମିକ ବିଶ୍ୱାସର ପ୍ରତିକୂଳ ହୋଇଛି, ତେବେ ତାହା ବିରୁଦ୍ଧରେ ପ୍ରଭାବଶାଳୀ ରକ୍ଷଣଶୀଳ ଲୋକମାନେ ତୀବ୍ର ପ୍ରତିବାଦ ଉଠାଇଛନ୍ତି ।

ତେବେ ହେତୁବାଦୀମାନେ ସବୁ ସଭ୍ୟତାରେ ସାମାଜିକ ସଂସ୍କାରର ବାର୍ତ୍ତାକୁ ଆଗକୁ ନେବାକୁ ପ୍ରୟାସ କରିଛନ୍ତି । ସମାଜରେ ପ୍ରଚଳିତ ଜ୍ଞାନ, ବିଶ୍ୱାସ, ପରଂପରା ଇତ୍ୟାଦିକୁ ସେମାନେ ମୁକ୍ତ ମନରେ ବିଶ୍ଳେଷଣ କରିଛନ୍ତି ଓ ଜନଜୀବନରେ ନୂତନ ଆଦର୍ଶର ବାର୍ତ୍ତାବହ ହୋଇଛନ୍ତି । ସଭ୍ୟତାର କ୍ରମ ବିକାଶର ଇତିହାସରେ ଆଧୁନିକ ବିଜ୍ଞାନର ଆବିର୍ଭାବ ସପ୍ତଦଶ ଶତାବ୍ଦୀରୁ ହେବା ଜଣାଯାଏ । ତେବେ ବିଜ୍ଞାନର ଆରମ୍ଭ ପର୍ବରେ ୟୁରୋପରେ ବିଜ୍ଞାନ ଓ ଧାର୍ମିକ ରକ୍ଷଣଶୀଳତା ଭିତରେ ବହୁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା । ଆଧୁନିକ ବିଜ୍ଞାନ ପ୍ରାୟତଃ ପାଶ୍ଚାତ୍ୟ ଭୂଖଣ୍ଡରେ ଆରମ୍ଭ ହୋଇଥିଲା ଓ ବିଜ୍ଞାନର ଆରମ୍ଭ ପର୍ବରେ ବହୁ ସ୍ୱାଧୀନ-ଚିନ୍ତାନାୟକଙ୍କୁ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡିଥିଲା । ବିଜ୍ଞାନର ଅନେକ କ୍ଷେତ୍ରକୁ ମୌଳିକ ଅବଦାନ ଦେଇଥିବା ବହୁ ବୈଜ୍ଞାନିକଙ୍କୁ ସେମାନଙ୍କର ନୂତନ ଉଦ୍ଭାବନ ଓ ଆବିଷ୍କାର ପାଇଁ ସେମାନଙ୍କ ସମସାମୟିକ ସମାଜରେ ନାନା ଅତ୍ୟାଚାରର ଶରବ୍ୟ ହେବାକୁ ପଡିଥିଲା ଓ ଏପରିକି ମୃତ୍ୟୁ ଦଣ୍ଡ ବି ମିଳିଥିଲା । ସମାଜର ପ୍ରଚଳିତ ଧାର୍ମିକ ଧାରଣା, କୁସଂସ୍କାର ଜନିତ ଜଗଦ୍‌ଦୃଷ୍ଟି ଓ ଜଗତ ଓ ଜୀବନ ନେଇ ଯେଉଁ ରହସ୍ୟମୟ ବ୍ୟାଖ୍ୟା ରହିଥିଲା ତାହାକୁ ବିରୋଧକରି ବୈଜ୍ଞାନିକ ଅନୁଶୀଳନ ମଧ୍ୟ ଦେଇ ଯେଉଁ ସିଦ୍ଧାନ୍ତ ସବୁର ଉଦ୍‌ଭବ ହେଲା ତାହା ଚିନ୍ତାରାଜ୍ୟରେ ନାନା ଆଲୋଡନ ଆଣିଲା । କାଳକ୍ରମେ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇ ଚାଲିଲା ଓ ସମାଜର ପ୍ରଗତି, ଭୌତିକ ବିକାଶ, ବଞ୍ଚିବାର ଗୁଣାତ୍ମକ ମାନ, ସୁସ୍ଥ ଜୀବନ ଇତ୍ୟାଦିକୁ ଗଭୀର ଭାବେ ପ୍ରଭାବିତ କଲା । ସଂପ୍ରତି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିକୁ ବାଦ୍ ଦେଇ ବିକାଶର ପରିକଳ୍ପନା କରାଯିବା ସମ୍ଭବ ନୁହେଁ ।

ପାଶ୍ଚାତ୍ୟ ଦେଶମାନଙ୍କରେ ବିଜ୍ଞାନର ଆଦି ପର୍ବରେ ଯେପରି ବୈଜ୍ଞାନିକ ଦୃଷ୍ଟି ସହ ଧର୍ମର ସଂଘର୍ଷ ହୋଇଥିଲା, ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ସେହି ସ୍ଥିତି ସୃଷ୍ଟି ହୋଇନାହିଁ । ତାହାର କାରଣ ଆମ ଦେଶରେ ବିଜ୍ଞାନର ଅଗ୍ରଗତି

ସେପରି ଭିତ୍ତିନେଇ ନାହିଁ । ତେବେ ଆମ ଦେଶ ଭଳି ରକ୍ଷଣଶୀଳ ରାଷ୍ଟ୍ରମାନଙ୍କରେ ରକ୍ଷଣଶୀଳ ପରିବେଶ ସହିତ ସମାଜ ସଂସ୍କାରର ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି । ଭାରତୀୟ ସମାଜ ଯୁଗ ଯୁଗ ଧରି ଜାତିଭିତ୍ତିକ ଓ ଭେଦଭାବମୂଳକ ହୋଇ ରହି ଆସିଛି। ଜାତିପ୍ରଥା ବ୍ୟକ୍ତିମର୍ଯ୍ୟାଦା ବିରୋଧୀ ଓ ଏପରିକି ମାନବିକତା ବିରୋଧୀ ବ୍ୟବସ୍ଥା ହୋଇଥିବା ଯୋଗୁଁ ସଂସ୍କାରବାଦୀ ଚେତନାର ବ୍ୟକ୍ତିମାନେ ଏହି ବ୍ୟବସ୍ଥାକୁ ବିରୋଧ କରିଆସିଛନ୍ତି । ସ୍ୱାଧୀନତା ପାଇଁ ଜାତୀୟ ଆନ୍ଦୋଳନ ଆରମ୍ଭ ପର୍ଯ୍ୟନ୍ତ ଭାରତୀୟ ସମାଜ ରୁଦ୍ଧ ଜାତି ବ୍ୟବସ୍ଥାରେ ଭାଗ ଭାଗ ହୋଇ ରହିଥିଲା ଓ ଏକ ସମ୍ମିଳିତ ଜାତୀୟ ଚେତନା ଭାରତରେ ନଥିଲା । ଜାତି ଜାତି ଭିତରେ ସଂପର୍କ ଅତି ସୀମିତ ଥିଲା । ଅସ୍ପୃଶ୍ୟତା ଭାରତୀୟ ସମାଜରେ ବ୍ୟାପକ ଭାବେ ରହିଥିଲା ଓ ତଥାକଥିତ ଦଳିତ ଓ ଶୂଦ୍ର ଶ୍ରେଣୀର ଜନଗଣ ସର୍ବନିମ୍ନ ନାଗରିକ ଅଧିକାରରୁ ମଧ୍ୟ ବଞ୍ଚିତ ହୋଇ ରହିଥିଲେ । ଜାତିପ୍ରଥା ବିରୁଦ୍ଧରେ ବହୁ ସଂସ୍କାରବାଦୀ ଆନ୍ଦୋଳନ ହୋଇଥିଲେ ବି ରାଜନୈତିକ ସ୍ୱାଧୀନତା ହାସଲ ପର୍ଯ୍ୟନ୍ତ ଏହାର ଭିତ୍ତି ସମାଜରେ ବେଶ୍ ସୁଦୃଢ଼ ରହିଥିଲା । ୟୁରୋପରେ ଧର୍ମ ଓ ବିଜ୍ଞାନ ଭିତରେ ଯେପରି ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି, ଭାରତୀୟ ସମାଜରେ ଧାର୍ମିକ କୁସଂସ୍କାର ଓ ହେତୁବାଦୀ ଦୃଷ୍ଟିଭଙ୍ଗୀ ଜନିତ ସମାଜ ସଂସ୍କାର ଭିତରେ ସେହିପରି ସଂଘର୍ଷମୟ ପରିବେଶ ଆସିଛି । ଏଠାରେ ଆମର ଜାତୀୟ ତଥା ଓଡିଶାର ଜନଜୀବନରୁ କେତେକ ଉଦାହରଣ ଦିଆଯାଇପାରେ ।

୧୯୨୭ ମସିହା ମାର୍ଚ୍ଚ ୧୯,୨୦ ରେ ମହାରାଷ୍ଟ୍ରର ମହାଡଠାରେ ଦଳିତ ମାନଙ୍କର (ସେତେବେଳେ ସେମାନଙ୍କୁ ଡିପ୍ରେସେଡ କ୍ଲାସ କୁହାଯାଉଥିଲା) ନାଗରିକ ଅଧିକାର ପାଇଁ ଏକ ସମ୍ମିଳନୀ ଆମ୍ବେଦକରଙ୍କ ନେତୃତ୍ୱରେ ଅନୁଷ୍ଠିତ ହୋଇଥିଲା । ସେହି ସମ୍ମିଳନୀରେ ମହାରାଷ୍ଟ୍ରର ବିଭିନ୍ନ ଅଞ୍ଚଳରୁ ପ୍ରାୟ ଦଶ ହଜାର ଲୋକ ଯୋଗ ଦେଇଥିଲେ ଓ ଏଥିପାଇଁ ସଂଗଠକ ମାନେ ବହୁ ଶ୍ରମ ସ୍ୱୀକାର କରି ଉଦ୍ୟମ କରିଥିଲେ । ଦଳିତ ଲୋକମାନଙ୍କୁ ଅସ୍ପୃଶ୍ୟ କହି ହିନ୍ଦୁ ଉଚ୍ଚ ଜାତିର ଲୋକମାନେ ସେମାନଙ୍କୁ କିପରି ସର୍ବନିମ୍ନ ଅଧିକାରରୁ ବଞ୍ଚିତ କରି ରଖିଛନ୍ତି ସେଥିରୁ ମୁକ୍ତି ପାଇଁ କ'ଣ କରାଯିବ ସେଠାରେ ମୁଖ୍ୟତଃ ଆଲୋଚନା ହୋଇଥିଲା । ସେଠାରେ ନିଷ୍ପତ୍ତି ହେଲା ଯେ ସମ୍ମିଳନୀ ଶେଷରେ ମହାଡଠାରେ ଥିବା ଚୌଦ୍ୱାର ସର୍ବ ସାଧାରଣ ପୁଷ୍କରିଣୀରୁ ଦଳିତମାନେ ଯାଇ ଜଳ ପିଇବେ । ନିଷ୍ପତ୍ତି ଅନୁଯାୟୀ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆମ୍ବେଦକରଙ୍କ ନେତୃତ୍ୱରେ ହଜାର ହଜାର ଦଳିତ ଲୋକ ପୁଷ୍କରିଣୀକୁ ଯାଇ ଜଳ ଆଞ୍ଜୁଳାରେ

ପିଇଥିଲେ । ହିନ୍ଦୁଜାତି ବ୍ୟବସ୍ଥାକୁ ଆହ୍ୱାନ ଦେବା ପାଇଁ ଏହା ଥିଲା ଏକ ପ୍ରତୀକାତ୍ମକ କାର୍ଯ୍ୟକ୍ରମ । ଏହି ସମୟରେ ସହରରେ ପ୍ରଚାରିତ ହେଲା ଯେ ଦଳିତ ଅସ୍ପୃଶ୍ୟମାନେ ଜଳାଶୟରୁ ପାଣି ପିଇ ମନ୍ଦିର ଭିତରେ ପ୍ରବେଶ କରିବେ । ଉଚ୍ଚଜାତିର ଶହଶହ ଲୋକ ଠେଙ୍ଗା ଓ ମାରଣାସ୍ତ୍ର ଧରି ସମ୍ମିଳନୀ ସ୍ଥାନକୁ ଆସି ସେଠାରେ ଥିବା ଲୋକମାନଙ୍କୁ ପିଟିଲେ । ସେମାନଙ୍କର ଖାଦ୍ୟ ପଦାର୍ଥ ନଷ୍ଟ କଲେ ଓ ସମ୍ମିଳନୀ ସ୍ଥାନଟିକୁ ଭାଙ୍ଗି ରୁଜି ଦେଲେ । ଲୋକମାନେ କ'ଣ ହେଉଛି ବୁଝିବା ପୂର୍ବରୁ ସେମାନଙ୍କ ଉପରେ ଆକ୍ରମଣରେ ଅନେକ କ୍ଷତ ବିକ୍ଷତ ହେଲେ । ସେଠାରେ ଏକଖଣ୍ଡ ଯୁଦ୍ଧର ପରିବେଶ ସୃଷ୍ଟି ହୋଇଥାନ୍ତା, କିନ୍ତୁ ଆମ୍ବେଦକର ଶାନ୍ତ ଓ ଅହିଂସ ରହିବାକୁ ନିଜର ଲୋକମାନଙ୍କୁ ବାରମ୍ବାର ନିବେଦନ କଲେ । ଏହାପରେ ପୁଲିସ ଘଟଣାସ୍ଥଳରେ ପହଞ୍ଚିଲେ । ତେବେ ଘଟଣାଟି ଏହିଠାରେ ସରିଲା ନାହିଁ । କିଛି ଦିନ ଭିତରେ ରକ୍ଷଣଶୀଳ ଉଚ୍ଚ ଜାତିର ଲୋକମାନେ ଏକ ବୈଠକ ଡାକିଲେ । ଦଳିତମାନେ ଚୌଦ୍ୱାର ପୁଷ୍କରିଣୀରୁ ଜଳ ଗ୍ରହଣଦ୍ୱାରା ତାହା ଯେପରି ଅପବିତ୍ର ହେଲା, ତାହାକୁ ପବିତ୍ର କରାଯିବା ଆବଶ୍ୟକ ବୋଲି ପ୍ରସ୍ତାବ ହେଲା । ଗୋବର, ଗୋମୂତ୍ର, କ୍ଷୀର ୧୦୮ଟି କଳସୀରେ ନିଆଯାଇ ପୁଷ୍କରିଣୀରେ ଢଳାଗଲା ଓ ବ୍ରାହ୍ମଣମାନେ ମନ୍ତ୍ର ପାଠ କରି ଜଳାଶୟକୁ ଶୋଧନ କଲେ । ଏହାପରେ ଗାଆଁ ଗାଆଁକୁ ସମ୍ବାଦ ପଠାଗଲା ଓ ବିଭିନ୍ନ ଗ୍ରାମମାନଙ୍କରେ ଦଳିତମାନଙ୍କୁ ଏସବୁ ଧର୍ମବିରୋଧୀ କାର୍ଯ୍ୟ ଭବିଷ୍ୟତରେ ନ କରିବାକୁ ଧମକ ଦିଆଗଲା । ଯେଉଁଠି କିଛି ପ୍ରତିବାଦ ହେଲା ସେହି ଲୋକମାନଙ୍କୁ ଆର୍ଥିକ ବାସନ୍ଦ କରାଗଲା ଓ ସେଥିପାଇଁ ସବର୍ଣ୍ଣ ଉଚ୍ଚଜାତିର ଲୋକମାନେ ସଂଗଠିତ ହେବାକୁ ଲାଗିଲେ ।

ସ୍ୱାଧୀନ ଭାରତର ଆଉ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି । ବିହାରର ଦେଓଘର ସ୍ଥିତ ବୈଦ୍ୟନାଥ ଧାମରେ ଜ୍ୟୋତିର୍ଲିଙ୍ଗ ମନ୍ଦିର ରହିଛି । (ଏହା ଏବେ ଝାଡଖଣ୍ଡରେ ଅବସ୍ଥିତ) । ୧୯୫୩ ମସିହା ସେପ୍ଟେମ୍ବର ମାସର ଘଟଣା । ବିଶିଷ୍ଟ ଗାନ୍ଧୀବାଦୀ ନେତା ବିନୋବା ସେଠାରେ ଥାଆନ୍ତି । ବିନୋବା ସେହି ମନ୍ଦିର ପରିଦର୍ଶନରେ ଯିବାକୁ ଚାହିଁଲେ । କିନ୍ତୁ ଦଳିତମାନଙ୍କର ମନ୍ଦିର ପ୍ରବେଶ ଅଧିକାର ନଥିବା ବିଷୟ ଯେତେବେଳେ ଜାଣିଲେ ସେ ଏକ ସଭାରେ ଘୋଷଣା କଲେ ଯେ ଯେଉଁ ମନ୍ଦିରରେ ଦଳିତମାନଙ୍କର ପ୍ରବେଶ ଅଧିକାର ନାହିଁ ସେ ସେହି ମନ୍ଦିର ଭିତରକୁ ଯିବେ ନାହିଁ । ଏହାପରେ ମନ୍ଦିରର ମୁଖ୍ୟ ପୂଜକ ବିନୋବାଙ୍କୁ ସାକ୍ଷାତ କରି ମନ୍ଦିରକୁ ଯିବାକୁ ଅନୁରୋଧ କଲେ ଓ ଦଳିତ ମାନଙ୍କର ପ୍ରବେଶକୁ ଗ୍ରହଣକଲେ ।

ସନ୍ଧ୍ୟାରେ ବିନୋବା ଓ ତାଙ୍କ ସହଯୋଗୀଗଣ ମନ୍ଦିର ପରିଦର୍ଶନରେ ବାହାରିଲେ । ବିନୋବା ସେଠାରେ ପହଞ୍ଚିବା ବେଳକୁ ଅନ୍ୟ ପୂଜକ ଓ ଲୋକମାନଙ୍କର ଭିଡ ହୋଇଥାଏ । ପୂଜକ ଓ ଲୋକମାନଙ୍କ ତରଫରୁ ସ୍ଲୋଗାନ ଦିଆଗଲା, "ଧର୍ମର ରକ୍ଷା ହେଉ ଓ ଏ ଅଧର୍ମ ବନ୍ଦ ହେଉ" । ଏହାପରେ ଉତ୍ତ୍ୟକ୍ତ ଲୋକମାନେ ବିନୋବା ଓ ତାଙ୍କ ସହକର୍ମୀଙ୍କ ଉପରେ ଆକ୍ରମଣ କଲେ । ଦଳିତମାନଙ୍କର ମନ୍ଦିର ଭିତରେ ପ୍ରବେଶ ନେଇ ପ୍ରତିକ୍ରିୟା ସ୍ୱରୂପ ପୂଜକ ଓ ଭକ୍ତମାନେ ବିନୋବାଙ୍କ ସହଯୋଗୀମାନଙ୍କୁ ଭୀଷଣ ମାଡଦେଲେ । ବିନୋବାଙ୍କ ସହଯୋଗୀମାନେ ତାଙ୍କୁ ଚାରିଦିଗରୁ ଘେରି ରଖିଲେ । ତଥାପି ବିନୋବାଙ୍କ କାନ ପାଖରେ ଏକ ଶକ୍ତ ବିଧା ଜଣେ ଦେଲେ ଯାହାଦ୍ୱାରା ତାଙ୍କ କାନର ଶ୍ରବଣ ଶକ୍ତି କିଛିଟା ନଷ୍ଟ ହୋଇଥିଲା । ବିନୋବାଙ୍କ ସହଯୋଗୀମାନେ ତାଙ୍କୁ ସୁରକ୍ଷା ଦେବାକୁ **ଯାଇ** ମାଡ଼ ଖାଇ କ୍ଷତ ବିକ୍ଷତ ହେଲେ । ସେମାନେ ମନ୍ଦିର ଭିତରେ ପ୍ରବେଶ **ନ କରି** ଫେରିଆସିଲେ ଓ କେତେକ ଡାକ୍ତରଖାନାରେ ଭର୍ତ୍ତି ହେଲେ । ଏହି **ଘଟଣା** **ଦେଶରେ** କିପରି ଆଲୋଡନ ସୃଷ୍ଟି କରିଥିଲା ବିନୋବାଙ୍କ ବିଶିଷ୍ଟ ଜୀବନୀ ଲେଖକ ନିର୍ମଳା ଦେଶପାଣ୍ଡେ ଉଲ୍ଲେଖ କରିଛନ୍ତି ।

ସାମାଜିକ ଶୋଷଣ ଓ ଅତ୍ୟାଚାର ଓଡିଶାରେ କିପରି ବିଂଶ ଶତାବ୍ଦୀ ମଧ୍ୟଭାଗରେ ରହିଥିଲା ତାହାର ଦୁଇଟି ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରୁଛି । ବିଶିଷ୍ଟ ଆଇନଜୀବୀ ଗଙ୍ଗାଧର ରଥ ତାଙ୍କର ଆତ୍ମଜୀବନୀ(ଭୁଲିନାହିଁ)ରେ ୧୯୩୦ ମସିହାରେ ତାଙ୍କ ଛାତ୍ର ଜୀବନର ଏକ ଘଟଣା ବ୍ୟକ୍ତ କରିଛନ୍ତି । ଜଗତସିଂହପୁର ଓଡିଶାର ଏକ ଶିକ୍ଷିତ ଓ ସମୃଦ୍ଧ ଅଞ୍ଚଳ । ହେଲେ ସେଠାରେ ଦଳିତ ପିଲାମାନଙ୍କର ସ୍କୁଲରେ ପଢ଼ିବାକୁ ଉଚ୍ଚ ଜାତିର ଲୋକମାନେ ଭୟଙ୍କର ବିରୋଧ କରୁଥିଲେ । ଏହି ବିରୋଧ ଯୋଗୁ ଯେତେବେଳେ ଦଳିତ ପିଲାମାନେ ସ୍କୁଲରେ ପଢ଼ିବା ସମ୍ଭବ ହେଲା ନାହିଁ, ସେମାନଙ୍କ ପାଇଁ ସରକାରୀ ସ୍କୁଲ ପାଖରେ ଏକ ସ୍ୱତନ୍ତ୍ର ସ୍କୁଲ ପ୍ରତିଷ୍ଠା ପାଇଁ ଜଣେ ସ୍ୱାଧୀନତା ସଂଗ୍ରାମୀ ପ୍ରୟାସ କଲେ । ଚାଳ ଛପର ସ୍କୁଲ ଘରଟିଏ ନିର୍ମିତ ହେଲା ଓ ଦଳିତ ପିଲାମାନେ **ବି** ସ୍କୁଲକୁ ପଢ଼ିବାକୁ ଆସିଲେ। କିନ୍ତୁ ଉଚ୍ଚ ଜାତିର ଲୋକମାନେ ସ୍କୁଲଟିକୁ ନିଆଁ ଲଗାଇ **ପୋଡିଦେଲେ** ଓ ସ୍କୁଲଟିକୁ ନଷ୍ଟ କରିଦେଲେ ।

ସର୍ବୋଦୟ କର୍ମୀ ନିଶାକର ଦାସ ତାଙ୍କ ଆତ୍ମଜୀବନୀ "ଖରସୁଆଁରୁ କୁଳାବିରା" ପୁସ୍ତକରେ ଯାଜପୁର ଜିଲ୍ଲାର ତାଙ୍କ ଗ୍ରାମ ପାଖର ଏକ ଘଟଣା ଉଲ୍ଲେଖ କରିଛନ୍ତି । ଜଣେ କଣ୍ଡରା ଯୁବକଙ୍କର ବାପା କଲିକତାରେ କାମ କରୁଥିଲେ ଓ ସେହି ଯୁବକ ମାଟ୍ରିକ ପରୀକ୍ଷା ଦେଇ ତାଙ୍କର ଜଣେ ବନ୍ଧୁ ଘରକୁ ଆସୁଥିଲେ । ସେ ଖଣ୍ଡିଏ ପରିଷ୍କାର ଧୋତି ପିନ୍ଧି, ଚଦର ପକାଇ ଛତା ଧରି ରାସ୍ତାରେ ଯାଉଥିଲେ । ସେ ଯିବା ବେଳେ ଗ୍ରାମର ଜମିଦାର ଏହି ଅପରିଚିତ ଯୁବକଟିକୁ ଦେଖି ତାଙ୍କର ପରିଚୟ ଜାଣିବାକୁ ଚାହିଁଲେ । ଜମିଦାର ଯେତେବେଳେ ଜାଣିଲେ ଯେ ସେ ଜଣେ କଣ୍ଡରା, ଦଳିତ ଜାତିର ବ୍ୟକ୍ତି, ଜମିଦାରଙ୍କର ରାଗର ସୀମା ରହିଲା ନାହିଁ । ଜଣେ ଦଳିତ ଯୁବକ ସଫା ଧୋତି ପିନ୍ଧି ଛତା ଧରି ରାସ୍ତାରେ ଯିବା ତାଙ୍କ ପାଇଁ ଅସମ୍ମାନଜନକ ବୋଲି ସେ ବିଚାର କଲେ । ସେ ସେହି ଯୁବକଙ୍କୁ ମାଡ଼ ମାରି, ତାଙ୍କ ଲୁଗା ଚିରି, ଛତା ଭାଙ୍ଗି, ଅଶ୍ରାବ୍ୟ ଭାଷାରେ ଗାଳିକରି ଏକ ମଇଳା ଛିଣ୍ଡାଲୁଗା ପିନ୍ଧାଇ କରି ଛାଡିଲେ ।

ଏହି ସବୁ ଘଟଣା କୌଣସି ବ୍ୟତିକ୍ରମ ଜନିତ ବା ବିରଳ ଘଟଣା ନଥିଲା, ବରଂ ଉଚ୍ଚ ଜାତିର ଲୋକମାନଙ୍କର ଦଳିତ ଲୋକମାନଙ୍କ ପ୍ରତି ଏହି ମାନସିକତା ରହିଥିଲା । ଏହି ପ୍ରକାର ଘଟଣାମାନ ଦେଶରେ ସବୁଆଡେ ପ୍ରାୟତଃ ଘଟୁଥିଲା । ଯେଉଁମାନେ ଆମ ଦେଶର ସାମାଜିକ ଇତିହାସ ଲେଖିଛନ୍ତି, ସେମାନେ ଭାରତୀୟ ରକ୍ଷଣଶୀଳତା, ମାନବିକତା ବିରୋଧୀ ଜାତିପ୍ରଥା ଓ ଭେଦଭାବ ମୂଳକ ସାମାଜିକ ଜୀବନର ଚିତ୍ର ପ୍ରଦାନ କରିଛନ୍ତି । ଜଣେ ହିନ୍ଦୁ ସନ୍ଥ ସ୍ୱାମୀ ଧର୍ମତୀର୍ଥ ତାଙ୍କ ରଚିତ ପୁସ୍ତକ "ହିନ୍ଦୁ ସାମ୍ରାଜ୍ୟବାଦର ଇତିହାସ" ରେ ହିନ୍ଦୁ ସମାଜ ବ୍ୟବସ୍ଥାରେ ସାମାଜିକ ଶୋଷଣ ଓ ଦାସତ୍ୱର ନିଖୁଣ ଚିତ୍ର ପ୍ରଦାନ କରିଛନ୍ତି ।

ସବୁ ସଭ୍ୟତାରେ ଓ ସବୁ ଯୁଗରେ ବିଚାରଶୀଳ ହେତୁବାଦୀମାନେ ସମାଜ ସଂସ୍କାର ସ୍ତରରେ ପ୍ରଥପ୍ରଦର୍ଶକ ହୋଇଛନ୍ତି । ସମାଜର ଅନ୍ୟାୟ, ଭେଦଭାବ ଓ ମାନବିକ ଦୁର୍ଦ୍ଦଶାକୁ ଦୂର କରିବାକୁ ସେମାନେ ଚିନ୍ତା ସ୍ତରରେ ଆଲୋଡନ ଆଣିବାକୁ ପ୍ରୟାସ କରି ଆସିଛନ୍ତି । ମାନବିକ ଦୁଃଖଦୁର୍ଦ୍ଦଶା, ଶୋଷଣ ଓ ଅନ୍ୟାୟ ପ୍ରତି ସ୍ପର୍ଶକାତର ହୋଇ ସେମାନେ ଏହା ଦୂର କରିବାକୁ ସଂଗ୍ରାମୀ ହୋଇଛନ୍ତି । ଏସବୁ ସହ ସମାଜରେ ଥିବା ରାଶି ରାଶି କୁସଂସ୍କାର, ଅପସଂସ୍କୃତି ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ସେମାନେ ସ୍ୱର ଉଠାଇଛନ୍ତି ।

ଏବେ ବି ଆମ ସମାଜରେ କୁସଂସ୍କାର ଓ ଭେଦଭାବମୂଳକ ଅପସଂସ୍କୃତି ପାହାଡ ଭଳି ଛିଡା ହୋଇରହିଛି । ବିଜ୍ଞାନର ବହୁ ବିସ୍ମୟ ଆଜି ସାଧାରଣ ମଣିଷର ହାତ ପାଖରେ ଉପଲବ୍ଧ ହେଉଥିଲେ ବି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଆମ ସମାଜରେ ବ୍ୟାପକ ଭିତ୍ତି ନେଇପାରୁନାହିଁ । ଏହାର ବହୁ ସମାଜତାତ୍ତ୍ୱିକ କାରଣ ରହିଛି । ଫଳିତ ଜ୍ୟୋତିଷ, ବାସ୍ତୁବିଦ୍ୟା ପରି ଅବୈଜ୍ଞାନିକ ଭାବନା ସକଳ ସମାଜରେ ବ୍ୟାପକ ହୋଇ ରହିଛି । ନିଜର ପ୍ରତିକୂଳ ସ୍ଥିତିର ପରିବର୍ତ୍ତନ ପାଇଁ କେତେକ ପଥରର ମୁଦି ପିନ୍ଧିବା, କେଉଁଠି ବୁଡ ପକାଇବା, କେଉଁ ଦିଅଁର ପାଦ ଦର୍ଶନ କରିବା, କେଉଁଠି ନଡିଆ ବାଡେଇବା, କେଉଁ ଦିଅଁ ପାଖରେ ଅଧିଆ ପଡିବା, କେଉଁ ଦଉଡି ଛୁଇଁବା ପରି ନାନା ବିଶ୍ୱାସ ଓ ରୂଢ଼ିବାଦୀ ମଧ୍ୟଯୁଗୀୟ ମାନସିକତା ସମାଜରେ ବ୍ୟାପକ ଭାବେ ରହିଛି। ଯେତେବେଳେ ମଣିଷ ନିଜର ସାମାଜିକ ବ୍ୟବସ୍ଥା ଓ ବୃହତ୍ତର ରାଷ୍ଟ୍ର ଉପରେ ନିର୍ଭର କରିପାରେ ନାହିଁ ଓ ନିଜ ଉପରୁ ବିଶ୍ୱାସ ତୁଟାଇ ଦିଏ, ସେତେବେଳେ ସେ କେତେ କାଳ୍ପନିକ ଦିଅଁ ଦେବତା, ଭାଗ୍ୟ ଓ ରହସ୍ୟମୟ ଶକ୍ତି ଉପରେ ବିଶ୍ୱାସ କରେ ।

ହେତୁବାଦୀମାନେ ସଂସ୍କାରବାଦୀ ଚେତନାର ପଥ ପ୍ରଦର୍ଶକ ହୋଇଥିଲେ ବି ପ୍ରତ୍ୟେକ ସଂସ୍କାରକ ହେତୁବାଦୀ ହେବା କୁହାଯାଇ ପାରିବ ନାହିଁ । କେତେକ ସ୍ତରର କୁସଂସ୍କାରକୁ ବିରୋଧ କରୁଥିବା କୌଣସି ସଂସ୍କାରକ ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ଅଯୌକ୍ତିକ ଭାବନାରେ ବିଶ୍ୱାସ କରିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଆମ ସମାଜରେ ଅସ୍ପୃଶ୍ୟତା, ବାଲ୍ୟ ବିବାହ, ନାରୀ ଅଧସ୍ତନତାକୁ ବିରୋଧ କରୁଥିବା ଲୋକମାନେ ଫଳିତ ଜ୍ୟୋତିଷରେ ବି ବିଶ୍ୱାସ କରନ୍ତି । ଜାତିପ୍ରଥା ବା ଫଳିତ ଜ୍ୟୋତିଷକୁ ବିରୋଧ କରୁଥିବା ଲୋକମାନେ ବାବାମାନଙ୍କର ଚମତ୍କାରିତାରେ ବିଶ୍ୱାସ ସ୍ଥାପନ କରନ୍ତି । କେତେକ ବିଶ୍ୱାସକୁ ଅହେତୁକ, ଅବୈଜ୍ଞାନିକ ମନେ କରୁଥିବା ଲୋକମାନେ ଅନ୍ୟ କ୍ଷେତ୍ରରେ ସେହି ମାନସିକତା ପୋଷଣ କରିପାରନ୍ତି ନାହିଁ ବା ଜୀବନର ପ୍ରତ୍ୟେକ ସ୍ତରରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରତି ପ୍ରତିବଦ୍ଧ ରହିପାରନ୍ତି ନାହିଁ । ଏହା ପାଶ୍ଚାତରେ ନାନା ସାମାଜିକ, ସାଂସ୍କୃତିକ ଓ ପରିବେଶ ଗତ କାରଣ ରହିବା ମନେହୁଏ ।

ହେତୁବାଦ ଯେହେତୁ ଏକ ମାନବକୈନ୍ଦ୍ରିକ ଜୀବନ ଦର୍ଶନକୁ ସ୍ୱୀକାର କରେ, ଏହା ମୁଖ୍ୟତଃ ମାନବିକ ମର୍ଯ୍ୟାଦାକୁ ପ୍ରାଧାନ୍ୟ ଦେଇଥାଏ । ଗଣତନ୍ତ୍ର,

ସମାଜବାଦ, ଧର୍ମନିରପେକ୍ଷତା, ସାମାଜିକ ନ୍ୟାୟ, ମାନବିକ ଅଧିକାର ଇତ୍ୟାଦି ମୂଲ୍ୟଚୟ ଗୁଡିକ ବ୍ୟକ୍ତି ମର୍ଯ୍ୟାଦାବୋଧକୁ ସ୍ୱୀକାର କରେ । ବିଚାରଶୀଳତାର ପ୍ରାଧାନ୍ୟରୁ ଏହି ସବୁ ମୂଲ୍ୟବୋଧର ଯେ ବିକାଶ ହୋଇଛି ଏହା ନିଃସନ୍ଦେହ । ଏହି ସବୁ ମୂଲ୍ୟବୋଧର ତାତ୍ପର୍ଯ୍ୟ ହେଉଛି ଏକ ନ୍ୟାୟପୂର୍ଣ୍ଣ ସାମାଜିକ ସମ୍ବନ୍ଧର ବିକାଶ ଘଟାଇବା କାରଣ ଗୁଣାତ୍ମକ ଜୀବନର ବିକାଶ ଏହି ସବୁ ମୂଲଚୟ ଉପରେ ଅନେକାଂଶରେ ନିର୍ଭରଶୀଳ ।

ଯେଉଁ ସାମାଜିକ ଜୀବନ ପ୍ରବାହରେ ହେତୁବାଦୀ ଦୃଷ୍ଟିଭଙ୍ଗୀର ପ୍ରସାର ଯେତେ ବ୍ୟାପକ, ସେହି ସମାଜ ସେତିକି ସଭ୍ୟ ଓ ଶୃଂଖଳିତ । ଅଥଚ ଯେଉଁ ସମାଜରେ ହେତୁବାଦୀ ମୂଲ୍ୟଚୟର ପ୍ରତିଫଳନ ଯେତେ କମ୍, ତାହା ସେତିକି କ୍ଷୟଶୀଳ ଓ ଅନୁନ୍ନତ । ଧାର୍ମିକ ଭାବପ୍ରବଣତା, ଭାଗ୍ୟବାଦୀ ମାନସିକତା, ନାଗରିକ ଶୃଂଖଳାବୋଧ ନେଇ ସ୍ପର୍ଶକାତରହୀନତା ଓ ରକ୍ଷଣଶୀଳତା ହେତୁବାଦୀ ଜୀବନ-ଦର୍ଶନର ପରିପନ୍ଥୀ । ଅପର ପକ୍ଷରେ ବିଚାରଶୀଳତା ଓ ମାନବିକତା ଯାହା ହେତୁବାଦର ମୂଳ ଭିତ୍ତି ତାହା ସଭ୍ୟ ଜୀବନ ଦୃଷ୍ଟିର ପ୍ରତୀକ । ସୁତରାଂ ହେତୁବାଦ ଯେ ସଂସ୍କାରିତ ଚେତନା ଓ ସଭ୍ୟ ଜୀବନର ଆଧାର ଏହା ଅନସ୍ୱୀକାର୍ଯ୍ୟ । ସଭ୍ୟତାର ଭୌତିକ ବିକାଶ ଓ ସଭ୍ୟ ଜୀବନଧାରାର ମାନବିକ ଆଦର୍ଶଚୟ ଯେ ହେତୁବାଦୀ ଜୀବନଦୃଷ୍ଟିର ପ୍ରତିଫଳନ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।



# ପେରିୟାର : ସାମାଜିକ କ୍ରାନ୍ତିର ବାର୍ତ୍ତାବହ

ଭାରତୀୟ ସମାଜ ସଂସ୍କାର ଇତିହାସରେ ପେରିୟାର ଏକ ପ୍ରମୁଖ ବ୍ୟକ୍ତିତ୍ୱ । ସମାଜ ସଂସ୍କାର ଭାବନାକୁ କେବଳ କେତେକ ପ୍ରଚଳିତ ଅନ୍ଧ କୁସଂସ୍କାରକୁ ପରିବର୍ତ୍ତନ କରିବା ଭିତରେ ସୀମିତ ନରଖି ଏହାକୁ ଏକ କ୍ରାନ୍ତିରେ ପରିବର୍ତ୍ତନ କରିବାରେ ଯେଉଁ କେତେ ଜଣ ବିଂଶ ଶତାବ୍ଦୀ ଆରମ୍ଭରୁ ନିଷ୍ଠାପର ଭାବେ କାର୍ଯ୍ୟ କରିଛନ୍ତି ସେମାନଙ୍କ ମଧ୍ୟରେ ପେରିୟାର ଅଗ୍ରଗଣ୍ୟ । ରାଜନୈତିକ ପରାଧୀନତା ଓ ସାମାଜିକ ଦାସତ୍ୱ ଭିତରେ ଭାରତୀୟ ସମାଜ ଯୁଗ ଯୁଗ ଧରି କ୍ଷୟଶୀଳ ହୋଇ ରହିବା ଏକ ଐତିହାସିକ ସତ୍ୟ । ତେବେ ରାଜନୈତିକ ପରାଧୀନତା ବିରୁଦ୍ଧରେ ସଂଗ୍ରାମ ବେଳେ ଦେଶର ଜନଗଣଙ୍କର ଅକୁଣ୍ଠିତ ସମର୍ଥନ ମିଳିବା ବେଳେ ସାମାଜିକ ଦାସତ୍ୱ ବିରୁଦ୍ଧରେ ସଂଗ୍ରାମ ଏତେ ସହଜ ସାଧ୍ୟ ମନେ ହୋଇ ନାହିଁ । ଏପରିକି ଏଥିପାଇଁ ନିଜ ଦେଶର ଜନଗଣଙ୍କଠାରୁ ବିରୋଧର ସମ୍ମୁଖୀନ ହେବାକୁ ପଡିଛି । ସ୍ୱାଧୀନତା ଉଦ୍ଦେଶ୍ୟରେ ଏକ ସାମ୍ରାଜ୍ୟବାଦୀ ବିଦେଶୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ ପାଇଁ ଜନଗଣଙ୍କର ଆବେଗକୁ ଅକ୍ଳେଶରେ ସ୍ପର୍ଶ କରି ହୁଏ । ଅଥଚ ସମାଜର ସାଂସ୍କୃତିକ ସାମ୍ରାଜ୍ୟବାଦ ଜନିତ ମନ୍ଦ ବ୍ୟବସ୍ଥା (Social evil) ବିରୁଦ୍ଧରେ ସଂଗ୍ରାମ ଏକ ବିପରୀତ ଆବେଗ ସୃଷ୍ଟି କରିବା ଦେଖାଯାଏ । ଏହାର ବହୁ ଐତିହାସିକ ପ୍ରମାଣ ସାମାଜିକ ନ୍ୟାୟ ପାଇଁ ସଂଗ୍ରାମ କରିଥିବା କ୍ରାନ୍ତିକାରୀ ବ୍ୟକ୍ତିଙ୍କ ଜୀବନ କାହାଣୀରୁ ଜଣାପଡେ । ଜ୍ୟୋତିରାଓ ଫୁଲେ, ନାରାୟଣ ସ୍ୱାମୀ, ବାବାସାହେବ ଆମ୍ବେଦକର ଓ ପେରିୟାର ଭାରତୀୟ ସାମାଜିକ କ୍ରାନ୍ତି ଇତିହାସର ଅଗ୍ରଦୂତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶଂସିତ ପ୍ରବନ୍ଧଟି ପେରିୟାରଙ୍କ ଜୀବନୀ ଓ ସଂଗ୍ରାମ ସଂପର୍କରେ ସଂକ୍ଷିପ୍ତ ଆଲୋଚନା ପାଇଁ ଉଦ୍ଦିଷ୍ଟ ।

ପେରିୟାରଙ୍କ ଜନ୍ମ ତାମିଲନାଡୁସ୍ଥିତ ଏରୋଡ ସହରରେ ସେପ୍ଟେମ୍ବର ୧୭, ୧୮୭୯ ମସିହାରେ । ତାଙ୍କର ନାମ ଥିଲା ଏରୋଡ ଭେଙ୍କଟ ନାଇକର ରାମସ୍ୱାମୀ, ଯେ ପରେ ପେରିୟାର ନାମରେ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ ହେଲେ । ପେରିୟାର ଏକ ଉପାଧି । ତାମିଲନାଡୁରେ ତାଙ୍କୁ ଅନେକ ଥାନ୍ଥାଇ ପେରିୟାର ବୋଲି ସମ୍ବୋଧିତ କରିଥାନ୍ତି । ତାମିଲ ଭାଷାରେ ଥାନ୍ଥାଇ ଅର୍ଥ ଜନକ ଓ ପେରିୟାର ଅର୍ଥ ମହାନ ।

ପେରିୟାର ଥିଲେ ଜଣେ ସାଲିସବିହୀନ ସଂସ୍କାରକ ଓ ସାମାଜିକ କ୍ରାନ୍ତିର ବାର୍ତ୍ତାବହ । ଆଧୁନିକ ତାମିଲନାଡୁର ଜନକ ବୋଲି ତାଙ୍କୁ ଗ୍ରହଣ କରାଯାଏ । ପେରିୟାରଙ୍କର କୌଣସି ଔପଚାରିକ ଶିକ୍ଷା ନଥିଲା । ମାତ୍ର ପାଞ୍ଚ ବର୍ଷ ବିଦ୍ୟାଳୟରେ ପଢ଼ି ବାର ବର୍ଷ ବୟସରେ ସେ ପିତାଙ୍କ ବ୍ୟବସାୟରେ ସଂପୃକ୍ତ ହେଲେ । ଏକ ରକ୍ଷଣଶୀଳ ପାରିବାରିକ ପରିବେଶରେ ବଢ଼ିଥିବାରୁ ସେ ବିଭିନ୍ନ ପୁରାଣ ଓ ଧର୍ମଶାସ୍ତ୍ର ଅଧ୍ୟୟନ କରିବାର ଅବକାଶ ପାଇଥିଲେ । ଆର୍ଥିକ ଦୃଷ୍ଟିରୁ କିଛିଟା ସଂପନ୍ନ ଥିବାରୁ ସେ ବିଭିନ୍ନ ବିଷୟ ନିଜସ୍ୱ ଉଦ୍ୟମରେ ପଢ଼ିବାକୁ ଆଗ୍ରହୀ ହେଉଥିଲେ । ତେବେ ବୃହତ୍ତର ସମାଜ ହିଁ ତାଙ୍କ ପାଇଁ ଶିକ୍ଷା କ୍ଷେତ୍ର ପାଲଟିଥିଲା । ସାମାଜିକ ଜୀବନର ଘଟଣା ପ୍ରବାହକୁ ସେ ଗଭୀର ଭାବେ ଅନୁଶୀଳନ କରୁଥିଲେ । ଏକ ମୁକ୍ତ ମନ, ଅନୁସନ୍ଧିତ୍ସୁ ମନୋଭାବ, ବିଚାରଶୀଳ ମାନସିକତା, ନ୍ୟାୟବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ସହଜାତ ଗୁଣ ଥିଲା । ସାମାଜିକ ଜୀବନଧାରାର ଯେଉଁ ସବୁ ଅନ୍ୟାୟ, ଅନୀତି, ଅମାନବିକତା ଓ ଭେଦଭାବର ପରିବେଶ ସେ ଦେଖିଥିଲେ ତାହାକୁ ଦୂର କରିବାକୁ ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ତାଙ୍କର ଜୀବନ ଥିଲା ଏକ ସଂଗ୍ରାମୀର ଜୀବନ । ମାନବିକ ଅଧିକାର, ସାମାଜିକ ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ମୂଲ୍ୟବୋଧ ପାଇଁ ଜୀବନ ସାରା ସେ ସଂଗ୍ରାମ କରିଥିଲେ ।

ଯୁବକ ଅବସ୍ଥାରୁ ସମାଜ ସେବା ଓ ସମାଜ ସଂସ୍କାର କ୍ଷେତ୍ରରେ ବ୍ରତୀ ହୋଇ ସେ ନିଜ ସହରରେ ପରିଚିତି ଓ ସୁଖ୍ୟାତି ଅର୍ଜନ କରିଥିଲେ। ୧୯୦୫ ରେ ପ୍ଲେଗ୍ ରୋଗରେ ଯେତେବେଳେ ଶହଶହ ଲୋକ ମୃତ୍ୟୁ ବରଣ କରୁଥିଲେ ଓ ଧନୀ ଲୋକମାନେ ଏରୋଡ ଛାଡି ଚାଲି ଯାଉଥିଲେ, ପେରିୟାର ମୃତ ଲୋକମାନଙ୍କୁ ଶ୍ମଶାନକୁ ନେଇ ଦାହ କରିବା ଓ ଜନଗଣଙ୍କୁ ସ୍ୱାସ୍ଥ୍ୟରକ୍ଷା ପାଇଁ ସଚେତନ କରିବାକୁ

ଆଗେଇ ଆସିଥିଲେ । ସହରର ନାନା ଉନ୍ନୟନମୂଳକ କାର୍ଯ୍ୟରେ ସଂପୃକ୍ତ ହୋଇ ସେ ନିଜର ସେବା ପାଇଁ ଏରୋଡରେ ବେଶ୍ ଜଣାଶୁଣା ହୋଇ ଯାଇଥିଲେ । ରାଜନୈତିକ ଜୀବନ ଆରମ୍ଭରେ ସେ ଏରୋଡ ମୁନିସପାଲିଟିର ଚେୟାରମାନ ହୋଇଥିଲେ । ତେବେ କଂଗ୍ରେସ ନେତାମାନଙ୍କର ପ୍ରରୋଚନାରେ ସେ ସବୁଥିରୁ ଇସ୍ତଫା ଦେଇ ଜାତୀୟ କଂଗ୍ରେସରେ ଯୋଗଦେଲେ । ମହାତ୍ମାଗାନ୍ଧୀଙ୍କ ପ୍ରଭାବରେ ଅସହଯୋଗ ଆନ୍ଦୋଳନରେ ଯୋଗଦେବା ଓ ବିଭିନ୍ନ ରଚନାତ୍ମକ କାର୍ଯ୍ୟକ୍ରମ ଯଥା ନିଶା ନିବାରଣ, ନିରକ୍ଷରତା ଦୂରୀକରଣ, ନାରୀ ଜାଗରଣ ଇତ୍ୟାଦି କ୍ଷେତ୍ରରେ ଉଲ୍ଲେଖନୀୟ କାର୍ଯ୍ୟ ହାତକୁ ନେଇଥିଲେ । ପରେ ତାମିଲନାଡୁରେ ଜାତୀୟ କଂଗ୍ରେସର ସଭାପତି ମଧ୍ୟ ହୋଇଥିଲେ ।

ସମାଜ ସଂସ୍କାର ଓ ନାରୀମାନଙ୍କର ଅଧିକାର ପାଇଁ ସେ ବହୁ ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ସେତେବେଳର ସାମାଜିକ ବ୍ୟବସ୍ଥାରେ ରକ୍ଷଣଶୀଳ ମାନସିକତା ଓ କୁସଂସ୍କାର ଭରପୁର ହୋଇ ରହିଥିଲା । ଝିଅମାନଙ୍କୁ ପିଲାଟି ବେଳୁ ବିବାହ ଦିଆଯାଉଥିଲା ଓ କେତେକ ବାଲ୍ୟାବସ୍ଥାରୁ ବିଧବା ହୋଇ ଜୀବନସାରା ନାନା କଟକଣା ଭିତରେ ଦୟନୀୟଭାବେ ଜୀବନ ବଞ୍ଚୁଥିଲେ । ବାଲ୍ୟବିବାହ ବନ୍ଦ କରିବା ଓ ବିଧବା ବିବାହ ସପକ୍ଷରେ ସାମାଜିକ ଚେତନା ସୃଷ୍ଟି ପାଇଁ ସେ ନାନା ବିରୋଧ ସତ୍ତ୍ୱେ ଅଣ୍ଟା ଭିଡିଥିଲେ । ତାଙ୍କର ନିଷ୍ଠାପର ପ୍ରୟାସ ଯୋଗୁଁ ସାମାଜିକ ପରିସ୍ଥିତିରେ ପରିବର୍ତ୍ତନ ଆସିଥିଲା ।

ଛାତ୍ର ଅବସ୍ଥାରୁ ସେ ଜାତିଆଣ ଭେଦଭାବ ଓ ଅସ୍ପୃଶ୍ୟତାର ଘୋର ବିରୋଧୀ ଥିଲେ । କଂଗ୍ରେସର ପ୍ରାଦେଶିକ ସମ୍ମିଳନୀ ୧୯୨୨ରେ ତିରପୁରଠାରେ ଅନୁଷ୍ଠିତ ହୋଇଥିଲା । ସେଠାରେ ପେରିୟାର ସବୁ ଜାତିର ଲୋକମାନେ ମନ୍ଦିର ଭିତରେ ପ୍ରବେଶ କରିବାର ଅଧିକାର ନଥିବା ବିରୁଦ୍ଧରେ ସ୍ୱର ଉଠାଇ ଏହାକୁ କଂଗ୍ରେସ ଦଳରେ ପ୍ରାଥମିକତା ଦେବାକୁ ଉଦ୍ୟମ କରିଥିଲେ । ଏହା ସହିତ ଅସ୍ପୃଶ୍ୟତାକୁ ଏକ ସାମାଜିକ ଅପରାଧ ଭାବେ ନେବାକୁ ସେ ମତବ୍ୟକ୍ତ କରିଥିଲେ । କିନ୍ତୁ କଂଗ୍ରେସର ଉଚ୍ଚ ଜାତିର ଲୋକମାନେ ଏହାକୁ ବିରୋଧ କରିଥିଲେ ଓ ଏହା ଗୃହୀତ ହେବାରେ ପ୍ରତିବନ୍ଧକ ହୋଇଥିଲେ । ଏହି ପୃଷ୍ଠଭୂମିରେ କେରଳ ଭାଇକମ୍‌ଠାରେ ଅସ୍ପୃଶ୍ୟତା ବିରୁଦ୍ଧରେ ଯେଉଁ ଆନ୍ଦୋଳନ ୧୯୨୪ ରେ ଅନୁଷ୍ଠିତ ହୋଇଥିଲା, ପେରିୟାର ତାର

ଅଗ୍ରଭାଗରେ ରହିଥିଲେ । ମନ୍ଦିର ସହର ଭାଇକମ୍‌ଠାରେ ତଥା କଥିତ ଦଳିତ ଲୋକଙ୍କର ମନ୍ଦିର ରାସ୍ତାରେ ବି ଚାଲିବାର ଅଧିକାର ନଥିଲା । ସେଠିକାର ଆନ୍ଦୋଳନକାରୀଙ୍କର ଆହ୍ୱାନରେ ପେରିୟାର ଭାଇକମ ସତ୍ୟାଗ୍ରହ ପରିଚାଳନା କରିଥିଲେ ଓ ଗିରଫ ହୋଇ ଜେଲରେ ରହିଥିଲେ । କିନ୍ତୁ ତାଙ୍କର ନେତୃତ୍ୱରେ ଭାଇକମ ଆନ୍ଦୋଳନ ଅବ୍ୟାହତ ରହିଲା । ଆନ୍ଦୋଳନକାରୀମାନେ ନାନା ଦୁଃଖ ଯନ୍ତ୍ରଣାକୁ ସାମ୍ନା କରି ମାସ ମାସ ଧରି ଏହା ଚଳାଇ ରଖିଲେ ଓ ଶେଷରେ ସଫଳ ହେଲେ । ସାଧାରଣ ମଣିଷର ସର୍ବନିମ୍ନ ଅଧିକାର ଓ ଅସ୍ପୃଶ୍ୟତା ଦୂରୀକରଣ କ୍ଷେତ୍ରରେ ପେରିୟାରଙ୍କର ଏହି ଆନ୍ଦୋଳନ ଜାତୀୟ ସ୍ତରରେ ଯୁଗାନ୍ତକାରୀ ଥିଲା । ସେତେବେଳର ସାମାଜିକ ପରିବେଶରେ ସରକାରୀ ଶିକ୍ଷାନୁଷ୍ଠାନମାନଙ୍କରେ ଉଚ୍ଚ-ନୀଚ ଭେଦଭାବ ଉତ୍କଟ ହୋଇ ରହିଥିଲା । ଦଳିତ ଓ ଶୂଦ୍ର ଛାତ୍ରମାନେ ଉଚ୍ଚ ଜାତିର ଛାତ୍ର ମାନଙ୍କ ସହ ଏକାଠି ବସି ପାରୁନଥିଲେ ଓ ନାନା ଅସମ୍ମାନଜନକ ସ୍ଥିତିର ସମ୍ମୁଖୀନ ହେଉଥିଲେ । ସରକାରୀ ଶିକ୍ଷାନୁଷ୍ଠାନମାନଙ୍କରୁ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ପେରିୟାର ବହୁ ସୁଚିନ୍ତିତ ପଦକ୍ଷେପ ନେଇଥିଲେ । ସାମାଜିକ ସଚେତନତା ସୃଷ୍ଟି ପାଇଁ ସେ ଗାଆଁ ଗାଆଁ ବୁଲି ଲୋକମାନଙ୍କ ଭିତରେ ସମତାର ବାର୍ତ୍ତା ପ୍ରଚାର କରିଥିଲେ । ଉଚ୍ଚଜାତି ଲୋକଙ୍କ ବିରୋଧ ସତ୍ତ୍ୱେ ଅସ୍ପୃଶ୍ୟତା ଦୂରୀକରଣ କାର୍ଯ୍ୟସୂଚୀକୁ ସେ ପ୍ରାଥମିକତା ଦେଇ ଆସିଥିଲେ ।

ସମସ୍ତ ସରକାରୀ କର୍ମସଂସ୍ଥାନ ଓ ଶିକ୍ଷାଲାଭ କ୍ଷେତ୍ରରେ ସେତେବେଳେ ଉଚ୍ଚଜାତିର ଲୋକମାନଙ୍କର ଆଧିପତ୍ୟ ରହିଥିଲା । ସମାଜର ଦଳିତ ଓ ଶୂଦ୍ର ମାନଙ୍କୁ ସେଥିରେ ପ୍ରତିନିଧିତ୍ୱ ଦେବା ପାଇଁ ସଂରକ୍ଷଣ କରିବାକୁ ବିଭିନ୍ନ ସମୟରେ କଂଗ୍ରେସରେ ପ୍ରସ୍ତାବ ଦେଇ ଆସିଛନ୍ତି ଓ ପ୍ରତ୍ୟେକଥର କଂଗ୍ରେସର ପ୍ରଭାବଶାଳୀ ଉଚ୍ଚ ଜାତିର ଲୋକମାନେ ଏହାକୁ ବିରୋଧ କରିଛନ୍ତି । ଦୀର୍ଘ ପାଞ୍ଚବର୍ଷ ଧରି ଯେହେତୁ କଂଗ୍ରେସରେ ତାଙ୍କର ପ୍ରସ୍ତାବ କାଟ ଖାଇଛି ଓ କଂଗ୍ରେସର ଉଚ୍ଚ ଜାତିର ଲୋକମାନେ ଦଳିତ ଓ ଶୂଦ୍ର ଦ୍ରାବିଡମାନଙ୍କର ମାନବିକ ଅଧିକାରକୁ ସ୍ୱୀକୃତି ଦେଇ ନାହାନ୍ତି ତାହାର ପ୍ରତିବାଦରେ ସେ ୧୯୨୫ରେ କଂଗ୍ରେସ ପରିତ୍ୟାଗ କରିଛନ୍ତି ।

ଏହାପରେ ୧୯୨୫ରେ ମନୁବାଦୀ ସାଂସ୍କୃତିକ ଶୋଷଣ, ସାମାଜିକ ଭେଦଭାବ ଓ ବ୍ରାହ୍ମଣବାଦୀ ଆଧିପତ୍ୟକୁ ଦୂରକରିବା ପାଇଁ ସେ ଆତ୍ମ ମର୍ଯ୍ୟାଦା

ଆନ୍ଦୋଳନ (Self Respect Movement-ସେଲଫ୍ ରେସ୍ପେକ୍ଟ ମୁଭମେଣ୍ଟ) ନାମରେ ଏକ କ୍ରାନ୍ତି ଆରମ୍ଭକଲେ । ୧୯୨୭ରେ ମହାତ୍ମାଗାନ୍ଧୀଙ୍କୁ ବାଙ୍ଗାଲୋରଠାରେ ସାକ୍ଷାତ କରି ରାଜନୈତିକ ସ୍ୱାଧୀନତା ଅପେକ୍ଷା ସାମାଜିକ ସମତା ହାସଲ କରିବା ଯେ ଅଧିକ ଜଟିଳ ଓ ସମସ୍ୟା ବହୁଳ ଏହା ତାଙ୍କୁ ବୁଝାଇଛନ୍ତି । ସାମାଜିକ ଭେଦଭାବକୁ ଦୂର ନକଲେ ରାଜନୈତିକ ସ୍ୱାଧୀନତାର ଯେ କିଛି ଅର୍ଥ ରହିବ ନାହିଁ ଏହା ପେରିୟାର ବାରମ୍ବାର ବ୍ୟକ୍ତ କରି ଆସିଛନ୍ତି । ଶାସ୍ତ୍ରରେ ବର୍ଣ୍ଣିତ ବର୍ଣ୍ଣ ବ୍ୟବସ୍ଥା ଓ ତାର ଅବଶ୍ୟମ୍ଭାବୀ ପରିଣାମ ସ୍ୱରୂପ ଜାତିପ୍ରଥା ଓ ଅସ୍ପୃଶ୍ୟତା ଯେ ଭାରତୀୟ ସମାଜର କଳଙ୍କ ଏହି ଅନୁଭବରୁ ସେ ସମାଜ ସଂସ୍କାରକୁ ଅଧିକ ପ୍ରାଧାନ୍ୟ ଦେଉଥିଲେ । ଜାତିପ୍ରଥା ଜନିତ ଭେଦଭାବ ଓ ଅସ୍ପୃଶ୍ୟତା ଯେତେ ମାନବିକତା ବିରୋଧୀ ହେଲେ ମଧ ଏହା ହଜାର ହଜାର ବର୍ଷ ଧରି କିପରି ଭାରତୀୟ ସମାଜକୁ କଳୁଷିତ କରି ରଖିଛି ସେ ଗଭୀର ଭାବେ ଅନୁଭବ କରିଛନ୍ତି ଓ ତାହାର ମୂଳୋତ୍ପାଟନ ପାଇଁ ଜୀବନ ବ୍ୟାପୀ ପ୍ରୟାସ କରିଛନ୍ତି । ପେରିୟାରଙ୍କର ପ୍ରୟାସ ଯୋଗୁ ସେତେବେଳେ ତାମିଲନାଡୁରେ ପ୍ରଭାବ ବିସ୍ତାର କରିଥିବା ଜଷ୍ଟିସ ପାର୍ଟି ପ୍ରାକ୍ ସ୍ୱାଧୀନତା କାଳରେ ଦଳିତ ଓ ଶୂଦ୍ରମାନଙ୍କ ପାଇଁ ଶିକ୍ଷାନୁଷ୍ଠାନରେ ଓ ସରକାରୀ କର୍ମସଂସ୍ଥାନରେ ସଂରକ୍ଷଣ ବ୍ୟବସ୍ଥା ଗ୍ରହଣ କରିଛି । ସମାଜର ସବୁଠାରୁ ଅବହେଳିତ ଓ ଶୋଷିତ ବର୍ଗର ଜନଗଣଙ୍କୁ ଶିକ୍ଷାରେ ଓ ସରକାରରେ ପ୍ରତିନିଧିତ୍ୱ ଦେବାରେ ଏହି ପଦକ୍ଷେପ ପରାଧୀନ ଭାରତରେ ଥିଲା ଯୁଗାନ୍ତକାରୀ ।

ଜାତିପ୍ରଥାର ବିଲୋପ ପାଇଁ ସବୁଠାରୁ ବଡ ଆବଶ୍ୟକତା ହେଲା ଜାତି ଜାତି ଭିତରେ ଆନ୍ତର୍ଜାତି ବିବାହ । ପେରିୟାର ଆତ୍ମମର୍ଯ୍ୟାଦା ଆନ୍ଦୋଳନ ପରିସରରେ ଆନ୍ତର୍ଜାତି ବିବାହକୁ ଗୁରୁତ୍ୱ ଦେଇଛନ୍ତି । ବିଂଶଶତାବ୍ଦୀ ଆରମ୍ଭ ସମୟରେ ଆନ୍ତର୍ଜାତି ବିବାହ ଭାରତୀୟ ସମାଜ ବ୍ୟବସ୍ଥାରେ ଅସମ୍ଭବ ଥିଲା । ଜାତି ଜାତି ଭିତରେ ସହଭୋଜନ ଓ ସାଧାରଣ ମିଳାମିଶା ବି ସୀମିତ ଥିଲା । ପ୍ରତ୍ୟେକ ଜାତି ଏକ ରୁଦ୍ଧ ସାମାଜିକ ଗୋଷ୍ଠୀ ଭାବେ ଅନ୍ୟ ଜାତି ସହ ସଂପର୍କକୁ ସୁଦୃଷ୍ଟିରେ ନେଉ ନଥିଲା । ଏହି ସାମାଜିକ ପରିବେଶରେ ଆନ୍ତର୍ଜାତି ବିବାହ ପାଇଁ ପ୍ରଚାର କରିବା ଥିଲା ଏକ ବଡ଼ ଆହ୍ୱାନ । ଆତ୍ମମର୍ଯ୍ୟାଦା ଆନ୍ଦୋଳନର ବହୁମୁଖୀ କାର୍ଯ୍ୟସୂଚୀ ସହ ଆତ୍ମମର୍ଯ୍ୟାଦା ବିବାହକୁ (ସେଲଫ ରେସ୍ପେକ୍ଟ ମ୍ୟାରେଜ) ସଂଶ୍ଳିଷ୍ଟ କରାଯାଇଥିଲା । ଧାର୍ମିକ କର୍ମକାଣ୍ଡକୁ ବାଦ୍ ଦେଇ ଏକ ନିରାଡମ୍ବର ପରିସରରେ ଦାଂପତ୍ୟ ଜୀବନ ପାଇଁ ବିବାହ ଶପଥ ନେବା କାର୍ଯ୍ୟକ୍ରମକୁ ପେରିୟାର ଜନସମୂହ ଭିତରେ ବ୍ୟାପକ କରାଇଥିଲେ । ସାମାଜିକ

ଭେଦଭାବ ଦୂରକରିବା କ୍ଷେତ୍ରରେ ତଥା ଏକ ଜାତିବିହୀନ ସମାଜ ଗଠନ କ୍ଷେତ୍ରରେ ପେରିୟାରଙ୍କ ଏହି କାର୍ଯ୍ୟସୂଚୀ ବେଶ୍ ବୈପ୍ଳବିକ ଥିଲା ।

ନାରୀ ସ୍ୱାଧୀନତା ଓ କ୍ଷୁଦ୍ର ପରିବାର ପାଇଁ ପରିବାର ନିୟୋଜନ ନେଇ ସଚେତନତା ଆଣିବାରେ ପେରିୟାର ଭାରତରେ ପ୍ରଥମ କ୍ରାନ୍ତିକାରୀ ବ୍ୟକ୍ତି । ୧୯୩୦ ମସିହାରେ ପରିବାର ନିୟୋଜନ ନେଇ ସେ ପୁସ୍ତକ ଲେଖି ସାଧାରଣରେ ପ୍ରସାର କରିଛନ୍ତି । ଜନସଂଖ୍ୟା ଓ ରାଷ୍ଟ୍ରୀୟ ବିକାଶ ଭିତରର ସଂପର୍କକୁ ସେ ଗଭୀର ଭାବେ ଅନୁଶୀଳନ କରିଛନ୍ତି । ଏହି ଅନୁଶୀଳନରୁ ଦାରିଦ୍ର୍ୟ ଦୂରୀକରଣ ପାଇଁ ଛୋଟ ପରିବାର କିପରି ଆବଶ୍ୟକ ତାହା ସେ ଜନଗଣଙ୍କୁ ବୁଝାଇବାକୁ ପ୍ରୟାସ କରିଛନ୍ତି । ପରିବାରର ସଂଖ୍ୟାକୁ ସୀମିତ କରିବାକୁ ଆବଶ୍ୟକ ଜନ୍ମ ନିୟନ୍ତ୍ରଣ । ତେବେ ଜନ୍ମ ନିୟନ୍ତ୍ରଣକୁ ବିରୋଧ କରି ବ୍ରହ୍ମଚର୍ଯ୍ୟ ପାଳନକୁ କିମ୍ବା ସନ୍ତାନ ଜନ୍ମ ପାଇଁ କେବଳ ଯୌନ ସଂପର୍କ ରଖିବା ଆବଶ୍ୟକ ଭାବନାକୁ କେତେକ ବିଶିଷ୍ଟ ବ୍ୟକ୍ତି ବା ଧର୍ମ ପ୍ରବକ୍ତା ମାନେ ସମର୍ଥନ କରୁଥିବା ବେଳେ ଏହାର ଅବାସ୍ତବତାକୁ ଦେଖାଇ ଆଧୁନିକ ଚିକିତ୍ସା ବିଜ୍ଞାନ ମାଧମରେ ଜନ୍ମ ନିୟନ୍ତ୍ରଣ ପାଇଁ ଆହ୍ୱାନ ଦେବା ତାଙ୍କ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ସୂଚନା ଦିଏ । ଭାରତସରକାର ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ପାଇଁ ଜାତୀୟ କାର୍ଯ୍ୟକ୍ରମ ଆରମ୍ଭ କରିବାର ବହୁ ପୂର୍ବରୁ ପେରିୟାର କ୍ଷୁଦ୍ର ପରିବାର ଭାବନାକୁ ଜନଗଣଙ୍କ ଭିତରେ ପ୍ରସାର କରିବା ପାଇଁ ଉଦ୍ୟମ କରିବା ତାଙ୍କ ଦୂରଦୃଷ୍ଟିର ପ୍ରମାଣ ଦିଏ ।

ସେତେବେଳର ଧାର୍ମିକ ବିଶ୍ୱାସ ତଥା ପରଂପରାରେ ମନ୍ଦିରମାନଙ୍କରେ ଦେବଦାସୀ ପ୍ରଥା ରହିଥିଲା। ମନ୍ଦିରରେ ଅଧିଷ୍ଠିତ ଦିଅଁଙ୍କ ସମ୍ମୁଖରେ ଗୀତ, ନୃତ୍ୟ ପରିବେଷଣ ପାଇଁ ଅବିବାହିତ ଝିଅମାନଙ୍କୁ ଦେବଦାସୀ କରାଯାଉଥିଲା । ଦେବଦାସୀ ମାନେ ବିବାହ କରିପାରିବେ ନାହିଁ, ସେମାନେ ଦିଅଁଙ୍କର ପତ୍ନୀ ହୋଇ ରହିବେ । ତେବେ ଦେବଦାସୀମାନେ ବହୁ ସମୟରେ ପୂଜକ ଗୋଷ୍ଠୀଦ୍ୱାରା ଅତ୍ୟାଚାରିତ ହେଉଥିଲେ । ବ୍ୟକ୍ତି ମର୍ଯ୍ୟାଦା ବିରୋଧୀ ଏହି ପ୍ରଥା ବିରୁଦ୍ଧରେ ପେରିୟାର ଆନ୍ଦୋଳନ କରି ଦେବଦାସୀ ପ୍ରଥାକୁ ବନ୍ଦ କରିଛନ୍ତି । କେତେକ ମନ୍ଦିରର ଦେବଦାସୀ ଝିଅମାନଙ୍କୁ ଆଣି ବିବାହ କରାଇ ସାମାଜିକ ଜୀବନ ସ୍ରୋତରେ ମିଶାଇଛନ୍ତି । ପେରିୟାରଙ୍କ ପ୍ରୟାସ ଯୋଗୁ ୧୯୩୦ ମସିହାରେ ମାଡ୍ରାସ ଲେଜିସଲେଟିଭ୍ କାଉନସିଲ ଦେବଦାସୀ

ପ୍ରଥାକୁ ଆଇନଦ୍ୱାରା ନିଷିଦ୍ଧ କରିଛି । ପୂଜକ ଗୋଷ୍ଠୀର ପ୍ରତିବାଦ ଓ ବିରୋଧ ସତ୍ତ୍ୱେ ଦେବଦାସୀ ପ୍ରଥାକୁ ବନ୍ଦ କରିବାରେ ସଫଳ ହୋଇଛନ୍ତି ।

ରାଜନୈତିକ ସ୍ୱାଧୀନତା ପାଇଁ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ଲଢ଼ିବା ବେଳେ ଦେଶର ଜନଗଣଙ୍କର ଅକୁଣ୍ଠ ସମର୍ଥନ ମିଳୁଥିଲା । କିନ୍ତୁ ସମାଜର ଅନୀତି, ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ବେଳେ ରକ୍ଷଣଶୀଳ ଓ ପ୍ରଭାବଶାଳୀ ଜନଗଣଙ୍କର ବିରୋଧର ସମ୍ମୁଖୀନ ହେବାକୁ ପଡୁଥିଲା । ଏହି ବାସ୍ତବ ଅନୁଭୂତିରୁ ଏକ ଉତ୍ତମ ସମାଜ ପାଇଁ ସୋସିଆଲ ଇଭିଲକୁ ଦୂର କରିବାକୁ ପେରିୟାର ନିଜକୁ ଉତ୍ସର୍ଗ କରିଥିଲେ । ସେ ତାମିଲନାଡୁର ଗାଆଁ ଗହଳଠାରୁ ସହର ପର୍ଯ୍ୟନ୍ତ ସବୁ ସ୍ଥାନକୁ ଯାଇ ଲୋକମାନଙ୍କ ଭିତରେ ବିଚାରଶୀଳ ଦୃଷ୍ଟି, ମାନବିକ ଅଧିକାର ଓ ସମତାର ବାର୍ତ୍ତା ପ୍ରଚାର କରିଛନ୍ତି । ସେ କୌଣସି ବିଶ୍ୱବିଦ୍ୟାଳୟରେ ପାଠ ପଢ଼ିନଥିଲେ ମଧ୍ୟ ତାଙ୍କର ଗଭୀର ଅନୁଶୀଳନ ଓ ଶାଣିତ ପ୍ରଜ୍ଞାଦ୍ୱାରା ସେ ଜନଗଣଙ୍କର ଯେ କୌଣସି ପ୍ରଶ୍ନ ଓ ଆହ୍ୱାନକୁ ସମ୍ମୁଖୀନ ହେଉଥିଲେ । ପ୍ରତିପଶ୍ନ ଓ ବ୍ୟଙ୍ଗ ଦ୍ୱାରା ସାଧାରଣ ମଣିଷ ମନରେ ନିଜର ପରିସ୍ଥିତି ବିଷୟ ଚିନ୍ତା କରିବାକୁ କୌତୂହଳତା ସୃଷ୍ଟି କରୁଥିଲେ । ସାଧାରଣ ଲୋକମାନେ ସେମାନଙ୍କର ଦାରିଦ୍ର୍ୟ ଓ ଦୟନୀୟ ସ୍ଥିତି ବିଷୟରେ କିପରି ସଚେତନ ହେବେ ସେ ପାଇଁ ସେ ଉଦ୍ୟମ କରୁଥିଲେ । ସେ ଲୋକମାନଙ୍କୁ ଏହି ବାର୍ତ୍ତା ଦେଉଥିଲେ ଯେ କେଉଁ ଭାଗ୍ୟଫଳ ବା ଦେବତାର କୋପରୁ ଆମେ ଦରିଦ୍ର ହୋଇ ନାହେଁ, ଆମର ସାମାଜିକ ପରିସ୍ଥିତି ଓ ରାଜନୈତିକ ବ୍ୟବସ୍ଥା ଯୋଗୁ ଆମେ ଦୟନୀୟ ଓ ଅବମାନବୀୟ ସ୍ତରରେ ଜୀବନ ବଞ୍ଚୁଛେ । ସେହିପରି ଆମର ବିକାଶ, ପ୍ରଗତି ଓ ଗୁଣାତ୍ମକ ଜୀବନ ଦିଅଁ ଦେବତାକୁ ପୂଜା କଲେ ସମ୍ଭବ ହେବ ନାହିଁ । ଆମର ନିଷ୍ଠାପର ଉଦ୍ୟମ ଦ୍ୱାରା ସାମାଜିକ ଜୀବନ ଉନ୍ନତ ହୋଇପାରିବ । ଯେଉଁଠି ସାମାଜିକ ବ୍ୟବସ୍ଥା, ରାଜନୈତିକ ଓ ଅର୍ଥନୈତିକ ପରିବେଶ ଉନ୍ନତ ହୋଇଛି, ସେଠିକାର ସମାଜ ବିକଶିତ ହୋଇଛି । ଅର୍ଥାତ୍ ମଣିଷର ପ୍ରୟାସ ଓ ଉତ୍ତମ ସାମାଜିକ ତଥା ସାଂସ୍କୃତିକ ବ୍ୟବସ୍ଥା ଦ୍ୱାରା ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ମାନ ଉନ୍ନତ ହେବା ସମ୍ଭବ ହୋଇଛି ।

ଏକ ଉନ୍ନତ ସମାଜ ଓ ଗୁଣାତ୍ମକ ଜୀବନ ପାଇଁ ଶିକ୍ଷାର ଗରୁତ୍ୱପୂର୍ଣ୍ଣ ଆବଶ୍ୟକତାକୁ ସେ ଅନୁଭବ କରିଛନ୍ତି । ଏଥିପାଇଁ ସାର୍ବଜନୀନ ଭାବେ ଶିକ୍ଷାର

ପ୍ରସାରକୁ ସେ ଗୁରୁତ୍ୱ ଦେଇଛନ୍ତି ଓ କେତେକ ସ୍ଥାନରେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ଶିକ୍ଷା ଯେ ସାମାଜିକ ଦାସତ୍ୱରୁ ମୁକ୍ତି ଦେବ ଏହି ବିଶ୍ୱାସ ତାଙ୍କର ଦୃଢ଼ ହୋଇଛି । ପରାଧୀନ ବ୍ରିଟିଶ ଭାରତରେ ତାମିଲ ଭାଷାରେ ଶିକ୍ଷା ଦେବା ପାଇଁ ସେ ତାମିଲନାଡୁରେ ଭାଷା ଆନ୍ଦୋଳନ କରିବାକୁ ପ୍ରୟାସ କରିଛନ୍ତି । ଏହା ସହିତ ତାମିଲ ଲିପିରେ ସଂସ୍କାର ଆଣିବାକୁ ଚେଷ୍ଟା କରିଛନ୍ତି । ଜ୍ଞାନ, ବିଜ୍ଞାନର ଭାଷା ପାଇଁ ହିନ୍ଦୀଭାଷା ପରିବର୍ତ୍ତେ ଇଂରାଜୀ ଭାଷା ଅଧିକ ଉପଯୋଗୀ ଭାବି ସେ ଇଂରାଜୀ ଭାଷାର ପ୍ରସାର ପାଇଁ ଗୁରୁତ୍ୱ ଦେଇଛନ୍ତି । ତାମିଲ ଭାଷା ଏକ ପ୍ରାଚୀନ ଦ୍ରାବିଡୀୟ ଭାଷା ଭାବରେ ସମୃଦ୍ଧ ଥିବାରୁ ତାମିଲ ଓ ଇଂରାଜୀ ଉଭୟ ଭାଷାକୁ ଶିକ୍ଷା କ୍ଷେତ୍ରରେ ଗୁରୁତ୍ୱ ଦେଇଛନ୍ତି । ଏହା ସହିତ ସାମାଜିକ ଚେତନାକୁ ସଂସ୍କାରିତ କରିବାକୁ ବିଭିନ୍ନ ସମୟରେ କେତେକ ପତ୍ରିକା ପ୍ରକାଶ କରିଛନ୍ତି। ଜଷ୍ଟିସ ପାର୍ଟିଦ୍ୱାରା ପ୍ରକାଶିତ ଏକ ସାପ୍ତାହିକ ପତ୍ରିକା ବିଦୁତଲାଇକୁ ଯେତେବେଳେ ଏକ ଦୈନିକ ସମ୍ବାଦ ପତ୍ରରେ ପରିବର୍ତ୍ତନ କରାଯାଇଛି, ପେରିୟାର କିଛି ବର୍ଷ ଏହାର ସଂପାଦନା ଦାୟିତ୍ୱ ତୁଲାଇଛନ୍ତି । ଏତଦ୍‌ବ୍ୟତୀତ ଏକ ହେତୁବାଦୀ ପତ୍ରିକା 'ପୁରତଚି'(ବିପ୍ଳବ) ତାମିଲ ଭାଷାରେ ଆରମ୍ଭ କରିଛନ୍ତି । ତାଙ୍କ ଚିନ୍ତାଧାରର ପ୍ରସାର ପାଇଁ ଇଂରାଜୀରେ 'ଦି ମଡର୍ଣ୍ଣ ରେସନାଲିଷ୍ଟ' ପତ୍ରିକାଟିଏ ପ୍ରତିମାସରେ ପ୍ରକାଶ ପାଇ ଆସୁଛି । ପେରିୟାର ସାମାଜିକ କ୍ରାନ୍ତି ପାଇଁ ବିଭିନ୍ନ ସଂସ୍କାରବାଦୀ ଲେଖା ଲେଖିଛନ୍ତି ଯାହା ବହୁ ଖଣ୍ଡରେ ପରେ ସଂକଳିତ ହୋଇ ପ୍ରକାଶ ପାଇଛି ।

ପରାଧୀନ ଭାରତରେ ସେ ଜଷ୍ଟିସ ପାର୍ଟିର ସଭାପତି ମନୋନୀତ ହୋଇଛନ୍ତି । ତେବେ ଦୁଇଥର ସରକାର ଗଠନ କରିବା ପାଇଁ ସେ ତତ୍‌କାଳୀନ ମାଡ୍ରାସ ଗଭର୍ଣ୍ଣରଙ୍କ ନିମନ୍ତ୍ରଣ ପାଇଥିଲେ ବି ଏତେ ସମ୍ମାନଜନକ ପଦକୁ ଗ୍ରହଣ କରିନାହାନ୍ତି ବରଂ ଏକ ଭେଦଭାବବିହୀନ ସମାଜ ଗଠନ ଓ ସାମାଜିକ କ୍ରାନ୍ତିକୁ ପ୍ରାଧାନ୍ୟ ଦେଇ ସେ ସେଥିରେ ବ୍ରତୀ ହୋଇଛନ୍ତି । ତେବେ ୧୯୪୪ ମସିହାରେ ଜଷ୍ଟିସ ପାର୍ଟିର ନାମ ପରିବର୍ତ୍ତନ ହୋଇ ଦ୍ରାବିଡ଼ କାଜାଗମ (କାଜାଗମ ଅର୍ଥ ରାଜ୍ୟ) ସୃଷ୍ଟି ହୋଇଛି । ଦ୍ରାବିଡ କାଜାଗମ ବା ଡିକେ ମୁଖ୍ୟତଃ ଏକ ସାମାଜିକ ଆନ୍ଦୋଳନ ଭାବରେ ସମସ୍ତ ସୋସିଆଲ ଇଭିଲକୁ ଦୂର କରିବାକୁ ପ୍ରୟାସ କରିଛି ଓ ଏହା ପୁରୋଭାଗରେ ପେରିୟାର ରହିଛନ୍ତି । ପରେ ଦ୍ରାବିଡ କାଜାଗମ ସଂଗଠନକୁ ଡି ଏମକେ

ଏକ ରାଜନୈତିକ ଦଳ ସୃଷ୍ଟି ହୋଇଛି । ପେରିୟାର ରାଜନୈତିକ ଲକ୍ଷ୍ୟଠାରୁ ଦୂରରେ ରହି ସାମାଜିକ ପରିବର୍ତ୍ତନକୁ ମୁଖ୍ୟ ସ୍ଥାନ ଦେଇଛନ୍ତି । ତେବେ ୧୯୬୭ ନିର୍ବାଚନରେ ଡିଏମ୍‌କେ ଦଳ ସଂଖ୍ୟା ଗରିଷ୍ଠ ହୋଇ ସରକାର ଗଠନ କରିଛି ଓ ଆନା ଦୁରାଇ ମାନ୍ଦ୍ରାଜ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଆନା ଦୁରାଇ ମୁଖ୍ୟମନ୍ତ୍ରୀ ହେବା ପରେ ପେରିୟାରଙ୍କ ସାମାଜିକ ଆନ୍ଦୋଳନକୁ ସମର୍ଥନ ଦେଇଛନ୍ତି । ପେରିୟାରଙ୍କ ତିନୋଟି ମୁଖ୍ୟ ଦାବିକୁ ସେ ଆଇନରେ ପରିଣତ କରିଛନ୍ତି । ପେରିୟାରଙ୍କ ସେଲଫ୍ ରେସ୍ପେକ୍ଟ ବିବାହକୁ ଆଇନଗତ ସ୍ୱୀକୃତି ଦିଆଯାଇଛି । ଦୁଇଜଣ ପ୍ରାପ୍ତ ବୟସ୍କ ବ୍ୟକ୍ତି (ପୁରୁଷ ଓ ନାରୀ) ଜାତି, ଧର୍ମ ନିର୍ବିଶେଷରେ ଅଣପାରମ୍ପରିକ ଭାବରେ ବିବାହ କରିପାରିବେ ଓ ସେମାନଙ୍କର ବିବାହକୁ ସରକାରଙ୍କ ପାଖରେ ପଂଜୀକରଣ କରିପାରିବେ । ମାଧ୍ୟମିକ ଶିକ୍ଷା ସ୍ତରରେ ଛାତ୍ର ଛାତ୍ରୀ ମାନେ ଦୁଇଟି ଭାଷା ତାମିଲ ଓ ଇଂରାଜୀ ପଢ଼ିବେ, ହିନ୍ଦୀ ବାଧ୍ୟତାମୂଳକ ହେବ ନାହିଁ । ମାନ୍ଦ୍ରାଜର ନାମ ତାମିଲନାଡୁ ହେବ ।

ଏହା ସହିତ ଆନା ଦୁରାଇ ବିଭିନ୍ନ ପ୍ରଗତିଶୀଳ ପଦକ୍ଷେପ ନେଇ ସାମାଜିକ ଭେଦଭାବକୁ ଦୂର କରିବାକୁ ପ୍ରୟାସ କରିଛନ୍ତି । କୌଣସି ସରକାରୀ କାର୍ଯ୍ୟାଳୟରେ କୌଣସି ଧର୍ମୀୟ ଦେବ-ଦେବୀଙ୍କର ଫଟୋ, ମୂର୍ତ୍ତି ରଖାଯାଇ ପାରିବ ନାହିଁ । ଏହା ସହିତ ମନ୍ଦିର ପୂଜାସ୍ଥଳରେ ଯେ କୌଣସି ଜାତିର ବ୍ୟକ୍ତି ପୂଜାର୍ଚ୍ଚନା କରିପାରିବେ, ଏହା ଏକ ନିର୍ଦ୍ଦିଷ୍ଟ ଜାତିର ଏକଚାଟିଆ ଆଧିପତ୍ୟ ହୋଇ ରହିବ ନାହିଁ । ଏହିପରି ବିଭିନ୍ନ ପଦକ୍ଷେପ ପଶ୍ଚାତରେ ପେରିୟାରଙ୍କ ବିଚାର ଓ ପ୍ରେରଣାକୁ ଆଇନଗତ ସ୍ୱୀକୃତି ଦେବାକୁ ସରକାର ଉଦ୍ୟମ କରିଛନ୍ତି ।

ସବୁ ସଭ୍ୟତାରେ ଓ ସବୁ ଯୁଗରେ ମତାନ୍ଧ ଲୋକମାନେ ଧାର୍ମିକ ରକ୍ଷଣଶୀଳତା ଯୋଗୁଁ ପ୍ରଗତିଶୀଳ ଓ ସଭ୍ୟ ମୂଲ୍ୟବୋଧକୁ ବିରୋଧ କରି ଆସିଛନ୍ତି । ୟୁରୋପୀୟ ସମାଜରେ ବିଜ୍ଞାନର ଆଦିପର୍ବରେ ଧାର୍ମିକ ବିଶ୍ୱାସ ଯୋଗୁଁ ବୈଜ୍ଞାନିକ ଜ୍ଞାନକୁ ବିରୋଧ କରାଯାଇଛି । ବହୁ ପ୍ରତିଭାଧର ବୈଜ୍ଞାନିକ ସେମାନଙ୍କର ନୂତନ ଉଦ୍‌ଭାବନ ଓ ଆବିଷ୍କାର ପାଇଁ ନାନା ସାମାଜିକ ବିଦ୍ୱେଷର ସମ୍ମୁଖୀନ ହୋଇଛନ୍ତି । କେତେକ ବନ୍ଦୀ ଜୀବନ ବିତାଇଛନ୍ତି ଓ ଏପରିକି ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇଛନ୍ତି । ଭାରତ ବର୍ଷରେ ସାମାଜିକ ସଂସ୍କାର ଓ ମାନବିକ ଅଧିକାରକୁ ଧାର୍ମିକ ରକ୍ଷଣଶୀଳତାରେ ନାନା ବିରୋଧ କରାଯାଇଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ମାନବିକ

ଅଧିକାର ଏହି ମୂଲ୍ୟବୋଧ ସକଳ ପାଶ୍ଚାତ୍ୟ ଗଣତାନ୍ତ୍ରିକ ସଂସ୍କୃତିରୁ ଉଦ୍ଭବ ହୋଇଛି । ତେବେ ଭାରତବର୍ଷ ଭଳି ଏକ ଜାତିଭିତ୍ତିକ ସମାଜରେ ଧାର୍ମିକ ରକ୍ଷଣଶୀଳତା ସର୍ବଦା ଏହି ମୂଲ୍ୟବୋଧକୁ ବିରୋଧ କରିଛି। ପେରିୟାର ଯେତେବେଳେ ମାନବିକ ଅଧିକାର, ସମତା, ସାମାଜିକ ନ୍ୟାୟ ଓ ବ୍ୟକ୍ତିମର୍ଯ୍ୟାଦାବୋଧର ସ୍ୱର ଉଠାଇଛନ୍ତି, ସେତେବେଳେ ହିଁ ତାଙ୍କୁ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡିଛି। ଧାର୍ମିକ କୁସଂସ୍କାର ଓ ଅସ୍ପୃଶ୍ୟତା ବିରୁଦ୍ଧରେ ଜନଗଣଙ୍କୁ ଆହ୍ୱାନ ଦେବା ବେଳେ ଉଚ୍ଚ ଜାତିର ଲୋକମାନେ ତାଙ୍କୁ ଜୋତା ଫିଙ୍ଗିଛନ୍ତି। ୧୯୪୬ ରେ ତାଙ୍କର ଏକ ସମ୍ମିଳନୀର ପେଣ୍ଡାଲକୁ ନିଆଁ ଲଗାଇ ପୋଡି ଦେଇଛନ୍ତି। ସବୁ ଘାତ ପ୍ରତିଘାତ ସତ୍ତ୍ୱେ ସେ ନିଜ ବିଚାର ଓ ବିଶ୍ୱାସରେ ଅଟଳ ରହି ସାମାଜିକ କ୍ରାନ୍ତି ପାଇଁ ପଥ ପ୍ରଦର୍ଶକ ହୋଇଛନ୍ତି । ଜଣେ ସଂଗ୍ରାମୀ ଭାବେ ବିଭିନ୍ନ ସମୟରେ ନାନା ଦୁର୍ବିପାକର ସମ୍ମୁଖୀନ ହୋଇଛନ୍ତି । ତଥାପି ଗଭୀର ଆତ୍ମବିଶ୍ୱାସର ସହ ପରିସ୍ଥିତିର ମୁକାବିଲା କରିଛନ୍ତି, ବହୁ ସାମାଜିକ ଆନ୍ଦୋଳନର ନେତୃତ୍ୱ ନେଇ ଓ ସାମାଜିକ ଭେଦଭାବ ଓ ଅନ୍ୟାୟକୁ ଦୂର କରିବାକୁ ଜୀବନର ବ୍ରତ ଭାବେ ନେଇଛନ୍ତି । ତେବେ ସବୁ ପରିସ୍ଥିତିରେ ଅହିଂସ ରହିଛନ୍ତି ଓ ତାଙ୍କର ଅନୁଗାମୀ ମାନଙ୍କୁ ସେହି ଆଦର୍ଶରେ ଅନୁପ୍ରାଣିତ କରିଛନ୍ତି ।

ପେରିୟାର ବିଭିନ୍ନ ପାଶ୍ଚାତ୍ୟ ଦେଶ ଭ୍ରମଣ କରିବାକୁ ଯାଇ ସେ ସବୁ ଦେଶର ବିକାଶକୁ ଲକ୍ଷ୍ୟ କରିଛନ୍ତି । ପାଶ୍ଚାତ୍ୟ ଦେଶମାନଙ୍କର ବିକାଶ, ଉନ୍ନତ ସ୍ୱାସ୍ଥ୍ୟ ସେବା, ସାର୍ବଜନୀନ ଶିକ୍ଷା, ସାମାଜିକ ସମତା ଓ ଜୀବନର ଗୁଣାତ୍ମକ ମାନକୁ ପର୍ଯ୍ୟାଲୋଚନା କରିଛନ୍ତି । ବିଭିନ୍ନ ଦେଶର ସମାଜବାଦୀ ସଂଗଠନ, ହେତୁବାଦୀ ଓ ମାନବବାଦୀ ଅନୁଷ୍ଠାନରେ ଭାଷଣ ଦେବାର ଅବକାଶ ପାଇଛନ୍ତି। ସେ ଦେଶମାନଙ୍କରେ ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ପରିବେଶକୁ ଅନୁଧ୍ୟାନ କରିଛନ୍ତି । ସେ ନିଜର ବାସ୍ତବ ଅନୁଭୂତି ଓ ନିଜସ୍ୱ ଅନୁଶୀଳନ ମଧ୍ୟ ଦେଇ ସେ ଦେଶମାନଙ୍କର ଜୀବନଧର୍ମୀ ଆଦର୍ଶ ଓ ଉଚ୍ଚ ନାଗରିକ ଶୃଂଖଳାବୋଧକୁ ଆମେ କିପରି ଶିକ୍ଷା କରିପାରିବା ସେ ପାଇଁ ନିଜର ଚିନ୍ତା ପ୍ରକଟ କରିଛନ୍ତି । ଆମ ସମାଜରୁ ନାନା ଅହେତୁକ ପରଂପରା, ଧାର୍ମିକ କୁସଂସ୍କାର ତଥା ଭେଦଭାବମୂଳକ ମାନସିକତା ଦୂର କରି ମାନବବାଦୀ ମୂଲ୍ୟଚୟକୁ ଆମ ଜନଜୀବନରେ କିପରି ବ୍ୟାପକ କରିପାରିବା ସେ ପାଇଁ ଗଭୀର ସଂପୃକ୍ତି ପ୍ରକାଶ କରିଛନ୍ତି । ଏକ ଜନବହୁଳ ଓ ଗ୍ରାମବହୁଳ ରାଷ୍ଟ୍ରରେ ସାମାଜିକ

ପୁନର୍ଗଠନ କିପରି କରାଗଲେ ଆମର ଅର୍ଥନୈତିକ ବିକାଶ ତ୍ୱରାନ୍ୱିତ ହୋଇପାରିବ ସେ ନେଇ ବିଚାର ବ୍ୟକ୍ତ କରିଛନ୍ତି । ଅର୍ଥନୈତିକ ସମୃଦ୍ଧି ଓ ସାମାଜିକ ବିକାଶଦ୍ୱାରା ଯେ ଭାରତୀୟ ସମାଜ ଉନ୍ନତ ହୋଇପାରିବ ଏହି ଆତ୍ମପ୍ରତ୍ୟୟରୁ ସେ ତାଙ୍କ ବିକାଶର ଚିତ୍ର ଅଙ୍କନ କରିଛନ୍ତି ।

ମୋଟ ଉପରେ ପେରିୟାର ଥିଲେ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ, ଆତ୍ମମର୍ଯ୍ୟାଦା ଆନ୍ଦୋଳନର ପ୍ରବକ୍ତା ଓ ଆଧୁନିକ ତାମିଲନାଡୁର ଜନକ । ତାଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ତାଙ୍କୁ ୟୁଏନସ୍କୋ ଆନ୍ତର୍ଜାତିକ ପୁରସ୍କାରରେ ସମ୍ମାନିତ କରାଯାଇଛି । ୟୁଏନସ୍କୋ ଆନ୍ତର୍ଜାତିକ ପୁରସ୍କାରର ମାନପତ୍ରରେ ତାଙ୍କ ବିଷୟରେ ଲେଖାଯାଇଛି- PERIYAR THE PROPHET OF THE NEW AGE; THE SOCRATES OF SOUTH EAST ASIA, FATHER OF THE SOCIAL REFORM MOVEMENT; AND ARCH ENEMY OF INGORANCE, SUPERSTITION, MEANINGLESS CUSTOMS AND BASE MANNERS. ପେରିୟାର ହେଉଛନ୍ତି ଆଗାମୀ ଯୁଗର ପ୍ରଫେଟ, ଦକ୍ଷିଣ ଏସିଆର ସକ୍ରେଟିସ୍, ସାମାଜିକ କ୍ରାନ୍ତି ଆନ୍ଦୋଳନର ଜନକ ଓ ଅଜ୍ଞତା, କୁସଂସ୍କାର, ଅର୍ଥହୀନ ପରମ୍ପରା ଏବଂ ନିକୃଷ୍ଟ ବ୍ୟବହାରର କଠୋର ସମାଲୋଚକ । ପେରିୟାରଙ୍କୁ ଆନ୍ତର୍ଜାତିକ ସମ୍ମାନ ୨୭.୬.୭୦ଦିନ ୟୁଏନୋସ୍କ ତରଫରୁ ଭାରତର ତତ୍କାଳୀନ ଶିକ୍ଷାମନ୍ତ୍ରୀ ତ୍ରିଗୁଣା ସେନ ଚେନ୍ନାଇଠାରେ ପ୍ରଦାନ କରିଥିଲେ । ତାଙ୍କୁ ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍‌ଙ୍କ ସହିତ ତୁଳାନା କରାଯାଏ କାରଣ ସକ୍ରେଟିସ୍ ଜୀବନରେ ଯେପରି ସତ୍ୟ, ନ୍ୟାୟ ଓ ବିଚାରଶୀଳତା ପ୍ରତି ପ୍ରତିବଦ୍ଧ ଥିଲେ ପେରିୟାର ମଧ ଜୀବନବ୍ୟାପୀ ଏହି ମୂଲ୍ୟାବୋଧର ପ୍ରସାର ପାଇଁ ପ୍ରୟାସ କରିଥିଲେ । ସକ୍ରେଟିସ୍ ସାଧାରଣ ମଣିଷ ଭିତରେ ଅନୁସନ୍ଧିତ୍ସୁ ମାନସିକତା ଓ ବିଚାରଶୀଳ ଦୃଷ୍ଟି ସୃଷ୍ଟି କରିବାକୁ ଯେପରି ପ୍ରୟାସ କରିଛନ୍ତି ପେରିୟାର ସେହିପରି ସାଧାରଣ ମଣିଷ ଭିତରେ ଆତ୍ମସମ୍ମାନବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଉଦ୍ରେକ କରିବାକୁ ଜୀବନସାରା ଚେଷ୍ଟା କରିଛନ୍ତି । କେବଳ ଭାରତବର୍ଷ ନୁହେଁ ଦକ୍ଷିଣ ଏସିଆର ଜଣେ ପ୍ରମୁଖ ମାନବବାଦୀ ଓ ସାମାଜିକ ନ୍ୟାୟ ଆନ୍ଦୋଳନର ପ୍ରବକ୍ତା ଭାବେ ସେ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି ।

ଉପସଂହାରରେ ଅଜ୍ଞତା, କୁସଂସ୍କାର, ସାମାଜିକ ବୈଷମ୍ୟ ଓ ଅହେତୁକ ପରଂପରା ବିରୁଦ୍ଧରେ ସଂଗ୍ରାମ କରିଥିବା ପେରିୟାରଙ୍କୁ କୌଣସି ଛଳନା ବା ହିପୋକ୍ରାସି ସ୍ପର୍ଶ କରି ନଥିଲା । ଏକ ସତ୍ୟନିଷ୍ଠ ଓ ସମ୍ବେଦନଶୀଳ ଜୀବନ ଦୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ଆଦର୍ଶ ହୋଇ ରହିଥିଲା । ସେ ଏକ ସୁଦୀର୍ଘ ଜୀବନ ଅତିବାହିତ କରି ୯୪ ବର୍ଷ ବୟସରେ ୧୯୭୩ ଡିସେମ୍ବର ୨୪ ଦିନ ଚିରନିଦ୍ରାରେ ଶୋଇ ଯାଇଥିଲେ । ପେରିୟାର ଦାର୍ଶନିକ ନଥିଲେ, ତେବେ ଦର୍ଶନର ସାମଗ୍ରିକ ଅର୍ଥକୁ ବିଚାରକୁ ନେଲେ ତାଙ୍କର ଯେ ଏକ ଜୀବନ ଦର୍ଶନ ଥିଲା ଏହା କୁହାଯାଇପାରେ । ତାଙ୍କ ଜୀବନ-ଦର୍ଶନ ମାନବବାଦ ଓ ହେତୁବାଦର ଆଧାର ଉପରେ ଗଢ଼ି ଉଠିଥିଲା ।



# ବିଜ୍ଞାନ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବିନୋଦ କାନୁନଗୋ

ଏକଥା ଅନସ୍ୱୀକାର୍ଯ୍ୟ ଯେ ସ୍ୱାଧୀନତାସଂଗ୍ରାମୀ ଓ ଜ୍ଞାନମଣ୍ଡଳ ପ୍ରଣେତା ପଦ୍ମଶ୍ରୀ ବିନୋଦ କାନୁନଗୋଙ୍କର କୌଣସି ଔପଚାରିକ ଡିଗ୍ରୀ ନ ଥିଲା, ତେବେ ତାଙ୍କ ଜୀବନ ଥିଲା ଏକ ବିଶ୍ୱବିଦ୍ୟାଳୟ। ଗାନ୍ଧୀଙ୍କ ଆହ୍ୱାନରେ ଜାତୀୟ ଆନ୍ଦୋଳନରେ ନିଜକୁ ସାମିଲ କରିବାକୁ ସେ ଦଶମ ଶ୍ରେଣୀରୁ ପାଠ ଛାଡିଥିଲେ। ତେବେ ତାଙ୍କର ଜେଲ ଜୀବନକୁ ସେ ରୂପାନ୍ତରିତ କରିଥିଲେ ଅଧ୍ୟୟନରେ । ତରୁଣ ବିନୋଦ ବନ୍ଦୀ ଜୀବନରେ ବହୁ ବୟସ୍କଙ୍କ ସହ ଆଲୋଚନା, ସ୍ୱାଧ୍ୟାୟ ଓ ଚିନ୍ତନ ଭିତରେ ଜ୍ଞାନ ଆହରଣ ପାଇଁ ନିଜ ଭିତରେ ଏକ ଜିଜ୍ଞାସାବୋଧ ସୃଷ୍ଟିକରିଥିଲେ। ସ୍ୱାଧୀନତା ପରେ କିଛି ବର୍ଷ ନିଜ ଗ୍ରାମରେ ସାଧାରଣ ଜୀବନ ଅତିବାହିତ କରି ସେ ଜ୍ଞାନ-ବିଜ୍ଞାନର ପ୍ରସାର ପାଇଁ ପୁସ୍ତକ ଲେଖିବାକୁ ନିଷ୍ପତ୍ତି ନେଲେ । ଏହି ଲକ୍ଷ୍ୟ ନେଇ ସେ ୧୯୫୪ ରୁ କଟକ ଆସି ଆରମ୍ଭ କଲେ ଜ୍ଞାନ ସାଧନାର ଜୀବନ । ରେଭେନ୍ସା କଲେଜର କନିକା ଲାଇବ୍ରେରୀର ରେଫରେନ୍ସ ବିଭାଗରେ ବିଭିନ୍ନ ପ୍ରକାରର ଜ୍ଞାନକୋଷ ମାନଙ୍କୁ ଅଧ୍ୟୟନ ଓ ଅନୁଶୀଳନ କରିବାକୁ ଲାଗିଲେ । ବର୍ଷ ପରେ ବର୍ଷ ପ୍ରତ୍ୟହଃ ପନ୍ଦର, ଷୋହଳ ଘଣ୍ଟା ପରିଶ୍ରମ କରି ଓ ବିଭିନ୍ନ ପତ୍ର ପତ୍ରିକାରୁ ନାନା ତଥ୍ୟ ସଂଗ୍ରହ କରି ସେ ସବୁକୁ ହଜାର ହଜାର ଫାଇଲରେ ସଂଗ୍ରହ କରି ରଖିଲେ । ଲକ୍ଷ୍ୟ ରଖିଲେ ଷାଠିଏ ଖଣ୍ଡରେ ଜ୍ଞାନମଣ୍ଡଳ ଓ ଜ୍ଞାନ-ବିଜ୍ଞାନର ପ୍ରତ୍ୟେକ ବିଭାଗରେ ସାଧାରଣ ତଥ୍ୟ ଦେଇ ସବୁ ଶ୍ରେଣୀର ପାଠକଙ୍କ ପାଇଁ ପାଞ୍ଚ ଶହ ପୁସ୍ତକ ଲେଖିବେ । ଜଣେ ସାଧାରଣ ପାଠକ ପାଖରେ ଜ୍ଞାନର ଦିଗ୍‌ବଳୟକୁ ପହଞ୍ଚାଇବା ଥିଲା ତାଙ୍କ ବୌଦ୍ଧିକ ସାଧନାର ଲକ୍ଷ୍ୟ । ବିଶେଷ କରି ଓଡିଆ ଭାଷାଭାଷୀ ଲୋକମାନେ କିପରି ଜ୍ଞାନ ବିଜ୍ଞାନର ବିଭିନ୍ନ ଦିଗନ୍ତ ବିଷୟରେ ଜାଣିବାର ଅବକାଶ ପାଇବେ, ସେ ପାଇଁ ସେ ପଢ଼ିବା ଓ

ଲେଖିବାକୁ ଜୀବନର ବ୍ରତ ଭାବେ ଗ୍ରହଣ କରିନେଲେ । ବିନୋଦଙ୍କର ସ୍ରଷ୍ଟା ଜୀବନର ପରିଧି ଥିଲା ବହୁ ବ୍ୟାପକ । ଜ୍ଞାନ ବିଜ୍ଞାନର ବହୁ କ୍ଷେତ୍ର ଉପରେ ସେ କଲମ ଚାଳନା କରିଛନ୍ତି । ଜ୍ଞାନର ଯେକୌଣସି ବିଭାଗର ଅଭିବ୍ୟକ୍ତି ଯେ ଓଡିଆ ଭାଷାରେ ସମ୍ଭବ ଏହା ତାଙ୍କ ସୃଜନାତ୍ମକ କୃତି ଭିତରେ ସେ ପ୍ରମାଣ କରି ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ଓଡିଆ ଭାଷାରେ ବିଜ୍ଞାନକୁ ଜନପ୍ରିୟ କରିବାରେ ତାଙ୍କ ଅବଦାନର ସଂକ୍ଷିପ୍ତ ଆଲୋଚନା ଏଠାରେ ଆମର ଲକ୍ଷ୍ୟ । ତାହା ପୂର୍ବରୁ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିଷୟରେ ସାମାନ୍ୟ ସୂଚନା ଦିଆଯାଇପାରେ ।

ସଭ୍ୟତାର କ୍ରମ ବିକାଶର ଇତିହାସ ସୁଦୀର୍ଘ ହେଲେ ବି ଆଧୁନିକ ବିଜ୍ଞାନର ଇତିହାସ ମାତ୍ର ସପ୍ତଦଶ ଶତାବ୍ଦୀରୁ ଆରମ୍ଭ କହିଲେ ଅତ୍ୟୁକ୍ତି ହେବନାହିଁ । ଇଉରୋପରେ ଯେଉଁ ନବଜାଗରଣର ଯୁଗ ଆସିଲା ତାହା ପରେ ଚିନ୍ତାରାଜ୍ୟରେ ଏକ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । ଚିନ୍ତାରାଜ୍ୟରେ ଦୁଇଟି କ୍ରାନ୍ତିକାରୀ ବିଚାର ବୈଜ୍ଞାନିକ ଜ୍ଞାନର ବିକାଶ ପାଇଁ ପଥ ପ୍ରଦର୍ଶକ ହେଲା । ପ୍ରଥମତଃ ଏହି ବିଚାର ଆସିଲା ଯେ ପ୍ରକୃତିରେ ଯାହା କିଛି ଅଛି ବା ଯେଉଁ ଘଟଣା ଘଟେ ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଈଶ୍ୱରୀୟ ବା ଦୈବୀକାରଣ ନାହିଁ । ଦ୍ୱିତୀୟତଃ, ପ୍ରକୃତିର ରହସ୍ୟ, ନିୟମ ଓ ଏକରୂପତାକୁ ଆମେ ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଜନିତ ଆରୋହଣ ପଦ୍ଧତିଦ୍ୱାରା ଜାଣିପାରିବା । ଅର୍ଥାତ୍ ବସ୍ତୁନିଷ୍ଠ ଭାବରେ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ କରି ଆମେ ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିପାରିବା । ଏହି ଦୁଇଟି ସିଦ୍ଧାନ୍ତ ଆଧାରରେ ପ୍ରକୃତିର ବିଭିନ୍ନ କ୍ଷେତ୍ର ଉପରେ ଯେଉଁ ବ୍ୟାପକ ଓ ଗମ୍ଭୀର ଅନୁଶୀଳନ ହେଲା ତାହା ଦ୍ୱାରା ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଚାଲିଲା । ବୈଜ୍ଞାନିକ ଜ୍ଞାନ ଏକ ମୁକ୍ତ ଓ ସ୍ଥିରୀକୃତ ପ୍ରଣାଳୀ ମାଧ୍ୟମରେ ଉପଲବ୍ଧ ହେଉଥିବା ଯୋଗୁ ଏହା ସାର୍ବଜନୀନ ଭାବେ ସ୍ୱୀକୃତ ହେଲା । ନୂଆ ଆବିଷ୍କାର, ଉଦ୍ଭାବନ ଓ ଅନୁଶୀଳନ ବିଶାଳ ପ୍ରକୃତିର ନାନା ଦିଗନ୍ତକୁ ବୁଝିବାରେ ସାହାଯ୍ୟ କଲା । ବିଜ୍ଞାନ ପ୍ରକୃତି ବିଷୟରେ ପ୍ରଗତିଶୀଳ ଜ୍ଞାନ ଦେଇଚାଲିଲା । ବସ୍ତୁତଃ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ, ପ୍ରଗତିଶୀଳ, ବସ୍ତୁନିଷ୍ଠ, ପରୀକ୍ଷିତ, ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନ-ସାପେକ୍ଷ ଓ ସାର୍ବଜନୀନ । ବିଜ୍ଞାନ ଯେତିକି ଅଧିକରୁ ଅଧିକ ବିସ୍ତାର ଲାଭ କଲା, ବୈଜ୍ଞାନିକ ସିଦ୍ଧାନ୍ତ ଅବଲମ୍ବନରେ

ନୂଆ ନୂଆ ପ୍ରଯୁକ୍ତିର ଉଦ୍ଭବ ହେଲା । ନୂଆ ନୂଆ ପ୍ରଯୁକ୍ତିକୁ ଆଧାର କରି ଜୀବନର ବସ୍ତୁଗତ ମାନରେ ନାନା ଉନ୍ନତି ଘଟିଲା । ବିଜ୍ଞାନ ସଭ୍ୟତାର ରୂପରେଖ ପରିବର୍ତ୍ତନ କରିବାରେ ମୁଖ୍ୟ ଭୂମିକା ନେଲା ଓ ଜୀବନର ଗୁଣାତ୍ମକ ମାନ ଉନ୍ନତ କରିବାରେ ସହାୟକ ହେଲା ।

ବିଜ୍ଞାନର ବିକାଶରୁ ଧୀରେ ଧୀରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ହେଲା । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଜୀବନଦୃଷ୍ଟି । ମୁକ୍ତ ମନ, ଅନୁସନ୍ଧିତ୍ସୁ ମାନସିକତା, ବିଚାରଶୀଳତା ଓ ସତ୍ୟ ପ୍ରତି ପ୍ରତିବଦ୍ଧତା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ । ହେତୁବାଦ ଓ ମାନବବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ମୌଳିକ ନିର୍ଯ୍ୟାସ । ଏହି ପୃଷ୍ଠଭୂମିରେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଭିତରେ ପାର୍ଥକ୍ୟ କରାଯାଇପାରେ । ବିଜ୍ଞାନର ବିକାଶରୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ହୋଇଥିଲେ ମଧ୍ୟ ବିଜ୍ଞାନର ଡିଗ୍ରୀ ପ୍ରାପ୍ତ ପ୍ରତ୍ୟେକ ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯେ ପୋଷଣ କରନ୍ତି ଏହା କୁହାଯାଇପାରିବ ନାହିଁ କିମ୍ବା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ଯେ ବିଜ୍ଞାନରେ ଡିଗ୍ରୀ ପ୍ରାପ୍ତ ଏହା କୁହାଯାଇ ନପାରେ । ବିଜ୍ଞାନରେ ଡିଗ୍ରୀ ପ୍ରାପ୍ତ ବ୍ୟକ୍ତି ବ୍ୟକ୍ତିଗତ ଜୀବନରେ ଅହେତୁକ ବିଶ୍ୱାସ ରଖିପାରନ୍ତି ଓ ଏପରିକି କୁସଂସ୍କାରର ପୃଷ୍ଠପୋଷକ ହୋଇପାରନ୍ତି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ଜୀବନଦର୍ଶନ ଓ ସଂସ୍କାରିତ ଚେତନାର ପ୍ରତୀକ । ଅନ୍ଧସଂସ୍କାରରୁ ମୁକ୍ତ ରହିବା, ବୈଜ୍ଞାନିକ ପ୍ରଣାଳୀକୁ ଜ୍ଞାନଲାଭର ପ୍ରଣାଳୀ ଭାବେ ସ୍ୱୀକାର କରିବା, କୌଣସି ପୂର୍ବଧାରଣାର ବଶବର୍ତ୍ତୀ ନ ହୋଇ ମୁକ୍ତ ମନ ପୋଷଣ କରିବା, କୌଣସି ଧର୍ମଗ୍ରନ୍ଥର ବାଣୀକୁ ଶାଶ୍ୱତ ବା ଅଭ୍ରାନ୍ତ ବୋଲି ସ୍ୱୀକାର ନ କରି ତାହାକୁ ସତ୍ୟର କଷଟିରେ ପରୀକ୍ଷା କରିବା ହେଉଛି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ ।

ଆଧୁନିକ ବିଜ୍ଞାନର ଜନ୍ମକାଳଠାରୁ ଏହି ତିନି ଶହ ବର୍ଷ ଭିତରେ ବିଜ୍ଞାନର ଯେଉଁ ଅଭୂତପୂର୍ବ ବିକାଶ ହୋଇଛି, ତାହାଦ୍ୱାରା ସଭ୍ୟତାର ରୂପରେଖ ବଦଳି ଯାଇଛି । ବିଜ୍ଞାନ ହିଁ ବିକାଶର ମାପକାଠି ହୋଇଛି । ଯେଉଁ ରାଷ୍ଟ୍ର ସକଳ ବିଜ୍ଞାନ ଓ ନୂଆ ନୂଆ ପ୍ରଯୁକ୍ତିର ଉପଭୋଗ କରିଛନ୍ତି ସେମାନେ ବିକଶିତ ହୋଇଛନ୍ତି । ଯେଉଁଠି ଏହା ଆଶାନୁରୂପ ସମ୍ଭବ ହୋଇ ନାହିଁ ସେହି ରାଷ୍ଟ୍ର ସକଳ ଅନଗ୍ରସର ହୋଇ ରହିଛନ୍ତି । ସେହିପରି ଯେଉଁ ସାମାଜିକ ଜୀବନ ପ୍ରବାହରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରଭାବ

ଯେତେ ଅଧିକ ହୋଇଛି, ସେଠାରେ ଜନଗଣଙ୍କର ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହୋଇଛି । ଅଥଚ ଯେଉଁଠି ବୈଜ୍ଞାନିକ ମାନସିକତାର ବିଶେଷ ପ୍ରସାର ହୋଇନାହିଁ ସେଠିକାର ସାମାଜିକ ଜୀବନରେ ନାନା କୁସଂସ୍କାର, ଆଧାରହୀନ ବିଶ୍ୱାସ ଓ ପାରଲୌକିକ ଦୃଷ୍ଟିଭଙ୍ଗୀର ପ୍ରାବଲ୍ୟ ରହିଛି । ମୋଟ ଉପରେ ଆଧୁନିକ ଜୀବନ ପ୍ରବାହ ଓ ମାନବବାଦୀ ସଂସ୍କୃତିର ବିକାଶ କ୍ଷେତ୍ରରେ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ନିର୍ଣ୍ଣାୟକ ଗୁରୁତ୍ୱ ରହିବା ଅନସ୍ୱୀକାର୍ଯ୍ୟ ।

ସାଧାରଣତଃ ଏହିପରି ଏକ ବିଶ୍ୱାସଦ୍ୱାରା ଆମେ ପରିଚାଳିତ ହୋଇଥାଉ ଯେ ବିଜ୍ଞାନ ଏକ ଜଟିଳ ବିଷୟ ଓ ଜଣେ ସାଧାରଣ ମଣିଷ ନିଜର ବିଚାରବୋଧରେ ଏହାକୁ ବୁଝିବା ସମ୍ଭବ ନୁହେଁ । କିନ୍ତୁ ଏହି ଭାବନାକୁ ବଦଳାଇବାରେ ବିନୋଦ ଓଡିଶାରେ ପଥପ୍ରଦର୍ଶକ ହୋଇପାରିଛନ୍ତି, ପୁନଶ୍ଚ ଗୋଟିଏ ସମୟରେ ଏହି ପ୍ରକାର ଏକ ବିଶ୍ୱାସ ବିଜ୍ଞାନୀ ଓ ଶିକ୍ଷିତ ମହଲରେ ଥିଲା ଯେ 'ଓଡିଆ ଭାଷା' ବିଜ୍ଞାନର ଚର୍ଚ୍ଚା ପାଇଁ ଅନୁକୂଳ ନୁହେଁ । ବିଜ୍ଞାନର ବିଷୟ ସକଳକୁ ଓଡିଆରେ ଲେଖିବା ସମ୍ଭବ ନୁହେଁ କାରଣ ସେହି ପ୍ରକାରର  ପରିଭାଷା ଆମର ନାହିଁ ତଥା ବିଜ୍ଞାନର ଜଟିଳ ବିଷୟକୁ ଓଡିଆରେ ଲେଖିଲେ ତାହା ବୋଧଗମ୍ୟ ହେବନାହିଁ । ଏହି ବିଚାରକୁ ବଦଳାଇବାରେ ଯେଉଁମାନେ ପ୍ରୟାସ କରିଛନ୍ତି ସେମାନଙ୍କ ମଧ୍ୟରେ ବିନୋଦ ଏକ ଅଗ୍ରଣୀ ବ୍ୟକ୍ତିତ୍ୱ । ଜ୍ଞାନ ମଣ୍ଡଳରେ ସେ ବହୁ ଜଟିଳ ବୈଜ୍ଞାନିକ ତତ୍ତ୍ୱ ଗୁଡିକୁ ଯେପରି ସାବଲୀଳ ଭାଷାରେ ବ୍ୟାଖ୍ୟା କରିଛନ୍ତି ତାହା ପଢ଼ିଲେ ଓଡିଆ ଭାଷାରେ ବିଜ୍ଞାନ ଲେଖିବା ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ। ସେହିପରି କିଶୋର ଛାତ୍ର ଛାତ୍ରୀ ମାନଙ୍କୁ କାହାଣୀ  ମାଧ୍ୟମରେ ସେ ଯେପରି ବିଜ୍ଞାନର ଜଟିଳ ଭାବନାକୁ ବୁଝାଇଛନ୍ତି ତାହା ମଧ୍ୟ ତାଙ୍କ ପରି ଜଣେ ସୃଜନଶୀଳ ବିନ୍ଧାଣୀଙ୍କର କରାମତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏତଦ୍ ବ୍ୟତୀତ ବିଜ୍ଞାନର କୌଣସି ବିଷୟକୁ ବୁଝାଇବାକୁ ଯାଇ ସେ ଯେପରି ବହିମାନଙ୍କର ନାମକରଣ କରିଛନ୍ତି ତାହା ମଧ୍ୟ ତାଙ୍କ ବୌଦ୍ଧିକ ଅବବୋଧ ଓ ସ୍ୱଚ୍ଛତାର ସ୍ୱାକ୍ଷର ବହନ କରେ ।

ଜ୍ଞାନମଣ୍ଡଳକୁ ଷାଠିଏ ଖଣ୍ଡରେ ସମାପ୍ତ କରିବାକୁ ଯୋଜନା କରିଥିବା ବିନୋଦ ଜୀବନ କାଳରେ ଚାଳିଶ ଖଣ୍ଡ ଲେଖି ପ୍ରକାଶ କରିପାରିଛନ୍ତି । 'ଅ' ଠାରୁ 'ଜ' ପର୍ଯ୍ୟନ୍ତ ଲେଖା ପ୍ରକାଶିତ ହୋଇଛି । ଅବଶିଷ୍ଟ ଖଣ୍ଡ ଗୁଡିକର ତଥ୍ୟ ସେ ସାଇତି

ରଖିଥିଲେ ବି ସେ ଗୁଡିକ ଲେଖି ପ୍ରକାଶ କରିବାକୁ ମହାକାଳ ତାଙ୍କୁ ସୁଯୋଗ ଦେଇ ନାହିଁ। ଆଉ କିଛି ବର୍ଷ ବଞ୍ôଥିଲେ ସେ ଏହି କାର୍ଯ୍ୟ ସମାପ୍ତ କରିପାରିଥାନ୍ତେ । ତେବେ ଏକକ ଉଦ୍ୟମରେ ଏପରି ଏକ ଅସାଧାରଣ କାର୍ଯ୍ୟ କରିବା ତାଙ୍କ ଅନନ୍ୟ ପ୍ରତିଭାର ପରିଚୟ ଦିଏ । ବିଶେଷକରି ବିଜ୍ଞାନର ଅନେକ ଜଟିଳ ଓ ବୈଷୟିକ ଭାବନାକୁ ସେ ସୁନ୍ଦର ଭାବରେ ଜଣେ ସାଧାରଣ ପାଠକର ବୋଧଗମ୍ୟ ହେବା ଭଳି ଭାଷାରେ ବୁଝାଇବାକୁ ପ୍ରୟାସ କରିଛନ୍ତି । ସେ ବିଜ୍ଞାନର ଛାତ୍ର ନଥିଲେ କିମ୍ବା ବିଜ୍ଞାନର କୌଣସି କ୍ଷେତ୍ର ଉପରେ ଗବେଷଣା କରି ନଥିଲେ । ବରଂ ବିଜ୍ଞାନର ଯେତେ ଯେତେ ବିଭାଗ ରହିଛି ସେ ଅଧିକାଂଶ ବିଭାଗ ଉପରେ ପଢ଼ିଥିଲେ ଓ ସାଧାରଣ ଜ୍ଞାନ ରଖିଥିଲେ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଭୂତତ୍ତ୍ୱବିଜ୍ଞାନ, ପ୍ରାଣୀ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ଶରୀର ବିଜ୍ଞାନ ଇତ୍ୟାଦି ବିଜ୍ଞାନର ବହୁ ଦିଗ ଉପରେ ସେ ଅଧ୍ୟୟନ କରିଛନ୍ତି । ବିଜ୍ଞାନର ଯେତେ ଯେତେ ଶାଖା ଓ ଦିଗନ୍ତମାନ ରହିଛି ଅଧିକାଂଶ ବିଷୟରେ ସାଧାରଣ ଜ୍ଞାନକୁ ସେ ଓଡିଆରେ ଅତି ପ୍ରାଞ୍ଜଳ ଓ ସାବଲୀଳ ଭାବେ ବୁଝାଇବାକୁ ପ୍ରୟାସ କରିଛନ୍ତି । ନିଜସ୍ୱ ଅଧ୍ୟୟନ ଓ ବୋଧଗମ୍ୟତାକୁ ଆଧାର କରି ସାଧାରଣ ପାଠକଟିଏ ବୁଝିବା ପାଇଁ ସେ ତାହାକୁ ସରଳ ଭାବରେ ପରିବେଷଣ କରିଛନ୍ତି ।

ପ୍ରକାଶିତ ହୋଇଥିବା ୪୦ଖଣ୍ଡ ଜ୍ଞାନମଣ୍ଡଳରେ ପାଖାପାଖି ୩୪୦୦ ବିଷୟ ଉପରେ ସେ ଲେଖିଛନ୍ତି । ଏହି ୩୪୦୦ ବିଷୟ ମଧ୍ୟରୁ ବିଜ୍ଞାନ ଭିତ୍ତିକ ବିଷୟ ପ୍ରାୟ ୧୫୦ ହେବ । ବିଜ୍ଞାନଭିତ୍ତିକ ବିଷୟଗୁଡିକ ପଦାର୍ଥ ବିଜ୍ଞାନ ଠାରୁ ଚିକିତ୍ସା ବିଜ୍ଞାନ ପର୍ଯ୍ୟନ୍ତ, ଭୂତତ୍ତ୍ୱବିଜ୍ଞାନଠାରୁ ପ୍ରାଣୀ ବିଜ୍ଞାନ ପର୍ଯ୍ୟନ୍ତ ବିଜ୍ଞାନର ବିଭିନ୍ନ କ୍ଷେତ୍ର ଉପରେ ବିସ୍ତୃତ । ଉଦାହରଣ ସ୍ୱରୂପ ଅଟୋମେସନ, ଅଟୋ ମୋବାଇଲ, ଅଣୁ-ପରମାଣୁ, ଆପେକ୍ଷିକ ତତ୍ତ୍ୱ, ଇଲେକ୍‌ଟ୍ରନ୍ , ଇଲେକ୍‌ଟ୍ରୋନିକ୍ସ, କ୍ୱାଣ୍ଟମତତ୍ତ୍ୱ, ପଦାର୍ଥବିଜ୍ଞାନ ବିଷୟକୁ ଯେପରି ବ୍ୟାଖ୍ୟା କରିଛନ୍ତି ସେହିପରି ଅଣୁବିକ୍ଷଣ, ଅନ୍ତରୀକ୍ଷ, ଆପୋଲ, କଂପୁଟର ଇତ୍ୟାଦି ବିଷୟକୁ ମଧ୍ୟ ସରଳ ଭାବରେ ବୁଝାଇଛନ୍ତି । ଅତିସାର (ଡାୟରିଆ), ଅନିଦ୍ରା, ଅନ୍ତ, ଅପରେସନ, ଅର୍ଶ, ଆପେଣ୍ଡିସାଇଟିସ୍, ଇନସୁଲିନ, ଇସିଜି, ରକ୍ତ, ହୃତପିଣ୍ଡ, କୃମି, ଅଗ୍ନିମାନ୍ଦ୍ୟ ଇତ୍ୟାଦି ଚିକିତ୍ସା ବିଜ୍ଞାନର ବିଷୟକୁ ଯେପରି ବ୍ୟାଖ୍ୟା କରିଛନ୍ତି ସେହିପରି ଆମିନୋ ଏସିଡ, ଆମୋନିଆ, ଆୟୋଡିନ, ଆଲକେମୀ, ଜଳ, ଅଙ୍ଗାର, ଅଲୁମିନିୟମ ଇତ୍ୟାଦି ରସାୟନ ବିଜ୍ଞାନର ବିଷୟ

ବସ୍ତୁକୁ ସୁନ୍ଦର ବିଶ୍ଳେଷଣ କରିଛନ୍ତି । ପ୍ରାଣୀବିଜ୍ଞାନର ବିଷୟ କୁକୁଡା, କୁକୁର, କୀଟ-ପତଙ୍ଗ, କୁମ୍ଭୀର, ଅକ୍ଟୋପସ, ଅଜଗର, ଇଗଲ ଇତ୍ୟାଦି ଜୀବ ମାନଙ୍କର ଜୀବନ ବୃତ୍ତାନ୍ତ ବିଷୟରେ ବିଭିନ୍ନ ବୈଜ୍ଞାନିକ ତଥ୍ୟର ଅବତାରଣା କରିଛନ୍ତି । ବିଜ୍ଞାନକୁ ଯୁଗାନ୍ତକାରୀ ଅବଦାନ ଦେଇଥିବା ଅନେକ ବୈଜ୍ଞାନିକ ମାନଙ୍କର ଜୀବନୀ, ଗବେଷଣା ଓ ଅବଦାନର ସୂଚନା ମଧ୍ୟ ପ୍ରଦାନ କରିଛନ୍ତି । କେତେକ ଖଣ୍ଡରେ ସ୍ୱତନ୍ତ୍ର ପ୍ରବନ୍ଧମାନ ଲେଖି ନାନା ତଥ୍ୟର ଅବତାରଣା କରିଛନ୍ତି । ଏ ସଂପର୍କରେ ଏଠାରେ ସାମାନ୍ୟ କେତୋଟି ଉଦାହରଣ ଦିଆଯାଇପାରେ। ୨୯ ତମ ଖଣ୍ଡରେ ଥିବା ସ୍ୱତନ୍ତ୍ର ପ୍ରବନ୍ଧ "ମାନବ ସଭ୍ୟତାର ଜନ୍ମ", ୩୧ ତମ ଖଣ୍ଡରେ ଥିବା ସ୍ୱତନ୍ତ୍ର ପ୍ରବନ୍ଧ "ଭାଷା", ୩୭ ତମ ଖଣ୍ଡରେ ଥିବା ସ୍ୱତନ୍ତ୍ର ପ୍ରବନ୍ଧ "ଅସରନ୍ତି ସମ୍ପଦର ଗନ୍ତାଘର... ସାଗର ମହାସାଗର" ଅତ୍ୟନ୍ତ ତଥ୍ୟ ସମ୍ବଳିତ ଓ ଭାବୋଦ୍ଦୀପକ । ସାଗର ମହାସାଗରର ପ୍ରବନ୍ଧରେ ପୃଥିବୀରେ ଥିବା ୬୬ଟି ସାଗରର ବର୍ଣ୍ଣନା, ସେମାନଙ୍କର ଭୌଗୋଳିକ ସ୍ଥିତି, ସମ୍ଭାବ୍ୟ ଉତ୍ପତ୍ତିକାଳ, ସେଥିରେ ଥିବା ଜଳ ସମ୍ପଦର ପରିମାଣ ବିଷୟରେ ବହୁ ତଥ୍ୟର ଉପାଦାନ ରହିଛି । ସମୁଦ୍ରଦ୍ୱାରା ଜୀବ ଜଗତର କ'ଣ ଉପକାର ହୁଏ ଓ ସମୁଦ୍ର କିପରି ପୃଥିବୀର ତାପକୁ ସମାନ ସ୍ତରରେ ରଖେ ତାହାର ବୈଜ୍ଞାନିକ ଆଧାର ଗୁଡିକ ଉପରେ ତଥ୍ୟ ସମ୍ବଳିତ ଟିପ୍‌ପଣୀ ଉଲ୍ଲେଖ କରିଛନ୍ତି । ସେହିପରି ଭାଷା ପ୍ରବନ୍ଧଟି ଉପରେ ୪୫ ପୃଷ୍ଠା ଲେଖି ମଣିଷ କିପରି ଭାଷା କହିବା ଆରମ୍ଭ କଲା, ପୃଥିବୀରେ କିପରି ହଜାର ହଜାର ଭାଷା ସୃଷ୍ଟି ହୋଇଛି, ଭାଷାମାନଙ୍କର ଉତ୍ପତ୍ତି ଓ କ୍ରମବିକାଶର ଇତିହାସର ବେଶ୍ ମାର୍ମିକ ବର୍ଣ୍ଣନା କରିଛନ୍ତି । 'ମାନବ ସଭ୍ୟତାର ଜନ୍ମ' ପ୍ରବନ୍ଧରେ ସଭ୍ୟତାର ଉତ୍ପତ୍ତି, ସ୍ୱରୂପ, ଲକ୍ଷଣ, କ୍ରମ ବିକାଶର ଚିତ୍ର ବିଷୟରେ ତାତ୍ତ୍ୱିକ ବିଶ୍ଳେଷଣ କରିଛନ୍ତି । ପୃଥିବୀରେ ବିକାଶ ଲାଭ କରିଥିବା ୧୯ଟି ସଭ୍ୟତାର କାହାଣୀ ବର୍ଣ୍ଣନା ଦେଇଛନ୍ତି । ୨୩ତମ ଖଣ୍ଡରେ "କୃଷି" ଉପରେ ୪୬ପୃଷ୍ଠାର ପ୍ରବନ୍ଧ ଲେଖି କୃଷିର ଆରମ୍ଭ ସମୟ, ସଭ୍ୟତାର ବିକାଶରେ କୃଷିର ମହତ୍ତ୍ୱ, କୃଷି ପ୍ରଣାଳୀ, କୃଷିର ଉନ୍ନତି ସାଧନ, କୃଷି ଯନ୍ତ୍ରପାତିର ବ୍ୟାଖ୍ୟା କରିଛନ୍ତି ।

ଏତଦ୍‌ବ୍ୟତୀତ ବହୁ ଐତିହାସିକ ଘଟଣା, ଇତିହାସର ପ୍ରସିଦ୍ଧ ବ୍ୟକ୍ତି, ବିଭିନ୍ନ ଦେଶର ବର୍ଣ୍ଣନା, ଭୌଗୋଳିକ ପରିବେଶ, ଦାର୍ଶନିକ ତତ୍ତ୍ୱ, ବିଭିନ୍ନ ସିଦ୍ଧାନ୍ତ ବା ବାଦର ବିଶ୍ଳେଷଣ ଯଥା ସ୍ଥାନରେ କରିଛନ୍ତି । ୩୯ତମ ଖଣ୍ଡରେ ୧୮୬ଟି ରାଷ୍ଟ୍ରର ବିବରଣୀ ଦେଇଛନ୍ତି । କେଉଁ ଦେଶର କ୍ଷେତ୍ରଫଳ କେତେ, ତାର ଜନସଂଖ୍ୟା,

ଶାସନ ବ୍ୟବସ୍ଥା, ପ୍ରତିରକ୍ଷା, ସାକ୍ଷରତା, ମୁଣ୍ଡପିଛା ଆୟ ଇତ୍ୟାଦିର ବର୍ଣ୍ଣନା ପ୍ରଦାନ କରିଛନ୍ତି । ବିଶେଷକରି ଚିକିତ୍ସା ବିଜ୍ଞାନ ଓ ଶରୀର ବିଜ୍ଞାନ ବିଷୟରେ ତାଙ୍କର ଆଲୋଚନା ବହୁ ତୃଥ୍ୟ ସମ୍ୱଳିତ ଓ ସୁବ୍ୟବସ୍ଥିତ ମନେହୁଏ । ୨୨ତମ ଖଣ୍ଡରେ ସେ ରକ୍ତ ବିଷୟରେ ଯେଉଁ ଦୀର୍ଘ ପ୍ରବନ୍ଧଟି ଲେଖିଛନ୍ତି ସେଥିରେ ରକ୍ତ, ରକ୍ତକଣିକା, ରକ୍ତର ଗଠନ, ରକ୍ତଶୂନ୍ୟତା, ରକ୍ତ ଦେବା ନେବା (ବ୍ଲଡ ଟ୍ରାନସଫିଉଜନ), ରକ୍ତପରୀକ୍ଷା ଇତ୍ୟାଦି ବିଷୟ ଗୁଡିକୁ ପ୍ରାଂଜଳ ଭାବରେ ବ୍ୟାଖ୍ୟା କରିଛନ୍ତି । ୨୧ତମ ଖଣ୍ଡରେ 'ମାନବ ଶରୀରର ସ୍ନାୟୁ ସଂସ୍ଥା' ବିଷୟରେ ୨୪ପୃଷ୍ଠାର ଏକ ଦୀର୍ଘ ପ୍ରବନ୍ଧ ଲେଖିଛନ୍ତି । ସ୍ନାୟୁ ବ୍ୟବସ୍ଥା ଶରୀରରେ କ'ଣ କାର୍ଯ୍ୟକରେ, ସ୍ନାୟବିକ ରୋଗର ଦୁର୍ବଳତାର ବି ବୈଜ୍ଞାନିକ ତଥ୍ୟ ସମ୍ୱଳିତ ବିଶ୍ଳେଷଣ କରିଛନ୍ତି । ଚତୁର୍ଥଖଣ୍ଡରେ ଅପରେସନ ଉପରେ ୨୮ପୃଷ୍ଠାର ପ୍ରବନ୍ଧରେ ଅସ୍ତ୍ରୋପଚାର ବା ଶଲ୍ୟ ଚିକିତ୍ସା କ'ଣ, ଏହା କେବେ ଆରମ୍ଭ ହେଲା, ଏଥିରେ କିପରି ଉନ୍ନତି ବିଧାନ ହୋଇଛି ଓ ଏହାଦ୍ୱାରା ମଣିଷର କ'ଣ ଉପକାର ହେଉଛି ଇତ୍ୟାଦିର ବିଶଦ ବର୍ଣ୍ଣନା କରିଛନ୍ତି ।

ପ୍ରତ୍ୟେକଟି ବିଷୟର ବ୍ୟାଖ୍ୟା କଲାବେଳେ ସେ ସର୍ବଦା ବୈଜ୍ଞାନିକ ପଦ୍ଧତିକୁ ଗୁରୁତ୍ୱ ଦେଇଛନ୍ତି । ବୈଜ୍ଞାନିକ ଜ୍ଞାନ ଯେପରି ତଥ୍ୟଭିତ୍ତିକ, ପରୀକ୍ଷିତ, ନିୟମ ଆଧାରିତ ଓ ନିର୍ଭରଯୋଗ୍ୟ ସେ ସେହି ପଦ୍ଧତିରେ ବିଷୟମାନଙ୍କର ବିଶ୍ଳେଷଣ କରିବାକୁ ପ୍ରୟାସ କରିଛନ୍ତି । ଗୋଟିଏ ବିଷୟ ତଥ୍ୟ ଦୃଷ୍ଟିରୁ ନିର୍ଭୁଲ ଓ ବ୍ୟାଖ୍ୟା ଦୃଷ୍ଟିରୁ ଯେପରି ସ୍ପଷ୍ଟ ହୁଏ ସେ ପ୍ରତି ସେ ଯଥେଷ୍ଟ ଧ୍ୟାନ ଦେଇଥିବା ମନେହୁଏ ।

ବିନୋଦ ଜ୍ଞାନମଣ୍ଡଳ ଓ ଶିଶୁ ଜ୍ଞାନମଣ୍ଡଳ ବ୍ୟତୀତ ଶିଶୁମାନଙ୍କ ମନଛୁଆଁ ଯେଉଁ ବିଜ୍ଞାନ ବହି ଗୁଡିକ ଲେଖିଛନ୍ତି ତାହା ସବୁ ଶ୍ରେଣୀର ପାଠକଙ୍କ ପାଇଁ ମଧ୍ୟ ବେଶ୍ ଉପାଦେୟ । ଏକ କାହାଣୀ ମାଧ୍ୟମରେ ବିଜ୍ଞାନର ଏକ ଜଟିଳ ବିଷୟକୁ ଏପରି ସରଳ, ସାବଲୀଳ ଓ ସୁଖପାଠ୍ୟ କରାଯାଇପାରେ ତାହା ତାଙ୍କ ପରି ଜଣେ ସୃଜନଶୀଳ ସ୍ରଷ୍ଟାଙ୍କ ଦ୍ୱାରା ସମ୍ଭବ । ସ୍ୱାଧୀନତା ପରେ ଓଡିଶାର କେତେକ ବିଜ୍ଞାନପ୍ରେମୀ ଲେଖକ କିଛି ବିଜ୍ଞାନଭିତ୍ତିକ ସାହିତ୍ୟ ସୃଷ୍ଟି କରିବାର ଏକ ଧାରା ସୃଷ୍ଟି କରିଥିଲେ ବି ବିନୋଦ ଶିଶୁ-ବିଜ୍ଞାନ ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଓଡିଶାର ପାଠକମାନଙ୍କ ପାଇଁ ଏକ ପଥପ୍ରଦର୍ଶକ ହୋଇଛନ୍ତି । ଜଣେ ପାଠକ ମନରେ ଜିଜ୍ଞାସାବୋଧ, କୌତୂହଳତା ସୃଷ୍ଟି କରିବାରେ ସେ ଅନନ୍ୟ ମନେହୁଅନ୍ତି । ଏହା ସହିତ ଜଟିଳ ବିଷୟକୁ ବୁଝାଇବାକୁ

ଯାଇ ବହିର ଶିରୋନାମା ସେ ଯେପରି ବାଛନ୍ତି ତାହା ତାଙ୍କ ସୃଜନ-ସାମର୍ଥ୍ୟର ପରିଚୟ ଦିଏ । ସ୍କୁଲ ଛାତ୍ରଟିଏ ବୁଝିବା ପାଇଁ ସରଳ ଓ ମନଲାଖି ଭାଷା, ସୁନ୍ଦର ଓ ଅର୍ଥପୂର୍ଣ୍ଣ ଚିତ୍ର ତଥା ସାବଲୀଳ ଅଭିବ୍ୟକ୍ତି ତାଙ୍କ ଲେଖାର ବୈଶିଷ୍ଟ୍ୟ । ପିଲାମାନେ ହୁଅନ୍ତୁ ବା ଜଣେ ସାଧାରଣ ସାକ୍ଷର ବ୍ୟକ୍ତି ହୁଅନ୍ତୁ ଜ୍ଞାନ-ବିଜ୍ଞାନ କ୍ଷେତ୍ରକୁ କିପରି ଜଣେ ପ୍ରବେଶ କରିପାରିବ ତାହାକୁ ଆଖିରେ ରଖି ସେ ବିଜ୍ଞାନର ଜଟିଳ ବିଷୟକୁ ସରଳ କରିଛନ୍ତି ଓ ସେଥିରେ ଯଥେଷ୍ଟ ସଫଳତା ହାସଲ କରିଛନ୍ତି । ଏହି କ୍ଷେତ୍ରରେ ସେ ଯେଉଁ ବହିଗୁଡିକ ଲେଖିଛନ୍ତି ସେଗୁଡିକୁ କେତେକ ଅନୁସୃତ ବିଜ୍ଞାନର ଧାରା ଆଧାରରେ ବିଭକ୍ତ କରାଯାଇପାରେ । ସେଗୁଡିକୁ ସାଧାରଣତଃ ଶରୀର-ବିଜ୍ଞାନ, ପଦାର୍ଥ-ବିଜ୍ଞାନ, ରସାୟନ ବିଜ୍ଞାନ, ପ୍ରାଣୀବିଜ୍ଞାନ ପରିସରରେ ଅନ୍ତର୍ଭୁକ୍ତ ବୋଲି କୁହାଯାଇପାରେ । ଏତଦ୍‌ବ୍ୟତୀତ ମାଛଚାଷ, ମହୁଚାଷ, ଗୋପାଳନ ଉପରେ ଶିକ୍ଷଣୀୟ ପୁସ୍ତକ ମାନ ରଚନା କରିଛନ୍ତି । ପବନ, ମାପ ଓ ଓଜନ, ବାଡି ବଗିଚାର ଔଷଧଗଛ ବିଷୟରେ ତଥ୍ୟଭିତ୍ତିକ ପୁସ୍ତକ ବି ଲେଖିଛନ୍ତି । ଶରୀରବିଜ୍ଞାନ ସମ୍ବନ୍ଧିତ କେତେକ ବହି ହେଲା-ରକ୍ତ ସଞ୍ଚାଳନ ଜନିତ ବହିର ନାମ "ଚଳନ୍ତା ରାଇଜର ଅମୁହାଁ ନଈ", ଆମ ଶରୀରର ପରିପାକ କ୍ରିୟାକୁ ବୁଝାଇବାକୁ ଲେଖିଛନ୍ତି "ଜୀବନ ତିଆରି କାରଖାନା", ଶରୀରର ମୌଳିକ ସୂକ୍ଷ୍ମାଂଶ ଜୀବକୋଷ ସଂପର୍କିତ ବହିର ନାମ "ଡାକିଲେ ଜବାବ ଦିଅନ୍ତା କି" ଶରୀରର ଯକୃତ ଅଂଶଟିକୁ ବୁଝାଇବା ପାଇଁ ଲିଖିତ ବହିର ନାମ " ମା ଭଳି ମେସିନ ଟିଏ", ଦେହର ମାଂସ-ପେଶୀ ଓ ଅସ୍ଥି ଜନିତ ବହିର ନାମ "ଦୁଇ ଶହ ଗାଡିକୁ ଛ ଶହ ଇଂଜିନ", ପୁଷ୍ଟିବିଜ୍ଞାନ ଜନିତ ବହିର ନାମ "ପେଟେ ଖାଇଲେ ବି ଉପାସ", ମସ୍ତିଷ୍କର କାର୍ଯ୍ୟ ଓ ଗଠନ ଜନିତ ବହିର ନାମ "ସବୁ ଚାବି ଧରାଇ ଦେଲି", ଦାନ୍ତ ସଂପର୍କିତ ପୁସ୍ତକର ନାମ "ସ୍ୱାସ୍ଥ୍ୟ ଦୁର୍ଗର ବତିଶ ପ୍ରହରୀ" । ସେହିପରି ତାଙ୍କର ଆଉ କେତୋଟି ସୁଖପାଠ୍ୟ ଓ ଚିତ୍ତାକର୍ଷକ ବିଜ୍ଞାନଭିତ୍ତିକ ବହିର ନାମ ଏଠାରେ ଉଲ୍ଲେଖ କରାଯାଇପାରେ । ଉଦ୍ଭିଦମାନଙ୍କ ମଧ୍ୟରେ ସଂଘଟିତ ହେଉଥିବା ଆଲୋକ ସଂଶ୍ଳେଷଣ ଜନିତ ରାସାୟନିକ କ୍ରିୟା ପରି ଏକ ଜଟିଳ ଧାରଣାକୁ ସରଳ କରିବାକୁ ଲେଖିନ୍ତି "ଅଙ୍କେ କଳି ତୁଟିଗଲା", କୃଷି ଉତ୍ପାଦନ ଜନିତ ବହିର ନାମ "ଗୋଟିଏ କେମିତି କୋଟିଏ ହେଲା" ମହୁ ସଂଗ୍ରହ ଜନିତ ପୁସ୍ତକର ନାମ "ମିଠାଇ ଦେହରେ ଲାଗିଲା ଡେଣା", ଜୈବ ବିବର୍ତ୍ତନ ଜନିତ ବହିର ନାମ "ଏଣିକି ମୁଁ ମଣିଷ ଗଢ଼ିବି", ବୃହତକାୟ ପ୍ରାଣୀ ତିମିର ପ୍ରକାରଭେଦ ଓ ଜୀବନଚକ୍ର ବିଷୟକୁ ବୁଝାଇବା

ପାଇଁ ବହିର ନାମ "ମୋଭଳି ସିନା ମୁଁ" ମଧ୍ୟ ବେଶ୍ ସୁଖପାଠ୍ୟ । ସେହିପରି ବିଶ୍ୱରେ ଥିବା ମୌଳିକ ବସ୍ତୁର ମୂଳାଧାର ନିଉଟ୍ରନ, ପ୍ରୋଟନ, ଇଲେକଟ୍ରନ୍ ବିଷୟକୁ ବୁଝାଇବାକୁ ବହିର ନାମ "ତିନିଖଣ୍ଡ କାଉଁରୀହାଡ଼", ସକଳ ଶକ୍ତିର ଆଧାର ସୂର୍ଯ୍ୟଙ୍କ ସପର୍କିତ ବହିର ନାମ "ସେ ଚୁଲି କେବେ ଲିଭିବ ନାହିଁ", ସଭ୍ୟତାର ଅଗ୍ରଗତିରେ ନିଆଁ ବିଷୟକ ବହିର ନାମ "ଛାତିକୁ ପଥର କରି", ଜଳଚକ୍ର ବିଷୟକୁ ବୁଝାଇବାକୁ ଲିଖିତ ବହିର ନାମ "ଚକ ବୁଲୁଥାଏ, ଚକ ବୁଲୁଥାଏ", ମହାକାଶ ଯାତ୍ରା ବିଷୟକୁ ବୁଝାଇବାକୁ ଲେଖିଛନ୍ତି "ମା ବୋଲ ସିଏ ମାନିଲା ନାହିଁ" ବହିଗୁଡ଼ିକ ଉଲ୍ଲେଖଯୋଗ୍ୟ । ଉଲ୍ଲିଖିତ ଏ ପ୍ରତ୍ୟେକଟି ବହି ଗୋଟିଏ କାହାଣୀକୁ ଆଧାର କରି ଲେଖାଯାଇଛି । ପିଲାମାନଙ୍କୁ ବିଷୟଟିକୁ ଗପ ଛଳରେ ଜଣେ ବୁଝାଉଛନ୍ତି, ପିଲାଙ୍କ ପ୍ରଶ୍ନର ଉତ୍ତର ଦେଉଛନ୍ତି ଓ ପିଲାଙ୍କ ଭିତରେ ଏ ପ୍ରସଙ୍ଗ ଉପରେ କୌତୂହଳତା ସୃଷ୍ଟି କରୁଛନ୍ତି । ଏ ପ୍ରତ୍ୟେକଟି ବହିରେ ସଂପୃକ୍ତ ପ୍ରସଙ୍ଗଟି ଉପରେ ତଥ୍ୟ ଅଛି ଓ ସାଧାରଣ ବ୍ୟକ୍ତିର କୌତୂହଳତାକୁ ଦୂର କରିବାକୁ ଆବଶ୍ୟକୀୟ ବିଷୟ ଓ ସ୍ପଷ୍ଟତା ରହିଛି । ଏହି ପୃଷ୍ଠଭୂମିରେ ଦୃଷ୍ଟାନ୍ତ ସ୍ୱରୂପ ୩ଟି ବହିର ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ଆମ ଦେହରେ ଥିବା ହାଡ ଓ ମାଂସପେଶୀର କାର୍ଯ୍ୟକୁ ବୁଝାଇବାକୁ ସେ ଲେଖିଛନ୍ତି "ଦୁଇଶହ ଗାଡିକୁ ଛ'ଶହ ଇଂଜିନ" । ଗାଡିକୁ ଯେପରି ଇଂଜିନ ଟାଣେ, ସେହିପରି ଆମ ଶରୀରରେ ଥିବା ଅସ୍ଥି ଗୁଡିକର ପରିଚାଳନା ପାଇଁ କିପରି ମାଂସପେଶୀ ଗୁଡିକ କାର୍ଯ୍ୟକରେ ତାହାକୁ ସେ କାହାଣୀ ମାଧମରେ ବୁଝାଇଛନ୍ତି । ଦେହର ମାଂସପେଶୀ ଯୋଗୁଁ ଜଣେ ଚାଲିପାରୁଛି, ଦୌଡି ପାରୁଛି, ଗଛରେ ଚଢ଼ିପାରୁଛି, ପାଣିରେ ପହଁରି ପାରୁଛି, ହାତରେ କାର୍ଯ୍ୟ କରୁଛି ଇତ୍ୟାଦି ଇତ୍ୟାଦି । ମୁହଁରେ ଥିବା ମାଂସପେଶୀ ଯୋଗୁ ଜଣେ ହସିପାରେ, କାନ୍ଦିପାରେ, ବିରକ୍ତି ପ୍ରକାଶ କରିପାରେ ବା ନିଜର ପସନ୍ଦ ବ୍ୟକ୍ତ କରିପାରେ । ଶରୀରର ପରିପାକ ବ୍ୟବସ୍ଥାକୁ ବୁଝାଇବାକୁ ସେ ଲେଖିଛନ୍ତି "ଜୀବନ ତିଆରି କାରଖାନା" । ଆମେ ଯାହା ଖାଦ୍ୟ ଖାଉ ତାହା କଞ୍ଚାମାଲ ଭାବେ କାରଖାନା ଭିତରେ ପଶି ସେଠାରୁ ପାଗ ହୋଇ ଦରକାରୀ ବସ୍ତୁ ହୋଇ ବାହାରେ ଓ ସେହି ସାର-ବସ୍ତୁ ରକ୍ତରେ ମିଶେ ଓ ରକ୍ତ ସବୁ ଆଡକୁ ଯାଇ ମଣିଷକୁ ଶକ୍ତି ଯୋଗାଏ । ରକ୍ତ ମାଂସପେଶୀକୁ ଗଲାପରେ ମାଂସପେଶୀ ତାକୁ ଜାଳେଣି ରୂପେ ବ୍ୟବହାର କରେ । ଶରୀର ଶ୍ରମଦ୍ୱାରା ମାଂସପେଶୀ ରକ୍ତରେ ମଇଳା ଛାଡେ ଓ ରକ୍ତ ଛଣା ଯନ୍ତ୍ର ବାଟେ ତାହା ଦେହରୁ ନିଷ୍କାସିତ ହୋଇଯାଏ । "ସେ ଚୁଲି କେବେ ଲିଭିବ ନାହିଁ"

ସୂର୍ଯ୍ୟଙ୍କ ସଂପର୍କରେ ଲିଖିତ ଏକ ମନଛୁଆଁ ପୁସ୍ତକ । ସୂର୍ଯ୍ୟ କାହିଁକି ସକଳ ଶକ୍ତିର ଆଧାର ତାହା ବୁଝାଇଛନ୍ତି । କୋଇଲା, ପେଟ୍ରୋଲ, ଗ୍ୟାସ ଇତ୍ୟାଦି ଜୈବିକ ଇନ୍ଧନ କିପରି ସୂର୍ଯ୍ୟଙ୍କ ଯୋଗୁ ପ୍ରକୃତିରେ କୋଟି କୋଟି ବର୍ଷ ତଳେ ଉଦ୍ଭବ ହୋଇଛି ତଥା ସୂର୍ଯ୍ୟଙ୍କ ପାଖକୁ ଏତେ ଶକ୍ତି କେଉଁଠୁ ଓ କିପରି ଆସେ, ସୂର୍ଯ୍ୟ ଦେହରେ କିପରି ଉଦ୍‌ଜାନ ରହି ପ୍ରତି ସେକେଣ୍ଡରେ ୬୩କୋଟି ଟନ ଉଦ୍‌ଜାନ ଜଳି ହିଲିୟମ ସୃଷ୍ଟି କରୁଛି ତାହାକୁ କାହାଣୀ ମାଧ୍ୟମରେ ବୁଝାଇଛନ୍ତି । ସେହିପରି ସୂର୍ଯ୍ୟର ଆକାର, ପୃଥିବୀଠାରୁ ଦୂରତା ଇତ୍ୟାଦିକୁ ବୁଝାଇ ଭବିଷ୍ୟତରେ ସୌରଶକ୍ତି କିପରି ବିନିଯୋଗ ହୋଇ ଶକ୍ତି ସମସ୍ୟା ଦୂର କରିପାରିବ ତାହା ଦର୍ଶାଇଛନ୍ତି । ପ୍ରତ୍ୟେକଟି ବିଜ୍ଞାନ ପୁସ୍ତକରେ ରହିଛି କାହାଣୀ, କିଛି ଚରିତ୍ର, ବ୍ୟଙ୍ଗ ଓ ତାହା ସହ ଅନେକ ତଥ୍ୟ ଓ ଜ୍ଞାତବ୍ୟ ବିଷୟ ।

ଜଣେ ସ୍କୁଲ ଛାତ୍ର ବା ସାଧାରଣ ଭାବେ ସାକ୍ଷର ବ୍ୟକ୍ତି ବି ଏହି ବହିଗୁଡିକ ମନଯୋଗ ଦେଇ ପଢ଼ିପାରିବ ଓ ଏହାକୁ ବୁଝିପାରିବ । ବିଜ୍ଞାନପରି ଏକ ଜଟିଳ ଓ ନିରସ ପାଠକୁ ଏତେ ସରସ ସୁନ୍ଦର କରି ପରିବେଷଣ କରାଯାଇପାରେ ତାହା ତାଙ୍କପରି ଜଣେ ସୃଜନଶୀଳ ସ୍ରଷ୍ଟାଙ୍କର କରାମତି କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପରିପ୍ରେକ୍ଷୀରେ ତାଙ୍କର ଆଉ ଗୋଟିଏ ପୁସ୍ତକ "ମୋ ବର୍ଣ୍ଣବୋଧର ୫୦୦ ଅକ୍ଷର" କୁ ଉଲ୍ଲେଖ କରାଯାଇପାରେ । ଜ୍ଞାନ ବିଜ୍ଞାନର ଯେତେ ଯେତେ କ୍ଷେତ୍ର ରହିଛି ସେ ସବୁର କେତେ ଗୁରୁତ୍ୱପୂର୍ଣ୍ଣ ପ୍ରତ୍ୟୟ ଉପରେ ଖଣ୍ଡିଏ ଲେଖାଏଁ ସରଳ ବହି ଲେଖିଲେ ତାହା ସାଧାରଣ ମଣିଷର ବିଚାର ପରିସରକୁ ବ୍ୟାପକ କରିପାରିବ । ସମାଜ ବିଜ୍ଞାନ, ପ୍ରାକୃତିକ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ଦର୍ଶନ, ସାହିତ୍ୟ ଇତ୍ୟାଦି ବୌଦ୍ଧିକ କ୍ଷେତ୍ର ଗୁଡିକର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ଯଦି ଖଣ୍ଡିଏ ଲେଖାଏଁ ୫୦୦ଖଣ୍ଡ ବହି ଲେଖାଯାଏ ତେବେ ତାହା ଜଣେ ସାଧାରଣ ମଣିଷର ବୌଦ୍ଧିକ ଦିଗ୍‌ବଳୟକୁ ପ୍ରସାରିତ କରିଦେଇ ପାରିବ । ଗୋଟିଏ ଭାଷା ପଢ଼ିବାକୁ ଯେପରି ଭାଷାର ଅକ୍ଷରମାନଙ୍କୁ ଜାଣିବା ଆବଶ୍ୟକ, ଠିକ୍ ସେହିପରି ଚିନ୍ତାରାଜ୍ୟର ପରିଚୟ ଲାଭ ପାଇଁ ଏହି ବହି ଗୁଡିକ ସାଧନ ହୋଇପାରିବ । ଅର୍ଥନୀତି, ଇତିହାସ, ସମାଜ ଶାସ୍ତ୍ର, ନୃତତ୍ତ୍ୱ ପରି ସମାଜ-ବିଜ୍ଞାନ ହେଉ, ପଦାର୍ଥବିଜ୍ଞାନ, ଭୂତତ୍ତ୍ୱ, ରସାୟନ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ ପରି ପ୍ରାକୃତିକ ବିଜ୍ଞାନ ହେଉ କିମ୍ବା ମସ୍ତିଷ୍କ, ସ୍ନାୟୁ, ଦାନ୍ତ, ରକ୍ତ ବିଷୟକ ଚିକିତ୍ସା ବିଜ୍ଞାନର ବିଷୟ ହେଉ ଏହିଗୁଡିକ ଉପରେ ସରଳ ଭାଷାରେ ସାଧାରଣ ପାଠକ ଜାଣିବା ପାଇଁ ପୁସ୍ତକ

ଲେଖାଯାଇପାରିବ । ସେହିପରି ଦାର୍ଶନିକ, କ୍ରାନ୍ତିକାରୀ ଜନନାୟକ, ବିଶ୍ୱସାହିତ୍ୟରେ ଅମର କୀର୍ତ୍ତିର ଅଧିକାରୀ ହୋଇଥିବା ଲେଖକମାନଙ୍କର ଜୀବନୀ ଓ ବିଚାରକୁ ସଂକ୍ଷିପ୍ତ ଭାବରେ ଲେଖିହେବ । ଏହିପରି ଯଦି ପାଞ୍ଚ ଶହଟି କ୍ଷୁଦ୍ର ପୁସ୍ତିକା ସରଳ, ସାବଲୀଳ ଅଥଚ ତଥ୍ୟଭିତ୍ତିକ ପୁସ୍ତକ ଲେଖାଯାଏ ତେବେ ତାହା ଓଡିଆ ଭାଷା ସାହିତ୍ୟକୁ ଋଦ୍ଧିମନ୍ତ କରିପାରିବ । ଏହିପରି ୫୦୦ ଟି ଭାବନା ବା ପ୍ରତ୍ୟୟ ଉପରେ ଜଣେ ପଢ଼ିଦେଲେ ତାର ଚିନ୍ତାର ଦିଗ୍‌ବଳୟ ବିସ୍ତାରିତ ହୋଇପାରିବ ।  ଏହାକୁ ସେ 'ଜ୍ଞାନର ଭାଷା' ବୋଲି କହିଛନ୍ତି । "ମୋ ବର୍ଣ୍ଣବୋଧରେ ପାଞ୍ଚଶହ ଅକ୍ଷର" - ୫୦୦ ପ୍ରକାର ଜ୍ଞାନର ଅବଧାରଣା ଉପରେ ଏକ ସୂଚନା ମୂଳକ ପୁସ୍ତକ । ଏହି ଲକ୍ଷ୍ୟରେ ସେ ୩୬୫ ଦିନ ପାଇଁ ୩୬୫ ଖଣ୍ଡ ପୁସ୍ତକ ଲେଖିବାର ଏକ ଯୋଜନା ମଧ୍ୟ କରିଥିଲେ । ବିଜ୍ଞାନ ବ୍ୟତୀତ ବହୁ ପ୍ରଥିତଯଶା ବ୍ୟକ୍ତିଙ୍କର ଜୀବନୀ ବି ସେ ଲେଖିବାକୁ ପ୍ରୟାସ କରିଛନ୍ତି । ଏହା ସହିତ ନୀତିଶିକ୍ଷା ବିଷୟରେ ଓ ବ୍ୟାକରଣର ଅବଧାରଣା ପାଇଁ ବି ଦୁଇଟି ପୁସ୍ତକ ରଚନା କରିଛନ୍ତି । 'ନିକିତି ତଉଲ ସାନବଡକୁ', 'ନାଁ ଦେବାଟା କେତେ କଷ୍ଟ' ତାଙ୍କର ଏ ସଂପର୍କିତ ଦୁଇ ଖଣ୍ଡ ବହି ।

ବିନୋଦ ସାହିତ୍ୟର ପରିଭାଷା ଓ ସଂଜ୍ଞାକୁ ବ୍ୟାପକ କରିଛନ୍ତି । ଗଳ୍ପ, କବିତା, ଉପନ୍ୟାସ ଇତ୍ୟାଦି ସୃଜନଶୀଳ ସାହିତ୍ୟର ଅଙ୍ଗ ହେଲେ ବି ଗୋଟିଏ ଭାଷା ଏହିଥିରେ ସୀମିତ ରହିଲେ ସେ ଭାଷା ଉନ୍ନତ ହେବ ନାହିଁ । ଭାଷାକୁ ଉନ୍ନତ କରିବାକୁ ହେଲେ ତାହାକୁ ଜ୍ଞାନ ବିଜ୍ଞାନର ଭାଷା କରିବାକୁ ହେବ । ଅର୍ଥାତ୍ ଜ୍ଞାନର ଯେତେ ଯେତେ କ୍ଷେତ୍ର ଓ ଦିଗ ରହିଛି ସେ ସବୁ ବି ଆମ ଭାଷାରେ ଅଭିବ୍ୟକ୍ତ ହେବା ଆବଶ୍ୟକ । ସେଥିପାଇଁ ଆମର ପରିଭାଷାକୁ ବୃଦ୍ଧି କରିବା ଦରକାର । ଆଧୁନିକ ଜ୍ଞାନ-ବିଜ୍ଞାନକୁ ପ୍ରକାଶ କରିବା ପାଇଁ ସେ ଆମର ପରିଭାଷାକୁ ସମୃଦ୍ଧ କରିବାକୁ ତାଙ୍କ ଲେଖା ମାଧ୍ୟମରେ ପ୍ରୟାସ କରିଛନ୍ତି । ଜ୍ଞାନମଣ୍ଡଳରେ ଜଟିଳ ବୈଜ୍ଞାନିକ ସିଦ୍ଧାନ୍ତମାନଙ୍କୁ ଓ ଶିଶୁ ସାହିତ୍ୟ ଜନିତ ବିଜ୍ଞାନ ପୁସ୍ତକରେ ସେ ଯେପରି ନୂଆ ନୂଆ ପରିଭାଷା ସୃଷ୍ଟି କରି ଆମ ଭାଷାରେ ସେ ସବୁ ବିଷୟକୁ ବ୍ୟାଖ୍ୟା କରିଛନ୍ତି ତାହା ଦ୍ୱାରା ଓଡିଆଭାଷା ଯେ ଯଥେଷ୍ଟ ସମୃଦ୍ଧି ହାସଲ କରିଛି ଏହା କୁହଯାଇପାରେ । ସରଳ ଓ ସାବଲୀଳ ଭାଷାରେ ଜ୍ଞାନ-ବିଜ୍ଞାନର ସବୁ ବିଷୟରେ ଲେଖିବା ଓ କୌତୂହଳପୂର୍ଣ୍ଣ ନାମକରଣ ଜରିଆରେ ସେ ଆମର ଭାଷାର ଦିଗନ୍ତକୁ ବିସ୍ତାରିତ କରି ଯାଇଛନ୍ତି ।

ଜ୍ଞାନ ବିଜ୍ଞାନର ଜଗତ ଭିତରେ ପ୍ରବେଶ କରିବା କେବଳ ଉଚ୍ଚଶିକ୍ଷିତ ବା ବୁଦ୍ଧିଜୀବୀ ବର୍ଗଙ୍କର ଏକଚାଟିଆ ନିୟନ୍ତ୍ରଣର ବସ୍ତୁ ନୁହେଁ, ସମାଜର ନବସାକ୍ଷର ଓ ସାଧାରଣ ମଣିଷ ବି ଏଥିରେ ଅବଗାହୀ ପାରିବ । ଜଣେ ସାଧାରଣ ସାକ୍ଷର ମଣିଷ ବିଜ୍ଞାନ, ଚିକିତ୍ସା ଶାସ୍ତ୍ର ବା ଦର୍ଶନର ଜଟିଳ ଗ୍ରନ୍ଥକୁ ପଢ଼ିବା ସମ୍ଭବ ନୁହେଁ । କିନ୍ତୁ ତାକୁ ଯଦି ସରଳ ବୋଧଗମ୍ୟ ଭାଷାରେ ପରିବେଷଣ କରାଯାଏ, ତେବେ ତାହା ଯେକୌଣସି ପାଠକର ବୋଧଗମ୍ୟ ପରିସରକୁ ଆସିପାରିବ । ଏହାକୁ ସାଂପ୍ରତିକ ବିଚାରରେ କୁହାଯାଉଛି ଜ୍ଞାନର ସାମାଜିକୀକରଣ । ଓଡିଶାରେ ଜ୍ଞାନ ବିଜ୍ଞାନର ସାମାଜିକୀକରଣରେ ବିନୋଦଙ୍କର ଅବଦାନ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଉପସଂହାରରେ ମଣିଷ ଯେତେବେଳେ ମୁକ୍ତ ମନ ପୋଷଣ କରି ବୌଦ୍ଧିକ ସ୍ତରରେ ଅନୁସନ୍ଧିତ୍ସୁ ହୁଏ ସେତେବେଳେ ତାର ବୌଦ୍ଧିକ ଦିଗନ୍ତ ବିସ୍ତାରିତ୍ ହୋଇଥାଏ । ବିନୋଦଙ୍କ ଭିତରେ ଏହି ପ୍ରକାରର ଏକ ଦୃଷ୍ଟିଭଙ୍ଗୀ ରହିଥିଲା । ଜ୍ଞାନର ସାଗର ଭିତରେ ସେ ଯେତିକି ଭିତରକୁ ପ୍ରବେଶ କରୁଥିଲେ ତାଙ୍କର ବୌଦ୍ଧିକ ଜିଜ୍ଞାସା ସେତିକି ସେତିକି ବଢ଼ି ଚାଲିଥିଲା । ସେଥିପାଇଁ ପୂର୍ବର ଅଧ୍ୟୟନ ଓ ମାନସିକ ପ୍ରସ୍ତୁତି ଭିତରେ ଜୀବନର ଶେଷ ଛତିଶ ବର୍ଷର ଐକାନ୍ତିକ ସାଧନାର ଫଳ ଗୋଟିଏ ଜାତିକୁ ଦେଇ ଯାଇଥାନ୍ତି । ଜ୍ଞାନବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ କରାଇ ମାନସିକ ଜଡତାକୁ ଦୂର କରିବାକୁ ପ୍ରୟାସ କରିଛନ୍ତି । ବିଚାରଶୀଳତା, ଅନୁସନ୍ଧିତ୍ସୁ ଦୃଷ୍ଟି ଓ ମୁକ୍ତମନ ହିଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅନ୍ତଃସ୍ୱର । ସେହି ଦୃଷ୍ଟିଭଙ୍ଗୀ ଦ୍ୱାରା ଜ୍ଞାନର ବିକାଶ ହୋଇଛି, ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଛି । ସଭ୍ୟତାର ଚକ ଆଗକୁ ଯାଇଛି ଓ ପରିଣାମତଃ ଅଜ୍ଞତା, ବୌଦ୍ଧିକ ଜଡତା ଓ କୁସଂସ୍କାରର ପରିସର ସଙ୍କୁଚିତ ହୋଇଛି । ଗୋଟିଏ ଜାତିର ବୌଦ୍ଧିକ ଓ ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅନେକାଂଶରେ ପଥପ୍ରଦର୍ଶକ ହେବା ଏକ ଐତିହାସିକ ସତ୍ୟ ଅଟେ । ଓଡିଶାରେ ବିଜ୍ଞାନର ସାମାଜିକୀକରଣ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କ୍ଷେତ୍ରରେ ତାଙ୍କ ଅବଦାନ ଅବିସ୍ମରଣୀୟ ।



# ଚିତ୍ତରଞ୍ଜନଙ୍କ ଜୀବନ-ଦର୍ଶନ

ଶ୍ରୀଯୁକ୍ତ ଚିତ୍ତରଞ୍ଜନ ଦାସ ଓଡିଶାର ଏକ ବିରଳ ବ୍ୟକ୍ତିତ୍ୱ । ଓଡ଼ିଶାର ଲେଖକ, ପାଠକ ଓ ବୁଦ୍ଧିଜୀବୀ ଗଣଙ୍କ ପାଖରେ  ସେ ଅତ୍ୟନ୍ତ ସୁପରିଚିତ । ଓଡିଆ ଭାଷା ସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ । ବହୁ ଭାଷାର ଅନେକ ମହାନ କୃତିକୁ ଅନୁବାଦ କରିବା ସହ ଶ୍ରୀଅରବିନ୍ଦଙ୍କ ବହୁ ଜଟିଳ ପୁସ୍ତକ ଗୁଡିକୁ ମଧ୍ୟ ସେ ଓଡିଆରେ ଅନୁବାଦ କରି ଓଡିଶାର ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । କେତେକ ଓଡିଆ ସମ୍ବାଦପତ୍ର ଓ ପତ୍ରିକାରେ ଜଣେ ନିୟମିତ ସ୍ତମ୍ଭକାର ଭାବରେ ଅଗଣିତ ପାଠକମାନଙ୍କୁ ସେ ପ୍ରଭାବିତ କରିଛନ୍ତି । ଗୁଡିଏ ଭାଷା ଜାଣିଛନ୍ତି, ବିଶ୍ୱର ବହୁ ଦେଶ ଭ୍ରମଣ କରିଛନ୍ତି ଓ କେତେକ ବିଖ୍ୟାତ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ ଓ ଗବେଷଣା କରିଛନ୍ତି । ପରିଣତ ବୟସରେ ମଧ୍ୟ ତାଙ୍କର କଲମ ଚଳ ଚଞ୍ଚଳ ରହିଛି । କୋଡିଏ ଖଣ୍ଡରୁ ଊର୍ଦ୍ଧ୍ୱ ରୋହିତର ଡାଏରୀ, ବହୁ ପୁସ୍ତକର ଅନୁବାଦ, ଅନେକ ଗବେଷଣାମୂଳକ ନିବନ୍ଧ, ଭ୍ରମଣ କାହାଣୀ, ଜୀବନୀ ଇତ୍ୟାଦି ରାଶୀକୃତ ଲେଖା ଲେଖିବାରେ ସେ ସମର୍ଥ ହୋଇଛନ୍ତି । ପ୍ରାଚୀନ ଗ୍ରୀକ୍ ଦାର୍ଶନିକ ପ୍ଲେଟୋ ବା ବ୍ରିଟିଶ ଲେଖକ ବର୍ଟ୍ରାଣ୍ଡ ରସେଲ ଯେପରି ଜୀବନବ୍ୟାପୀ ଅଗଣିତ ପୁସ୍ତକ ରଚନା କରି ବିଶ୍ୱବିଖ୍ୟାତ ହୋଇଛନ୍ତି, ଚିତ୍ତରଞ୍ଜନଙ୍କ ସାମଗ୍ରିକ ସୃଷ୍ଟି ସମ୍ଭାର ଭୂମିରେ ସେ ସେମାନଙ୍କ ସହିତ ଯଥାର୍ଥରେ ତୁଳନୀୟ । ତାଙ୍କର ଲେଖାସମୂହ ଯଦି ଭାରତୀୟ ଭାଷାମାନଙ୍କରେ କିମ୍ବା ଇଂରାଜୀ ଭାଷାରେ ଅନୁବାଦ ହୋଇପାରନ୍ତା ତାହେଲେ ତାଙ୍କ ପ୍ରତିଭାର ପରିଚୟ ମଧ୍ୟ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରି ପାରନ୍ତା ।

ଚିତ୍ତରଞ୍ଜନଙ୍କ ସାମଗ୍ରିକ ରଚନା ପରିପ୍ରେକ୍ଷୀରେ ତାଙ୍କ ଲେଖାର ବିଭିନ୍ନ ଦିଗ ଉପରେ ଆଲୋଚନା ବା ଗବେଷଣା କରାଯାଇପାରେ । ଶିକ୍ଷା, ସାହିତ୍ୟ, ସାମାଜ ଶାସ୍ତ୍ର, ମନସ୍ତତ୍ତ୍ୱ ଇତ୍ୟାଦି ବହୁ ବୌଦ୍ଧିକ କ୍ଷେତ୍ର ଉପରେ ମଧ୍ୟ ସେ ରାଶି ରାଶି

ଲେଖିଛନ୍ତି। ତାଙ୍କର ଶବ୍ଦ- ସଂଯୋଜନା, ଅଭିନବ ଶୈଳୀ, ଯୁକ୍ତିଶୀଳତା, ଶାଣିତ ବ୍ୟଙ୍ଗ, ସୃଜନାତ୍ମକ ଅଭିବ୍ୟକ୍ତି, ସମାଜ ପାଇଁ ବାର୍ତ୍ତା ଇତ୍ୟାଦି ବିଭିନ୍ନ କ୍ଷେତ୍ର ଉପରେ ଆଲୋଚନା କରାଯାଇପାରେ। ବିଶେଷକରି ଓଡିଆ ପ୍ରବନ୍ଧ ସାହିତ୍ୟକୁ ତାଙ୍କର ଅବଦାନ ପୃଷ୍ଠଭୂମିରେ ନାନା କ୍ଷେତ୍ରରୁ ତାଙ୍କ ଅବଦାନର ମୂଲ୍ୟାୟନ ହୋଇପାରେ। ଶଂସିତ ପ୍ରବନ୍ଧରେ ତାଙ୍କର ଜୀବନ-ଦର୍ଶନ ସମ୍ପର୍କରେ କିଞ୍ଚିତ ଆଲୋଚନା କରିବାକୁ ଲକ୍ଷ୍ୟ ରଖାଯାଇଛି।

ଜୀବନଦର୍ଶନ ସମ୍ବନ୍ଧରେ ଆଲୋଚନା ପୃଷ୍ଠଭୂମିରେ ଦର୍ଶନ ସଂପର୍କରେ କିଞ୍ଚିତ ଆଲୋଚନା ସଙ୍ଗତ ମନେହୁଏ । ବିଭିନ୍ନ ଯୁଗରେ ଦର୍ଶନର ସଂଜ୍ଞା ଓ ପରିସର ଭିନ୍ନ ଭିନ୍ନ ହେବା ଦେଖାଯାଏ। ଯେଉଁ ଯୁଗର ଅନ୍ୱେଷାରେ ଯେଉଁ ପ୍ରକାର ଦାର୍ଶନିକ ସିଦ୍ଧାନ୍ତ ସକଳ ଗମ୍ଭୀରତାର ସହ ଆଲୋଚିତ ହୋଇଛି ସେହି ଯୁଗରେ ଦର୍ଶନର ସଂଜ୍ଞା ଓ ପରିସର ସେହି ପ୍ରକାର ହୋଇଛି । ଦର୍ଶନର ମୌଳିକ ବିଭବ କ୍ଷେତ୍ରରେ ଯେଉଁ ସବୁ ତତ୍ତ୍ୱ ଓ ବିଶ୍ଳେଷଣ ଚିନ୍ତାରାଜ୍ୟରେ ଆଲୋଡନ ଆଣିଛି ସେହି ସବୁ ସିଦ୍ଧାନ୍ତକୁ ଭିତ୍ତିଭୂମି ଭାବେ ନେଇ ଦର୍ଶନର ଅବବୋଧ ମଧ ବଦଳିଛି । ସାଂପ୍ରତିକ ପରିଭାଷାରେ ଦର୍ଶନ ଏକ ବୈଷୟିକ ଅର୍ଥରେ ବ୍ୟବହୃତ ହୋଇ ମୌଳିକ ପ୍ରତ୍ୟୟ ସକଳର ବିଶ୍ଳେଷଣକୁ ଏହାର ଆଭିମୁଖ୍ୟ ଭାବେ ଗ୍ରହଣ କରାଯାଇଛି। ଆଧୁନିକ ବିଚାର ପରିପ୍ରେକ୍ଷୀରେ ଦର୍ଶନ ଓ ବିଜ୍ଞାନର ପରିସର ସୁନିର୍ଦ୍ଦିଷ୍ଟ ହୋଇଛି । ବିଜ୍ଞାନ ଏକ ସୁନିର୍ଦ୍ଦିଷ୍ଟ ପଦ୍ଧତି ଅବଲମ୍ବନ କରି ବସ୍ତୁନିଷ୍ଠ ଜ୍ଞାନ ପାଇଁ ଉଦ୍ଦିଷ୍ଟ ହୋଇଛି। ପ୍ରାକୃତିକ ବିଜ୍ଞାନ କ୍ଷେତ୍ରରେ ଏହା ପ୍ରକୃତିର ବ୍ୟତିକ୍ରମବିହୀନ ଏକରୂପ ନିୟମ ସକଳକୁ ଆବିଷ୍କାର କରିଥାଏ । କିନ୍ତୁ ଘଟଣା ବା ବସ୍ତୁ ସକଳର ବ୍ୟାଖ୍ୟା କରିବା ଦର୍ଶନର ପରିସରଭୁକ୍ତ ନୁହେଁ । ବରଂ ଯେକୌଣସି ଜ୍ଞାନର ଭିତ୍ତି, ପ୍ରଣାଳୀ, ସୀମା, ପୂର୍ବକଳ୍ପନା ଇତ୍ୟାଦି ମୌଳିକ ପ୍ରଶ୍ନଗୁଡିକୁ ସୂକ୍ଷ୍ମରୁ ସୂକ୍ଷ୍ମତର ଭାବରେ ତାର୍କିକ ମାନଦଣ୍ଡରୁ ବିଶ୍ଳେଷଣ କରିବା ଏହାର ଆଭିମୁଖ୍ୟ ହୋଇଛି। ମୌଳିକ ପ୍ରତ୍ୟୟ ସକଳର ବିଶ୍ଳେଷଣ କରି ବୌଦ୍ଧିକ ସ୍ପଷ୍ଟତା ଦେବା ଦର୍ଶନର ଲକ୍ଷ୍ୟ ହୋଇଛି ।

ବସ୍ତୁତଃ ମଣିଷର ଚିନ୍ତାରାଜ୍ୟକୁ କୌଣସି ମୌଳିକ ଅବଦାନ ଦେଇଥିବା ବ୍ୟକ୍ତି ହିଁ ଦାର୍ଶନିକ । ଦାର୍ଶନିକ ବୌଦ୍ଧିକ ଜଗତର ପଥ ପ୍ରଦର୍ଶକ, ଚିନ୍ତାଜଗତର ବିପ୍ଳବୀ । ସମାଜର ପ୍ରଚଳିତ ବିଶ୍ୱାସ, ଭାବନା, ଜୀବନଧାରା ଇତ୍ୟାଦି କ୍ଷେତ୍ରରେ କୌଣସି ଅସଙ୍ଗତି ଦର୍ଶାଇ ଯେଉଁମାନେ ନୂତନ ଭାବନା ମାଧମରେ ବିଚାର ରାଜ୍ୟରେ

ଆଲୋଡନ ଆଣନ୍ତି ସେମାନେ ଦାର୍ଶନିକ । ବୈଜ୍ଞାନିକ ଜଗତର ଯେକୌଣସି ସ୍ତରରେ ମୌଳିକ ତତ୍ତ୍ୱ ବା ସିଦ୍ଧାନ୍ତର ଅବତାରଣା କରିଥିବା ଚିନ୍ତାଶୀଳ ବ୍ୟକ୍ତି ଦାର୍ଶନିକ ଭାବେ ସ୍ୱୀକୃତ । ସଭ୍ୟତା ଓ ସଂସ୍କୃତିର ଅଗ୍ରଗତି ପଶ୍ଚାତରେ ଏହି ପ୍ରଜ୍ଞାଦୀପ୍ତ ବ୍ୟକ୍ତିମାନଙ୍କର ଅବଦାନ ବହୁ ସମୟରେ ନିର୍ଣ୍ଣାୟକ ହେବା ଦେଖାଯାଏ । ସମାଜରେ କୌଣସି କ୍ରାନ୍ତି ଆସିବା ପଶ୍ଚାତରେ ଯେଉଁ ବୌଦ୍ଧିକ ଭାବନା ଭିତ୍ତି ଯୋଗାଇଥାଏ ତାହାର ପ୍ରବକ୍ତା ହିଁ ଦାର୍ଶନିକ । ସୁତରାଂ ଜ୍ଞାନର ବିକାଶ କ୍ଷେତ୍ରରେ ମୌଳିକ ଅବଦାନ ଦେଇଥିବା ବା କୌଣସି ସାମାଜିକ ସ୍ତରରେ ଆଲୋଡ଼ନ ଆଣିଥିବା ବ୍ୟକ୍ତିସମୂହ ସାଧାରଣତଃ ଦାର୍ଶନିକ ଭାବେ ଖ୍ୟାତ ।

କିନ୍ତୁ ଜୀବନ-ଦର୍ଶନ କହିଲେ କ'ଣ ବୁଝାଏ ? ଦର୍ଶନକୁ ଉଲ୍ଲିଖିତ ବୈଷୟିକ ଅର୍ଥରେ ବ୍ୟବହାର କରିବା ଜୀବନ-ଦର୍ଶନ ନୁହେଁ । ଦାର୍ଶନିକ ଭଳି ଜଣେ ଗଣିତଜ୍ଞ, ପଦାର୍ଥ-ବିଜ୍ଞାନୀ ବା ସମାଜବିଜ୍ଞାନୀ ନିଜନିଜର ବୌଦ୍ଧିକ କ୍ଷେତ୍ର ମଧ୍ୟରେ ଗଭୀରକୁ ଯିବାକୁ ମଧ୍ୟ ପ୍ରୟାସ କରନ୍ତି । ଜ୍ଞାନ ପାଇଁ ମଣିଷର ଜିଜ୍ଞାସା ରହିବା ଅତି ସ୍ୱାଭାବିକ ଅଟେ । କିନ୍ତୁ ସେହି ଜିଜ୍ଞାସା ପଶ୍ଚାତରେ ରହିଥିବା ମହତ୍ତର ଦୃଷ୍ଟିଟି ଜୀବନ-ଦର୍ଶନ ହୋଇପାରେ । ଜୀବନରେ ମହତ୍ତର ଲକ୍ଷ୍ୟ ପୋଷଣ କରିବା ଓ ସାଧାରଣ ଲକ୍ଷ୍ୟ ପୋଷଣ କରିବା ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିପାରେ । କାରଣ ଗୋଟିଏ ଲକ୍ଷ୍ୟର ଗୁଣାତ୍ମକ ମୂଲ୍ୟ ଓ ସାର୍ବଜନୀନତା ଉପରେ ଜୀବନର ମୂଲ୍ୟ ମଧ୍ୟ ନିର୍ଭର କରେ । ଜଣେ ଯେଉଁ ଲକ୍ଷ୍ୟ ପୋଷଣକରେ, ନିଜର ସାମାଜିକ ବନ୍ଧନଟି ଭିତରେ ଯେଉଁ ଆଦର୍ଶ ଦେଖାଏ, ଗୋଟିଏ ବୃହତ୍ତର ସମାଜ ପ୍ରତି ଯେଉଁ ଦୃଷ୍ଟିକୋଣ ପୋଷଣ କରେ, ସୃଜନଶୀଳତାକୁ କ'ଣ ମୂଲ୍ୟ ଦିଏ, ନିଜର କର୍ତ୍ତବ୍ୟ ପ୍ରତି କେତେ ଦୂର ଅଙ୍ଗୀକାରବଦ୍ଧ ହୁଏ ଏହି ସବୁର ସାମଗ୍ରିକ ଆଧାର ଉପରେ ଜଣଙ୍କର ଜୀବନ-ଦର୍ଶନର ଭିତ୍ତି ପଡିଥାଏ । ଯିଏ ଜୀବନର ଯେଉଁ କ୍ଷେତ୍ରଟି ଭିତରେ ଥାଉ ନା କାହିଁକି ତା'ର ବ୍ୟକ୍ତିତ୍ୱର ସକାରାତ୍ମକ ଓ ନକାରାତ୍ମକ କ୍ଷେତ୍ରଗୁଡିକର ମୂଲ୍ୟାୟନ ଭିତରେ ତାର ଜୀବନାଦର୍ଶ ନିରୂପିତ ହୋଇଥାଏ । ଜଣେ ଗୋଟିଏ ସାଧାରଣ ସ୍ତରରେ ଜୀବନ ବଞ୍ଚି ମଧ୍ୟ ଅସାଧାରଣ ହୋଇପାରେ ଅଥଚ କେହି ଜୀବନରେ ନାନା ସୁଖ, ପ୍ରାଚୁର୍ଯ୍ୟ ଭିତରେ ବୁଡି ରହି ମଧ୍ୟ ଜୀବନର ସର୍ବନିମ୍ନ ମୂଲ୍ୟବୋଧ ପ୍ରତି ଉଦାସୀନ ରହିପାରେ । ସୁତରାଂ ଜଣଙ୍କର ଭୌତିକ ପ୍ରତିଷ୍ଠା, ପଦପଦବୀ ଓ ଏପରିକି ବୌଦ୍ଧିକ ଖ୍ୟାତି ତାର ବାହ୍ୟିକ ପରିଚୟ ଦିଏ ସିନା ତାର ଅସଲ ସ୍ୱରୂପକୁ ପ୍ରକାଶ କରେ

ନାହିଁ । ବରଂ ଯିଏ ଜୀବନରେ ନାନା ଘାତ ପ୍ରତିଘାତ ମଧ୍ୟରେ ଆଗକୁ ଯାଇ ଅନ୍ୟ ପ୍ରତି ସମ୍ବେଦନଶୀଳତା ପ୍ରକାଶ କରେ, ନିଜର ସାମାଜିକ ଉତ୍ତରଦାୟିତ୍ୱ ଭିତରେ କିଛି ନୈତିକ ମୂଲ୍ୟଚୟର ପରିଚୟ ଦିଏ, ସଖ୍ୟ ଓ ଶ୍ରଦ୍ଧାର ଚକ୍ଷୁ ନେଇ ଦୁନିଆଁକୁ ଦେଖେ ତା'ର ଦୃଷ୍ଟିଭଙ୍ଗୀ ଅଧିକ ସକାରାତ୍ମକ ବା ଜୀବନଧର୍ମୀ ମନେହୁଏ । କେତେକ ଜୀବନ କହିଲେ କେବଳ ନିଜର ଆୟତନଟିକୁ ବୁଝନ୍ତି, ବୃହତ୍ତର ସମାଜ କିମ୍ବା ସମଭାଗିତାକୁ କୌଣସି ମୂଲ୍ୟ ଦିଅନ୍ତି ନାହିଁ । ନିଜର ପରିଧିଟି ଭିତରେ ନିଜର ସ୍ୱାର୍ଥକୁ ଏକମାତ୍ର ଲକ୍ଷ୍ୟ ଭାବରେ ନେଉଥିବା ମଣିଷ ଅପେକ୍ଷା ନିଜକୁ ଏକ ସମଷ୍ଟିର ଏକକ ବୋଲି ଭାବୁଥିବା ମଣିଷ, ଗୋଟିଏ ବୃହତ୍ତର ପରିବେଶ ସହିତ ହୃଦୟର ବନ୍ଧନକୁ ଦୃଢ଼ କରୁଥିବା ଓ ସହଭାଗୀ ହୋଇ ଜୀବନ ବଞ୍ଚୁଥିବା ମଣିଷର ଜୀବନ-ଦର୍ଶନ ଅଧିକ ଅର୍ଥପୂର୍ଣ୍ଣ ମନେ ହୋଇଥାଏ । ସୁତରାଂ ଜୀବନ-ଦର୍ଶନର ଏକ ଯଥାର୍ଥ ମୂଲ୍ୟାୟନ ପାଇଁ ଏକ ସାର୍ବଜନୀନ ମାନ ନିର୍ଣ୍ଣୟ କରିବା ହୁଏତ ଜଟିଳ ମନେ ହୋଇପାରେ । ତଥାପି ସୃଜନଶୀଳତା ଓ ମାନବିକ ମୂଲ୍ୟଚୟ ପ୍ରତି ଅଙ୍ଗୀକାର ବଦ୍ଧତାକୁ ସର୍ବନିମ୍ନ ଆଧାର ଭାବରେ ଗ୍ରହଣ କରି ଜୀବନର ଗୁଣାତ୍ମକ ମୂଲ୍ୟାୟନ ଆନୟନ କରାଯାଇପାରେ ।

ଜୀବନ-ଦର୍ଶନର ଏହି ଭିତ୍ତିଭୂମି ଉପରେ ଚିତ୍ତରଞ୍ଜନଙ୍କୁ ବିଚାର କଲାବେଳେ ତାଙ୍କ ଦୃଷ୍ଟିଭଙ୍ଗୀର କେତେକ ବୈଶିଷ୍ଟ୍ୟ ଦୃଷ୍ଟିକୁ ଆସିଥାଏ । ସେ ବିଦ୍ୟାର୍ଥୀଭାବେ ଶାନ୍ତି ନିକେତନରେ ଦର୍ଶନ ଅଧ୍ୟୟନ କରିବାର ଅବକାଶ ପାଇଛନ୍ତି ଓ ଜୀବନବ୍ୟାପୀ ଦର୍ଶନ ପ୍ରତି ଅଙ୍ଗୀକୃତ ଅନୁରାଗ ରଖିଛନ୍ତି । ଦାର୍ଶନିକ ଜିଜ୍ଞାସାରେ ଅନୁପ୍ରାଣିତ ହୋଇ ଜ୍ଞାନରାଜ୍ୟର କେତେ କେତେ କ୍ଷେତ୍ର ଭିତରେ ସେ ପ୍ରବେଶ କରିଛନ୍ତି । ମନୋବିଜ୍ଞାନ, ନୃତତ୍ତ୍ୱ, ସମାଜଶାସ୍ତ୍ର ପରି ବୈଜ୍ଞାନିକ କ୍ଷେତ୍ରଗୁଡିକ ସହ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଛନ୍ତି ଓ ସେସବୁ କ୍ଷେତ୍ରରେ ମଧ୍ୟ କେତେ କେତେ ଗହନ ଭିତରକୁ ପ୍ରବେଶ କରିଛନ୍ତି । ଜୀବନବ୍ୟାପୀ ବୌଦ୍ଧିକ ଅନୁସନ୍ଧିତ୍ସା ଭିତରେ ନିଜ ଅଧ୍ୟୟନର ଦିଗନ୍ତକୁ କେତେ ବିସ୍ତାର କରିପାରିଛନ୍ତି । ତାଙ୍କର ଲେଖାଗୁଡିକ ଭିତରେ ଯେଉଁ ଗଭୀର ଅନୁଶୀଳନାତ୍ମକ ଜୀବନଦୃଷ୍ଟିର ଝଲକ ଦେଖିବାକୁ ମିଳିଥାଏ ତାହା ତାଙ୍କ ବୌଦ୍ଧିକ ଦିଗନ୍ତର ପରିଚୟ ଦିଏ । ଜଣେ ଦାର୍ଶନିକର ଅନୁସନ୍ଧିତ୍ସା ଓ ଜ୍ଞାନାନୁରାଗ ତାଙ୍କ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ।

ଚିତ୍ତରଞ୍ଜନଙ୍କ ନିଜସ୍ୱ ସ୍ୱୀକାରୋକ୍ତି ଅନୁଯାୟୀ ଭାରତବର୍ଷର ତିନିଜଣ ମହାନ ଚିନ୍ତାନାୟକଙ୍କର ବିଚାରର ପ୍ରଭାବ ତାଙ୍କୁ ସର୍ବଦା ଅନୁପ୍ରାଣିତ କରିଛି। କଲେଜ ଜୀବନର ଆରମ୍ଭରେ ସେ ଗାନ୍ଧୀଙ୍କର ପ୍ରେରଣାରେ ଅନୁପ୍ରାଣିତ ହୋଇ ଜାତୀୟ ଆନ୍ଦୋଳନରେ ଯୋଗ ଦେଇଛନ୍ତି। ଭାରତ ଛାଡ ଆନ୍ଦୋଳନରେ ଅଂଶ ଗ୍ରହଣ କରି କାରାବରଣ କରିଛନ୍ତି। ସେହି ସମୟରେ, ବିଶେଷତଃ ଜେଲ କାଳରେ ଭାରତୀୟ ଜାତୀୟ ଆନ୍ଦୋଳନର କେତେ କେତେ ରଥୀଙ୍କୁ ଭେଟିଛନ୍ତି। ବିଶେଷକରି ରାଜନୈତିକ କାର୍ଯ୍ୟପନ୍ଥା ପଶ୍ଚାତରେ ଯେଉଁ ତାତ୍ତ୍ୱିକ ବିଚାରାଦର୍ଶ ଥିଲା ତାହା ଚିତ୍ତରଞ୍ଜନଙ୍କୁ ସର୍ବଦା ଅନୁପ୍ରାଣିତ କରିଛି। କିଶୋର ବୟସରେ ସେ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନରେ ପ୍ରବେଶ କଲେ ସେତେବେଳେ ତାଙ୍କୁ ପ୍ରଭାବିତ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଗାନ୍ଧୀ ପୁରୋଭାଗରେ ଥିଲେ। କାଳକ୍ରମେ ଗାନ୍ଧୀଙ୍କ ରାଜନୀତିକ ସଂଗ୍ରାମ କ୍ଷେତ୍ରର କାର୍ଯ୍ୟସୂଚୀ ଯେ କେବଳ ରାଜନୀତିକ ଆବେଦନ ଭିତରେ ସୀମିତ ନଥିଲା ସେହି ଅନୁଭବ ଓ ଆତ୍ମବିଶ୍ୱାସ ତାଙ୍କ ମଧ୍ୟରେ ଆସିଲା। ଗାନ୍ଧୀଙ୍କ ରାଜନୈତିକ ବିପ୍ଳବ ମଧ୍ୟ ଦେଇ ସାମାଜିକ କ୍ରାନ୍ତିର ଯେଉଁ ଆବେଦନଟି ଥିଲା ତାହା ହିଁ ଚିତ୍ତରଞ୍ଜନଙ୍କୁ ଅଧିକ ସ୍ପର୍ଶ କରିଥିଲା। ଗାନ୍ଧୀଙ୍କର ସତ୍ୟାଗ୍ରହ, ସର୍ବୋଦୟ, ଅହିଂସ କ୍ରାନ୍ତି ଓ ସମାଜର ପୁନଃନିର୍ମାଣ ପାଇଁ ଯେଉଁ ମାନବବାଦୀ ଆହ୍ୱାନମାନ ଥିଲା ତାହାହିଁ ଜୀବନବ୍ୟାପୀ ଚିତ୍ତରଞ୍ଜନଙ୍କୁ ପ୍ରଭାବିତ କରିଆସିଛି। ଗାନ୍ଧୀଙ୍କ ସତ୍ୟସ୍ୱୀକୃତ ଜୀବନାଦର୍ଶର ପ୍ରଭାବ ମଧ୍ୟ ତାଙ୍କୁ ବହୁ ଭାବରେ ଅନୁପ୍ରାଣିତ କରିଛି। ବିଶେଷତଃ ରଚନାତ୍ମକ କାର୍ଯ୍ୟସୂଚୀ ମଧ୍ୟ ଦେଇ ଗାନ୍ଧୀ ସାମାଜିକ ବିପ୍ଳବର ଯେଉଁ ଆହ୍ୱାନମାନ ରଖିଥିଲେ ତାହା ତାଙ୍କୁ ସର୍ବଦା ପ୍ରେରଣା ଦେଇଛି। ଏକ ସମତାପୂର୍ଣ୍ଣ, ବିକେନ୍ଦ୍ରିଭୂତ ସାମାଜିକ ପୁନର୍ଗଠନର ସ୍ୱପ୍ନ ତାଙ୍କୁ ସର୍ବଦା ଆଲୋଡିତ କରିଛି। ସମାଜରେ ଅସଲ କ୍ରାନ୍ତି ପାଇଁ ସେ ନିଜର ଲେଖା ମାଧ୍ୟମରେ ନିରନ୍ତର ଆହ୍ୱାନ ଦେଇଛନ୍ତି। ସାମାଜିକ ବ୍ୟବସ୍ଥାରେ, ଶିକ୍ଷାରେ, ସାଂସ୍କୃତିକ ଦୃଶ୍ୟପଟରେ ରହିଥିବା ଅନ୍ୟାୟ, ଶୋଷଣ, ସ୍ୱାର୍ଥପରତା, ସାମନ୍ତବାଦୀ ମନୋଭାବକୁ ସେ କେତେ ଶୈଳୀରେ ଆକ୍ରମଣ କରିଛନ୍ତି। ସମାଜରେ ଏକ ଅସଲ କ୍ରାନ୍ତି ପାଇଁ ନାନା ସ୍ୱପ୍ନକୁ କଲମ ମୁନରେ ରୂପ ଦେବାକୁ ପ୍ରୟାସ କରିଛନ୍ତି।

ସ୍ୱାଧୀନତା ଆନ୍ଦୋଳନରୁ ଯାଇ ସେ ଶାନ୍ତିନିକେତନର ବିଶ୍ୱଭାରତୀରେ କେତୋଟି ବର୍ଷ ଅଧ୍ୟୟନ କରିବା ଭିତରେ ରବୀନ୍ଦ୍ରନାଥଙ୍କର ଜୀବନାଦର୍ଶଦ୍ୱାରା ଗଭୀର ଭାବେ ଅନୁପ୍ରାଣିତ ହୋଇଛନ୍ତି। ଯଦିବା ରବୀନ୍ଦ୍ରନାଥଙ୍କୁ ସଶରୀରେ ଦେଖିନାହାନ୍ତି

କିନ୍ତୁ ବୌଦ୍ଧିକ ଓ ଆତ୍ମିକ ସ୍ତରରେ ରବୀନ୍ଦ୍ରଙ୍କ ସହିତ ଯେଉଁ ବନ୍ଧନଟି ସେ ବାନ୍ଧିଛନ୍ତି ତାହା ତାଙ୍କ ଜୀବନଦୃଷ୍ଟିକୁ ବହୁଭାବରେ ଅନୁପ୍ରାଣିତ କରିଛି । ଶାନ୍ତି ନିକେତନରେ ଜଣେ ତପସ୍ୱୀ ବିଦ୍ୟାର୍ଥୀଭାବେ ଜ୍ଞାନ ସାଗରରେ ସେ ଅବଗାହିବାକୁ ପ୍ରୟାସ କରିଛନ୍ତି । ବହୁ ପ୍ରବୀଣ ଅଧ୍ୟାପକ, ଗବେଷକଙ୍କର ପ୍ରତ୍ୟକ୍ଷ ସଂପର୍କରେ ଆସିଛନ୍ତି ଓ ବହୁ ବିଦ୍ୟାର୍ଥୀ ଓ ଜ୍ଞାନସାଧକଙ୍କ ସହିତ ସଂଯୋଜିତ ହୋଇଛନ୍ତି । ରବୀନ୍ଦ୍ର ସାହିତ୍ୟ ଓ ସଙ୍ଗୀତକୁ ଜୀବନଧାରାରେ ମିଶାଇଛନ୍ତି । ପୂର୍ଣ୍ଣରୁ ପୂର୍ଣ୍ଣତର ଉତ୍ତରଣ ପାଇଁ ତାଙ୍କର ଅଭୀପ୍ସା ଗୁଡିକ ଏହିଠାରେ ହିଁ ରୂପ ନେଇଛି । ରବୀନ୍ଦ୍ରନାଥଙ୍କର ସାହିତ୍ୟ ସାଧନା, ଶିକ୍ଷାରେ ନୂତନ ପ୍ରୟୋଗ ଓ ଜୀବନରେ ସୁନ୍ଦରତମର ଅନୁଭୂତି ଜନିତ ଅଭିବ୍ୟକ୍ତି ଚିତ୍ତରଂଜନଙ୍କୁ ଜୀବନବ୍ୟାପୀ ସାହିତ୍ୟ ସାଧନା ପାଇଁ ଅଭିନିବେଶ ଯୋଗାଇଛି । ଆମର ଚତୁଃପାର୍ଶ୍ୱରେ ରହିଥିବା ବିଶାଳ ପ୍ରକୃତି ଓ ଜନଜୀବନ ସହିତ ହୃଦୟର ବନ୍ଧନକୁ ନିବିଡ଼ କରିବା, ସଂସାରର ସବୁ ମଣିଷଙ୍କୁ ବନ୍ଧୁର ଦୃଷ୍ଟିରେ ଦେଖିବା, ବିଭିନ୍ନ ଭାଷା ସାହିତ୍ୟରେ ରହିଥିବା ଉଚ୍ଚତର ଅନୁଭବ ସକଳକୁ ହୃଦୟଙ୍ଗମ କରିବା ଇତ୍ୟାଦି ଜୀବନ ଦୃଷ୍ଟି ରବୀନ୍ଦ୍ରନାଥଙ୍କ ସାହିତ୍ୟକୃତି ଓ ସାଧନାପୀଠରୁ ସେ ଗ୍ରହଣ କରିବାକୁ ସମର୍ଥ ହୋଇଛନ୍ତି । ଏହି ଶାନ୍ତିନିକେତନ ତାଙ୍କର ବିଶ୍ୱଦୃଷ୍ଟି ପାଇଁ ଗବାକ୍ଷକୁ ଖୋଲିଦେବାରେ କେତେ ପ୍ରେରଣା ଯୋଗାଇଛି । ତାଙ୍କର ଆତ୍ମ ଉନ୍ମୀଳନ ଓ ଉନ୍ମୋଚନ ପାଇଁ ରବୀନ୍ଦ୍ର ସାହିତ୍ୟ ଓ ଜୀବନାଦର୍ଶ ତାଙ୍କୁ ଅବିରତ ଅଭିନିବେଶ ଯୋଗାଇଛି । ରବୀନ୍ଦ୍ର ସାହିତ୍ୟର କିଛି ଅଂଶକୁ ଓଡିଆରେ ଅନୁବାଦ କରିବା ଭିତରେ ଓ ରବୀନ୍ଦ୍ର ସଙ୍ଗୀତକୁ ଜୀବନସଙ୍ଗୀତ କରିବା ଦ୍ୱାରା ସେ ସାହିତ୍ୟ ଓ ସଙ୍ଗୀତ ପ୍ରତି ଜୀବନବ୍ୟାପୀ ଅନୁରାଗଯୁକ୍ତ ହୋଇ ରହିଛନ୍ତି । ସାହିତ୍ୟକୁ ନିଜ ସୃଜନାତ୍ମକ ଅଭିବ୍ୟକ୍ତିର ଶ୍ରେଷ୍ଠ ମାଧ୍ୟମ ଭାବେ ସେ ଗ୍ରହଣ କରିଛନ୍ତି । ଅନ୍ତରର ଶ୍ରେଷ୍ଠ ଅନୁଭବ ଓ ଅନୁରାଗ ମଧ୍ୟରେ ସାହିତ୍ୟର ପ୍ରଭାବ ଯେ ସର୍ବୋତ୍ତମ ଏହା ସେ ରବୀନ୍ଦ୍ରନାଥଙ୍କଠାରୁ ଲାଭ କରିଛନ୍ତି ।

ଜୀବନରେ ଅନେକ ବାଟ ଆସିବାପରେ ଭାରତ-ବର୍ଷର ଜଣେ ତପସ୍ୱୀ ସାଧକ ଓ ଆଧ୍ୟାତ୍ମିକ ଅନୁଭବର ପ୍ରବକ୍ତା ଶ୍ରୀଅରବିନ୍ଦଙ୍କ ସାହିତ୍ୟ-ଜଗତ ଭିତରେ ଅବଗାହନ କରିଛନ୍ତି । ଶ୍ରୀଅରବିନ୍ଦଙ୍କ ଶ୍ରେଷ୍ଠ କୃତି The Life Divine ପୁସ୍ତକର ଅନୁବାଦ ଦାୟିତ୍ୱ ନେଇ ସେ ଶ୍ରୀଅରବିନ୍ଦଙ୍କ ସୃଷ୍ଟି ସମ୍ଭାର ଭିତରେ ପ୍ରବେଶ କରିଛନ୍ତି । ପରେ ପରେ ଶ୍ରୀଅରବିନ୍ଦଙ୍କର The Synthesis of Yoga, The Human Cycle, ଓ The Ideal of Human Unity ପୁସ୍ତକ ତଥା ଶ୍ରୀମାଙ୍କର ବହୁ ରଚନାକୁ ଅନୁବାଦ କରିବାକୁ

ଯାଇ ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କର ତାତ୍ତ୍ୱିକ ଅଭୀପ୍‌ସା ଗୁଡିକ ସହିତ ପରିଚିତ ହୋଇଛନ୍ତି । ଶ୍ରୀଅରବିନ୍ଦ ଅନ୍ୟ ଏକ ଭବିଷ୍ୟର ବାର୍ତ୍ତା ଦେଇଛନ୍ତି, ଏକ ନୂଆ ଚେତନାର ବିବର୍ତ୍ତନ ବିଷୟକୁ କେତେ ତାତ୍ତ୍ୱିକ ଓ ରହସ୍ୟାବୃତ ଶୈଳୀରେ ବ୍ୟକ୍ତ କରିଛନ୍ତି । ତାଙ୍କ ମତରେ ଚେତନାର ବିବର୍ତ୍ତନ ଓ ରୂପାନ୍ତର ଧାରାରେ ମଣିଷ ଯେଉଁ ମାନସିକ ସ୍ତରରେ ପହଞ୍ଚିଛି ତାହା ସର୍ବୋଚ୍ଚ ସ୍ତର ନୁହେଁ । ଆହୁରି ଅନେକ ସୋପାନ ମଧ୍ୟ ଦେଇ ଏକ ଅତିମାନସିକ ଚେତନାର ସ୍ତରକୁ ମଣିଷ ଦିନେ ବିବର୍ତ୍ତିତ ହେବ । ଏହା ଏକ ପ୍ରାକୃତିକ ପ୍ରକ୍ରିୟା ମଧ୍ୟ ଦେଇ ସମାହିତ ହେଲେ ମଧ୍ୟ ମାନବିକ ଅଭୀପ୍‌ସା ଓ ଏକ ଆଧ୍ୟାତ୍ମିକ ପ୍ରୟାସ ଦ୍ୱାରା ଏହି ବିବର୍ତ୍ତନ ତ୍ୱରାନ୍ୱିତ ହୋଇ ପାରିବ । ଶ୍ରୀଅରବିନ୍ଦ ବିବର୍ତ୍ତନଧାରାର ଏକ ଅତ୍ୟୁଚ୍ଚ ସୋପାନ ବିଷୟ କଳ୍ପନା କରିଛନ୍ତି ଓ ସେହି ଧାରା ଓ ଲକ୍ଷ୍ୟ ସଂପର୍କରେ ନାନା କାଳ୍ପନିକ ଓ ରହସ୍ୟାବୃତ ପ୍ରକଳ୍ପର ଅବତାରଣା କରିଛନ୍ତି । ତାଙ୍କର କାବ୍ୟ, ଯୋଗ, ଦର୍ଶନ ମଧ୍ୟ ଦେଇ ଚେତନାର ସମ୍ଭାବ୍ୟ ରୂପାନ୍ତରର କଥା କୁହାଯାଇଛି । ପ୍ରକୃତି ସତେ ଯେପରି ସୁବ୍ୟବସ୍ଥିତ ଓ ଉଦ୍ଦେଶ୍ୟମୂଳକ ଭାବରେ ମଣିଷକୁ ଏକ ପରିପୂର୍ଣ୍ଣ ଶିଖରଟି ଉପରକୁ ଆରୋହଣ କରାଇନେବା ପାଇଁ କାର୍ଯ୍ୟ କରୁଛି । ଶ୍ରୀଅରବିନ୍ଦଙ୍କର ଏହି ବିବର୍ତ୍ତନତତ୍ତ୍ୱ ଉପରେ ଚିତ୍ତରଞ୍ଜନ ଆସ୍ଥା ସ୍ଥାପନ କରିଛନ୍ତି । ଚିତ୍ତରଞ୍ଜନଙ୍କ ସତୁରୀ ଦଶକ ପର ଲେଖାରେ ଶ୍ରୀଅରବିନ୍ଦଙ୍କ ବିଚାରର ପ୍ରଭାବ ପ୍ରଚ୍ଛନ୍ନ ଭାବରେ ଦୃଷ୍ଟିଗୋଚର ହୋଇଥାଏ । ଫଳତଃ ଆଧ୍ୟାତ୍ମିକ ରହସ୍ୟାବୃତ କଳ୍ପନା ତାଙ୍କର ମାନସ ପଟକୁ ବେଳକେ ଏପରି ପ୍ରଭାବିତ କରିଛି ଯଦ୍ୱାରା ବିଚାରଶୀଳ ବା ତର୍କଶୀଳ ଦୃଷ୍ଟିକୋଣକୁ ସେ "ଅତି ଅଳପ" ବୋଲି କହି ବ୍ୟଙ୍ଗ କରିଛନ୍ତି । ଭାଷା ଓ ବର୍ଣ୍ଣନା ଶୈଳୀର ଗାରିମା ଭିତରେ ସେ ବିଚାରର ସ୍ୱଚ୍ଛତାକୁ ବେଳେ ବେଳେ ଏଡାଇ ଯାଇଛନ୍ତି । ରହସ୍ୟମୟ ଭାବନାର ପରିଧି ଭିତରେ ଚିତ୍ତରଞ୍ଜନ ବାସ୍ତବବାଦୀ ଅପେକ୍ଷା ଅଧିକ ସ୍ୱପ୍ନବିଭୋର ହୋଇଛନ୍ତି ।

ବିଂଶ ଶତାବ୍ଦୀରେ ଭାରତୀୟ ଚିନ୍ତା ମାନସର ତିନି କ୍ରାନ୍ତିକାରୀ ଚିନ୍ତାନାୟକ ଚିତ୍ତରଞ୍ଜନଙ୍କୁ ପ୍ରଭାବିତ କରିଛନ୍ତି । ସ୍ୱାଧୀନ ଭାରତର ନବବିଧାନ ବା ନବନିର୍ମାଣ ବିଷୟରେ କଳ୍ପନା କଲାବେଳେ ଗାନ୍ଧୀ, ରବୀନ୍ଦ୍ରନାଥ ଓ ଶ୍ରୀଅରବିନ୍ଦ ଦୃଷ୍ଟିପଥକୁ ଆସିବା ଅତି ସ୍ୱାଭାବିକ । ଚିତ୍ତରଞ୍ଜନ ସେମାନଙ୍କ ବିଚାରାଦର୍ଶ ବା ଜୀବନାଦର୍ଶ ମଧ୍ୟରେ କୌଣସି ଅମେଳ ପାଇନାହାନ୍ତି ବରଂ ସେମାନଙ୍କର ଭାବନାକୁ ପରିପୂରକ ଭାବରେ ଗ୍ରହଣ କରିଛନ୍ତି । ନିଜର ଜୀବନଶୈଳୀ, ଭାବନା ଓ ଶ୍ରେୟର ଅନୁଧାବନ

ଭିତରେ ସେମାନେ ହିଁ ଚିତ୍ତରଞ୍ଜନଙ୍କ ପାଇଁ ଆଦର୍ଶ ଓ ଆକର୍ଷଣୀୟ ହୋଇଛନ୍ତି । ସେ କାହା ପାଖରେ ଅଟକି ଯାଇ ନାହାନ୍ତି ବା କୌଣସି ମତକୁ ସାବ୍ୟସ୍ତ କରିବାରେ ମତାନ୍ଧତା ଦେଖାଇ ନାହାନ୍ତି । ବରଂ ଭାରତବର୍ଷର ସାମାଜିକ ପୁନଃନିର୍ମାଣ ବା ଏପରିକି ବିଶ୍ୱର ନବବିଧାନର ଭାବନା ପରିପ୍ରେକ୍ଷୀରେ ଏହି ଭାରତୀୟ ମନୀଷୀମାନଙ୍କର ଭୂମିକା ସେ ସ୍ୱୀକାର କରି ଆସିଛନ୍ତି । ସେମାନଙ୍କର ସମ୍ମିଳିତ ପ୍ରଭାବ ଚିତ୍ତରଞ୍ଜନଙ୍କ ଜୀବନାଦର୍ଶ କ୍ଷେତ୍ରରେ ପ୍ରତ୍ୟକ୍ଷ ବା ପରୋକ୍ଷରେ ପ୍ରତିଫଳିତ ହୋଇଛି । ସେମାନଙ୍କର ଉପଲବ୍ଧ ସତ୍ୟ ଗୁଡ଼ିକର ଆକର୍ଷଣ ଭିତରେ ସେ ଜୀବନକୁ ଏକ ସକାରାତ୍ମକ ଦୃଷ୍ଟିରେ ନେଇଛନ୍ତି । ଗାନ୍ଧୀଙ୍କ ସାମାଜିକ ପୁନଃନିର୍ମାଣ, ରବୀନ୍ଦ୍ରନାଥଙ୍କର ସାହିତ୍ୟାନୁରାଗ ଓ ଶ୍ରୀଅରବିନ୍ଦଙ୍କ ଆଧ୍ୟାତ୍ମିକ ଉତ୍ତରଣ ତାଙ୍କ ପାଖରେ ସମ୍ମିଳିତ ଭାବେ ସ୍ଥାନ ପାଇଛି । ସେ ଯେଉଁ ସ୍ତରରେ ଥା'ନ୍ତୁ ନା କାହିଁକି ଉଚିତ ଶ୍ରଦ୍ଧା ଓ ଆନ୍ତରିକ ଅଙ୍ଗୀକାରବଦ୍ଧତା ନେଇ ଜୀବନରେ ବାଟ ଚାଲିବାକୁ ଶ୍ରେୟ ମଣିଛନ୍ତି ।

ଶାନ୍ତିନିକେତନରେ ଚିତ୍ତରଞ୍ଜନ ଦର୍ଶନଶାସ୍ତ୍ର ଅଧ୍ୟୟନ କରିଥିଲେ । ସେଠିକାର ବହୁ ପ୍ରବୀଣ ଓ ପ୍ରାଜ୍ଞ ଅଧ୍ୟାପକ ଓ ଗବେଷକଙ୍କର ଛାତ୍ର ହେବାର ସୌଭାଗ୍ୟ ତାଙ୍କୁ ମିଳିଥିଲା । ଭାରତୀୟ ଦର୍ଶନ ଓ ପାଶ୍ଚାତ୍ୟ ଦର୍ଶନକୁ ସେ ଇଂରେଜୀ ଭାଷାରେ ସେଠାରେ ଅଧ୍ୟୟନ କରିବାବେଳେ ଜଣେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ସଂସ୍କୃତ ଗବେଷକ ସୁଖମୟ ଭଟ୍ଟାଚାର୍ଯ୍ୟଙ୍କ ପାଖରୁ ସଂସ୍କୃତରେ ଭାରତୀୟ ଦର୍ଶନକୁ ମଧ୍ୟ ଅଧ୍ୟୟନ କରିବାର ସୌଭାଗ୍ୟ ଲାଭ କରିଥିଲେ । ତାଙ୍କର ସଂସ୍କୃତ ଭାଷାରେ କିଛି ପାରଦର୍ଶିତା ଥିଲା । କିନ୍ତୁ ଶ୍ରୀ ଭଟ୍ଟାଚାର୍ଯ୍ୟଙ୍କ ପାଖରେ ସେ ଏକା ଜଣେ ତପସ୍ୱୀ ବିଦ୍ୟାର୍ଥୀ ଭାବରେ ଅଧ୍ୟୟନ କରିଥିଲେ। ନବ୍ୟନ୍ୟାୟ ଓ ବେଦାନ୍ତ ଦର୍ଶନ ଭିତରେ ପ୍ରବେଶ କରି ସେ ଭାରତୀୟ ଦର୍ଶନ, ତନ୍ତ୍ର ଓ ଯୋଗ ଇତ୍ୟାଦି ସମ୍ବନ୍ଧରେ ବହୁ ଗ୍ରନ୍ଥ ପଢ଼ି ପାରିଥିଲେ । ଭଟ୍ଟାଚାର୍ଯ୍ୟ ସଂସ୍କୃତ ଭାଷାକୁ ଚିତ୍ତରଂଜନଙ୍କୁ ଯେପରି ପଢ଼ାଇଥିଲେ ତାହା ଫଳରେ ସେ ଭବିଷ୍ୟତରେ ବିଭିନ୍ନ ଭାରତୀୟ ଭାଷା ଶିକ୍ଷା କରିବାରେ ଯେ ସମର୍ଥ ହୋଇଛନ୍ତି ତାହା ସେ ନିଜ ଆତ୍ମଜୀବନୀରେ ସ୍ୱୀକାର କରିଛନ୍ତି ।

ପାଶ୍ଚାତ୍ୟ ଦର୍ଶନକୁ ମଧ୍ୟ ଚିତ୍ତରଂଜନ ସମଭାବରେ ଉତ୍ସାହ ସହକାରେ ପଢ଼ିଥିଲେ । ପାଶ୍ଚାତ୍ୟ ଦର୍ଶନ ମଧ୍ୟ ଦେଇ ସେ ଇଉରୋପୀୟ ଜ୍ଞାନ, ସଂସ୍କୃତିର ମହନୀୟ ଅବଦାନ ଗୁଡିକର ପରିଚୟ ଲାଭ କରିଥିଲେ । ଇଉରୋପ ସହ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନ ପୂର୍ବରୁ ସେ ଦର୍ଶନ ଅଧ୍ୟୟନ ଜରିଆରେ ମାନବ ଜାତିର ସାଂସ୍କୃତିକ

ଉତ୍ତରଣ କ୍ଷେତ୍ରରେ ଏହାର ଅବଦାନ ଓ ଉଦାରଦୃଷ୍ଟିର ପରିଚୟ ଲାଭ କରିଥିଲେ । ଏହା ତାଙ୍କ ଭିତରେ ଏକ ବିଶ୍ୱଭାବ ପ୍ରତି ଶ୍ରଦ୍ଧା ଆଣି ଦେଇଥିଲା । ଏକ ସୀମିତ ଆୟତନରୁ ଏକ ବୃହତ୍ତର ଜଗତ ସହିତ ଆତ୍ମୀୟତାର ବନ୍ଧନ ପାଇଁ ଏହା ଏକ ଆରମ୍ଭ ମାତ୍ର ଥିଲା । ସୁଯୋଗ କ୍ରମେ ଇଉରୋପର ବହୁ ଦେଶକୁ ଯିବା, ଏକାଧିକ ସଂସ୍କୃତି ସହିତ ପରିଚୟ ଲାଭ କରିବା, ସଂସାରର ବହୁ କ୍ରାନ୍ତିକାରୀ ଚିନ୍ତାନାୟକ ଓ ମନୀଷୀଙ୍କଠାରୁ ପ୍ରେରଣା ପାଇବା ସମ୍ଭବ ହୋଇଥିଲା ।

ଶାନ୍ତି ନିକେତନରେ ଛାତ୍ର ଥିବାବେଳେ ସେ ପାଶ୍ଚାତ୍ୟ ଦର୍ଶନ ଅଧ୍ୟୟନ ଅବସରରେ ସପ୍ତଦଶ ଶତାବ୍ଦୀର ମହାନ ଦାର୍ଶନିକ ବେନେଡିକ୍ଟ ସ୍ପିନୋଜାଙ୍କ ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ଦର୍ଶନ ଅଧ୍ୟୟନ ଭିତରେ ତାଙ୍କୁ ଏକ ନିବନ୍ଧ (ଥିସିସ) ଲେଖିବାକୁ ପଡିଥିଲା । ତାଙ୍କର ଅଧ୍ୟାପକଗଣ ଇମାନୁଏଲ୍ କାଣ୍ଟ ବା ବର୍ଗସନଙ୍କ ଉପରେ ଲେଖିବାକୁ ପ୍ରୋତ୍ସାହନ ଦେଇଥିଲେ ମଧ୍ୟ ସେ ବିନା ସାହାଯ୍ୟରେ ସ୍ପିନୋଜାଙ୍କ ଉପରେ ଲେଖିବାକୁ ଆଗ୍ରହୀ ହୋଇଥିଲେ । ସ୍ପିନୋଜାଙ୍କର ଦର୍ଶନ, ଜୀବନ-ଗାଥା ଓ ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କୁ ଗଭୀର ଭାବରେ ସ୍ପର୍ଶ କରିଥିଲା । ସ୍ପିନୋଜା ଥିଲେ ଇଉରୋପୀୟ ପୁନର୍ଜାଗରଣ ଯୁଗର ତର୍କବୁଦ୍ଧିବାଦୀ ପରମ୍ପରାର ସବୁଠାରୁ ପ୍ରଭାବଶାଳୀ ଦାର୍ଶନିକ । କିନ୍ତୁ ଜୀବନକାଳରେ ସେ ବହୁ ନିର୍ଯ୍ୟାତନାର ଶିକାର ହୋଇଥିଲେ । ହେଲେ ତାଙ୍କର ଋଷିସୁଲଭ ନିଃସଙ୍ଗତା, ନିଷ୍ପାପ ଜୀବନଧାରା ଓ ପ୍ରଜ୍ଞାଦୀପ୍ତ ଜ୍ଞାନାନ୍ୱେଷଣ ତାଙ୍କୁ ମହାନ କରିଥିଲା। ସ୍ପିନୋଜାଙ୍କ ଦର୍ଶନ ପ୍ରତି ଚିତ୍ତରଞ୍ଜନଙ୍କର ଆକର୍ଷଣ ପଶ୍ଚାତରେ ସ୍ପିନୋଜାଙ୍କର ବ୍ୟକ୍ତିଗତ ଜୀବନର ପ୍ରଭାବ ରହିଥିବା ମନେହୁଏ । ସ୍ପିନୋଜା ନିଜର ସତ୍ୟ ପ୍ରତ୍ୟୟ ଓ ଗଭୀର ଅନୁଶୀଳନ ଜନିତ ସିଦ୍ଧାନ୍ତ ମାନଙ୍କୁ ଲେଖି ସମାଜରୁ ବାସନ୍ଦ ହୋଇଥିଲେ କାରଣ ତାଙ୍କର ଭାବନା ତତ୍କାଳୀନ ସମାଜର ଅହେତୁକ ବିଶ୍ୱାସ ଓ ଚଳଣୀକୁ ବିରୁଦ୍ଧାଚରଣ କରୁଥିଲା । ଧର୍ମଯାଜକ ମାନଙ୍କର ଅସହିଷ୍ଣୁତାର ଶିକାର ହୋଇ ମଧ୍ୟ ସେ ମଣିଷର ମହନୀୟତା ଓ ବିଚାରଶୀଳତା ଉପରେ ଗଭୀର ଆସ୍ଥା ସ୍ଥାପନ କରିଥିଲେ । ସମାଜରୁ ବାସନ୍ଦ ହୋଇ ଦିନରେ ଚଷମାର କାଚ ତିଆରି କରି ଜୀବିକାନିର୍ବାହ କରୁଥିବା ମଣିଷଟି ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟକୁ ଭ୍ରୂକ୍ଷେପ ନକରି ଆତ୍ମସନ୍ତୋଷ, ସ୍ୱାଧୀନଚିନ୍ତା ଓ ବିଦ୍ୟାସାଧନାକୁ ଶ୍ରେୟ ଭାବରେ ଗ୍ରହଣ କରିଥିଲେ । ନିଜର ଆତ୍ମପ୍ରତ୍ୟୟ ଓ ସାଧନା ଭିତରେ ସେ ସତ୍ୟର ଯେଉଁ ଅବଧାରଣା କରିଥିଲେ ତାହାକୁ ନେଇ ଜୀବନ ଯାତ୍ରାରେ ଅନେକ ପ୍ରତିକୂଳ ସ୍ଥିତିର

ସମ୍ମୁଖୀନ ହୋଇଥିଲେ । ମାତ୍ର ଛୟାଳିଶ ବର୍ଷ ବୟସରେ ତାଙ୍କର ଜୀବନଦୀପ ଲିଭି ଯାଇଥିଲା ଓ ଜୀବଦ୍ଦଶାରେ ସେ ବହୁ ନିର୍ଯ୍ୟାତନାର ଶରବ୍ୟ ହୋଇଥିଲେ । ଜୀବଦ୍ଦଶାରେ ତାଙ୍କର ଦର୍ଶନଗ୍ରନ୍ଥ ଗୁଡିକ ପ୍ରକାଶ ପାଇବାପରେ ସେ କେତେକ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦବୀ ପାଇ ମଧ୍ୟ ନିଜର ସ୍ୱାଧୀନତା ଓ ସାଧନାଠାରୁ ଦୂରେଇ ନଯିବା ପାଇଁ ସବୁ କିଛି ଅର୍ପଣକୁ ଅସ୍ୱୀକାର କରିଥିଲେ । ଏକଦା ତାଙ୍କ କୃତିମାନଙ୍କୁ ଧର୍ମଯାଜକମାନେ ଅପଶାସ୍ତ୍ର କହି ଯେପରି ପ୍ରତ୍ୟାଖ୍ୟାନ କରିଥିଲେ ସେହି ମଣିଷଙ୍କର ଦାର୍ଶନିକ ବିଚାର ଓ ଅନୁଶୀଳନ ତାଙ୍କ ମୃତ୍ୟୁର ବହୁବର୍ଷ ପରେ ଇଉରୋପୀୟ ଚିନ୍ତାଧାରାର ଅଲିଭା ଶିଖା ବୋଲି ସ୍ୱୀକୃତ ହୋଇଥିଲା । ଚିତ୍ତରଂଜନ ସ୍ପିନୋଜାଙ୍କ ଉପରେ ନିବନ୍ଧ ଲେଖି ୧୯୪୮ ଶାନ୍ତିନିକେତନର ସମାବର୍ତ୍ତନ ଉତ୍ସବରେ ପ୍ରମାଣପାତ୍ର ପାଇଥିଲେ । ଜୀବନ ସାରା ଏହି ବିବିକ୍ତ ଦାର୍ଶନିକଙ୍କର ଆଦର୍ଶ ତାଙ୍କୁ ଅନେକାଂଶରେ ପ୍ରଭାବିତ କରିଥିଲା ।

ଚତ୍ତରଞ୍ଜନ ଇଉରୋପର କେତେକ ବିଖ୍ୟାତ ବିଶ୍ୱବିଦ୍ୟାଳୟରୁ ଅଧ୍ୟୟନ କରି ଫେରିବାପରେ କୌଣସି ସରକାରୀ ପଦପଦବୀ ପ୍ରତି ବା ଉଚ୍ଚ କର୍ମସଂସ୍ଥାନ ପ୍ରତି ଆଗ୍ରହୀ ନହେବା ଓ ଚଂପତିମୁଣ୍ଡାରେ ଜଙ୍ଗଲ କାଟି କେତେକ ଛାତ୍ରମାନଙ୍କ ଗହଣରେ ଶିକ୍ଷାର ଏକ ଅଭିନବ ପ୍ରୟୋଗ ଆରମ୍ଭ କରିବା ତାଙ୍କ ଭୋଗମୁକ୍ତ ମନର ପରିଚୟ ଦେଇଥାଏ । ଜୀବନରେ ଭୌତିକ ଲାଳସାରୁ ମୁକ୍ତ ରହି ନିଜର ଆଦର୍ଶ ଭିତରେ ସାଧାରଣ ଅଥଚ ଏକ ସୃଜନଶୀଳ ଜୀବନ ବଞ୍ଚିବା ଏକ ଅସାଧାରଣ ଘଟଣା ଅଟେ । ଯେଉଁମାନେ ଜୀବନରେ ଉଚ୍ଚତର ଆହ୍ୱାନ ଓ ସୃଜନାତ୍ମକ ଅଭିବ୍ୟକ୍ତିକୁ ଶ୍ରେଷ୍ଠ ସ୍ଥାନ ଦିଅନ୍ତି, ଜ୍ଞାନାର୍ଜନ କ୍ଷେତ୍ରରେ ଏକ ଜିଜ୍ଞାସୁ ମନ ପୋଷଣ କରନ୍ତି ତଥା ଜୀବନରେ ସୋପାନ ପରେ ସୋପାନ ଅତିକ୍ରମ କରିବାକୁ ସଂକଳ୍ପ କରନ୍ତି ସେମାନଙ୍କ ଆଖିରେ ଭୌତିକ ଭୋଗବିଳାସ ସେପରି କିଛି ଗୁରୁତ୍ୱପୂର୍ଣ୍ଣ ନୁହେଁ । ନିଜର ସୃଜନଶୀଳ ଅବଦାନ ମଧ୍ୟ ଦେଇ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆଣିବା ପାଇଁ ନିଜକୁ ଉତ୍ସର୍ଗ କରିବା ଏକ ମହତ୍ତର ଜୀବନର ସ୍ୱାକ୍ଷର ବହନକରେ । ଚିତ୍ତରଞ୍ଜନଙ୍କ ଦୃଷ୍ଟିରେ ଭୋଗବିଳାସ ଅପେକ୍ଷା ଏକ ସାଧନାଯୁକ୍ତ ବିବିକ୍ତ ଜୀବନଧାରା ଯେ ମହତ୍ତର ଏହା କହିବା ଅତ୍ୟୁକ୍ତି ହେବ ନାହିଁ । ସରକାରୀ କର୍ମସଂସ୍ଥାନ, ଭୋଗ ବିଳାସ, ଭୌତିକ ପ୍ରଲୋଭନ ଇତ୍ୟାଦିରୁ ମୁକ୍ତ ରହିବାଦ୍ୱାରା ତାଙ୍କର ସର୍ଜନାତ୍ମକ ଶ୍ରଦ୍ଧା ଗୁଡିକର ଯେ ପରିପୂର୍ଣ୍ଣ ବିସ୍ତାର ହୋଇଛି ଏହା ସମ୍ଭବତଃ କୁହାଯାଇପାରେ । ଏଥିପାଇଁ ତାଙ୍କର ପ୍ରିୟ ଦାର୍ଶନିକ ସ୍ପିନୋଜାଙ୍କର କିଛି ପ୍ରଭାବ ରହିଥିବା ମନେହୁଏ ।

ଜ୍ଞାନସାଧନ ଯାତ୍ରାରେ ଚିତ୍ତରଞ୍ଜନ ପାଶ୍ଚାତ୍ୟ ଜଗତର ବହୁ ଦାର୍ଶନିକ ଓ ମନୀଷୀଙ୍କୁ ଭେଟିଛନ୍ତି । ସେମାନଙ୍କର ଦର୍ଶନ ଓ ଭାବନା ସମଗ୍ର ସଂସାରର ବା ମାନବ ଜାତିର ସାଂସ୍କୃତିକ ଓ ନୈତିକ ଉତ୍ତରଣରେ ସହାୟକ ହୋଇଛି । ସେହି ମନୀଷୀମାନଙ୍କ ଭିତରୁ କେତେକ ତାଙ୍କୁ ଅଧିକ ପ୍ରଭାବିତ କରିଛନ୍ତି । ବିଶେଷକରି ଦର୍ଶନକୁ ଏକ ମୂଲ୍ୟବୋଧ ଭାବରେ ଗ୍ରହଣକରି ସମାଜର ଶ୍ରେୟସାଧନ ପାଇଁ ଯେଉଁମାନେ ଏହାକୁ ଜୀବନରେ ପ୍ରୟୋଗ କରିବାକୁ ପ୍ରୟାସ କରିଛନ୍ତି ଚିତ୍ତରଞ୍ଜନ ସେହିମାନଙ୍କ ଦ୍ୱାରା ଅଧିକ ପ୍ରଭାବିତ ହୋଇଛନ୍ତି । ସ୍ପିନୋଜାଙ୍କ ପରି ଆଉ ଜଣେ ବିଶିଷ୍ଟ ମାନବବାଦୀ ଚିନ୍ତାନାୟକ ଆଲବର୍ଟ ଶ୍ୱାଇତ୍‌ଜରଙ୍କୁ ଚିତ୍ତରଞ୍ଜନ ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି । ଏପରିକି ଶ୍ୱାଇତ୍‌ଜରଙ୍କର ଆତ୍ମଜୀବନୀକୁ ସେ ଜର୍ମାନ ଭାଷାରୁ ଓଡିଆରେ ଅନୁବାଦ କରିଛନ୍ତି । ଶ୍ୱାଇତ୍‌ଜର ଜର୍ମାନୀର ଗୋଟିଏ ବିଶ୍ୱବିଦ୍ୟାଳୟରେ ଦର୍ଶନର ଅଧ୍ୟାପକ ଥିଲେ, ତୁଳନାତ୍ମକ ଧର୍ମ ଉପରେ କେତେକ ପୁସ୍ତକ ରଚନା କରି ଜଣେ ପ୍ରବୀଣ ପ୍ରଫେସର ଭାବରେ ନିଜକୁ ପ୍ରତିଷ୍ଠା କରିଥିଲେ । ହେଲେ ଅନ୍ତରରେ ସେବା ପାଇଁ ରହିଥିବା ଏକ ସହଜାତ ଆକର୍ଷଣ ଭିତରେ ସେ ଅଧ୍ୟାପନାରୁ ଅବ୍ୟାହତି ନେଇ ଡାକ୍ତରୀପାଠ ପଢ଼ିଲେ ଓ ଚିକିତ୍ସକ ଭାବେ ଅସହାୟ ମଣିଷର ସେବା ପାଇଁ ଆଫ୍ରିକାର ଏକ ଦୁର୍ଗମ ଅଞ୍ଚଳକୁ କର୍ମକ୍ଷେତ୍ର ଭାବେ ବାଛିଥିଲେ । ଆଫ୍ରିକାକୁ ସେତେବେଳେ ଅନ୍ଧକାରର ଦେଶ କୁହାଯାଉଥିଲା ଓ ଏହା ଇଉରୋପୀୟ ଦେଶମାନଙ୍କର ଉପନିବେଶ ହୋଇ ରହିଥିଲା । ଶ୍ୱାଇତ୍‌ଜର ଦୁର୍ଗତ ମଣିଷର ସେବାରେ ନିଜକୁ ଉତ୍ସର୍ଗ କରିବା ସହ ସମଗ୍ର ବିଶ୍ୱରେ ଶାନ୍ତି ଓ ସଦ୍‌ଭାବ ପ୍ରତିଷ୍ଠା ପାଇଁ ପ୍ରୟାସ କରିଥିଲେ । ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଯୁଗରେ ଯେତେବେଳେ ପରମାଣୁ ବୋମା ଓ ଜଗତ-ଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ ପାଇଁ ଦେଶ ଦେଶ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗି ରହିଥିଲା ସେତେବେଳେ ସେ ବିଶ୍ୱ ଜନମତକୁ ଏହା ବିରୁଦ୍ଧରେ ସଚେତନ କରିବାକୁ ପ୍ରୟାସ କରିଥିଲେ । ବିଶ୍ୱ ବିବେକର ପକ୍ଷ ନେଇ ପୃଥିବୀର ଶାନ୍ତିକାମୀ ଜନଗଣଙ୍କର ପ୍ରତିନିଧି ଭାବେ ସେ ସମଗ୍ର ବିଶ୍ୱରେ ଶାନ୍ତି ଓ ଅହିଂସାର ବାର୍ତ୍ତା ପ୍ରଚାର କରିଥିଲେ । ମାନବିକ ମର୍ଯ୍ୟାଦାକୁ ମଧ୍ୟ ସେ ସର୍ବାଧିକ ମୂଲ୍ୟ ଦେଉଥିଲେ । ଧର୍ମ, ଭାଷା, ଜାତୀୟତାର ଊର୍ଦ୍ଧ୍ୱକୁ ଯାଇ ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ଦୃଷ୍ଟିକୋଣ ଓ ସର୍ବଜନହିତୈଷୀ ଭାବର ଯେଉଁ ଜୀବନଦର୍ଶନ ଦେଇଛନ୍ତି ଓ ଦୁର୍ଗତ ମଣିଷର ସେବାରେ ଜୀବନକୁ ଉତ୍ସର୍ଗ କରିଛନ୍ତି ତାହା ଚିତ୍ତରଞ୍ଜନଙ୍କୁ ବହୁଭାବରେ ପ୍ରଭାବିତ କରିଛି ।

ଚିତ୍ତରଞ୍ଜନ ଜୀବନରେ ମାନବିକତାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେଇ ଆସିଛନ୍ତି। ଜାତୀୟତା, ଧର୍ମର ସୀମାକୁ ଅତିକ୍ରମ କରି ସେ ନିଜ ଭିତରେ ଏକ ବିଶ୍ୱଭାବ ପୋଷଣ କରିଛନ୍ତି । ବହୁ ଦେଶ ଭ୍ରମଣକରି ବହୁ ସଂସ୍କୃତି ଓ ଜୀବନଧାରାକୁ ପ୍ରତ୍ୟକ୍ଷ ଭାବରେ ଅନୁଭବୀଛନ୍ତି । ସଂସାରର ଯେଉଁ ଜାଗାକୁ ଯାଇଛନ୍ତି ସେଠି ଆତ୍ମୀୟତାର ଡୋରି ଲଗାଇଛନ୍ତି । ଜୀବନକୁ କେବେ ହେଲେ ଅନିତ୍ୟ ବୋଲି ନେଇନାହାନ୍ତି ବରଂ କେତେ ସମ୍ଭାବନାମୟ ବୋଲି ଗ୍ରହଣ କରିଛନ୍ତି । ସଂସାରରେ କେତେ ସ୍ନେହ, ମମତା ରହିଛି; ନିଜର ହୃଦୟକୁ ଖୋଲିଦେଲେ କେତେ ଆଦର ଓ ସଂପ୍ରୀତି ମିଳେ ତାହା ନେଇ ଚିତ୍ତରଞ୍ଜନଙ୍କର ବହୁ ବାସ୍ତବ ଅଭିଜ୍ଞତା ତାଙ୍କ ଲେଖାରେ ନାନା ଭାବରେ ବ୍ୟକ୍ତ ହୋଇଛି । ଆମ ସଂସାରରେ ନାନା ବୈଚିତ୍ର୍ୟ ରହିଛି। ହେଲେ ସବୁଠି ହୃଦୟ ରହିଛି, ଅନାବିଳ ସ୍ନେହ, ମମତା ରହିଛି, ମାନବିକ ସଂପ୍ରୀତିର ବଂଧନ ରହିଛି। ଯାବତୀୟ ଜୀବନବୋଧ, ସଂସ୍କୃତିବୋଧ ଓ ଭଗବତବୋଧ ରହିଥିଲେ ମଧ୍ୟ ସେସବୁ ମାନବିକତାର ଜୟଗାନ ପାଇଁ ଉଦ୍ଦିଷ୍ଟ ହେବା ଆବଶ୍ୟକ ବୋଲି ସେ ଆଶା ପ୍ରକାଶ କରିଛନ୍ତି । ଚିତ୍ତରଞ୍ଜନ ଗୋଟିଏ ସ୍ଥାନୀୟ ଆୟତନଟି ଭିତରେ ବଢ଼ିଥିଲେ । ହେଲେ ତାଙ୍କର ବୃହତ୍ତର ଉପଲବ୍ଧି ଭିତରେ ସେ ସକଳ ଆୟତନର ସୀମାକୁ ଟପି ଯାଇଛନ୍ତି । ନିଜର ଗବାକ୍ଷକୁ ଖୋଲି ଦେବା ପରେ ସେ ବିଶ୍ୱକୁ ଏକ ପରିବାର ରୂପେ ଦେଖିଛନ୍ତି । ନିଜର ଅନୁରାଗ ଓ ଆତ୍ମୀୟତା ନେଇ ସେ ସବୁ ଜାଗାରେ ତାର ଯଥାର୍ଥ ପ୍ରତିଦାନ ଯୋଗ୍ୟ ବିନିମୟ ପାଇଛନ୍ତି । ବିଶ୍ୱମାନବିକତା ସହ ଏକତ୍ୱ ସ୍ଥାପନ କରିଛନ୍ତି । ତାଙ୍କ ଜୀବନଦର୍ଶନ କ୍ଷେତ୍ରରେ ଏହି ଯେଉଁ ବିଶ୍ୱଭାବର ପରିଚୟ ମିଳେ ଏହା ଶ୍ରୀଇତଜରଙ୍କ ପରି ବହୁ ମାନବହିତୈଷୀ, ଶିକ୍ଷାବିତ୍ ଓ ଲେଖକଙ୍କ ସହ ସମ୍ବନ୍ଧ ଭିତରେ ସୃଷ୍ଟି ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଚିତ୍ତରଞ୍ଜନଙ୍କ ଅଧ୍ୟୟନ ଓ ଭ୍ରମଣର ବ୍ୟାପକତା ପରିପ୍ରେକ୍ଷୀରେ ସେ ଏପରି ଆହୁରି ଅନେକ ବ୍ୟକ୍ତିଙ୍କୁ ଭେଟିଛନ୍ତି ଯେଉଁମାନଙ୍କର ଜୀବନାଦର୍ଶ ଓ ଅବଦାନ ସେହି ଦେଶମାନଙ୍କର ଇତିହାସରେ ପ୍ରମୁଖ ଘଟଣା । ପୃଥିବୀର ବିଭିନ୍ନ ଦେଶରେ କେତେ କେତେ ପ୍ରତିଭାବାନ ବ୍ୟକ୍ତି ରହିଛନ୍ତି, କେତେ ମହତ୍ତର ଲକ୍ଷ୍ୟ ନେଇ ଜୀବନ ବଞ୍ଚିଛନ୍ତି ଓ ବିଶ୍ୱ ମାନବିକତାକୁ ଋଦ୍ଧିମନ୍ତ କରିଛନ୍ତି । ଚିତ୍ତରଞ୍ଜନ ଶିକ୍ଷା ଇତିହାସରେ ଓ ମନୋବିଜ୍ଞାନ ଭିତରେ ଏପରି ବହୁ ପାଶ୍ଚାତ୍ୟ ପ୍ରତିଭାମାନଙ୍କର ସମୀପବର୍ତ୍ତୀ ହୋଇଛନ୍ତି । ତାଙ୍କର ଆତ୍ମଜୀବନୀରେ ସେହି ପ୍ରତିଭାଧର ସାଧକ ଓ ମାନବଦରଦୀ

ମନୀଷୀଙ୍କର ସାଧନା ଓ ସଫଳତାର ଯେଉଁ କାହାଣୀମାନ ରହିଛି ତାହା ଯଥାର୍ଥରେ ପ୍ରେରଣାଦାୟକ । ଜର୍ମାନୀର ସୋନେନ୍‌ବର୍ଗଠାରେ ପୋଲାଣ୍ଡର ଯାନୁସ କୋର୍ଚ୍ଚାକଙ୍କ ବିଷୟରେ ଜାଣିବାକୁ ପାଇ ସେ ଅଭିଭୂତ ହୋଇଥିଲେ । ଯାନୁସ କୋର୍ଚ୍ଚାକ ଡାକ୍ତର ଥିଲେ, କିନ୍ତୁ ଗରିବ ଘରର ପିଲାମାନଙ୍କୁ ପଢ଼ାଇବା ପାଇଁ ସେ ଏକ ଆବାସିକ ବିଦ୍ୟାଳୟ ସ୍ଥାପନ କରି ଶିକ୍ଷକଟିଏ ହେଲେ । ପିଲାମାନଙ୍କର ଶିକ୍ଷା ବିଷୟରେ ନୂଆ ନୂଆ ପ୍ରୟୋଗ କରି ନିଜ ଅନୁଭବରୁ କେତେକ ପୁସ୍ତକ ଲେଖି ବିଦ୍ୟାଳୟରେ ଚଳାଇଲେ । ପିଲାମାନେ ଇହୁଦୀ ଥିଲେ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ହିଟଲରଙ୍କର ଇହୁଦୀ ମାରଣ ହିଂସାର ଶରବ୍ୟ ହୋଇଥିଲେ । ମୃତ୍ୟୁ-ଯନ୍ତା ଭିତରକୁ ନେବା ପାଇଁ ସେମାନଙ୍କ ନାମ ବାହାରିଲା । ସୈନ୍ୟ ପହରା ଭିତରେ ପିଲାମାନେ ଧାଡି ବାନ୍ଧି ରାସ୍ତାକୁ ଆସିଲେ । ମୃତ୍ୟୁଗାଡ଼ି ଭିତରକୁ ପିଲାମାନଙ୍କୁ ନେବାବେଳେ କୋର୍ଚ୍ଚାକ ମଧ୍ୟ ଗୋଟିଏ ସାନ ପିଲାକୁ କୋଳକରି ଆଗରେ ଚାଲିଲେ । ତାଙ୍କ ନାମ ତାଲିକାରେ ନଥିବାରୁ ତାଙ୍କୁ ସୈନ୍ୟମାନେ ବାରଣ କଲେ ମଧ୍ୟ କୋର୍ଚ୍ଚାକ ମାନିଲେ ନାହିଁ । "ମୁଁ ସାଙ୍ଗରେ ରହିଥିଲେ ମୋ ପିଲାମାନଙ୍କ ପାଇଁ ମୃତ୍ୟୁ ହୁଏତ କିଞ୍ଚିତ କମ୍ କଷ୍ଟଦାୟକ ହେବ" ବୋଲି କହି ଗାଡି ଭିତରକୁ ପଶିଗଲେ । ମୃତ୍ୟୁକୁ ଆଲିଙ୍ଗନ କରିବା ପର୍ଯ୍ୟନ୍ତ ପିଲାଙ୍କ ଗହଣରେ ବିଦ୍ୟାଳୟର ଗୌରବ ବିଷୟରେ ତାଙ୍କର ଗାନ କରାଯାଉଥିବା ପ୍ରାର୍ଥନାଟିକୁ ଗାଉଥିଲେ । ଏହି ଘଟଣାରେ ଜଣେ ଶିକ୍ଷକର ପିଲାମାନଙ୍କ ସହିତ ଅର୍ଜନ କରିଥିବା ଏକାତ୍ମତା ବିଷୟରେ ଚିତ୍ତରଂଜନ ଉଲ୍ଲେଖ କରିଛନ୍ତି । ଶିକ୍ଷାଦାନ ଜଣେ ଶିକ୍ଷକକୁ ମଧ୍ୟ ଚରମ ଆତ୍ମଦାନ ପାଇଁ ଯେ ପ୍ରସ୍ତୁତ କରିପାରେ ଚିତ୍ତରଞ୍ଜନ ଏହି ନିଷ୍କର୍ଷଟିକୁ ବାହର କରିଛନ୍ତି । ଯାନୁସ କୋର୍ଚ୍ଚକ ସେଦିନ ସତ୍ୟାଗ୍ରହୀ ଭାବେ ତ୍ୟାଗର ଯେଉଁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଇଲେ ଓ ଅସତ୍ୟ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠାଇଲେ ତାହା ଶିକ୍ଷକମାନଙ୍କ ପାଇଁ ଆଦର୍ଶ ହୋଇ ରହିଛି । ଚିତ୍ତରଞ୍ଜନ ନିଜର ଶିକ୍ଷକତା ଭିତରେ ସାହସିକତାର ପ୍ରମାଣ ମଧ୍ୟ ଦେଇଛନ୍ତି । ନିଜର ଆଦର୍ଶକୁ ରକ୍ଷା କରିବା ପାଇଁ ସେ ତ୍ୟାଗ ସ୍ୱୀକାର କରିଛନ୍ତି । ଚମ୍ପତିମୁଣ୍ଡାସ୍ଥିତ ଜୀବନ ବିଦ୍ୟାଳୟର ଶିକ୍ଷକତା ଭିତରେ ତାଙ୍କ ନିଷ୍କପଟ ହୃଦୟର ପରିଚୟ ମିଳିଥାଏ । ଅମାପ ଶ୍ରଦ୍ଧା ନେଇ ସେ ବିଦ୍ୟାଳୟର ଦୂଆଟି ପକାଇଥିଲେ ଓ ପିଲାମାନଙ୍କ ସହିତ ହୃଦୟ ବନ୍ଧନକୁ ଦୃଢ଼ କରିଥିଲେ । ସମସ୍ତ ପ୍ରଲୋଭନରୁ ମୁକ୍ତ ରହି ଜଣେ ଆଦର୍ଶ ଶିକ୍ଷକ ଭାବେ ତ୍ୟାଗର ପରାକାଷ୍ଠା ଦେଖାଇଥିଲେ ।

ଇସ୍ରାଏଲର ବିଶିଷ୍ଟ ମନୋବିଜ୍ଞାନୀ ଓ ମାନବବାଦୀ ଦର୍ଶନର ପ୍ରବକ୍ତା ମାର୍ଟିନ ବୁବରଙ୍କୁ ତାଙ୍କର ଲେଖା ମାଧ୍ୟମରେ ଚିତ୍ତରଞ୍ଜନ ଡେନମାର୍କରେ ଅଧ୍ୟୟନ କରୁଥିବା ବେଳେ ଜାଣିବାକୁ ପାଇଥିଲେ । ପରେ ତାଙ୍କୁ ସାକ୍ଷାତକରି ତାଙ୍କର ଋଷିପ୍ରତିମ ଚରିତ୍ର, ଶାଣିତ ପ୍ରଜ୍ଞା ଓ ବିଶ୍ୱଦୃଷ୍ଟିର ପରିଚୟ ଲାଭ କରିଥିଲେ । ସଂସାରକୁ ଓ ସଂସାରର ସବୁ ମଣିଷଙ୍କୁ ଏକ ସୁହୃତ୍ ବୋଲି ବିଚାର କରୁଥିବା ଓ ସେହି ଭାବରେ ନିଜେ ଜୀବନ ବଞ୍ଚୁଥିବା ମାର୍ଟିନ ବୁବର ଚିତ୍ତରଞ୍ଜନଙ୍କ ମାନବିକ ଦୃଷ୍ଟିକୁ ଅଧିକ ସଂପ୍ରସାରିତ କରିବା କ୍ଷେତ୍ରରେ ପ୍ରେରଣା ଦାୟକ ହୋଇଛନ୍ତି ।

ସେହିପରି ଅଷ୍ଟ୍ରିଆର ଭିଏନାଠାରେ ବିଖ୍ୟାତ ମନୋବିଜ୍ଞାନୀ ଫ୍ରାଙ୍କଲଙ୍କୁ ଚିତ୍ତରଞ୍ଜନ ୧୯୬୩ରେ ସାକ୍ଷାତ କରିଥିଲେ । ଭିକ୍ଟର ଫ୍ରାଙ୍କଲ ଥିଲେ ଅସୀମ ଧୈର୍ଯ୍ୟ ଓ ସହନଶୀଳତାର ଏକ ମୂର୍ତ୍ତିମନ୍ତ ପ୍ରତୀକ । ମନୋବିଜ୍ଞାନକୁ ଫ୍ରାଙ୍କଲ ବହୁ ଅମୂଲ୍ୟ ଅବଦାନ ଦେଇଯାଇଛନ୍ତି । ଏହି ଜିଜ୍ଞାସୁ ବ୍ୟକ୍ତିଟି ବର୍ଷବର୍ଷ ଧରି ନାଜୀମାନଙ୍କ ଇହୁଦୀ ଦଳନ ଅତ୍ୟାଚାରର ଶିକାର ହୋଇଥିଲେ । ବନ୍ଦୀ ହୋଇ ମରଣ ଶିବିରରେ ରହିବା ଭିତରେ ତାଙ୍କର ମୃତ୍ୟୁ ନିକଟ ହୋଇ ଆସୁଥିବା ବେଳେ ସହ ବନ୍ଦୀମାନଙ୍କର ପ୍ରତିକ୍ରିୟାକୁ ଅତି ନିକଟରେ ଅନୁଧ୍ୟାନ କରୁଥିଲେ । ସୁନିଶ୍ଚିତ ମୃତ୍ୟୁକୁ ଅପେକ୍ଷାକରି ରହିଥିବା ବ୍ୟକ୍ତିମାନଙ୍କର ଜୀବନ, ସମାଜ ବା ଭଗବାନଙ୍କ ପ୍ରତି ମନରେ କ'ଣ ସବୁ ପ୍ରତିକ୍ରିୟା ଆସୁଛି ତାକୁ ଲକ୍ଷ୍ୟ କରୁଥିଲେ । ମାରଣ ଶିବିରରେ ଆର୍ତ୍ତନାଦ କରୁଥିବା ଓ ଦୁଃଖରେ ଅସମ୍ଭାଳ ହୋଇ ପଡୁଥିବା ମଣିଷମାନଙ୍କୁ ଦେଖୁଥିଲେ ଓ ନିଜେ ସେହି ସ୍ଥିତିରେ ଥାଇ ମଧ୍ୟ ଜୀବନର ମୂଲ୍ୟାନ୍ୱେଷଣ ନେଇ ଗମ୍ଭୀର ଚିନ୍ତା କରୁଥିଲେ । ଅବଶ୍ୟ ଫ୍ରାଙ୍କଲ ବିଷାକ୍ତ ବାଷ୍ପରେ ମୃତ୍ୟୁବରଣ କରିବା ପୂର୍ବରୁ ଯୁଦ୍ଧରେ ହିଟଲରଙ୍କର ପତନ ଯୋଗୁଁ ଖଲାସ ହୋଇ ବାହାରର ଆଲୋକ ଦେଖିବାକୁ ସମର୍ଥ ହେଲେ । ଫ୍ରାଙ୍କଲ ମନୋବିଜ୍ଞାନ ମାନଦଣ୍ଡରୁ ଜୀବନର ପରିପୂର୍ଣ୍ଣତା, ସର୍ଜନାତ୍ମକତା ଓ ସୁସ୍ଥତା ନେଇ ଯେଉଁ ବିଶ୍ଳେଷଣମାନ ଦେଇଥିଲେ ତାହା ବେଶ୍ ଉଦ୍‌ବୋଧକ ଥିଲା । ଜୀବନବୋଧର ପ୍ରୟୋଜନ ଅନୁସାରେ ମଣିଷ କିପରି ଏକ ସୁସ୍ଥ ଦୃଷ୍ଟିଭଙ୍ଗୀ ନେଇ ଚାଲିପାରିବ ତାହାକୁ ସୁନ୍ଦର ଭାବରେ ସେ ବିଶ୍ଳେଷଣ କରିଛନ୍ତି । ସୃଜନଶୀଳ ସୁସ୍ଥ ମଣିଷ ଓ ତାର ସୁଖ ଦୁଃଖର ଆବେଗକୁ ସେ ଯେପରି ବ୍ୟାଖ୍ୟା କରି ମଣିଷର ଅନ୍ତର୍ଜୀବନର ଦିଗଗୁଡ଼ିକୁ ଉନ୍ମୋଚିତ କରିଛନ୍ତି ତାହା ଚିତ୍ତରଞ୍ଜନଙ୍କୁ ବହୁ ଭାବରେ ମନୋବିଜ୍ଞାନ ଭିତରେ ପ୍ରବେଶ କରିବାକୁ ପ୍ରେରଣା ଦେଇଛି । ସେହିପରି ଆବ୍ରାହମ୍ ମାସଲୋଭ ମଧ୍ୟ ସୁସ୍ଥ

ମଣିଷକୁ ଭିତ୍ତି କରି ସୁସ୍ଥ ଆସ୍ପୃହା ଗୁଡିକର ବ୍ୟାଖ୍ୟା କରିଛନ୍ତି । ମନୋବିଜ୍ଞାନ ଜଗତରେ ଏହିପରି ବହୁ ପ୍ରବୀଣ ଚିନ୍ତାଶୀଳ ତତ୍ତ୍ୱଜ୍ଞ ମାନଙ୍କର ସିଦ୍ଧାନ୍ତ ସକଳକୁ ଜାଣିବା, ସେମାନଙ୍କର ବ୍ୟକ୍ତିଗତ ସଂପର୍କରେ ଆସିବାଦ୍ୱାରା ଚିତ୍ତରଞ୍ଜନଙ୍କର ବୌଦ୍ଧିକ ଅନ୍ତର୍ଦୃଷ୍ଟି ଅନେକ କିଛି ଲାଭ କରି ପାରିଛି ।

ଚିତ୍ତରଞ୍ଜନ ସେହିପରି ଶିକ୍ଷା, ସାହିତ୍ୟ କ୍ଷେତ୍ରରେ ବହୁ ପାଶ୍ଚାତ୍ୟ ମନୀଷୀଙ୍କୁ ଭେଟିଛନ୍ତି । ବିଶେଷକରି ଡେନମାର୍କରେ ପାଠ ପଢ଼ିବା ବେଳେ ସେ ଦେଶର ଶିକ୍ଷା ବ୍ୟବସ୍ଥାରେ ଯେଉଁ ସବୁ ନୂତନ ପ୍ରୟୋଗମାନ ହୋଇ ଶିକ୍ଷାକୁ ଜୀବନଧର୍ମୀ କରାଯାଇଛି ତାହାର ବହୁ ପ୍ରତ୍ୟକ୍ଷ ଅନୁଭୂତି ସେ ଲାଭ କରିଛନ୍ତି । ଡେନମାର୍କ, ଫିନଲ୍ୟାଣ୍ଡ ଆଦି ଦେଶ ମାନଙ୍କର ଲୋକ ବିଦ୍ୟାଳୟ ବିଷୟରେ ସେ ଅନେକ ଲେଖାରେ ଉଲ୍ଲେଖ କରିଛନ୍ତି । ସେସବୁ ଦେଶର ଲୋକ ବିଦ୍ୟାଳୟ ଗୁଡିକ ବୁଲି ଦେଖିଛନ୍ତି, ଅନେକ ବିଦ୍ୟାଳୟରେ ପିଲାଙ୍କ ସହ ଭାବର ଆଦାନ ପ୍ରଦାନ କରିଛନ୍ତି । ସମ୍ଭବତଃ ସେହି ସବୁ ଦେଶରେ ଶିକ୍ଷାର ନୂତନ ରୂପଟି ଦେଖିବାପରେ ଆମ ଦେଶର ଶିକ୍ଷାରେ ରହିଥିବା ଦୁର୍ଗତି ଗୁଡିକ ବିଷୟରେ ଅଧିକ ସେଚେତନ ହୋଇଛନ୍ତି । ଶିକ୍ଷା ଭିତରୁ ମନୁଷ୍ୟତାବୋଧ କିପରି ନଷ୍ଟ ହୋଇ ଯାଉଛି ସେ ବିଷୟରେ ସେ ଚିନ୍ତିତ ହୋଇଛନ୍ତି ଓ ବିଭିନ୍ନ ଲେଖାରେ ଶିକ୍ଷା ବିଷୟରେ ତାଙ୍କ ବିଚାରକୁ ମୁକ୍ତ ଭାବରେ ପ୍ରକାଶ କରିଛନ୍ତି । ଆମ ଦେଶରେ ଶିକ୍ଷାରେ କେବଳ ମସ୍ତିଷ୍କର ଚାଳନା ହୁଏ କିନ୍ତୁ ହୃଦୟର, ମାନବିକତାର, ବୃହତ୍ତର ସମାଜ ପ୍ରତି କର୍ତ୍ତବ୍ୟବୋଧର କୌଣସି ଉପାଦାନ ନଥାଏ ବୋଲି ସେ ବହୁ ଭାବରେ ଅଭିଯୋଗ କରିଥାନ୍ତି । ବିଭିନ୍ନ ଦେଶର ଶିକ୍ଷା ବ୍ୟବସ୍ଥାରେ ଯେଉଁ ଶିକ୍ଷାବିତ୍‌ଗଣ ନାନା ପରିବର୍ତ୍ତନ ଆଣିବାକୁ ପ୍ରୟାସ କରିଛନ୍ତି ସେହିପରି ସଂସ୍କାରକ ମାନଙ୍କ ବିଷୟରେ ସେ ଅବଗତ ହୋଇଛନ୍ତି । ବିଶେଷକରି ଡେନମାର୍କର ଶିକ୍ଷା ଇତିହାସର ଉନବିଂଶ ଶତାବ୍ଦୀର ବିଶିଷ୍ଟ ଶିକ୍ଷା-ସଂସ୍କାରକ କ୍ରିଷ୍ଟେନ କଲଲ ଓ ବିଲାତର ଶିକ୍ଷାବିତ୍ ନେଲଙ୍କ ବିଷୟରେ "ଜଙ୍ଗଲ ଚିଠି" ଓ "ଜୀବନ ବିଦ୍ୟାଳୟ"ରେ ଉଲ୍ଲେଖ କରିଛନ୍ତି । କ୍ରିଷ୍ଟେନ କଲ୍‌ଲ ଜଣେ ଶିକ୍ଷକ ହିସାବରେ କର୍ମମୟ ଜୀବନ ଆରମ୍ଭ କରିଥିଲେ, କିନ୍ତୁ ସେ ଶିକ୍ଷା କ୍ଷେତ୍ରରେ ନାନା ନୂଆ ନୂଆ ପ୍ରୟୋଗମାନ କରୁଥିଲେ ଓ ତାହାର ସୁଫଳ ମିଳୁଥିଲା । କିନ୍ତୁ ଶିକ୍ଷା ବିଭାଗର ସର୍ବାଧ୍ୟକ୍ଷ କ୍ରିଷ୍ଟେନ କଲଙ୍କ ନୂତନ ପ୍ରୟୋଗକୁ ସ୍ୱୀକୃତି ଦେଲେ ନାହିଁ ଓ ତାଙ୍କୁ କର୍ମରୁ ନିଲମ୍ବିତ କଲେ । ନାନା ପ୍ରତିକୂଳତା ଭିତରେ ସେ ଅନୁଷ୍ଠାନରୁ ବିଦାୟ ନେଇ ସ୍ୱଉଦ୍ୟମରେ ପିଲାମାନଙ୍କୁ ପଢ଼ାଇ ତାଙ୍କର

ପ୍ରୟୋଗ ଜାରି ରଖିଲେ । ପ୍ରାୟ ଏକ ଶହ ବର୍ଷ ପରେ ସେ ଦେଶରେ ଯେତେବେଳେ ଶିକ୍ଷାରେ ସଂସ୍କାର ଆସିଲା, ପୁରାତନ ପଦ୍ଧତିକୁ ବଦଳାଇ ଶିକ୍ଷାକୁ ଜୀବନ ସହିତ ସଂପୃକ୍ତ କରାଗଲା ସେତେବେଳେ ଲୋକ ମୁହଁରେ ବଞ୍ଚିଥିବା କଲଲଙ୍କୁ ସ୍ୱୀକୃତି ଦିଆଗଲା । ନୂତନ ପ୍ରୟୋଗ ଦ୍ୱାରା ଆପଣାର ନିଷ୍ଠା ଓ ଦକ୍ଷତାର ପ୍ରମାଣ ଦେଇଥିବା କଲଲଙ୍କୁ ଦେଶର ଶିକ୍ଷା ସଂସ୍କାରର ପଥ ପ୍ରଦର୍ଶକ ଭାବେ ସମ୍ମାନ କରାଗଲା । ଡେନମାର୍କ, ନରଓ୍ୱେ, ସୁଇଡେନ ଓ ଫିନଲାଣ୍ଡ ଏହି ଚାରୋଟି ଉତ୍ତର ଇଉରୋପୀୟ ଦେଶମାନଙ୍କୁ ଯାଇ ସେସବୁ ଦେଶର ଶିକ୍ଷା ବ୍ୟବସ୍ଥା ଓ ଲୋକ ବିଦ୍ୟାଳୟ ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି ଆଣିଥିବା ଚିତ୍ତରଞ୍ଜନ ଶିକ୍ଷାରେ ନୂତନ ପ୍ରୟୋଗ ମଧ୍ୟ ଓଡିଶାରେ ଆରମ୍ଭ କରିଥିଲେ, କିନ୍ତୁ ପରିତାପର ବିଷୟ ତାହା ସରକାରୀ ଓ ପ୍ରଶାସନିକ ବିରୋଧ ଯୋଗୁଁ ସ୍ଥାୟୀ ହେଲା ନାହିଁ । ଦେଶର ସାମାଜିକ ଓ ସାଂସ୍କୃତିକ ଜୀବନଧାରାକୁ ଉନ୍ନତ ଓ ବିକଶିତ କରାଇବାରେ ଶିକ୍ଷାର ଯେଉଁ ଭୂମିକା ରହିବା ଆବଶ୍ୟକ ତାହା ଆମ ଦେଶର ପାଣି ପବନରେ ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ଦେଶର ଶିକ୍ଷା ବ୍ୟବସ୍ଥାକୁ ସମାଲୋଚନା କରିବାରେ ଚିତ୍ତରଞ୍ଜନ ପ୍ରଗଳଭ ହୋଇଛନ୍ତି । ତାଙ୍କର ପରିକଳ୍ପିତ ଶିକ୍ଷା ବ୍ୟବସ୍ଥା ବା ଗାନ୍ଧୀଙ୍କର ମୌଳିକ ଶିକ୍ଷା ଆମ ଦେଶରେ ଭିତ୍ତି ନେଇ ପାରିଲା ନାହିଁ ତାହା ଆମ ବିଫଳତାର ପ୍ରମାଣ ଦିଏ । ଏକଦା ସ୍ୱାଧୀନତା ପରେ ମୌଳିକ ଶିକ୍ଷାର ଯେଉଁ ସବୁ ପ୍ରୟୋଗ ହୋଇଥିଲା ତାହା ଆମର ରାଜନୀତିକ ଓ ସାଂସ୍କୃତିକ ପାଣି ପବନରେ ତିଷ୍ଠି ପାରିଲା ନାହିଁ । ଦେଶର ବହୁ ଶିକ୍ଷାବିତ୍ ଓ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆଣିବାକୁ ଚାହୁଁଥିବା ଗାନ୍ଧୀବାଦୀମାନେ ନିରାଶ ହେଲେ । ଆଜି ଶିକ୍ଷା ବ୍ୟବସ୍ଥା ଆହୁରି ଦିଗହରା ହେବାରେ ଲାଗିଛି । ଶିକ୍ଷାରେ ବୃହତ୍ତର ସମାଜ ପ୍ରତି କୌଣସି ଅଙ୍ଗୀକାରବୋଧ ବା ଜୀବନ ପ୍ରତି କୌଣସି ସକାରାତ୍ମକ ଆଭିମୁଖ୍ୟ ସଂପର୍କରେ ଶିକ୍ଷାର୍ଥୀକୁ ଶିକ୍ଷା ଦିଆଯାଏ ନାହିଁ । ଫଳତଃ ଦେଶର ପିଲାମାନଙ୍କୁ ଦାୟିତ୍ୱସଂପନ୍ନ ନାଗରିକ କରି ଗଢ଼ିବାର ଦାୟିତ୍ୱ ନେବାପାଇଁ ଅର୍ଥାତ୍ ଶିକ୍ଷକତା କରିବା ପାଇଁ ସମାଜର ବୁଦ୍ଧିମାନ ପ୍ରତ୍ୟୁତ୍ପନ୍ନମତି ଛାତ୍ରଛାତ୍ରୀ ମାନେ ଆଗ୍ରହ ନିଅନ୍ତି ନାହିଁ । ଚିତ୍ତରଞ୍ଜନ କିନ୍ତୁ ଯେଉଁଠି ଶିକ୍ଷକ ରହିଛନ୍ତି ସେଠି ଶିକ୍ଷାକୁ ଏକ ପୁନରୁଜୀବନ ଦେବାକୁ ପ୍ରୟାସ କରିଛନ୍ତି, ନିର୍ଭୀକ ହୋଇଛନ୍ତି, ପିଲାମାନଙ୍କ ଭିତରେ ଆତ୍ମସମ୍ମାନବୋଧ ଜାଗ୍ରତ କରାଇଛନ୍ତି ଓ ବୃହତ୍ତର ସମାଜ ପ୍ରତି ସେମାନଙ୍କର ଅନୁରାଗ ପ୍ରସାର କରାଇଛନ୍ତି । ସମ୍ଭବତଃ ତାଙ୍କ ଭିତରର ଆତ୍ମବିଶ୍ୱାସ ଓ ଅଙ୍ଗୀକାରବଦ୍ଧତା ତାଙ୍କୁ ତାଙ୍କ ବାଟରେ ନୂତନତ୍ୱର ପ୍ରୟୋଗ ପାଇଁ ପ୍ରେରଣା ଦେଇଛି ।

ଚିତ୍ତରଞ୍ଜନଙ୍କ ନିଜସ୍ୱ ସ୍ୱୀକାରୋକ୍ତି ଅନୁଯାୟୀ ସେ ଜଣେ ଶିକ୍ଷକ ହେବାକୁ ଏହି ସଂସାରକୁ ଆସିଛନ୍ତି । ସମ୍ଭବତଃ ଶାନ୍ତି ନିକେତନରେ ଅଧ୍ୟୟନ କରିବାବେଳେ ସେଠିକାର ଅଭିନବ ଶିକ୍ଷାପ୍ରୟୋଗ ତଥା ପ୍ରବୀଣ ଜ୍ଞାନପୀପାସୁ ଅଧ୍ୟାପକ ମାନଙ୍କର ବ୍ୟକ୍ତିଗତ ସଂପର୍କରେ ଆସି ଜୀବନରେ ଜଣେ ଶିକ୍ଷକ ହେବାକୁ ନିଷ୍ପତ୍ତି ନେଇଛନ୍ତି । ଶାନ୍ତିନିକେତନରୁ ଇଉରୋପ ଯିବା ପରେ ସେଠିକାର ଶିକ୍ଷା ବ୍ୟବସ୍ଥାର ମହତ୍ତର ସ୍ଥିତି ତାଙ୍କର ଶ୍ରଦ୍ଧାକୁ ଆହୁରି ପ୍ରସାରିତ କରିଦେଇଛି । ଗାନ୍ଧୀଙ୍କର ମୌଳିକ ଶିକ୍ଷାବିଚାର ତାଙ୍କର ସ୍ୱଧର୍ମ ବିଷୟରେ ତାଙ୍କୁ ଯଥେଷ୍ଟ ସଚେତନ କରାଇଛି । ବସ୍ତୁତଃ ଶିକ୍ଷକତାକୁ ନିଜର ସ୍ୱଧର୍ମ ଭାବେ ବାଛିବାପରେ ସେ ଅନ୍ୟ ସମସ୍ତ ଅନୁରକ୍ତି ଓ ପ୍ରଲୋଭନକୁ ଏଡାଇ ଯାଇଛନ୍ତି । ଚମ୍ପତିମୁଣ୍ଡାର ମୌଳିକ ଶିକ୍ଷାକ୍ଷେତ୍ରରେ, ବିଚିପୁରୀ, ଆଗ୍ରାର ଗ୍ରାମୀଣ ବିଶ୍ୱବିଦ୍ୟାଳୟରେ, ଭୁବନେଶ୍ୱରର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ, ବିଦେଶର ବିଭିନ୍ନ ଲୋକବିଦ୍ୟାଳୟ ମାନଙ୍କରେ ଜଣେ ଶିକ୍ଷକ ଭାବେ ସେ ନିଜର ସ୍ୱାକ୍ଷର ରଖି ଯାଇଛନ୍ତି । ଶିକ୍ଷାନୁଷ୍ଠାନ ସହ ସଂପୃକ୍ତ ନ ରହିବାବେଳେ ମଧ୍ୟ ଜଣେ ଶିକ୍ଷକର ସାଧନା ଓ ସ୍ୱଧର୍ମ ଭିତରେ ନିଜକୁ ନିବିଷ୍ଟ କରି ରଖିଛନ୍ତି । ଶିକ୍ଷାନୁଷ୍ଠାନ ସହିତ ସଂପୃକ୍ତ ହୋଇ ରହିବା ଅବସରରେ ତାଙ୍କର ଛାତ୍ରମାନଙ୍କ ସହ ସମ୍ବନ୍ଧ କେବଳ ଔପଚାରିକ ସମ୍ବନ୍ଧ ଭିତରେ ସୀମିତ ରହି ନାହିଁ । ସବୁ ଜାଗାରେ ସେ ଛାତ୍ରମାନଙ୍କ ସହ ନିବିଡ଼ ସଂପର୍କ ସ୍ଥାପନ କରିଛନ୍ତି ଓ ସେମାନଙ୍କର ପ୍ରତ୍ୟୟ ମଣ୍ଡଳକୁ ପ୍ରବେଶ କରିବାର ପ୍ରୟାସ କରିଛନ୍ତି । ଜଣେ ଶିକ୍ଷକ ଭାବେ ନିଜକୁ ଓ ନିଜର ଛାତ୍ରମାନଙ୍କୁ ଏକ ବୃହତ୍ତର ପୃଥିବୀ ପାଇଁ ଅଧିକ ଯୋଗ୍ୟ କରି ଗଢ଼ିବାକୁ ସର୍ବଦା ପ୍ରୟାସ କରିଛନ୍ତି । ଶିକ୍ଷାକ୍ଷେତ୍ରରେ ରହିଲେ ନିଜ ସାମର୍ଥ୍ୟକୁ ଅଧିକ ବିକଶିତ କରିହେବ ବୋଲି ସେ ଭାବିଛନ୍ତି । ଛାତ୍ରମାନଙ୍କୁ ବନ୍ଧୁଭାବେ ଦେଖିବା ଓ ଶିଷ୍ୟକୁ ଶିକ୍ଷା ଓ ଜୀବନ ପ୍ରତି ଅନୁରାଗୀ କରାଇବା ତାଙ୍କ ଶିକ୍ଷକ ଜୀବନର ବୈଶିଷ୍ଟ୍ୟ କହିବାକୁ ହେବ । ତାଙ୍କର ଜ୍ଞାନର ଗଭୀରତା, ବ୍ୟାପକ ଅନୁଭୂତି ତାଙ୍କ ଭିତରେ କୌଣସି ଅହଙ୍କାରଭାବ ସୃଷ୍ଟି କରିନାହିଁ, ବରଂ ଜୀବନରେ ଆହୁରି ଅନେକ ଶିକ୍ଷା କରିବାର ଅଛି, ଅନେକ ବାଟ ଚାଲିବାକୁ ଅଛି, ଅନେକ ଉପଲବ୍ଧି ଆଣିବାର ଅଛି ଏହିପରି ଏକ ଜିଜ୍ଞାସାବୋଧ ତାଙ୍କୁ ସର୍ବଦା ଅନୁପ୍ରାଣିତ କରିଛି । ତାଙ୍କ ଭିତରର ଏହି ଦୃଷ୍ଟିଭଙ୍ଗୀ ଓ ଅନୁରାଗ ତାଙ୍କୁ ଯେ ଜଣେ ଆଦର୍ଶ ଶିକ୍ଷକର ସ୍ଥାନ ଦେଇପାରିଛି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜିର ପରିଣତ ବୟସରେ ମଧ୍ୟ ତାଙ୍କ ଭିତରେ ଏହିପରି ଏକ ତପସ୍ୱୀ ସତ୍ତା ଓ ଶିକ୍ଷା ପ୍ରତି ଅଙ୍ଗୀକାରବଦ୍ଧତା ରହିଥିବା ଦେଖାଯାଏ ।

ଶିକ୍ଷା ଭଳି ସାହିତ୍ୟ ପ୍ରତି ଚିତ୍ତରଞ୍ଜନ ଜୀବନସାରା ଅନୁରାଗଯୁକ୍ତ ହୋଇ ରହିଛନ୍ତି । ଓଡିଆ, ବଙ୍ଗଳା ଓ ଇଂରାଜୀ ସାହିତ୍ୟରେ ତାଙ୍କର ଯଥେଷ୍ଟ ଅନୁପ୍ରବେଶ ଶାନ୍ତିନିକେତନରେ ହୋଇଥିଲା । ଓଡିଆ ସନ୍ଥ ସାହିତ୍ୟ ଉପରେ ଗବେଷଣା କରି କେତେକ ଭାରତୀୟ ଭାଷାର ସନ୍ଥ ସାହିତ୍ୟ ମଧ୍ୟରେ ସେ ପ୍ରବେଶ କରିଥିଲେ । ପରେ ସେ ବିଶ୍ୱ ସାହିତ୍ୟର ବହୁ ସ୍ରଷ୍ଟାଙ୍କୁ ଭେଟିବାର ସୁଯୋଗ ପାଇଲେ । ଏପରିକି କେତେକ ନୋବେଲ ପୁରସ୍କାର ପ୍ରାପ୍ତ ଉପନ୍ୟାସକୁ ଓଡିଆରେ ଅନୁବାଦ କଲେ । ସାହିତ୍ୟ ତାଙ୍କ ସୃଜନଶୀଳତାର ଦିଗନ୍ତକୁ ବିସ୍ତାରିତ କରିଦେଲା । ବହୁ ମହାନ ଲେଖକଙ୍କର ଗଭୀରତମ ଅନୁଭବ, ଦ୍ୱନ୍ଦ୍ୱ, ଜୀବନର ସଂଘର୍ଷ, ସମାଜ ପାଇଁ ବାର୍ତ୍ତା, ମାନବିକ ମୂଲ୍ୟବୋଧ ତାଙ୍କୁ ନାନା ଭାବରେ ସ୍ପର୍ଶ କରିଛି । ଜୀବନ ପ୍ରତି ଏକ ସକାରାତ୍ମକ ଦୃଷ୍ଟି ପୋଷଣ କରିବାରେ ଓ ସମ୍ବେଦନଶୀଳ ହେବାରେ ସାହିତ୍ୟର ପ୍ରଭାବ ସବୁଠାରୁ ଅଧିକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡିଆ ପ୍ରବନ୍ଧ ସାହିତ୍ୟକୁ ଗୁଣାତ୍ମକ ଓ ପରିମାଣାତ୍ମକ ଉଭୟ ମାନଦଣ୍ଡରୁ ତାଙ୍କର ଅବଦାନ ଅତୁଳନୀୟ । ସାମାଜିକ ଜୀବନ ପ୍ରବାହରୁ ଅନ୍ୟାୟ, ଅନୀତି ଦୂର କରି ମାନବିକ ସଂପ୍ରୀତି ସୃଷ୍ଟି କରିବାର ବାର୍ତ୍ତା ତାଙ୍କ ଲେଖାର ଅନ୍ତଃସ୍ୱର । ସମାଜର ନିଛକ ବାସ୍ତବତା, ଜୀବନର ଦ୍ୱନ୍ଦ୍ୱ, ସଂଘର୍ଷ ଇତ୍ୟାଦିକୁ ଦେଖାଇ ଚିତ୍ତରଞ୍ଜନ ଏକ ସୁନ୍ଦର ସମାଜର ସ୍ୱପ୍ନ ଦେଖିଛନ୍ତି । ଏକ ମହତ୍ତର ଜୀବନ ପାଇଁ ଆଶାୟୀ ହୋଇଛନ୍ତି । କବିତା, ଗଳ୍ପ, ଉପନ୍ୟାସ ନ ଲେଖିଥିଲେ ମଧ୍ୟ ଓଡିଆ ପ୍ରବନ୍ଧ ସାହିତ୍ୟକୁ ସେ ରସୋତ୍ତୀର୍ଣ୍ଣ କରିଛନ୍ତି । ସୁନ୍ଦରର ଅନୁଭବ ଦେଇଛନ୍ତି ଓ ବିଚାରର ଗଭୀରତା ଦେଖାଇଛନ୍ତି । ଶାଣିତ ବ୍ୟଙ୍ଗର ଅବତାରଣା କରିଛନ୍ତି ।

ସ୍ୱାଧୀନତା ପୂର୍ବବର୍ତ୍ତୀ ଯୁଗରେ ଭାରତରେ ଯେଉଁ ସବୁ ସ୍ୱପ୍ନ ଓ ଆକାଙ୍କ୍ଷା ମାନ ଥିଲା ତାହା ସ୍ୱାଧୀନ ଭାରତରେ ବିଡମ୍ବିତ ହେଲା । ଶିକ୍ଷା ବଦଳିଲା ନାହିଁ, ସାମାଜିକ ନ୍ୟାୟ ଆସିପାରିଲା ନାହିଁ, ରାଜନୀତି ନୀତିହୀନ ହେବାରେ ଲାଗିଲା, ଅତୀତର ସାମନ୍ତବାଦ ନୂଆ ନୂଆ ରୂପ ନେଇ ଆସିଲା, ଧର୍ମର ଭେକ ନେଇ ସାଂପ୍ରଦାୟିକତାର ପ୍ରସାର ହେଲା । ପରିକଳ୍ପିତ ଆଦର୍ଶ ଜନରାଜ୍ୟ ଅପସରିଗଲା । କେତେ ତୀକ୍ଷ୍ଣ ବ୍ୟଙ୍ଗାତ୍ମକ ଶୈଳୀରେ ସମାଜର ଏହି ସବୁ ବାସ୍ତବତାକୁ ଓ ନିଛକ ରୂପଟିକୁ ସାହିତ୍ୟ ମାଧ୍ୟମରେ ସେ ବ୍ୟକ୍ତ କରିଛନ୍ତି । ଏପରିକି ବେଳେ ବେଳେ ଏକ ସଂଶୟାନ୍ୱିତ ଦୃଷ୍ଟିଭଙ୍ଗୀ ନେଇଛନ୍ତି, ସମ୍ଭବତଃ କେତେକ ସମୟରେ ସିନିକ୍

ପାଲଟିଛନ୍ତି । ଅନ୍ତରରେ ଯିଏ ନୂତନ ସୂର୍ଯ୍ୟର ଆଗମନକୁ ଅପେକ୍ଷା କରି ରହିଥିବ ଯଦି ତାରି ସମ୍ମୁଖରେ ସୂର୍ଯ୍ୟୋଦୟ ପରିବର୍ତ୍ତେ ଅନ୍ଧାର ଅଧିକ ତୀବ୍ର ହେଉଥିବ, ସବୁ ମୂଲ୍ୟବୋଧ ଭୁଷୁଡି ପଡୁଥିବ ତେବେ ଅନ୍ତର ଭିତରୁ ସ୍ୱାଭାବିକ ଭାବେ କ୍ରୋଧ ପ୍ରକାଶ ପାଇବ । ଚିତ୍ତରଞ୍ଜନଙ୍କ ସିନିସିଜିମ ପଛରେ ଏକ ଆହତ ପ୍ରାଣର ବେଦନାକୁ ଅନୁଭବ କରିହୁଏ ।

ଚିତ୍ତରଞ୍ଜନଙ୍କ ଦୃଷ୍ଟିଭଙ୍ଗୀର ବୈଶିଷ୍ଟ୍ୟ ହେଉଛି ତାଙ୍କ ଆନ୍ତର୍ଜାତୀୟତା । ସେ ବହୁ ଦେଶ ଯାଇଛନ୍ତି, ବହୁ ମଣିଷଙ୍କ ସାଙ୍ଗରେ ହୃଦୟର ବନ୍ଧନକୁ ନିବିଡ଼ କରାଇଛନ୍ତି । ଭାଷା, ଧର୍ମ, ଜାତୀୟତା ବା ସଂସ୍କୃତିର ଭିନ୍ନତା କେଉଁଠି ହେଲେ ତାଙ୍କର ପ୍ରତିବନ୍ଧକ ହୋଇ ନାହିଁ । ତାଙ୍କ ଦୃଷ୍ଟିଭଙ୍ଗୀର ଉଦାରତା, ହୃଦୟବତା, ଗ୍ରହଣଶୀଳତା, ମାନବିକତା ତାଙ୍କୁ ସବୁ ଜାଗାରେ ସଖ୍ୟ ଓ ଶ୍ରଦ୍ଧାର ଆତ୍ମୀୟତା ଯୋଗାଇଛି । ମିତ୍ରର ଚକ୍ଷୁ ନେଇ ଦୁନିଆଁକୁ ଦେଖୁଥିବା ମଣିଷ ସବୁ ଜାଗାରେ ମିତ୍ର ହିଁ ସୃଷ୍ଟି କରିଥାଏ । ଚିତ୍ତରଞ୍ଜନଙ୍କ ଆତ୍ମୀୟତା ଓ ଜୀବନାନୁରାଗ ପାହାଚ ପାହାଚ ହୋଇ କେତେ ଗାଁ, ପ୍ରଦେଶ ଓ ଦେଶକୁ ଲମ୍ବିଯାଇଛି । ତାଙ୍କର ବିଭିନ୍ନ ଭ୍ରମଣ କାହାଣୀ ବା ଆତ୍ମଜୀବନୀରେ ସେ ଭେଟିଥିବା ଅନେକ ମଣିଷଙ୍କ ସହ ତାଙ୍କର ଯେଉଁ ଅନାବିଳ ସମ୍ବନ୍ଧ ବିଷୟ ରହିଛି ତାହା ଏକ ନଦୀ ତୁଲ୍ୟ ପ୍ରବାହ ପରି ପ୍ରତୀତ ହୋଇଥାଏ । ଏକ ସଂକଳ୍ପଯୁକ୍ତ ପଥିକ ପରି ସେ ଆଗକୁ ମାଡି ଚାଲିଛନ୍ତି, ନିଜର ସଖ୍ୟ ଓ ସହୃଦୟତାର ପରିସର କାଳକ୍ରମେ ଅତି ବ୍ୟାପକ ହୋଇଯାଇଛି । ସେ ସଂସାରକୁ ସୁହୃତ ବୋଲି ଭାବିଛନ୍ତି । ସମସ୍ତ ସ୍ଥାନୀୟତାର ଊର୍ଦ୍ଧ୍ୱକୁ ଯାଇଛନ୍ତି ।

ଚିତ୍ତରଞ୍ଜନ ମାନବବାଦୀ ଜୀବନଦର୍ଶନକୁ ସର୍ବଦା ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି । ସମାଜ କହିଲେ ସମାଜର ସବୁ ମଣିଷଙ୍କୁ ବୁଝିଛନ୍ତି, ଧର୍ମ କହିଲେ ଗୋଟିଏ ବିଶ୍ୱାସଧାରାକୁ ଗ୍ରହଣ କରୁଥିବା ସବୁ ମଣିଷଙ୍କୁ ନେଇଛନ୍ତି । ମାନବବାଦ ଓ ସାମନ୍ତବାଦ ପରସ୍ପରବିରୋଧୀ । ଚିତ୍ତରଞ୍ଜନ ସାମନ୍ତବାଦକୁ ନାନା ଭାବରେ ସମାଲୋଚନା କରିଛନ୍ତି, କାରଣ ଏହା ମଣିଷଙ୍କର ସାମାଜିକ ସମାନତା ଓ ମର୍ଯ୍ୟାଦାକୁ ଅସ୍ୱୀକାର କରେ । ପ୍ରାଚୀନ ସମାଜ ମାନଙ୍କରେ ଶାସକଗୋଷ୍ଠୀ ଶାସିତ ଗୋଷ୍ଠୀକୁ ନ୍ୟୂନ କରି ରଖିବା ଓ ଭାରତରେ ବ୍ରାହ୍ମଣବାଦ ସମାଜର ବର୍ଗୀକୃତ ଅସମତାକୁ କେତେ ଶାସ୍ତ୍ରୀୟ ସ୍ୱୀକୃତି ଦେଇ ଗ୍ରହଣ କରିବା ଦେଖାଯାଏ । କିନ୍ତୁ ଇଉରୋପୀୟ ସଭ୍ୟତାରେ ଗଣତାନ୍ତ୍ରିକ ବିଚାର, ବ୍ୟକ୍ତିମର୍ଯ୍ୟାଦାବୋଧ ଇତ୍ୟାଦି ଭାବନାର ବିକାଶ ଦ୍ୱାରା ବୈଚାରିକ ସ୍ତରରେ

ସମତାର ପ୍ରତୀତି ଆସିଛି । ସବୁ ମଣିଷଙ୍କୁ ସମାନ ଭାବେ ଗ୍ରହଣ କରିବାର ଭାବନା ଚିତ୍ତରଞ୍ଜନ ପାଶ୍ଚାତ୍ୟ ଜୀବନାଦର୍ଶରୁ ଗ୍ରହଣ କରିଛନ୍ତି । ସେ ମଧ୍ୟ ଏହି ମୂଲ୍ୟବୋଧକୁ ନିଜ ଦୃଷ୍ଟିଭଙ୍ଗୀରେ ମିଶାଇ ଦେଇଛନ୍ତି । ସମାଜଶାସ୍ତ୍ରରେ ତାଙ୍କର ଅଧ୍ୟୟନ ଓ ଅଧ୍ୟାପନା ଭିତର ଦେଇ ଏହି ପ୍ରତ୍ୟୟଟି ସୁଦୃଢ଼ ହୋଇଛି । ତାଙ୍କର ଅନେକ ଲେଖାରେ ଏହି ଭାବନାକୁ ସେ କେତେ କେତେ ଶୈଳୀରେ ବ୍ୟକ୍ତ କରିଛନ୍ତି ।

ମାନବବାଦୀ ଜୀବନ-ଦର୍ଶନରେ ମଣିଷ ହିଁ ସକଳ ବିକାଶ ଓ ସଂସ୍କୃତିର କେନ୍ଦ୍ରବିନ୍ଦୁ। "ମଣିଷ ହିଁ ସବୁର ମାନଦଣ୍ଡ, ସଭ୍ୟତା ଓ ସଂସ୍କୃତିର ସକଳ କୀର୍ତ୍ତିକରଣୀ ମନୁଷ୍ୟର ପ୍ରଚେଷ୍ଟାରେ ହିଁ ଗଢ଼ି ଉଠିଛି" ଏହି ଭାବନା ମାନବବାଦୀ ଜୀବନଧାରା ସହ ଅଙ୍ଗାଙ୍ଗୀ ଭାବେ ଜଡିତ। ଏହି ଭାବନା ଆସିବା ପରେ ସମାଜର ସବୁ ମଣିଷଙ୍କ ପାଇଁ ଅନ୍ନସଂସ୍ଥାନ ହୋଇ ପାରିବ ଏହି ଅସଲ ମାନବତାବାଦୀ ସତ୍ୟଟି ଇଉରୋପରେ ହିଁ ମଣିଷ ଜାତିକୁ ପ୍ରାପ୍ତ ହୋଇଛି ବୋଲି ଚିତ୍ତରଞ୍ଜନ ଅନୁଭବ କରିଛନ୍ତି। ସେଠାରେ ସବୁ ପିଲା ପାଠ ପଢ଼ିବାର ସୁଯୋଗ ସୃଷ୍ଟି ହୋଇଛି, ପ୍ରତ୍ୟେକ ବ୍ୟକ୍ତି ନିଜର ଶକ୍ତି ଓ ସାମର୍ଥ୍ୟ ନେଇ ଜୀବନଧାରଣ ପାଇଁ ପରିବେଶ ପାଇଛି। କିନ୍ତୁ ଭାରତୀୟ ଜୀବନଧାରାରେ ଭାଗ୍ୟବାଦ ସମାଜକୁ ପଙ୍ଗୁ କରିଛି, କ୍ରିୟାଶୀଳ କରିନାହିଁ ବୋଲି ସେ ଅନୁଭବୀଛନ୍ତି। ଅର୍ଥାତ୍ ସେ ଭାଗ୍ୟବାଦକୁ ଅସ୍ୱୀକାର କରିଛନ୍ତି। ଯେଉଁ ସଂସ୍କୃତିରେ ସାମୂହିକ ଜୀବନଧାରାରୁ ସଂପର୍କ ଛିନ୍ନ କରି ପରଜୀବନ ପାଇଁ ମୁକ୍ତି ବା ମୋକ୍ଷ ଉପରେ ଗୁରୁତ୍ୱ ଦିଆଯାଇଛି ତାକୁ ସେ ଗ୍ରହଣ କରିପାରି ନାହାନ୍ତି। ପାପମୟ ସଂସାରରୁ ମୁକ୍ତି ପାଇଁ ପ୍ରାର୍ଥନା, ଜୀବନକୁ ଅନିତ୍ୟ ଭାବି ସାମାଜିକ ବାସ୍ତବତା ପ୍ରତି ଉଦାସୀନତା ଇତ୍ୟାଦି ବିଚାର ତାଙ୍କୁ ଯଥାର୍ଥ ଜଣାପଡି ନାହିଁ । ପରିବେଶ ପାଖରେ ନିଜର ଅସ୍ତିତ୍ୱକୁ ଜାହିର କରି ଏହାକୁ ଯଥା ସମ୍ଭବ ନିଜର ନିୟନ୍ତ୍ରଣ ଭିତରେ ରଖିବାର ପ୍ରୟାସ ମଣିଷକୁ ଆଗକୁ ଯିବାରେ ସାହାଯ୍ୟ କରିଛି- ମାନବବାଦୀ ଜୀବନଧାରାର ଏହି ବିଚାରଟି ତାଙ୍କୁ ପ୍ରଭାବିତ କରିଥିବା ମନେହୁଏ । ଫଳରେ ଏକ ବୃହତ୍ତର ଜଗତ ପାଇଁ ନିଜକୁ ଯୋଗ୍ୟ କରିବାକୁ ଅଭୀପ୍ସା ତାଙ୍କ ଭିତରେ ସର୍ବଦା ଜାଗରୁକ ରହିଛି । ସବୁ ସଭ୍ୟତା ଓ ସଂସ୍କୃତିର ମହନୀୟ ଭାବନାକୁ ପୂର୍ଣ୍ଣ ଶ୍ରଦ୍ଧାର ସହିତ ନିଜ ଭିତରକୁ ଅଙ୍ଗୀକୃତ କରି ଆଣିବା ପାଇଁ ସେ ସର୍ବଦା ନିଜର ଗବାକ୍ଷକୁ ଖୋଲି ଦେଇଛନ୍ତି । ମୋଟଉପରେ ମାନବବାଦୀ ଦୃଷ୍ଟିକୋଣ ଓ ତାହାର ଆନୁଷଙ୍ଗିକ ଆଦର୍ଶଚୟ ତାଙ୍କୁ ଅଧିକ ପ୍ରଭାବିତ କରିଥିବା ମନେହୁଏ । ସେ ସମାଜର ସବୁ ଶ୍ରେଣୀର ମଣିଷଙ୍କ ସହ

ଖୋଲା ହୃଦୟରେ ମିଶିପାରନ୍ତି, ଯେକୌଣସି ପରିବେଶରେ ନିଜକୁ ମିଶାଇ ଦିଅନ୍ତି । କୌଣସି ପ୍ରକାରର ଅହମିକା, ଆତ୍ମବଡ଼ିମା ତାଙ୍କୁ ବ୍ୟକ୍ତିଗତ ସମ୍ବନ୍ଧ ପାଖରୁ ଦୂରେଇ ନିଏ ନାହିଁ ।

ଉପସଂହାରରେ ଏତିକି କହିବାକୁ ଉଚିତ ମନେକରୁଛି ଯେ ଚିତ୍ତରଞ୍ଜନଙ୍କ ଜୀବନଦର୍ଶନର ଅନେକ ମହତ୍ତର ଦିଗ ନିଶ୍ଚୟ ରହିଛି, ହେଲେ ତାଙ୍କ ଜୀବନର ମଧ୍ୟ କେତେକ ଦିଗ ରହିଛି ଯାହା ବୁଝିହୁଏ ନାହିଁ । ହୁଏତ ପ୍ରତିଭାବାନ ଲୋକଙ୍କର ଜୀବନଧାରାର କେତେକ ଦିଗ ସାଧାରଣ ଅବବୋଧ ଭିତରେ ଅସ୍ପଷ୍ଟ । ଚିତ୍ତରଞ୍ଜନଙ୍କ ଜୀବନଯନ୍ତ୍ରଣା କ'ଣ ତାହା ମୁଁ ଜାଣେ ନାହିଁ । କିନ୍ତୁ ବେଳେବେଳେ ତାଙ୍କ ବାସ୍ତବ ବ୍ୟବହାର କ୍ଷେତ୍ରରେ କିଛିଟା ବ୍ୟତିକ୍ରମ ବା ବୈଚିତ୍ର୍ୟ ପରିଲକ୍ଷିତ ହୁଏ । ସେ ରହସ୍ୟମୟ ମନେ ହୁଅନ୍ତି । ତାଙ୍କ ଭିତରର ତପସ୍ୱୀ ସତ୍ତା, ଅନ୍ୱେଷା, ସମ୍ବେଦନଶୀଳ ଦୃଷ୍ଟି ସହିତ ତାଙ୍କ ବ୍ୟକ୍ତିତ୍ୱର କେତେକ ଦିଗ ମେଳ ଖାଏ ନାହିଁ । ସେ ବାସ୍ତବ ଜୀବନରେ କେତେକ ସମୟରେ ଅସ୍ପଷ୍ଟ ଓ ଏପରିକି ଦୁର୍ବୋଧ ମନେହୁଅନ୍ତି । ହୁଏତ କୌଣସି ମଣିଷ ଖାଣ୍ଟି ସୁବର୍ଣ୍ଣ ହେବା ସମ୍ଭବ ନୁହେଁ । ଚନ୍ଦ୍ରର ମଧ୍ୟ ଅନ୍ଧକାରର ଦିଗ ରହିଛି । ହେଲେ ସେ ଓଡିଆ ଭାଷା ସାହିତ୍ୟକୁ ଯେଉଁ ବିପୁଳ ଦାନ ଦେଇଛନ୍ତି, ବହୁ ଛାତ୍ର ଓ ପାଠକଙ୍କ ପାଇଁ ପ୍ରେରଣାଦାୟକ ହୋଇ ରହିଛନ୍ତି ତାହା କେହି ଅସ୍ୱୀକାର କରିପାରିବେ ନାହିଁ ।

ସେ ଯେ ଓଡିଶାର ଏକ ଅନନ୍ୟ ପ୍ରତିଭା ଏହା ନିଃସନ୍ଦେହ ମନେହୁଏ ।



# ବୁଦ୍ଧଙ୍କ ବାର୍ତ୍ତା

ଗୌତମ ବୁଦ୍ଧ (ଖ୍ରୀ.ପୂ.୫୬୦ରୁ ଖ୍ରୀ.ପୂ. ୪୮୦) ଇତିହାସର ଏକ ଅନନ୍ୟ ବ୍ୟକ୍ତିତ୍ୱ। ସମଗ୍ର ବିଶ୍ୱରେ ଏକ କ୍ରାନ୍ତିକାରୀ ଚିନ୍ତାନାୟକ ଭାବରେ ତାଙ୍କର ସ୍ଥାନ ଅଦ୍ୱିତୀୟ। ଏକ ସାଂସ୍କୃତିକ ପରଂପରା ଓ ବୌଦ୍ଧିକ ଆବେଦନର ସେ ଜନକ। ଜୀବନର ରହସ୍ୟ ଓ ସତ୍ୟକୁ ଜାଣିବା ପାଇଁ ତାଙ୍କର ଜିଜ୍ଞାସାବୋଧ, ଗଭୀର ଅନୁଶୀଳନ ଓ ଆତ୍ମଶୃଙ୍ଖଳା ଦେଇ ସେ ଯେଉଁ ନିଷ୍କର୍ଷରେ ଉପନୀତ ହୁଅନ୍ତି ତାହା ପୃଥିବୀର ଅଗଣିତ ମଣିଷଙ୍କୁ ଅନୁପ୍ରାଣିତ କରିଆସିଛି। ସେ ହୁଅନ୍ତି ଏକ ଧର୍ମର ପ୍ରବର୍ତ୍ତକ। ତାଙ୍କୁ ଆଧାରକରି ଅସୁମାରି କାହାଣୀ, କିମ୍ବଦନ୍ତୀ ସୃଷ୍ଟି ହୁଏ। ବିଶ୍ୱ ଇତିହାସରେ ସେ ହୁଅନ୍ତି ଏକ ପ୍ରବାଦ ପୁରୁଷ। ତାଙ୍କ ପ୍ରଦତ୍ତ ଆଦର୍ଶ ଓ ଦର୍ଶନ ଅନେକ ମଣିଷଙ୍କ ପାଇଁ ହୁଏ ଜୀବନର ସର୍ବଶ୍ରେଷ୍ଠ ଶ୍ରେୟ। ବୁଦ୍ଧ ନିଜ ଜୀବନକାଳ ମଧ୍ୟରେ ଏକ ବିଶାଳ ଭୂଖଣ୍ଡରେ ପରିଚିତ ହୁଅନ୍ତି ଓ ତାଙ୍କ ଦେହାନ୍ତ ପରେ ତାଙ୍କୁ ଆଧାର କରି ଅସଂଖ୍ୟ ଗୋଷ୍ଠୀ, ସଂପ୍ରଦାୟ ଓ ଶ୍ରେଣୀ ସୃଷ୍ଟି ହୁଏ। ସେହିପରି ତାଙ୍କ ବିଚାରଧାରାକୁ ନେଇ ରାଶି ରାଶି ବିପୁଳ ସାହିତ୍ୟ ରଚନା କରାଯାଏ।

ବୁଦ୍ଧଙ୍କର ନିଜସ୍ୱ କିଛି ଲେଖା ନାହିଁ। ତାଙ୍କର ବିଭିନ୍ନ ସିଦ୍ଧାନ୍ତକୁ ସେ ଉପଦେଶ ଓ ଅନୁଜ୍ଞା ମାଧ୍ୟମରେ ଶିଷ୍ୟମାନଙ୍କ ପାଖରେ ବ୍ୟକ୍ତ କରିଛନ୍ତି। ତାଙ୍କ ପାଖରୁ ଶୁଣିଥିବା ତତ୍ତ୍ୱ ସକଳକୁ ଶିଷ୍ୟମାନେ ସ୍ମୃତି ଭିତରେ ରଖିଛନ୍ତି । ଐତିହାସିକ ତଥ୍ୟ ଅନୁଯାୟୀ ତାଙ୍କ ମୃତ୍ୟୁପରେ ତାଙ୍କ ଶିଷ୍ୟ ଓ ବୌଦ୍ଧ ସନ୍ନ୍ୟାସୀମାନଙ୍କର ଏକ ଅଧିବେଶନ ରାଜଗ୍ରହଠାରେ ଆହୂତ ହୋଇଥିଲା । ବୌଦ୍ଧଧର୍ମ ଇତିହାସରେ ଏହା 'ପ୍ରଥମ ପରିଷଦ' ଭାବେ ଜଣାଶୁଣା । ବୁଦ୍ଧଙ୍କର ତିନି ଜଣ ପ୍ରଖ୍ୟାତ ଶିଷ୍ୟ କାଶ୍ୟପ, ଉପାଲି ଓ ଆନନ୍ଦ ବୁଦ୍ଧିଙ୍କର ବାଣୀ ଓ ତତ୍ତ୍ୱକୁ ପ୍ରକାଶ କରିଥିଲେ । କାଶ୍ୟପ ଯାହାକୁ ପ୍ରକାଶ କରିଥିଲେ

ତାହା ଅଭିଧମ୍ମପିଟକ, ଉପାଲି ଯାହା ଆବୃତ୍ତି କରିଥିଲେ ତାହା ବିନୟପିଟକ ଓ ଆନନ୍ଦ ଯାହା ବ୍ୟକ୍ତି କରିଥିଲେ ତାହା ସୁତ୍ତପିଟକ ଭାବରେ ଜଣାଶୁଣା । ଅଭିଧମ୍ମପିଟକ, ବିନୟପିଟକ ଓ ସୁତ୍ତପିଟକ ମିଶି 'ତ୍ରିପିଟକ' ହୋଇଛି ଓ ତ୍ରିପିଟକ ବୌଦ୍ଧ ଧର୍ମଦର୍ଶନ ସମ୍ବନ୍ଧରେ ସବୁଠାରୁ ପ୍ରାଚୀନ ଓ ପ୍ରାମାଣିକ ଗ୍ରନ୍ଥ । ପିଟକଗୁଡିକର ବିଷୟବସ୍ତୁ ଯଦିବା ବୁଦ୍ଧଙ୍କର ମୁଖନିସୃତ ବାଣୀ ନୁହେଁ, ତେବେ ଏହା ବୁଦ୍ଧଙ୍କ ଭାବନା ଓ ଉପଦେଶର ଅତି ନିକଟବର୍ତ୍ତୀ ଗ୍ରନ୍ଥ ବୋଲି ଗ୍ରହଣ କରାଯାଏ । ପିଟକର ଅର୍ଥ ହେଉଛି ନୀତି ବା ନିୟମ ଆଧାରିତ ବାଣୀ । ଏଗୁଡିକ ପ୍ରଥମେ ପାଲି ଭାଷାରେ ସଂଗୃହୀତ ହୋଇଥିଲା । ସେ ଯୁଗରେ ଗୁରୁଙ୍କଠାରୁ ଶିଷ୍ୟମାନେ ବିଦ୍ୟା ଶୁଣି ଶୁଣି ମନେ ରଖୁଥିଲେ । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀରେ ତ୍ରିପିଟକର ବିଷୟବସ୍ତୁକୁ ଲିପିବଦ୍ଧ କରାଯାଇଥିବା କୁହାଯାଏ । ଅଭିଧମ୍ମପିଟକ ଦାର୍ଶନିକ ତତ୍ତ୍ୱ ଓ ସିଦ୍ଧାନ୍ତ ଉପରେ, ବିନୟପିଟକ ଆଚାର ଓ ଶୃଂଖଳା ସମ୍ବନ୍ଧରେ ଓ ସୁତ୍ତପିଟକ ବୁଦ୍ଧଙ୍କ ଉପଦେଶ ଓ କାହାଣୀ ଉପରେ ଆଲୋକପାତ କରିଥିବା ଦେଖାଯାଏ । ପୁନଶ୍ଚ ପ୍ରତ୍ୟେକ ପିଟକ ବିଭିନ୍ନ ଭାଗରେ ବିଭକ୍ତ । ଏହାଉପରେ ଅନେକ ଗ୍ରନ୍ଥ, ସମୀକ୍ଷା, ଭାଷ୍ୟମାନ ଲେଖାଯାଇ ଏକ ବିଶାଳ ସାହିତ୍ୟରାଜି ସୃଷ୍ଟି ହୋଇଛି ।

ବୌଦ୍ଧଧର୍ମ ଏକ ଜୀବନ୍ତ ଧର୍ମଭାବେ ପୃଥିବୀରେ ପରିବ୍ୟାପ୍ତ ହୋଇରହିଛି । ଶହ ଶହ ବର୍ଷର ବୌଦ୍ଧିକ ଓ ସାଂସ୍କୃତିକ ଆଲୋଡନ ମଧ୍ୟ ଦେଇ ଧର୍ମଧାରାରେ ବହୁ ସଂପ୍ରଦାୟ ଓ ଗୋଷ୍ଠୀର ଉଦ୍‌ଭବ ହୋଇଛି; ସେହିପରି ଭାରତୀୟ ଦର୍ଶନ ଇତିହାସରେ ବୌଦ୍ଧ ଦର୍ଶନ ଏକ ପ୍ରମୁଖ ଧାରା ଭାବେ ସ୍ଥାନ ପାଇଛି । ଏହି ଦର୍ଶନ ପରଂପରାରେ କାଳକ୍ରମେ ବିଭିନ୍ନ ପ୍ରସଙ୍ଗ ଉପରେ ନାନା ତାତ୍ତ୍ୱିକ ଓ ତାର୍କିକ ବିଶ୍ଳେଷଣ ହୋଇଛି । ବୌଦ୍ଧଦର୍ଶନରେ ଚାରୋଟି ପୃଥକ ଦାର୍ଶନିକ ପରମ୍ପରା ସମ୍ମିଳିତ ହୋଇ ଏହି ଦର୍ଶନକୁ ପୁଷ୍ଟ କରିଛି । ଏହି ଚାରୋଟି ଦାର୍ଶନିକ ଧାରା ହେଲା ବୈଭାଷିକ, ସୌତାନ୍ତ୍ରିକ, ମାଧ୍ୟମିକ ଓ ଯୋଗାଚାର । ବୌଦ୍ଧଦର୍ଶନର ଭିତ୍ତିଭୂମି ଉପରେ ତତ୍ତ୍ୱମୀମାଂସା, ଜ୍ଞାନମୀମାଂସା ଜନିତ ପ୍ରଶ୍ନମାନଙ୍କର ବିଶ୍ଳେଷଣରୁ ଭିନ୍ନ ଭିନ୍ନ ବୌଦ୍ଧିକ ଧାରାର ଉତ୍ପତ୍ତି ହୋଇଛି । ସେହିପରି ଶହ ଶହ ବର୍ଷର ନିରବଚ୍ଛିନ୍ନ ଅଗ୍ରଗତି ଓ ସମୟେ ସମୟେ ରାଜକୀୟ ସମର୍ଥନ ଯୋଗୁ ଏହା ଏସିଆ ମହାଦେଶର ବିସ୍ତୃତ ଭୂଖଣ୍ଡରେ ବିସ୍ତାରଲାଭ କରିବା ଦେଖାଯାଏ । ବସ୍ତୁତଃ କାଳକ୍ରମେ ମୂଳ ଭାବନା ସହିତ ଅନେକ ନୂଆ ଧାରଣା, ଶୃଂଖଳା ଓ କର୍ମକାଣ୍ଡ ସଂପୃକ୍ତ ହୋଇଛି । କେତେକ କ୍ଷେତ୍ରରେ ମତପାର୍ଥକ୍ୟ

କାରଣରୁ ବୌଦ୍ଧଧର୍ମ ଭିତରେ ବିଭିନ୍ନ ସଂପ୍ରଦାୟ ବା ଗୋଷ୍ଠୀର ଉଦ୍‌ଭବ ହୋଇଛି । ତେବେ ସମସ୍ତ ଗୋଷ୍ଠୀ ବା ସଂପ୍ରଦାୟ ମାନଙ୍କୁ ଦୁଇଟି ମୁଖ୍ୟ ଶ୍ରେଣୀରେ ବିଭାଜନ କରାଯାଏ ଯଥା ମହାଯାନ ଓ ହୀନଯାନ। ବିଭିନ୍ନ କର୍ମକାଣ୍ଡ ବା ଆଚରଣ ବିଧି ପାଳନ କ୍ଷେତ୍ରରେ ମତପାର୍ଥକ୍ୟରୁ ବିଭିନ୍ନ ସମୟରେ ପୃଥକ ପୃଥକ୍ ଗୋଷ୍ଠୀର ସୃଷ୍ଟି ହୋଇଛି । ହୀନଯାନ ମହାଯାନ ତୁଳନାରେ ଅଧିକ ପ୍ରାଚୀନ ବୋଲି ଗ୍ରହଣ କରାଯାଏ । ହୀନଯାନ ସଂପ୍ରଦାୟ ବୁଦ୍ଧଙ୍କର ମୂଳବାଣୀ, ଉପଦେଶ ଓ ଅନୁଜ୍ଞା ସକଳକୁ ଯଥାର୍ଥରେ ବ୍ୟକ୍ତ କରିଥାଏ ବୋଲି ବିଶ୍ୱାସ କରାଗଲା ବେଳେ ମହାଯାନ ସଂପ୍ରଦାୟ ବୁଦ୍ଧଙ୍କର ଭାବନାକୁ ଅଧିକ ରହସ୍ୟମୟ, ଧର୍ମୀୟ ଓ ଭକ୍ତିପୂର୍ଣ୍ଣ କରିଥାଏ ବୋଲି ଗ୍ରହଣ କରାଯାଏ । ହୀନଯାନ ସଂପ୍ରଦାୟରେ ବ୍ୟକ୍ତିର ନିର୍ବାଣକୁ ଗୁରୁତ୍ୱ ଦିଆଯିବା ବେଳେ ମହାଯାନ ସଂପ୍ରଦାୟରେ ସଭିଙ୍କର ନିର୍ବାଣକୁ ଗୁରୁତ୍ୱ ଦିଆଯିବା କୁହାଯାଏ । ବୌଦ୍ଧ ସଂପ୍ରଦାୟ ଓ ବୌଦ୍ଧଦର୍ଶନ ବିଷୟରେ ଏହି ସଂକ୍ଷିପ୍ତ ସୂଚନା ପରେ ବୁଦ୍ଧଙ୍କ ବିଚାରର ନିର୍ଯ୍ୟାସ ବିଷୟରେ କିଞ୍ଚିତ ଆଲୋଚନା କରିବା ଏହି ଲେଖାଟିର ଉଦ୍ଦେଶ୍ୟ ।

ଜଣେ ସାଧାରଣ ମଣିଷ ନିଜ ସମସାମୟିକ ଯୁଗର ବିଚାର, ମୂଲ୍ୟବୋଧ, ଭାବନା ଓ ପ୍ରଚଳିତ ବିଶ୍ୱାସକୁ ଗ୍ରହଣ କରି ନେଇଥାଏ । କିନ୍ତୁ ଜଣେ କ୍ରାନ୍ତିକାରୀ ବ୍ୟକ୍ତି ନିଜ ସମୟର କୁସଂସ୍କାର, ଅନ୍ୟାୟ, ଅମାନବିକତା ବିଷୟରେ ସଚେତନ ହୁଅନ୍ତି ଓ ଜୀବନର ଗୁଣାତ୍ମକ ଉତ୍କର୍ଷ ବୃଦ୍ଧି ପାଇଁ ଗମ୍ଭୀର ସଂପୃକ୍ତି ବ୍ୟକ୍ତି କରନ୍ତି । ସାମାଜିକ ଅବକ୍ଷୟ ଓ ମାନବୀୟ ଦୁଃଖ ଦୁର୍ଦ୍ଦଶାକୁ ଦୂର କରିବାକୁ ନୂତନ ପନ୍ଥାର ସନ୍ଧାନ କରନ୍ତି । ଜୀବନର ମାନକୁ ଉନ୍ନତ କରି ସାମାଜିକ ସମ୍ବନ୍ଧକୁ ଅଧିକ ନୀତିଯୁକ୍ତ ଓ ମାନବୀୟ କରିବାକୁ ବିଚାରର ସୂତ୍ରପାତ କରନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ବୁଦ୍ଧ ଅନନ୍ୟ ମନେ ହୁଅନ୍ତି। ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ବିଚାରଶୀଳ ଆଭିମୁଖ୍ୟ ତାଙ୍କ ଦର୍ଶନର ଦୁଇଟି ବଡ଼୍ ସନ୍ଦେଶ ମନେହୁଏ । ଏହା ସୁବିଦିତ ଯେ ସେ ଥିଲେ ଜଣେ ରାଜପୁତ୍ର ହେଲେ ଏକ ଆଡମ୍ବରପୂର୍ଣ୍ଣ ଜୀବନ ତାଙ୍କୁ ସ୍ପର୍ଶ କରିନଥିଲା । ମାନବୀୟ ଦୁଃଖ ଦୁର୍ଦ୍ଦଶାର ସାମାନ୍ୟ ଦୃଶ୍ୟ ତାଙ୍କ ଭିତରେ ଗଭୀର ଭାବାନ୍ତର ସୃଷ୍ଟି କରିଥିଲା । ମାନବୀୟ ଦୁଃଖ, ଦୁର୍ଦ୍ଦଶା ଉପରେ ଗଭୀର ଚିନ୍ତନରୁ ସେ ଯେଉଁ ସିଦ୍ଧାନ୍ତକୁ ଆସିଥିଲେ ତାହା ବୌଦ୍ଧ ଧର୍ମଦର୍ଶନରେ ଚାରି ଆର୍ଯ୍ୟସତ୍ୟ ଭାବେ ସୁବିଦିତ । ଏକ ଦୁଃଖରହିତ ଜୀବନର ସ୍ୱରୂପକୁ ନିରୂପଣ କରିବା ନେଇ ତାଙ୍କର ଜିଜ୍ଞାସାବୋଧ ଦେଇ ସେ ଯେଉଁ ବିଚାରର ଅବତାରଣା କରିଛନ୍ତି ତାହା ଚାରି ଆର୍ଯ୍ୟସତ୍ୟ ଭାବେ ବହୁ ଆଲୋଚିତ ।

ମଣିଷର ଦୁଃଖ ଅପରିସୀମ; ରୋଗ, ଅସଫଳତା, ଅସମର୍ଥତା, ମୃତ୍ୟୁ ବହୁ ଘଟଣା ମଣିଷର ଚକ୍ଷୁକୁ ଲୋତକପୂର୍ଣ୍ଣ କରିଥାଏ । ଜୀବନ ଯେ ଦୁଃଖପୂର୍ଣ୍ଣ ଏହା ଏକ ସାଧାରଣ ଲୌକିକ ଅନୁଭବର ପ୍ରକାଶ ମାତ୍ର ନୁହେଁ, ବରଂ ଏକ ଗଭୀର ଜିଜ୍ଞାସା ଜନିତ ତାତ୍ତ୍ୱିକ ଭାବର ଅଭିବ୍ୟକ୍ତି ଅଟେ । ଦ୍ୱିତୀୟ ଆର୍ଯ୍ୟସତ୍ୟ ହେଉଛି-ଦୁଃଖ ସମୁଦାୟ ଅର୍ଥାତ୍ ପ୍ରତ୍ୟେକ ଦୁଃଖକର ଅବସ୍ଥାର କାରଣ ରହିଛି । ଏହି ବିଚାର ମଧ୍ୟ ଦେଇ ବୁଦ୍ଧ ଏକ ଦାର୍ଶନିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି ଯାହା ବୌଦ୍ଧ ଦର୍ଶନରେ 'ପ୍ରତୀତ୍ୟସମୁତ୍ପାଦ' ଭାବେ ଜଣାଶୁଣା । ଏହାନୁଯାୟୀ ପ୍ରତ୍ୟେକ କାର୍ଯ୍ୟର କାରଣ ରହିଛି, କାରଣ ବ୍ୟତୀତ କାର୍ଯ୍ୟ ସମ୍ଭବ ନୁହେଁ । କାର୍ଯ୍ୟ-କାରଣ ନିୟମ ବୌଦ୍ଧ ଦର୍ଶନରେ ଏକ ସ୍ୱୟଂଚାଳିତ ନିୟମ ଓ ଏହା ପ୍ରକୃତିର ଏକ ସ୍ୱାଭାବିକ ଓ ଅପରିହାର୍ଯ୍ୟ ଧାରା । 'ଦୁଃଖର କାରଣ ରହିଛି' ଏହି ଭାବନାକୁ ଆଧାର କରି ପ୍ରାକୃତିକ ସ୍ୱଭାବବାଦ, କାର୍ଯ୍ୟ-କାରଣ ନିୟମ ଓ ପ୍ରାକୃତିକ ଶୃଂଖଳା ପରି ଦାର୍ଶନିକ ତତ୍ତ୍ୱର ଅବତାରଣା ହୋଇଛି ଯାହାର ପରିପ୍ରକାଶ ହେଉଛି ପ୍ରତୀତ୍ୟ-ସମୁତ୍ପାଦ । ତୃତୀୟ ଆର୍ଯ୍ୟସତ୍ୟଟି ଦୁଃଖର ନିରୋଧ ସଂପର୍କରେ ସୂଚନା ଦେଇଥାଏ । ଯେଉଁ କାରଣ ଯୋଗୁ ଦୁଃଖର ଉତ୍ପତ୍ତି ହେଉଛି ସେହି କାରଣକୁ ପ୍ରତିହତ କରିପାରିଲେ ଦୁଃଖର ସ୍ଥିତିକୁ ଦୂର କରିବା ସମ୍ଭବ ହେବ । କାମନା, ବାସନା ଜନିତ ତୃଷ୍ଣା ହିଁ ଦୁଃଖର ପରିବେଶ ଆଣିଥାଏ । କାମନା, ବାସନା ଜନିତ ତୃଷ୍ଣାକୁ ପ୍ରତିହତ କରିବା ଦ୍ୱାରା ଜୀବନରୁ ଅନେକ ଦୁଃଖକୁ ଦୂର କରାଯାଇପାରେ । ଏହି ଭାବନାକୁ ନେଇ ସ୍ୱଦେହ ମୁକ୍ତି, ନିର୍ବାଣ ପ୍ରସଙ୍ଗ ଉପରେ ବୌଦ୍ଧ ଦର୍ଶନରେ ଅନେକ ଆଲୋଚନା ଦେଖିବାକୁ ମିଳେ । ତବେ ବୁଦ୍ଧଙ୍କର ଚତୁର୍ଥ ଆର୍ଯ୍ୟସତ୍ୟ 'ଦୁଃଖନିରୋଧ ମାର୍ଗ' ବୌଦ୍ଧ ଦର୍ଶନର ଏକ ଗଭୀର ପ୍ରସଙ୍ଗ । ଏହି କ୍ଷେତ୍ରରେ ବୌଦ୍ଧ-ଆଚାରତତ୍ତ୍ୱର ସମ୍ୟକ ଅଭିବ୍ୟକ୍ତି ଦେଖିବାକୁ ମିଳେ । ଏକ ନୀତିନିଷ୍ଠ ଜୀବନ ପାଇଁ ଏଠାରେ ଯେଉଁ ଅନୁଜ୍ଞା ରହିଛି ତାହାକୁ ଅଷ୍ଟାଙ୍ଗ ମାର୍ଗ କୁହାଯାଏ । ଏହି ଅଷ୍ଟାଙ୍ଗ ମାର୍ଗର ଭାବନା ହେଉଛି ସମ୍ୟକ ଦୃଷ୍ଟି, ସମ୍ୟକ ସଂକଳ୍ପ, ସମ୍ୟକ ବଚନ, ସମ୍ୟକ କର୍ମ, ସମ୍ୟକ ଜୀବିକାର୍ଜନ, ସମ୍ୟକ ଉଦ୍‌ଯୋଗ, ସମ୍ୟକ ସ୍ମୃତି ଓ ସମ୍ୟକ ସମାଧି । ଏଠାରେ 'ସମ୍ୟକ' କହିଲେ ବାସ୍ତବରେ ଠିକ୍ ବା ଏକ ସଦାଚାର ଭାବନାକୁ ବୁଝାଏ । ସମ୍ୟକ୍ ଦୃଷ୍ଟି ବା ଜୀବନ ପ୍ରତି ଏକ ସକାରାତ୍ମକ, ସତ୍ୟାଧାରିତ ମାନସିକତାଠାରୁ ସମ୍ୟକ୍ ସମାଧି ଅର୍ଥ ଏକ ପ୍ରଶାନ୍ତି ମଧ୍ୟକୁ ଉତ୍ତରଣ ପ୍ରଦତ୍ତ ମାର୍ଗ ଦେଇ ସମ୍ଭବ ହୋଇଥାଏ । ବୁଦ୍ଧଙ୍କ ଅଷ୍ଟାଙ୍ଗମାର୍ଗରେ ନୈତିକ କର୍ତ୍ତବ୍ୟଜନିତ ଏକ ସଦାଚାରର ବାର୍ତ୍ତା ସୁସ୍ପଷ୍ଟ

ଭାବରେ ରହିଛି । ଅସଂଯତ ଭୋଗବିଳାସ ବା କୃଚ୍ଛ୍ର ସାଧନା ଉଭୟକୁ ପ୍ରତ୍ୟାଖ୍ୟାନ କରାଯାଇ ଏକ ଜୀବନଧର୍ମୀ ଓ ସମାଜ-ଉତ୍ତରଦାୟୀ ଦର୍ଶନର ଅବତାରଣାକୁ ଗୁରୁତ୍ୱ ଦିଆଯାଇଛି । ବ୍ୟକ୍ତିର ନୈତିକ କର୍ତ୍ତବ୍ୟ ଓ ସାମାଜିକ କଲ୍ୟାଣର ଯେଉଁ ନିର୍ଦ୍ଦିଷ୍ଟ ବାର୍ତ୍ତାଟି ଏଥିରେ ରହିଛି ତାହାର ଏକ ସର୍ବକାଳୀନ ମହତ୍ତ୍ୱ ଥିବା ମନେହୁଏ ।

ବୌଦ୍ଧ ଧର୍ମଦର୍ଶନର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ପ୍ରତିପାଦ୍ୟ ବିଷୟ ହେଉଛି ଏଥିରେ ଅତିପ୍ରାକୃତିକ ସତ୍ତା, ଈଶ୍ୱର ବା ରହସ୍ୟମୟ କାଳ୍ପନିକ ବସ୍ତୁ ବିଷୟରେ କୌଣସି ଉଲ୍ଲେଖ ନାହିଁ । ଯେଉଁ ସବୁ ବିଷୟ ମାନବୀୟ ଅନୁଭୂତି ବା ବିଚାରଶୀଳତାର ପରିସର ଭୁକ୍ତ ନୁହେଁ ସେ ବିଷୟରେ କାଳ୍ପନିକ ମତ ରଖିବା ଅନାବଶ୍ୟକ ଅଟେ । ବୁଦ୍ଧଙ୍କ ସମସାମୟିକ ସମାଜରେ ଅତୀନ୍ଦ୍ରିୟ ଶକ୍ତିର ଆରାଧନା, ପ୍ରାର୍ଥନା ଓ ଯଜ୍ଞକୁ ଯେପରି ପ୍ରାଧାନ୍ୟ ଦିଆଯାଇଛି ବୁଦ୍ଧ ସେହି ସବୁ ପ୍ରଚଳିତ ବିଶ୍ୱାସ ବିରୁଦ୍ଧରେ ଏକ ବୈଜ୍ଞାନିକ କ୍ରାନ୍ତି ଆଣିବାକୁ ପ୍ରୟାସ କରିଛନ୍ତି । ସେହି ଯୁଗର ବିଶ୍ୱାସରେ ଈଶ୍ୱରୀୟ ଦୈବୀଶକ୍ତିର କରୁଣା ବ୍ୟତୀତ ଜୀବନରୁ ଦୁଃଖ ଦୂର ହୋଇପାରିବ ନାହିଁ ବୋଲି ବିଶ୍ୱାସକୁ ସେ ଦୂର କରିଛନ୍ତି । ଜୀବନର ଶ୍ରେୟ ନେଇ ସେ ଯେଉଁ ପନ୍ଥାର ଅବତାରଣା କରିଛନ୍ତି ସେଥିରେ ଈଶ୍ୱରଙ୍କୁ ପ୍ରାର୍ଥନା, ପୂଜା, ଆରାଧନାକୁ କୌଣସି ଗୁରୁତ୍ୱ ଦେଇ ନାହାନ୍ତି । ସମାଜର ପ୍ରଚଳିତ ଭାବନା ଓ କୁସଂସ୍କାରକୁ ବିରୋଧ କରି ଏକ ମହନୀୟ ଜୀବନ ପାଇଁ ସେ ନୈତିକ ଶୃଂଖଳାକୁ ଅବତାରଣା କରିଛନ୍ତି । ଜୀବନର ଶ୍ରେୟ ଆନୟନ କ୍ଷେତ୍ରରେ ନୀତି, ନୈତିକତା, ମାନବୀୟ ସମ୍ବେଦନଶୀଳତା ଓ ସତ୍ୟ ପ୍ରତି ଅନୁରାଗକୁ ସେ ପ୍ରାଧାନ୍ୟ ଦେଇଛନ୍ତି । କୌଣସି ଅଲୌକିକ ଅତୀନ୍ଦ୍ରିୟ ଶକ୍ତିର ଆରାଧନା, ପ୍ରାର୍ଥନା ଭକ୍ତିଭାବକୁ କୌଣସି ଗୁରୁତ୍ୱ ଦେଇନାହାନ୍ତି । ସମାଜରେ ନୈତିକ ମୂଲ୍ୟବୋଧର ବିକାଶ ପାଇଁ କାଳ୍ପନିକ ଈଶ୍ୱର, ପାରଲୌକିକ ବିଶ୍ୱାସ, ପୂଜା-ଆରାଧନାର ପ୍ରସାର କରିବା ଯଥାର୍ଥ ନୁହେଁ । ବରଂ ଜନମାନସକୁ ସୁବୁଦ୍ଧି ସଂପନ୍ନ, ବିଚାରଶୀଳ ଓ ସମ୍ବେଦନଶୀଳ କରିପାରିଲେ ସାମାଜିକ ଜୀବନ ପ୍ରବାହରେ ଉତ୍କର୍ଷ ଆସିପାରିବ ।

ବୁଦ୍ଧ ସେ ଯୁଗରେ, କହିବାକୁ ଗଲେ ସଭ୍ୟତାର ଆରମ୍ଭ ପର୍ବରେ, ବିଚାରଶୀଳତା, ମୁକ୍ତ ମନ, ଅନୁସନ୍ଧିତ୍ସୁ ଦୃଷ୍ଟି ଉପରେ ଗୁରୁତ୍ୱ ଦେଇଥିଲେ । ମୁକ୍ତ ମନ ନେଇ ବିଶାଳ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଦ୍ୱାରା ଆମେ ଆମ ଜ୍ଞାନର ପରିସରକୁ ପରିବ୍ୟାପ୍ତ କରିପାରିବା । ପର୍ଯ୍ୟବେକ୍ଷଣ, ପରୀକ୍ଷଣ ଓ ତର୍କଶୀଳ ଚିନ୍ତନ ଦ୍ୱାରା

ଜ୍ଞାନର ଦିଗନ୍ତ ବୃଦ୍ଧି ପାଇପାରିବ; ବିଶ୍ୱାସ ଦ୍ୱାରା ନୁହେଁ । ଗୁରୁଙ୍କର ବାଣୀ ଅକାଟ୍ୟ, ଯାହା ଶାସ୍ତ୍ରରେ ଲେଖା ଯାଇଛି ତାହା ଧ୍ରୁବ ସତ୍ୟ ଓ ଚିରନ୍ତନ - ଏହି ମାନସିକତା ଜ୍ଞାନାର୍ଜନର ପରିପନ୍ଥୀ । ଅପର ପକ୍ଷରେ ମୁକ୍ତ ମନ, ଅନୁସନ୍ଧିତ୍ସୁ ଦୃଷ୍ଟି, ବିଚାରଶୀଳତା ଓ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଜନିତ ବାସ୍ତବ ଅନୁଭୂତିଦ୍ୱାରା ହିଁ ଜ୍ଞାନର ପରିସର ବ୍ୟାପ୍ତ ହୋଇପାରିବ । ଏହି ଯେଉଁ ବିଚାର ବୁଦ୍ଧଙ୍କ ଚିନ୍ତନ ମଧ୍ୟଦେଇ ପ୍ରକାଶିତ ହୋଇଥିଲା ତାହା ବୌଦ୍ଧିକ ଜଗତର ଏକ ଆପ୍ତବଚନ ଥିଲା । ଏଠାରେ ବୁଦ୍ଧଙ୍କ ବାଣୀଟିକୁ ଉଦ୍ଧାର କରାଯାଇ ପାରେ:-

"Believe nothing,

Merely because you have been told it,

Or because it is traditional,

Or because you yourself have imagined it,

Do not believe what your teacher tells you,

Merely out of respect for the teacher,

But whatever after due examination and analysis,

You find to be conducive to the good, the benefit,

the welfare of all beings

That doctrine believe and cling to,

And take it as your guide",

ଏହାର ଅନୁବାଦ ହେବ :-

ତୁମକୁ ଯାହା କୁହାଯାଇଛି, ଯାହା କିଛି ପରମ୍ପରାରେ ଅଛି, ବା ଯାହା ତୁମେ କଳ୍ପନା କରୁଛ- ତାହାକୁ ବିଶ୍ୱାସ କରିନିଅ ନାହିଁ ।

ଶିକ୍ଷକଙ୍କ ପ୍ରତି ସମ୍ମାନ ଦୃଷ୍ଟିରୁ ସେ ଯାହା କହୁଛନ୍ତି ତାହାକୁ ମଧ୍ୟ ଗ୍ରହଣ କରିନିଅ ନାହିଁ ।

ବରଂ ତାହା ହିଁ ଗ୍ରହଣ କର- ଯାହା ତୁମେ ପରୀକ୍ଷା ଓ ବିଶ୍ଳେଷଣ କରି ଜାଣିପାରିଛ;

ଯାହା ସମସ୍ତଙ୍କର ମଙ୍ଗଳ ଓ ଉପକାର ପାଇଁ ଅଭିପ୍ରେତ ତାହାହିଁ ବିଶ୍ୱାସ କର ଓ ସେହି ସତ୍ୟ ପ୍ରତି ପ୍ରତିବଦ୍ଧ ରହି ତାହାକୁ ତୁମର ମାର୍ଗଦର୍ଶକ ଭାବେ ଗ୍ରହଣ କର ।

ଏହି ଉକ୍ତିରୁ ବୁଦ୍ଧଙ୍କର ହେତୁବାଦୀ ଜିଜ୍ଞାସାବୋଧ ଓ ସତ୍ୟ ପ୍ରତି ପ୍ରତିବଦ୍ଧତାର ପ୍ରମାଣ ମିଳେ । ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶର ଦୁଇ ହଜାର ବର୍ଷ ପୂର୍ବରୁ ଜଣେ ସେ ଯୁଗରେ ଯେ ଏହି ବିଚାରର ଅବତାରଣା କରିଥିଲେ ତାହା କିଛି କମ୍ ବୈପ୍ଳବିକ ନଥିଲା । ସବୁଦିନ ପାଇଁ ମଣିଷ ସମାଜକୁ ପ୍ରେରଣା ଦେଲା ଭଳି ଏଥିରେ ଏକ ସାର୍ବଜନୀନ ସତ୍ୟ ଥିବା ମନେହୁଏ । ସଭ୍ୟତାର ବିକାଶ ଓ ଜ୍ଞାନବିଜ୍ଞାନର ଅଗ୍ରଗତି ପାଇଁ ଏହା ଏକ ଆପ୍ତବଚନ ପରି ପ୍ରତୀୟମାନ ହୁଏ ।

ଭାରତବର୍ଷରେ କେଉଁ ସବୁ କାରଣରୁ ଏପରି ଏକ ଗଣଧର୍ମର ପତନ ହେଲା, ତାହା ଏବେବି ଗବେଷଣାର ବିଷୟ । ତେବେ ଏ କ୍ଷେତ୍ରରେ ଯାହା କିଛି ତଥ୍ୟ ଜଣାଯାଇଛି ତାହା ଏ ଦେଶ ପାଇଁ ଦୁର୍ଭାଗ୍ୟ ଜନକ ହୋଇଛି । ସ୍ୱାମୀ ଧର୍ମତୀର୍ଥ "History of Hindu Imperialism" ନାମରେ (ଓଡିଆରେ-ହିନ୍ଦୁ ସାମ୍ରାଜ୍ୟବାଦର ଇତିହାସ) ଏକ ପୁସ୍ତକ ଲେଖିଛନ୍ତି । ସେହି ପୁସ୍ତକରେ ସ୍ୱାମୀ ଧର୍ମତୀର୍ଥ ମନୁବାଦୀ ବିଚାରଧାରା ଓ ହିନ୍ଦୁ ସାମ୍ରାଜ୍ୟବାଦର ପ୍ରାମାଣିକ ଐତିହାସିକ ତଥ୍ୟ ଦେଇଛନ୍ତି । ବ୍ରାହ୍ମଣବାଦ କିପରି ବୌଦ୍ଧଧର୍ମକୁ ହତ୍ୟାକରି ଜାତୀୟତାବାଦକୁ ଧ୍ୱଂସାଭିମୁଖୀ କରାଇଲା ତାହାର ତଥ୍ୟଗତ ବ୍ୟାଖ୍ୟା କରିଛନ୍ତି । ବୌଦ୍ଧଧର୍ମର ବିକାଶକାଳ ଦେଶରେ ସମୃଦ୍ଧି ଆଣିଥିଲା, ଶିକ୍ଷା ଓ ଗବେଷଣାର ପରିବେଶ ସୃଷ୍ଟି କରିଥିଲା, ଏକ ସମତା ଭିତ୍ତିକ ସମାଜର ଭିତ୍ତି ପକାଇଥିଲା । କିନ୍ତୁ ବ୍ରାହ୍ମଣବାଦର ବିକାଶ, ବର୍ଣ୍ଣବ୍ୟବସ୍ଥା ଓ ଜାତିପ୍ରଥାର ପ୍ରଚଳନ, ଶ୍ରମ-ବିହୀନ ଶୋଷଣ ପାଇଁ ପୂଜା ପଦ୍ଧତି, ଦେଉଳ-ମନ୍ଦିର ସ୍ଥାପନ, ପିତୁଳା ପୂଜା ଓ ନାନା ଅହେତୁକ କର୍ମକାଣ୍ଡର ପ୍ରଚଳନ, ଶିକ୍ଷାକୁ ବ୍ରାହ୍ମଣ ମାନଙ୍କର ଏକଚାଟିଆ ଆଧିପତ୍ୟ କରାଯିବା ପରି ବ୍ୟବସ୍ଥାରୁ ବୌଦ୍ଧ ଯୁଗର ସମୃଦ୍ଧିରୁ ଏକ ହୃଦୟ-ବିଦାରାକ ଅଧଃପତନର ସ୍ଥିତି ଆସିଲା । ବୌଦ୍ଧଧର୍ମ ଜାତିପ୍ରଥା, ବଳିପ୍ରଥା, ପ୍ରତିମାପୂଜା, ସାମାଜିକ ବୈଷମ୍ୟକୁ ବିରୋଧ କରି ଯେପରି ନୈତିକତା, ମାନବିକତା

ଓ ସାର୍ବଜନୀନ ଶିକ୍ଷାକୁ ପ୍ରସାର କରାଇଥିଲା ତାହା ବ୍ରାହ୍ମଣମାନଙ୍କ ଆଧିପତ୍ୟ କ୍ଷେତ୍ରରେ ଏକ ବଡ ଆହ୍ୱାନ ଥିଲା । ଏହି ସ୍ଥିତିରେ ବ୍ରାହ୍ମଣବାଦ ଯୋଜନାବଦ୍ଧ ଭାବେ ବୌଦ୍ଧଧର୍ମର ସମତାଭିତ୍ତିକ ଗଣତାନ୍ତ୍ରିକ ସମାଜ ଗଠନର ଲକ୍ଷ୍ୟକୁ ଧୂଳିସାଥ କରିବାକୁ ଲାଗିଲା । ପ୍ରତିମା ପୂଜା, ବଳି ପ୍ରଥା, ମନୁସଂହିତା ଓ ଏକ ବୈଷମ୍ୟପୂର୍ଣ୍ଣ ଜାତିଭିତ୍ତିକ ସମାଜବ୍ୟବସ୍ଥାକୁ ଧାର୍ମିକ ସ୍ୱୀକୃତି ଦେଇ ବିଭିନ୍ନ ଛଳନା ଭିତରେ ରାଜାମାନଙ୍କୁ ବଶ୍ୟତା ମଧ୍ୟକୁ ଆଣି ବୌଦ୍ଧ ରାଜା ଓ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ମୂଳୋତ୍ପାଟନ କରିବାକୁ ଲାଗିଲା । ବୌଦ୍ଧ ସ୍ତୁପମାନଙ୍କୁ ଧ୍ୱଂସ କରାଗଲା କିମ୍ବା ହିନ୍ଦୁ ମନ୍ଦିରରେ ରୂପାନ୍ତରିତ କରାଗଲା । ବ୍ରାହ୍ମଣବାଦୀ ସାମ୍ରାଜ୍ୟବାଦ ବୌଦ୍ଧଧର୍ମର ପତନ ଘଟାଇ ହିନ୍ଦୁଧର୍ମର କିପରି ପ୍ରସାର କରାଇଲା ତାହାର ଏକ ନିଛକ ଚିତ୍ର ସ୍ୱାମୀ ଧର୍ମତୀର୍ଥ ତାଙ୍କ ପୁସ୍ତକରେ ପ୍ରଦାନ କରିଛନ୍ତି । ଭାରତବର୍ଷରେ ଅହିଂସାବାଦୀ ବୌଦ୍ଧଧର୍ମ ସାମ୍ରାଜ୍ୟବାଦୀ ମନୁବାଦ କବଳରୁ ନିଜକୁ ରକ୍ଷା କରିପାରି ନଥିଲେ ମଧ୍ୟ ବୌଦ୍ଧଧର୍ମ ପୃଥିବୀର ପ୍ରଥମ ସଂଗଠିତ ଧର୍ମ ଭାବରେ ଏସିଆ ମହାଦେଶର ବିଭିନ୍ନ ଅଞ୍ଚଳକୁ ବ୍ୟାପି ଥିବାରୁ ଏହା ଏବେବି ଏକ ଜୀବନ୍ତ ଧର୍ମ ଭାବରେ ବିଭିନ୍ନ ଦେଶରେ ରହିପାରିଛି ।

ଭାରତବର୍ଷରେ ବୌଦ୍ଧଧର୍ମର ପତନ ସତ୍ତ୍ୱେ ବୁଦ୍ଧଙ୍କ ବିଚାର, ଦର୍ଶନ ନେଇ ଯେଉଁ ବିପୁଳ ସାହିତ୍ୟରାଜି ରହିଛି ସେଥିରୁ ତାଙ୍କ ବିଚାରର ଅନେକ ସୂତ୍ର ଜଣାପଡେ । ବୁଦ୍ଧ ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ଚିନ୍ତାରାଜ୍ୟରେ ଯେଉଁ ସବୁ ବିଚାରର ସୂତ୍ରପାଦ କରିଥିଲେ ତାହାର ଯେ ଏକ ସାର୍ବଜନୀନ ମହତ୍ତ୍ୱ ରହିଛି ଏହା କୁହାଯାଇପାରେ । ଉପସଂହାରରେ କହିଲେ ବୁଦ୍ଧ ଅତିପ୍ରାକୃତିକ ଶକ୍ତି ପରିବର୍ତ୍ତେ ପ୍ରାକୃତିକ ସତ୍ତା ବା ପ୍ରକୃତିବାଦ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି; ଈଶ୍ୱର ବିଶ୍ୱାସ, ଦୈବୀ ଶକ୍ତି ଉପାସନା ପରିବର୍ତ୍ତେ ମଣିଷର କଲ୍ୟାଣକୁ ପ୍ରାଧାନ୍ୟ ଦେଇଛନ୍ତି । କର୍ମକାଣ୍ଡ, ଧାର୍ମିକ ଔପଚାରିକତା ପରିବର୍ତ୍ତେ ଏକ ନୀତିନିଷ୍ଠ ଓ ମୂଲବୋଧ-ଆଧାରିତ ଜୀବନଚର୍ଯ୍ୟାକୁ ମହତ୍ତ୍ୱ ପ୍ରଦାନ କରିଛନ୍ତି । ସେହିପରି ବିଶ୍ୱାସ ପରିବର୍ତ୍ତେ ବିଚାରଶୀଳତାକୁ ଜୀବନର ଶ୍ରେୟ କରିବାକୁ ବାର୍ତ୍ତା ଦେଇଛନ୍ତି । ପ୍ରକୃତିବାଦ, ମାନବବାଦ, ନୀତିପୂର୍ଣ୍ଣ ଜୀବନ ଓ ବିଚାରଶୀଳ ଦୃଷ୍ଟି ବୌଦ୍ଧ ଦର୍ଶନର ଗୁରୁତ୍ୱପୂର୍ଣ୍ଣ ନିଷ୍କର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ ।



# ଦୁଇ କ୍ରାନ୍ତିକାରୀ ହେତୁବାଦୀ : ଦାଭୋଲକର ଓ ଏଡମାରୁକୁ

ହେତୁବାଦ ଏକ ଜୀବନ-ଦର୍ଶନ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ମୂଲ୍ୟବୋଧ ଏହି ଜୀବନ-ଦର୍ଶନର ମୌଳିକ ନିର୍ଯାସ। ମୁକ୍ତ ମନ, ବିଚାରଶୀଳତା, ଅନୁସନ୍ଧିତ୍ସୁ ମାନସିକତା, ଜ୍ଞାନ ଆହରଣ କ୍ଷେତ୍ରରେ ଏକ ସାର୍ବଜନୀନ ପ୍ରଣାଳୀ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ। ସେହିପରି ସାମାଜିକ ନ୍ୟାୟ, ମାନବିକ ଅଧିକାର ଓ ବ୍ୟକ୍ତିମର୍ଯ୍ୟାଦାବୋଧ ମାନବବାଦର ସାରମର୍ମ। ଚମତ୍କାରିତା, ଆଲୌକିକ ଘଟଣା ଓ ପାରଲୌକିକ ଜୀବନଦୃଷ୍ଟି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ। ବୈଜ୍ଞାନିକ ଜ୍ଞାନ ସର୍ବଦା ମୁକ୍ତ, ନିରପେକ୍ଷ, ପ୍ରଗତିଶୀଳ, ପରୀକ୍ଷା ସାପେକ୍ଷ, ନୂତନ ଜ୍ଞାନ ଆଧାରରେ ପରିବର୍ତ୍ତନଶୀଳ ଓ ପ୍ରାୟତଃ ସାର୍ବଜନୀନ। ହେତୁବାଦୀ ମାନେ ବୈଜ୍ଞାନିକ ମାନଦଣ୍ଡରେ ଆସ୍ଥା ସ୍ଥାପନ କରନ୍ତି କାରଣ ଏହା ସାର୍ବଜନୀନ ଓ ନିର୍ଭରଶୀଳ। ଯେଉଁମାନେ ପ୍ରାକୃତିକ ନିୟମ ବିରେଧୀ କୌଣସି ଚମତ୍କାରିତା ପ୍ରଦର୍ଶନ କରିବାର ଆସ୍ଫାଳନ କରନ୍ତି, ହେତୁବାଦରେ ତାହାକୁ ଗ୍ରହଣ କରାଯାଏ ନାହିଁ। ହେତୁବାଦୀ ମାନେ ଚମତ୍କାରିତା ପ୍ରଦର୍ଶନ କରୁଥିବା ବ୍ୟକ୍ତିମାନଙ୍କୁ ଆହ୍ୱାନ ଦେଇଛନ୍ତି। ଯଦି କୌଣସି ତାନ୍ତ୍ରିକ, ଦେବପୁରୁଷ, ବାବା ବା ମାତା ଚମତ୍କାରିତାର ପ୍ରମାଣ ଦେଇପାରିବେ କିମ୍ବା ଗୋଟିଏ ଅଲୌକିକ ଘଟଣା ସୃଷ୍ଟି କରିପାରିବେ ସେମାନଙ୍କୁ କୋଟି କୋଟି ଟଙ୍କା ଦେବାକୁ ଆହ୍ୱାନ ରଖିଛନ୍ତି। ହେଲେ ଭାରତରେ ବା ଆନ୍ତର୍ଜାତିକ ସ୍ତରରେ ରହିଥିବା ଏହି ଆହ୍ୱାନକୁ କୌଣସି ତାନ୍ତ୍ରିକ ବା ଚମତ୍କାରିତା ଦେଖାଉଥିବା ବ୍ୟକ୍ତି ସମ୍ମୁଖୀନ ହେବାରେ ସାହାସ ଦେଖାଇ ନାହାନ୍ତି।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ହେତୁବାଦୀ ମାନେ କୌଣସି ବ୍ୟକ୍ତିର ଈଶ୍ୱର ବିଶ୍ୱାସ ବା ଧର୍ମଭାବନାକୁ ବିରୋଧ କରନ୍ତି ନାହିଁ। ହେତୁବାଦୀମାନେ ଈଶ୍ୱର

ବା ଧର୍ମବିରୋଧୀ ନୁହନ୍ତି । କିନ୍ତୁ ଧାର୍ମିକ ଭାବନା ଆଧାରରେ କରାଯାଉଥିବା ଶୋଷଣ, ଅତ୍ୟାଚାର ଓ ସାମାଜିକ ଭେଦଭାବକୁ ସେମାନେ ବିରୋଧ କରିଥାନ୍ତି । ସାଧାରଣ ଲୋକର ସରଳ ବିଶ୍ୱାସକୁ ନେଇ ଯେଉଁମାନେ ଅବୈଜ୍ଞାନିକ ଭାବନା ଓ କୁସଂସ୍କାର ପ୍ରସାର କରନ୍ତି ସେହି ପରିସ୍ଥିତିରେ ସତ୍ୟ କ'ଣ ତାହା ଜଣାଇବାକୁ ହେତୁବାଦୀମାନେ ଉଦ୍ୟମ କରିଆସିଛନ୍ତି । ବିଶେଷକରି ତନ୍ତ୍ର, ମନ୍ତ୍ର, ଗୁଣିଗାରଡି ଜନିତ କଳାଯାଦୁ ବା ବ୍ଲାକ ମ୍ୟାଜିକ୍ ଜରିଆରେ ସାଧାରଣ ମଣିଷକୁ ଠକୁଥିବା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକମାନଙ୍କୁ ହେତୁବାଦୀମାନେ ସର୍ବଦା ଆହ୍ୱାନ ଦେଇ ଆସିଛନ୍ତି । ଯେଉଁ ବ୍ୟକ୍ତିମାନେ ବ୍ଲାକ ମ୍ୟାଜିକକୁ ନେଇ ନିଜର ଅସାଧାରଣ ଶକ୍ତି ଥିବା ଦାବି କରନ୍ତି ବା ଯେଉଁମାନେ ଚମକ୍ରାରିତା ଆଳରେ ସାଧାରଣ ଜନଗଣଙ୍କୁ ଶୋଷଣ କରନ୍ତି ସେହିମାନଙ୍କୁ ହେତୁବାଦୀମାନେ ପରୀକ୍ଷା ପାଇଁ ଆହ୍ୱାନ ଦେଇଥାନ୍ତି । କୁସଂସ୍କାର, ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଚମକ୍ରାରିତାରେ ବିଶ୍ୱାସ ଜ୍ଞାନବିଜ୍ଞାନର ଯେପରି ପରିପନ୍ଥୀ, ସେହିପରି ସଭ୍ୟ ଜୀବନଦୃଷ୍ଟିର ମଧ୍ୟ ପ୍ରତିକୂଳ । ସମାଜରେ ସଭ୍ୟ ଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ବିଚାରବୋଧ ଓ ମାନବବାଦୀ ଆଚରଣର ପ୍ରସାର ଚାହୁଁଥିବା ହେତୁବାଦୀମାନେ ସାମାଜିକ ଜୀବନ ପ୍ରବାହକୁ ଉନ୍ନତ, ନ୍ୟାୟପୂର୍ଣ୍ଣ ଓ କୁସଂସ୍କାରମୁକ୍ତ କରିବାକୁ ସର୍ବଦା ନିଜର ଗଭୀର ସଂପୃକ୍ତି ବ୍ୟକ୍ତ କରିଆସିଛନ୍ତି । ଏହି ପ୍ରୟାସ ଭିତରେ ସେମାନେ ରୂଢ଼ିବାଦୀ ଧର୍ମାନ୍ଧ ଲୋକମାନଙ୍କ ଦ୍ୱାରା ନିନ୍ଦିତ ବା ନିର୍ଯ୍ୟାତିତ ହୋଇଛନ୍ତି, ଏପରିକି ସହିଦ ପାଲଟିଛନ୍ତି । ଏହି ପୃଷ୍ଠଭୂମିରେ ସାଂପ୍ରତିକ ସମୟର ଦୁଇଜଣ ବିଶିଷ୍ଟ ହେତୁବାଦୀଙ୍କ ସଂଗ୍ରାମର ସାମାନ୍ୟ ସୂଚନା ଦେବାକୁ ଏଠାରେ ଚାହୁଁଛି । ସେମାନେ ହେଲେ ଡାକ୍ତର ନରେନ୍ଦ୍ର ଦାଭୋଲକର ଓ ସାନାଲ୍ ଏଡମାରୁକୁ ।

ନରେନ୍ଦ୍ର ଦାଭୋଲକର (୧.୧୧.୪୫'ରୁ ୨୦.୮.୧୯୧୩) ନିକଟରେ ଆତତାୟୀଙ୍କ ଗୁଳିରେ ପ୍ରାଣ ହରାଇଛନ୍ତି । ସେ ଥିଲେ 'ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତି'ର ପ୍ରତିଷ୍ଠାତା ଓ ସଭାପତି । ଏହା ସହିତ ଏକ ମରାଠି ସାପ୍ତାହିକ ପତ୍ରିକା "ସାଧନା" ର ସଂପାଦକ । ସମାଜରୁ କୁସଂସ୍କାର, କଳାଯାଦୁ ଜନିତ ଠକାମି, ତଥାକଥିତ ଦେବପୁରୁଷ ମାନଙ୍କର ଚମକ୍ରାରିତା ବିରୁଦ୍ଧରେ ସେ ଜନମାନସକୁ ସଚେତନ କରାଇବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ନିଷ୍ଠାପର ଉଦ୍ୟମରେ ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତିର ଶତାଧିକ କେନ୍ଦ୍ର ମହାରାଷ୍ଟ୍ରରେ ସ୍ଥାପିତ ହୋଇଛି । କୁସଂସ୍କାର

ପ୍ରସାରକୁ ପ୍ରତିହତ କରିବାକୁ ଆଇନ କରିବା ପାଇଁ ସେ କିଛି ବର୍ଷ ହେଲା ସରକାରଙ୍କ ପାଖରେ ଦାବି ଉପସ୍ଥାପନ କରି ଆସିଛନ୍ତି। ଯେଉଁ ବ୍ୟକ୍ତିମାନେ ଅତୀତର ସନ୍ଥମାନଙ୍କର ଅବତାର ବୋଲି ନିଜକୁ ପରିଚୟ ଦେଇ ଲୋକଙ୍କର ଆବେଗକୁ ଶୋଷଣ କରୁଛନ୍ତି, ଦିବ୍ୟଶକ୍ତିର ଅଧିକାରୀ ବୋଲି ଦାବି କରୁଛନ୍ତି, ତଥା କଥିତ ଚମତ୍କାରିତା ଦେଖାଉଛନ୍ତି, କଳାଯାଦୁ ପ୍ରଦର୍ଶନ କରି ଲୋକମାନଙ୍କ ଭିତରେ ଭୟ ସଂଚାର କରାଉଛନ୍ତି, ମାନସିକ ସମସ୍ୟା ଥିବା ଲୋକମାନଙ୍କୁ ଭୂତ ଲାଗିଥିବା କହି ଶୋଷଣ କରୁଛନ୍ତି, ନିଜକୁ ଦେବୀଙ୍କ ପ୍ରତିନିଧି ଭାବେ କାଳିସୀ କହି ଲୋକଙ୍କର ରୋଗ ଭଲ କରିବା ବା ଆଗତ ଭବିଷ୍ୟତ କହିବାର ଅଭିନୟ କରୁଛନ୍ତି, ଝଡା ଫୁଙ୍କା କରି ରୋଗ ବା ବିଷ ଭଲ କରିଦେବେ କହି ଲୋକଙ୍କୁ ବିଭ୍ରାନ୍ତ କରୁଛନ୍ତି, ମନ୍ତ୍ର ତନ୍ତ୍ର ଆଧାରରେ କୌଣସି ମହିଳାଙ୍କୁ ଗର୍ଭଧାରଣ କରାଇବାର ପ୍ରଲୋଭନ ଦେଖାଉଛନ୍ତି, ପୁତ୍ର ସନ୍ତାନ ଲାଭ ପାଇଁ ପୂଜାବିଧିର ଆୟୋଜନ କରାଉଛନ୍ତି, ଯେକୌଣସି ପ୍ରତିକୂଳ ପରିସ୍ଥିତି ଦୂର କରିବାକୁ ତାବିଜ, ଡେଉଁରିଆ ବିକ୍ରି କରି ଲୋକଙ୍କୁ ଶୋଷଣ କରୁଛନ୍ତି, ଲକ୍ଷ୍ୟ ସାଧନ ପାଇଁ ମନ୍ଦିରରେ ପଶୁ ବଳି ଦେବାକୁ ଲୋକଙ୍କୁ ପ୍ରଭାବିତ କରୁଛନ୍ତି, କାହାକୁ ଡାହାଣୀ କହି ତାଙ୍କୁ ନିନ୍ଦିତ କରାଉଛନ୍ତି ଇତ୍ୟାଦି କାର୍ଯ୍ୟସବୁକୁ ଧର୍ତ୍ତବ୍ୟ ଅପରାଧ ଭାବେ ଗ୍ରହଣ କରିବାକୁ ଆଇନର ବ୍ୟବସ୍ଥା ପାଇଁ ସରକାରଙ୍କ ପାଖରେ ଦାବିକରି ଆସୁଥିଲେ। ଯେଉଁମାନେ ଏହି ସବୁ କାର୍ଯ୍ୟରେ ସଂପୃକ୍ତ ରହି ଲୋକଙ୍କର ଅଜ୍ଞତାର ସୁଯୋଗ ନେଇ ଅର୍ଥ ରୋଜଗାର କରୁଛନ୍ତି ସେମାନେ ଦାଭୋଲକରଙ୍କର ବିରୋଧୀ ହେଉଥିଲେ। ସେ ଯେତେ ଧମକ ପାଇଲେ ମଧ୍ୟ ନିଜର ନିରାପତ୍ତା ପାଇଁ ପୁଲିସର ସହାୟତା ନେଇନଥିଲେ। ଗଭୀର ଆତ୍ମବିଶ୍ୱାସ ସହ ଲୋକମାନଙ୍କ ଭିତରେ ବୈଜ୍ଞାନିକ ସଚେତନତା ଓ ସାମାଜିକ ସମତାର ବାର୍ତ୍ତା ପ୍ରଚାର କରି ଆସୁଥିଲେ। କୁସଂସ୍କାରର ନିୟନ୍ତ୍ରଣ ପାଇଁ ଆଇନର ଅଙ୍କୁଶ ରହିବା ଉଚିତ, ତା ସହିତ ସାମାଜିକ ସ୍ତରରେ ଲୋକମାନେ ସଚେତନ ହେବା ଆବଶ୍ୟକ। କେବଳ ଆଇନଗତ ବ୍ୟବସ୍ଥାଦ୍ୱାରା ସମାଜରୁ କୁସଂସ୍କାର ଓ ଜାତିଆଣ ଭେଦଭାବ ଦୂର କରିହେବ ନାହିଁ। ଏହି ସ୍ଥିତିରେ ଏଭଳି ଜଣେ ମାନବବାଦୀ ସଂସ୍କାରକଙ୍କୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର କେହି ବ୍ୟକ୍ତି ଅଗଷ୍ଟ ୨୦ ତାରିଖ ଦିନ ଗୁଳିକରି ହତ୍ୟା କରିଛି। ତାଙ୍କ ହତ୍ୟାରେ ପୁନା ସହର ସ୍ତବ୍ଧ ହୋଇଯାଇଛି, ମହାରାଷ୍ଟ୍ରର ବିଭିନ୍ନ ସ୍ଥାନରେ ଆନ୍ଦୋଳନ ଓ ପ୍ରତିବାଦର ସ୍ୱର ଉଠିଛି। ଏହି ପରିସ୍ଥିତିରେ ମହାରାଷ୍ଟ୍ର ସରକାର ବ୍ଲାକମ୍ୟାଜିକକୁ ଏକ ଦଣ୍ଡନୀୟ ଅପରାଧ କରିବାକୁ ଏକ ଅଧାଦେଶ ଜାରି କରିଛନ୍ତି।

ଯେଉଁଥିପାଇଁ ବହୁ ବର୍ଷ ହେଲା ଦାଭୋଲକର ଦାବି କରି ଆସୁଥିଲେ, ତାଙ୍କ ହତ୍ୟାରେ ଜନ ଅସନ୍ତୋଷକୁ ପ୍ରଶମିତ କରିବା ପାଇଁ ସରକାର ଏହି ପଦକ୍ଷେପ ନେଲେ ବୋଲି କୁହାଯାଉଛି।

ସାନାଲ୍ ଏଡ୍‌ମାରୁକୁ ଏକ ହେତୁବାଦୀ ପରିବାରରୁ ଆସିଛନ୍ତି। ବାପା ଯୋଶେଫ୍ ଏଡମାରୁକୁ ଥିଲେ ଜଣେ ବିଶିଷ୍ଟ ହେତୁବାଦୀ ଓ ସୁଲେଖକ। ସାନାଲଙ୍କ ଜନ୍ମ କେରଳରେ, ୧୯୫୫ ରେ। ସାନାଲ ଥିଲେ ଭାରତୀୟ ହେତୁବାଦୀ ସମାଜ (ଇଣ୍ଡିଆନ ରେସନାଲିଷ୍ଟ ଆସୋସିଏସନ) ର ସଭାପତି। ଚମତ୍କାରିତା ପ୍ରଦର୍ଶନ ପାଇଁ ଯେଉଁ ଆହ୍ୱାନ ରହିଛି, ସାନାଲ ଭାରତୀୟ ହେତୁବାଦୀ ସମାଜ ତରଫରୁ ସେହି ଆହ୍ୱାନ ରଖିଛନ୍ତି ଯେ ଯଦି କୌଣସି ବ୍ୟକ୍ତି ଏକ ଚମତ୍କାରିତା (ମିରାକେଲ) ପ୍ରଦର୍ଶନ କରିପାରିବେ ତାଙ୍କୁ ଏକ ଲକ୍ଷ ଟଙ୍କା ପ୍ରଦାନ କରିବେ। ଆବ୍ରାହମ କୋଭୁରଙ୍କଠାରୁ ଆରମ୍ଭ ହୋଇଥିବା ଏହି ଚାଲେଂଜ ଭାରତବର୍ଷରେ ଯେଉଁମାନେ ରଖିଛନ୍ତି, ସେମାନଙ୍କ ମଧ୍ୟରେ ସାନାଲ ଅନ୍ୟତମ। ସେ ବହୁବାର ଟିଭି ଚାନେଲ ମାନଙ୍କରେ ଦେବପୁରୁଷ ଓ ତାନ୍ତ୍ରିକମାନଙ୍କର ଚମତ୍କାରିତାକୁ ମିଥ୍ୟା ପ୍ରମାଣ କରିଛନ୍ତି।

୨୦୧୨ ରେ ମୁମ୍ବାଇଠାରେ ଏକ କ୍ୟାଥଲିକ ଚର୍ଚ୍ଚ ତରଫରୁ ଘୋଷଣା କରାଗଲା ଯେ ସେଠାରେ ଥିବା ପ୍ରଭୁ ଯୀଶୁଙ୍କ ପ୍ରତିମୂର୍ତ୍ତିରୁ ଲୁହ ଝରୁଛି। ଏହି ଘଟଣା ଜଣାପଡିବା ପରେ ବହୁ ଲୋକ ସେହି ଚମତ୍କାରିତା ଦେଖିବାକୁ ସେଠାକୁ ଗଲେ। ସାନାଲ ସେଠାକୁ ଯାଇ ଘଟଣାଟିର ଅନୁସନ୍ଧାନ କରି ଜାଣିବାକୁ ପାଇଲେ ଯେ ସେଠାରେ ଥିବା ଏକ ପାଇପ ରୁନ୍ଧି ହୋଇଯାଇଛି, ଫଳରେ ଜଳ ନିଷ୍କାସନ ହୋଇପାରୁ ନାହିଁ। ଜମି ରହୁଥିବା ଜଳ ଝରି ଲୁହର ଭ୍ରମ ସୃଷ୍ଟି କରୁଛି। ଘଟଣାଟିକୁ ବିଜ୍ଞାନ ସମ୍ମତ ଧାରାରେ ବ୍ୟାଖ୍ୟା କରିବାପରେ ଚମତ୍କାରିତାର ପ୍ରଚାର କରୁଥିବା ଲୋକମାନେ ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଲେ ଯେ ସାନାଲ ସେମାନଙ୍କର ଧାର୍ମିକ ଭାବନାକୁ ଆଘାତ ଦେଇଛନ୍ତି। ଏହା ଈଶ୍ୱର-ନିନ୍ଦା ସହ ସମାନ, ସୁତରାଂ ତାଙ୍କୁ ଗିରଫ କରାଯିବା ଆବଶ୍ୟକ। ଏପରିକି ତାଙ୍କୁ ମାରିଦେବାକୁ କେତେକ ଧମକ ଦେଇଥିବା ସେ ପ୍ରକାଶ କରିଛନ୍ତି। ଏହି ସ୍ଥିତିରେ ନିଜକୁ ଅସୁରକ୍ଷିତ ମନେକରି ସାନାଲ ଭାରତ ଛାଡି ୟୁରୋପ ଚାଲିଗଲେ। ଏବେ ସେ ବିଦେଶରେ ରହୁଛନ୍ତି ଓ ସେଠାରେ ତାଙ୍କର ହେତୁବାଦୀ ଭାବନାକୁ ପ୍ରସାର କରୁଛନ୍ତି। ତାଙ୍କ ମତରେ ସେ ଅତୀତରେ ନିଜ ଦେଶରେ ବହୁ

ଟିଭି ଚାନେଲରେ ତାଙ୍କ ମତ ରଖିଛନ୍ତି, ଶହ ଶହ ସଭାରେ ଲୋକମାନଙ୍କୁ କୁସଂସ୍କାର ବିରୁଦ୍ଧରେ ସଚେତନ କରାଇଛନ୍ତି, ତେବେ ଲୋକଙ୍କ ପାଖରୁ କୌଣସି ବିରୋଧର ସମ୍ମୁଖୀନ ହୋଇ ନାହାନ୍ତି । କିନ୍ତୁ ଯେତେବେଳେ କୌଣସି ସ୍ୱଘୋଷିତ ବେଦପୁରୁଷଙ୍କର ଚମତ୍କାରିତାର କୌଶଳକୁ ଅନାବୃତ କରିଛନ୍ତି କିମ୍ୱା ଅଲୌକିକ ମନେ ହେଉଥିବା ଘଟଣାର ଅନୁସନ୍ଧାନ କରି ତାହାର ବୈଜ୍ଞାନିକ କାରଣ ଦର୍ଶାଇଛନ୍ତି ସେତେବେଳେ ସେ ଧମକ ପାଇଛନ୍ତି ।

ଏହା ବିଡମ୍ବନା ଯେ ଯେଉଁମାନେ ବିଚାରଶୀଳତା, ବୈଜ୍ଞାନିକ ମାନସିକତା ଓ ମାନବବାଦୀ ମୂଲ୍ୟବୋଧର ପ୍ରବକ୍ତା, ସେମାନେ ନିଜ ସମସାମୟିକ ସମାଜରେ ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୁଅନ୍ତି, ନିନ୍ଦିତ ହୁଅନ୍ତି ଓ ଏପରିକି ସହିଦ ପାଲଟନ୍ତି । ତେବେ ସେହିମାନଙ୍କର ବିଚାରବୋଧ ସଭ୍ୟ ଜୀବନଦୃଷ୍ଟିର ବିକାଶରେ ସହାୟକ ହୋଇଥାଏ ଓ ଜୀବନର ଗୁଣାତ୍ମକ ମାନରେ ଉତ୍କର୍ଷ ସାଧନ କରିଥାଏ । ସକ୍ରେଟିସ, ମାର୍ଟିନ ଲୁଥର କିଙ୍ଗ୍, ମହାତ୍ମା ଗାନ୍ଧୀଙ୍କ ପରି ବହୁ ସତ୍ୟାନ୍ୱେଷୀ ମାନବବାଦୀଙ୍କୁ ହତ୍ୟା କରାଯାଇଛି, କିନ୍ତୁ ବିବେକର ସ୍ୱରକୁ ଧର୍ମାନ୍ଧ ଲୋକମାନେ କେବେ ବି ନଷ୍ଟ କରିପାରି ନାହାନ୍ତି । ବ୍ରୁନୋ, ଗାଲିଲିଓ, ଆଣ୍ଡ୍ରିଆସ ଭେସାଲିୟସଙ୍କ ପରି ବହୁ ପ୍ରତିଭାଧର ବୈଜ୍ଞାନିକ ନୂତନ ଜ୍ଞାନର ଆବିଷ୍କାର ପାଇଁ ନାନା ଯନ୍ତ୍ରଣା ସହ୍ୟ କରିଛନ୍ତି କାରଣ ସେହି ଜ୍ଞାନ ଧାର୍ମିକ ବିଶ୍ୱାସର ବିରୁଦ୍ଧାଚରଣ କରିଛି । ରକ୍ଷଣଶୀଳ ଧର୍ମଧ୍ୱଜାଧାରୀ ଲୋକମାନେ ସେମାନଙ୍କୁ ଧର୍ମବିରୋଧୀ କହି ନିର୍ଯ୍ୟାତନା ଦେଇଥିଲେ ବି ବିଜ୍ଞାନର ଅଗ୍ରଗତିକୁ ପ୍ରତିହତ କରିପାରି ନାହାନ୍ତି । ସେହିପରି ଯେଉଁ ହେତୁବାଦୀମାନେ ବିଚାରଶୀଳତା, ମାନବିକତା ଓ ବିବେକର ବାର୍ତ୍ତା ଦେଇ ସଭ୍ୟ ଜୀବନଧାରାର ମାର୍ଗ ଦେଖାଇଛନ୍ତି ସେମାନଙ୍କୁ ଯେତେ ବିରୋଧ କରାଗଲେ ବି ସଭ୍ୟତା ଯେତେ ଆଗକୁ ଯାଉଥିବ, ସେମାନେ ସେତେ ଅଧିକ ଇତିହାସରେ ସଭ୍ୟ ମୂଲ୍ୟବୋଧର ବାର୍ତ୍ତାବହ ଭାବେ ସ୍ୱୀକୃତ ହେଉଥିବେ ।

ଆମ ଦେଶ ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ ଆମ ଦେଶର ସାମାଜିକ ଜୀବନ ପ୍ରବାହରେ ଅନେକ କୁସଂସ୍କାର ରହିଛି । ଆମର ଅନଗ୍ରସରତା, ନିରକ୍ଷରତା ଓ ଦାରିଦ୍ର୍ୟତା ଯୋଗୁ ଅନେକ ଲୋକ ପ୍ରତିକୂଳ ପରିସ୍ଥିତିରେ କୁସଂସ୍କାରରେ ଆସ୍ଥା ସ୍ଥାପନ କରୁଛନ୍ତି । ରୋଗବାଧକରେ ପୀଡିତ ଥିବା ଲୋକ ଚିକିତ୍ସାରୁ ବଞ୍ଚିତ ହେଉଥିଲେ

ସେ ଗୁଣି-ଟୁଣିରେ ବିଶ୍ୱାସ କରିବା ତା' ପାଇଁ ସ୍ୱାଭାବିକ ହୋଇଥାଏ । ସେହିପରି ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେଉଥିବା ବ୍ୟକ୍ତି ସେହି ପରିସ୍ଥିତିରୁ ଉଦ୍ଧାର ପାଇଁ ଆତ୍ମବିଶ୍ୱାସ ଅଭାବରେ ଦିଅଁ ଦେବତାରେ ମାନସିକ କରିବା ଏକ ସାଧାରଣ ମନସ୍ତତ୍ତ୍ୱ । ଏହା ସହ ସାମାଜିକ ପରିବେଶର ପ୍ରଭାବରୁ ତଥା କିଛି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ପ୍ରଚାରରୁ ସମାଜରେ ନାନା କୁସଂସ୍କାର ତିଷ୍ଠି ରହିଛି । ତେବେ ଆମ ସମାଜରେ ଅନେକ କୁସଂସ୍କାର ଓ ଭେଦଭାବ ଜନିତ ମାନସିକତା ରହିଥିଲେ ମଧ, ଆମ ଦେଶର ସମ୍ବିଧାନ ଏହି ଦୃଷ୍ଟିରୁ ଅତ୍ୟନ୍ତ ପ୍ରଗତିଶୀଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଣେ ନାଗରିକର ମୌଳିକ କର୍ତ୍ତବ୍ୟ ପୃଷ୍ଠଭୂମିରେ ସମ୍ବିଧାନର ଚତୁର୍ଥ ଭାଗରେ ଧାରା ୫୧ ଏ(ଏଚ୍) ରେ କୁହାଯାଇଛି "ପ୍ରତ୍ୟେକ ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ଅନୁସନ୍ଧିତ୍ସୁ ତଥା ସଂସ୍କାରବାଦୀ ମାନସିକତାର ବିକାଶ କରାଇବେ"। ସେହିପରି ସମ୍ବିଧାନର ମୁଖବନ୍ଧରେ (ପ୍ରିଏମ୍ବୁଲ) ସମସ୍ତ ନାଗରିକଙ୍କୁ ନ୍ୟାୟ, ସମତା ଓ ବ୍ୟକ୍ତିମର୍ଯ୍ୟାଦାବୋଧ ପ୍ରଦାନ କରିବା ପାଇଁ ପ୍ରତିବଦ୍ଧତା ବ୍ୟକ୍ତକରାଯାଇଛି । ଏହା ସହିତ ଦେଶର କେତେକ ରାଜ୍ୟରେ କଳାଯାଦୁ ବା ବ୍ଲାକମ୍ୟାଜିକ ଦ୍ୱାରା ଲୋକଙ୍କୁ ବିଭ୍ରାନ୍ତ କରିବା ଏକ ଧର୍ତ୍ତବ୍ୟ ଅପରାଧ ଭାବେ ଗ୍ରହଣ କରାଯିବାକୁ ଆଇନ ହୋଇଛି । ଗୁଣିଗାରଡି ତଥା ମନ୍ତ୍ର ତନ୍ତ୍ର ଜନିତ କାରଣରୁ ଘଟୁଥିବା ଅପରାଧକୁ ନିୟନ୍ତ୍ରଣ କରିବା ପାଇଁ କେତେକ ରାଜ୍ୟରେ ଆଇନ ରହିବା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଅର୍ଥାତ୍ ଯେକୌଣସି ଭେଦଭାବ ଓ କୁସଂସ୍କାର ପ୍ରସାର କରିବା ସମ୍ବିଧାନ ବିରୋଧୀ ବୋଲି ଏଥିରୁ ସ୍ୱୀକୃତ ହୋଇଛି ।

ଏସବୁ ପ୍ରଗତିଶୀଳ ଓ ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ଆମର ସାମାଜିକ ଦୃଷ୍ଟିଭଙ୍ଗୀରେ ଯଥେଷ୍ଟ ପରିବର୍ତ୍ତନ ଆସିନାହିଁ । ଏବେ ବି ମଧ୍ୟଯୁଗୀୟ ପରଂପରା ଓ ଜାତିଆଣ ଭେଦଭାବ ଆମ ସମାଜର ନିଛକ ବାସ୍ତବତା । ସେହି ସ୍ଥିତିକୁ ପରିବର୍ତ୍ତନ କରିବା ପାଇଁ ତଥା ସଭ୍ୟ ଜୀବନଧାରାର ପ୍ରସାର ପାଇଁ ମୁଷ୍ଟିମେୟ ହେତୁବାଦୀ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟ କରୁଛନ୍ତି । ସେହି ପରିସ୍ଥିତିରେ ସ୍ଥଳ ବିଶେଷରେ ସେମାନେ ନାନା ନିର୍ଯ୍ୟାତନା ସହ୍ୟ କରୁଛନ୍ତି ବା ସହିଦ ପାଲଟୁଛନ୍ତି । ଏହାର ସଦ୍ୟତମ ଉଦାହରଣ ହେଲା-ସାନାଲ ଏଡମାରୁକୁ ଓ ନରେନ୍ଦ୍ର ଦାଭୋଲକର ।



# ଦୁର୍ନୀତି, ଜନଜୀବନ ଓ ଗଣମାଧ୍ୟମ

ଦୁର୍ନୀତି ସଭ୍ୟ ଜୀବନଧାରାର ପରିପନ୍ଥୀ। ଏହା ମଧ୍ୟ ଏକ ଉନ୍ନତ ରାଷ୍ଟ୍ର ଓ ଉତ୍ତମ ସମାଜର ପ୍ରତିକୂଳ। ତେବେ ଏହାର ଅର୍ଥ ନୁହେଁ ଯେ ପ୍ରତ୍ୟେକଟି ସଭ୍ୟ ରାଷ୍ଟ୍ର ସଂପୂର୍ଣ୍ଣ ଦୁର୍ନୀତିମୁକ୍ତ। ରାଷ୍ଟ୍ରର ଜଟିଳତା ଓ ସାମାଜିକ ସମ୍ବନ୍ଧର ବିବିଧତା ଭିତରେ ଏକ ସଭ୍ୟ ରାଷ୍ଟ୍ର ଓ ଉନ୍ନତ ସମାଜରେ ହୁଏତ କେଉଁଠି କେଉଁଠି ଦୁର୍ନୀତି ରହିପାରେ। ଏକ ଦୁର୍ନୀତିମୁକ୍ତ ରାଷ୍ଟ୍ର ବା ସମାଜର ସମ୍ଭାବନା ହୁଏତ ଏକ ୟୁଟୋପିଆ ବା କାଳ୍ପନିକ ବସ୍ତୁ ମନେ ହୋଇପାରେ। ତେବେ ଏକ ସଭ୍ୟ ରାଷ୍ଟ୍ର ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟକୁ ଆଇନ ବିରୋଧୀ ବା ନୀତିବିରୋଧୀ ଭାବେ ନେଇ ଏହାର ନିବାରଣ ପାଇଁ ଜାଗରୂକ ବ୍ୟବସ୍ଥାକୁ ଦୃଢ଼ କରିଥାଏ। ସେହିପରି ଏକ ସଭ୍ୟ ସମାଜରେ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ଏକ ସାଧାରଣ ଧାରା ନ ହୋଇ ଏକ ବ୍ୟତିକ୍ରମ ବୋଲି ଧରାଯାଏ ଓ ଏ ପ୍ରକାର କାର୍ଯ୍ୟ ପ୍ରତି ସାମାଜିକ କଟାକ୍ଷ ବ୍ୟକ୍ତ ହେଉଥାଏ। ଏକ ଉନ୍ନତ ସମାଜରେ ଦୁର୍ନୀତିର ପରିସର ଅତି ସୀମିତ, ଅପରପକ୍ଷରେ ଯେଉଁ ସମାଜ ଯେତେ ଅଧିକ ଦୁର୍ନୀତିଗ୍ରସ୍ତ ତାହା ସେତେ କ୍ଷୟଶୀଳ। ଅର୍ଥାତ୍ ସମାଜରେ ଦୁର୍ନୀତି ଯେତେ ବ୍ୟାପକ ହୁଏ ସମାଜ ସେତେ ମନ୍ଦ ବା କ୍ଷୟଶୀଳ ହୋଇଥାଏ।

ପ୍ରଶ୍ନ ହେବ- ଦୁର୍ନୀତିର ପ୍ରକୃତ ଅର୍ଥ କ'ଣ ? କେଉଁ କାର୍ଯ୍ୟକୁ ଏକ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ କୁହାଯିବ ? ଏହାର ଏକ ନକାରାତ୍ମକ ସଂଜ୍ଞା ହେବ ଯାହା ନୀତି ବିରୁଦ୍ଧ ବା ଅନୈତିକ ତାହାକୁ ଦୁର୍ନୀତି କୁହାଯାଇପାରେ। 'ଦୁର୍ନୀତି' ବ୍ୟକ୍ତି ବା ଏକ ଗୋଷ୍ଠୀର କୌଣସି ଅନୈତିକ କିମ୍ବା ଗର୍ହିତ କାର୍ଯ୍ୟକୁ ସୂଚାଇଥାଏ। ସାଧାରଣ ପ୍ରଚଳିତ ଅର୍ଥରେ ଅସାଧୁ ଉପାୟରେ ଉପାର୍ଜନ କିମ୍ବା ଅନ୍ୟକୁ ଠକିବା ବା ଶୋଷଣ କରିବାକୁ ଏହା ମଧ୍ୟ ବୁଝାଏ। ଅସାଧୁ ଉପାୟରେ ଉପାର୍ଜନକୁ ଦୁର୍ନୀତି କହିଲେ, ଏହା ଦୁର୍ନୀତିର ଏକ

ସୀମିତ ଅର୍ଥ ହେବ। ଅପରପକ୍ଷରେ ଅନ୍ୟକୁ ଠକିବା, ଶୋଷଣ କରିବା ବା ଅନ୍ୟର ଅସହାୟତାର ସୁଯୋଗ ନେବାକୁ ଦୁର୍ନୀତି କହିଲେ ଏହା ଦୁର୍ନୀତିର ଏକ ବ୍ୟାପକ ଅର୍ଥ ହେବ। ସେହିପରି କୌଣସି ଉତ୍କୋଚ ନେଇ କାର୍ଯ୍ୟକରିବାକୁ ବି ଦୁର୍ନୀତି କୁହାଯାଏ। ବିଶେଷକରି ରାଜନୈତିକ କାର୍ଯ୍ୟ ବା ପ୍ରଶାସନ ସହ ସଂପୃକ୍ତ ଥିବା ବ୍ୟକ୍ତିମାନେ ନିଜର କ୍ଷମତାର ଦୁରୁପୋଯୋଗ କରି ଅସତ୍ ଉପାୟରେ ଅର୍ଥ ଉପାର୍ଜନ କରିବାକୁ ଦୁର୍ନୀତି ବୋଲି ସାଧାରଣତଃ ନିଆଯାଏ। ଦୁର୍ନୀତିକୁ ଯଦି ବୃହତ୍ତର ଅର୍ଥରେ ନିଆଯାଏ ତେବେ ସେ କ୍ଷେତ୍ରରେ ସମାଜର ବ୍ୟାପକ ସ୍ତରକୁ ମୂଲ୍ୟାୟନ କରିବାର ଅବକାଶ ଆସେ। ପନ୍ଥାର ଔଚିତ୍ୟ ବା ନୈତିକ ଦିଗରେ ମୂଲ୍ୟାୟନ ଯଦି ଦୁର୍ନୀତି ନିରୂପଣ କ୍ଷେତ୍ରରେ ମାନଦଣ୍ଡ ହୁଏ ତେବେ ବ୍ୟାପକ ଅର୍ଥରେ ସାମାଜିକ ପରିବେଶର ଚିତ୍ର ମିଳିଥାଏ। ପନ୍ଥାର ପବିତ୍ରତା ନେଇ ଜନଗଣଙ୍କର ଦୃଷ୍ଟିଭଙ୍ଗୀରୁ ସମାଜ ଅଧିକ ଉନ୍ନତ କିମ୍ବା ଅଧିକ ଦୁର୍ନୀତିଗ୍ରସ୍ତ ତାହା ବି ବିଚାର କରାଯାଇପାରେ। ପନ୍ଥାର ପବିତ୍ରତା ସହ ଜନଗଣଙ୍କର କର୍ମସଂସ୍କୃତି ଓ ନାଗରିକ ଶୃଂଖଳାବୋଧର  ପ୍ରଶ୍ନ ବି ସଂଶ୍ଳିଷ୍ଟ। ଦୁର୍ନୀତି ବା ସାମାଜିକ ଚରିତ୍ର ପ୍ରସଙ୍ଗଟି ଆଲୋଚନା କଲାବେଳେ ଏହିପରି ବହୁ ପ୍ରଶ୍ନ ଉଠିପାରେ।

ସାମାଜିକ ଜୀବନ ପ୍ରବାହରେ ପ୍ରତ୍ୟେକ ବ୍ୟକ୍ତି ବିଭିନ୍ନ ଲକ୍ଷ୍ୟ ପୋଷଣ କରିଥାଏ। ଶିକ୍ଷାଲାଭ, ସ୍ୱାବଲମ୍ବନଶୀଳତା, ସୁଖମୟ ଜୀବନ, ଆବଶ୍ୟକତା ପୂରଣ ଇତ୍ୟାଦି ପ୍ରତ୍ୟେକ ବ୍ୟକ୍ତି ଆଶାକରେ ଓ ଏଥିପାଇଁ ବିଭିନ୍ନ ଲକ୍ଷ୍ୟ ପୋଷଣ କରେ। ତେବେ ଏକ ଲକ୍ଷ୍ୟ ପ୍ରାପ୍ତି କ୍ଷେତ୍ରରେ କେତେକ ପନ୍ଥା ଅନୁସରଣ କରିବାକୁ ହଏ। ପନ୍ଥାର ପବିତ୍ରତା ଉପରେ ଜଣଙ୍କର ନୈତିକ ଆଚରଣ ନିର୍ଭର କରେ। ତେବେ ଯଦି କୌଣସି ବ୍ୟକ୍ତି ପନ୍ଥାର ପବିତ୍ରତାକୁ ଗୁରୁତ୍ୱ ନଦେଇ ଯେକୌଣସି ଓ ଏପରିକି ଅନୈତିକ ପନ୍ଥା ଦ୍ୱାରା ନିଜର ଲକ୍ଷ୍ୟ ହାସଲ କରିବାକୁ ପ୍ରଯତ୍ନ କରେ, ତେବେ ତାହା ର୍ଦୁନୀତିପୂର୍ଣ୍ଣ ହୋଇଥାଏ। ଯଦି ଏକ ସମାଜରେ ବହୁ ବ୍ୟକ୍ତି ଯେକୌଣସି ପନ୍ଥା ଅବଲମ୍ବନ କରନ୍ତି ଓ ପନ୍ଥାର ଔଚିତ୍ୟ ନେଇ ସ୍ପର୍ଶକାତରଶୂନ୍ୟ ହୁଅନ୍ତି ତେବେ ସମାଜରେ ଦୁର୍ନୀତି ବ୍ୟାପକ ହୋଇଥାଏ । କର୍ମ ସଂସ୍କୃତିର ମାନସିକତା ସମାଜରେ ସୁଦୃଢ଼ ରହିବା ଦ୍ୱାରା ସମାଜ ଉନ୍ନତ ହୋଇଥାଏ । ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ କର୍ମସଂସ୍କୃତିର ପରିଣାମରୁ ଆସିଥାଏ । ନିଜର କର୍ତ୍ତବ୍ୟ କ୍ଷେତ୍ରରେ ସାଧୁତା ରକ୍ଷା କରିବା, ନାଗରିକ ଶୃଂଖଳାବୋଧକୁ ସମ୍ମାନ ଦେବା, ବୃହତ୍ତର ସମାଜ ପାଇଁ ସଂପୃକ୍ତି ବ୍ୟକ୍ତି କରିବାର ଦୃଷ୍ଟିଭଙ୍ଗୀ ସମାଜକୁ ପ୍ରଗତିଶୀଳ ଓ ଉନ୍ନତ କରିଥାଏ। କିନ୍ତୁ ଏହି ସବୁ

ମୂଲ୍ୟବୋଧକୁ ସମ୍ମାନ ଦେଲେ ବା ଏହାର ବିପରୀତ ଦିଗରେ କାର୍ଯ୍ୟ କଲେ ସମାଜରେ ଦୁର୍ନୀତିର ବାତାବରଣ ବ୍ୟାପକ ହୋଇଥାଏ ।

ଲୋକ ଚରିତ୍ର ସମାଜରେ ଯେତେ ଉନ୍ନତ ହୁଏ, ସମାଜରୁ ଦୁର୍ନୀତିର ପରିବେଶ ହ୍ରାସ ପାଏ, ଅପରପକ୍ଷରେ ଲୋକ ଚରିତ୍ର ଯେତେ ଅନୁନ୍ନତ ହୁଏ ସମାଜରେ ଦୁର୍ନୀତି ସେତେ ବ୍ୟାପକ ହୁଏ । ଲୋକ ଚରିତ୍ର ଉନ୍ନତ ହେବା ପଶ୍ଚାତରେ ନାନା ପାରିବେଶିକ କାରଣ ରହିଥାଏ । ଶିକ୍ଷା, ସାମାଜିକ ସମତା, ସାଂସ୍କୃତିକ ପରିବେଶ, ପ୍ରଶାସନିକ ସ୍ୱଚ୍ଛତା ଇତ୍ୟାଦି ପରିସ୍ଥିତିରୁ ଲୋକ ଚରିତ୍ର ଉନ୍ନତ ହୋଇଥାଏ । କିନ୍ତୁ ଯଦି ସମାଜରେ ନାନା ଭେଦଭାବ, ଦାରିଦ୍ର୍ୟ, ନିରକ୍ଷରତା, ଅହେତୁକ ବିଶ୍ୱାସର ପ୍ରାବଲ୍ୟ ରହିଥାଏ ତେବେ ତାହାର ପରିଣାମରୁ ଲୋକଚରିତ୍ର ନିମ୍ନ ସ୍ତରରେ ରହିଥାଏ । ଲୋକ ଚରିତ୍ର ଉନ୍ନତ ନ ହେଲେ ସମାଜରେ ଦୁର୍ନୀତି ବ୍ୟାପକ ହୋଇଥାଏ । ଏକ ଦୁର୍ନୀତିଗ୍ରସ୍ତ ସମାଜରେ ହିଂସା, ପ୍ରତିହିଂସା, ହତାଶା, ବିଶୃଂଖଳା ବ୍ୟାପକ ହୁଏ । ଏକ ଦୁର୍ନୀତିଗ୍ରସ୍ତ ପରିବେଶରେ ଜନଗଣ ପାରଲୌକିକ ଜୀବନଦୃଷ୍ଟି ଦ୍ୱାରା ପରିଚାଳିତ ହୁଅନ୍ତି । ନାଗରିକ ଶୃଂଖଳାବୋଧ ଅପେକ୍ଷା ଧାର୍ମିକ ଅବେଗ, ବୈଜ୍ଞାନିକ ମାନସିକତା ପରିବର୍ତ୍ତେ ନାନା କୁସଂସ୍କାର ଜନଜୀବନକୁ ଆକ୍ରାନ୍ତ କରେ । ଦୁର୍ନୀତିଗ୍ରସ୍ତ ଓ ଧାର୍ମିକ ଆବେଗର ଛାଇ ତଳେ ଉଚ୍ଚ ନାଗରିକ ସଚେତନତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିକାଶଲାଭ କରିପାରେ ନାହିଁ ।

ଯାହା ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ତାହା ନିୟମ ବିରୁଦ୍ଧ ବା ନୀତିବିରୁଦ୍ଧ ହୋଇପାରେ । ପ୍ରତ୍ୟେକଟି ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ଆଇନ ଦୃଷ୍ଟିରୁ ଦଣ୍ଡନୀୟ ବି ହୋଇପାରେ । ତେବେ ପ୍ରତ୍ୟେକଟି ନୀତିବିରୁଦ୍ଧ କାର୍ଯ୍ୟ ହୁଏତ ଦଣ୍ଡନୀୟ ନହୋଇପାରେ । ଏଠାରେ ନୀତି-ନୈତିକତା ଓ ନିୟମ-ଆଇନ ଭିତରେ ପାର୍ଥକ୍ୟ କରାଯାଇପାରେ । ନିଜର ବୃଦ୍ଧ ପିତାମାତାଙ୍କୁ ହତାଦର କରିବା, ନିଶା ସେବନ କରି ପତ୍ନୀଙ୍କ ମାନସିକ ଯନ୍ତ୍ରଣାର କାରଣ ହେବା ଅନୈତିକ ହୋଇପାରେ କିନ୍ତୁ ଏହା ଦଣ୍ଡନୀୟ ନୁହେଁ । ତେବେ ଯେଉଁଠି ନିୟମ, ଆଇନର ଉଲଘଂନ କରାଯାଏ ତାହା ଦୁର୍ନୀତିପୂର୍ଣ୍ଣ ଯୋଗୁ ଦଣ୍ଡନୀୟ ହୋଇଥାଏ । ଏହି ପୃଷ୍ଠଭୂମିରେ ନୈତିକତାର ପରିସର ଓ ଆଇନର ପରିସର ଭିତରେ ପାର୍ଥକ୍ୟ କରାଯାଇପାରେ । ତେବେ ଦୁର୍ନୀତି ଅନେକାଂଶରେ ଆଇନ ନିୟମ ସହ ସଂଶ୍ଳିଷ୍ଟ, ଯଦିବା ଏହା ପ୍ରକାରାନ୍ତରେ ଅନୈତିକ ହୋଇପାରେ । ପୁନଶ୍ଚ ଏହା ମଧ୍ୟ

ସମ୍ଭବ ଯେ ପ୍ରତ୍ୟେକ ସ୍ତରରେ ଆଇନର ଉଲଙ୍ଘନ ହୁଏତ ଦଣ୍ଡନୀୟ ନୁହେଁ। କୌଣସି ସରକାରୀ ନିୟମକୁ ବିରୋଧ କରିବା, ନିୟମ ବିରୁଦ୍ଧରେ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ କରିବା ହୁଏତ ଏକ ଗଣତାନ୍ତ୍ରିକ ଅଧିକାର ହୋଇପାରେ । ଏହା କୁହାଯାଇପାରେ ଯେ ଆଇନ, ନିୟମ, ଅଧିକାର ଶୃଂଖଳିତ ସାମାଜିକ ଜୀବନ ଓ ଜନଜୀବନର ହିତ ପାଇଁ ଉଦ୍ଦିଷ୍ଟ । ଏହା ଯଦି ବୃହତ୍ତର ସମାଜର ହିତ ପରିବର୍ତ୍ତେ ଅହିତର ପରିବେଶ ବା ସମ୍ଭାବନା ଆଣେ ତାହାକୁ ବିରୋଧ କରାଯାଇପାରେ । ଏହା ପଶ୍ଚାତରେ ଥିବା ଉଦ୍ଦେଶ୍ୟ, ଲକ୍ଷ୍ୟର ଗୁଣାତ୍ମକ ମୂଲ୍ୟ ଉପରେ ଏହାର ମହତ୍ତ୍ୱ ନିର୍ଭର କରେ । ସୁତରାଂ ଦୁର୍ନୀତିର ପରିସର ଏହିପରି ଜଟିଳ ମନେହୁଏ ଓ ଏହା ସ୍ଥଳବିଶେଷରେ ନୈତିକତା, ଆଇନ ଓ ନିୟମ ପରିପ୍ରେକ୍ଷୀରେ ବ୍ୟବହୃତ ହୋଇଥାଏ ।

ଦୁର୍ନୀତି ଏକ ବ୍ୟାପକ ପ୍ରସଙ୍ଗ ହୋଇଥିବାରୁ ଏହାର ପରିସର ବି ବେଶ୍ ଜଟିଳ ମନେହୁଏ । ତେବେ ଏଠାରେ ତିନୋଟି ପୃଷ୍ଠଭୂମିରୁ ଏହାର ଆଲୋଚନାକୁ ସୀମିତ ରଖାଯାଇଛି । ଏକ ଦେଶର ରାଜନୈତିକ ପରିବେଶ, ପ୍ରଶାସନିକ ବ୍ୟବସ୍ଥା ଓ ସାଧାରଣ ଜୀବନ ପ୍ରବାହ ପରିପ୍ରେକ୍ଷୀରୁ ଏହାର ଆଲୋଚନା କରାଯାଇଛି । ପୁନଶ୍ଚ ଏହି ପ୍ରତ୍ୟେକଟି ପ୍ରସଙ୍ଗ ବେଶ୍ ବ୍ୟାପକ ଓ ବେଶ୍ ଜଟିଳ । ତେବେ ଏଠାରେ ଆମ ଦେଶର ସାମାଜିକ ଜୀବନ କ୍ଷେତ୍ରରେ ଆମର ରାଜନୀତି, ପ୍ରଶାସନ ଓ ସାଧାରଣ ଜୀବନ ପ୍ରବାହରୁ କିଛି ଦୃଷ୍ଟାନ୍ତ ଦେଇ ଦୁର୍ନୀତି କିପରି ବ୍ୟାପକ କ୍ଷେତ୍ରରେ ରହିଛି ତାହା ସଂକ୍ଷେପରେ ଦର୍ଶାଇବା ଆମର ଲକ୍ଷ୍ୟ ।

ଆମ ଦେଶର ରାଜନୈତିକ ପରିସ୍ଥିତିରେ ଦୁର୍ନୀତିର ଚିତ୍ରଟି ଅଧିକ ସ୍ପଷ୍ଟ ମନେହୁଏ । ସ୍ୱାଧୀନତା ଆନ୍ଦୋଳନ ସମୟରେ ବହୁ ଆଦର୍ଶବାଦୀ ବ୍ୟକ୍ତି ରାଜନୀତିରେ ସଂପୃକ୍ତ ରହିଥିଲେ । ଏକ ବିରାଟ ସାମ୍ରାଜ୍ୟବାଦୀ ଶକ୍ତିକୁ ଅହିଂସା ଆନ୍ଦୋଳନ ମାଧ୍ୟମରେ ଯେପରି ଦେଶରୁ ଦୂର କରାଯାଇ ପାରିଲା ତାହା ଇତିହାସରେ ଥିଲା ଏକ ଯୁଗାନ୍ତକାରୀ ଘଟଣା । ଗାନ୍ଧୀଙ୍କ ନୈତିକ ଆଦର୍ଶରେ ପ୍ରଭାବିତ ହୋଇ ବହୁ ବ୍ୟକ୍ତି ସ୍ୱାଧୀନତା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ନୀତି, ଆଦର୍ଶ, ତ୍ୟାଗ ମନୋଭାବ ରାଜନୈତିକ ଲୋକଙ୍କର କାର୍ଯ୍ୟଧାରାରେ ପ୍ରତିଫଳିତ ହେଉଥିଲା । ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଅନେକ କଷ୍ଟ ସହିଥିବା ବହୁ ତ୍ୟାଗୀ ବ୍ୟକ୍ତି ସ୍ୱାଧୀନତା ପରେ ସକ୍ରିୟ ରାଜନୀତିରେ ରହିଥିଲେ ଓ ନୈତିକ ମୂଲ୍ୟବୋଧକୁ ସମ୍ମାନ ଦେଉଥିଲେ । କିନ୍ତୁ

କାଳକ୍ରମେ ରାଜନୈତିକ ଜୀବନ ପ୍ରବାହରେ ନୈତିକ ମୂଲ୍ୟଚୟ ଧୀରେ ଧୀରେ ଅବକ୍ଷୟ ହୋଇ ଚାଲିଲା । ବିଂଶ ଶତାବ୍ଦୀର ଅଶୀ ଦଶକରେ ଦୁର୍ନୀତି ବିରୁଦ୍ଧରେ ଜୟପ୍ରକାଶ ଏକ ଆଲୋଡନ ଦେଶରେ ସୃଷ୍ଟି କରିଥିଲେ । ପରିଣାମ ସ୍ୱରୂପ ରାଜନୈତିକ ଦୃଶ୍ୟପଟରେ ଏକ ବଡ ପରିବର୍ତ୍ତନ ହୋଇଥିଲା ଓ ଆଶା କରାଯାଉଥିଲା ଯେ ଜାତୀୟ ଜୀବନରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ହେବ । କିନ୍ତୁ ବ୍ୟକ୍ତିଗତ ଅସୂୟା ଓ କ୍ଷମତାଲାଭର ଲୋଭ ଯୋଗୁଁ ରାଜନୈତିକ ଦୃଶ୍ୟପଟଟି ଅଳ୍ପ ଦିନ ଭିତରେ ଭୁଷୁଡି ପଡିଲା । ଦେଶର ବୁଦ୍ଧିଜୀବୀମାନେ ଓ ଯୁବସମାଜ ରାଜନୀତି ପ୍ରତି ବିତସ୍ପୃହ ହେଲେ । 'ରାଜନୀତି ଯେ ଧୂର୍ତ୍ତମାନଙ୍କର ଆଶ୍ରୟସ୍ଥଳ' ଏହି ଭାବନା ସମାଜରେ ବିଶ୍ୱାସ କରାଗଲା । ନିଷ୍କାପର, ଆଦର୍ଶବାଦୀ ଓ ମୂଲ୍ୟବୋଧରେ ବିଶ୍ୱାସ କରୁଥିବା ବ୍ୟକ୍ତିମାନେ ରାଜନୈତିକ ଦୃଶ୍ୟପଟରୁ ଅପସରି ଯିବାକୁ ଲାଗିଲେ । ପରିବର୍ତ୍ତିତ ପରିସ୍ଥିତିରେ ଦଳୀୟ କାର୍ଯ୍ୟସୂଚୀ କିମ୍ବା କୌଣସି ଆଦର୍ଶ ଦ୍ୱାରା ପ୍ରଭାବିତ ନ ହୋଇ କେଉଁ ଦଳରେ ସଂପୃକ୍ତ ହେଲେ ନିର୍ବାଚିତ ହୋଇପାରିବେ ବା କ୍ଷମତା ବଳୟ ଭିତରେ ରହିପାରିବେ ତାହା ହିଁ ଅନେକଙ୍କ ପାଖରେ ମୁଖ୍ୟ ପ୍ରସଙ୍ଗ ହେଲା । ବିଡମ୍ବନାର ବିଷୟ ରାଜନୈତିକକ ଦଳମାନେ କେତେକ ବ୍ୟକ୍ତିଙ୍କର ଅପରାଧମୂଳକ ସଂପୃକ୍ତି ସତ୍ତ୍ୱେ ସେମାନଙ୍କୁ ଦଳରେ ନେଲେ ଓ ନିର୍ବାଚନରେ ପ୍ରାର୍ଥୀ କରାଇଲେ। ଏପରିକି ସାଂପ୍ରଦାୟିକ ଦଙ୍ଗାରେ ସଂପୃକ୍ତ ଥିବା ଓ ସାଂପ୍ରଦାୟିକ ହିଂସା ସୃଷ୍ଟି କରୁଥିବା ବ୍ୟକ୍ତିମାନେ ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କଲେ। ଅପରାଧୀମାନଙ୍କୁ ବା ସାଂପ୍ରଦାୟିକ ବିଦ୍ୱେଷ ସୃଷ୍ଟି କରୁଥିବା ବ୍ୟକ୍ତିମାନଙ୍କୁ ନିର୍ବାଚନ ଆୟୋଗ ବା ବିଚାର ବ୍ୟବସ୍ଥା ପରି ଗଣତାନ୍ତିକ ଅନୁଷ୍ଠାନମାନ ପ୍ରତିଯୋଗିତା କରିବାରେ ଅଙ୍କୁଶ ଲଗାଇ ପାରୁ ନାହାନ୍ତି। ଏପରିକି ସାଧୁ, ନିଷ୍କାପର ଓ ଆଦର୍ଶବାଦୀ ବ୍ୟକ୍ତିମାନେ ନିର୍ବାଚିତ ହେବା ପରିବର୍ତ୍ତେ ଏହି ବ୍ୟକ୍ତିମାନେ ଅନେକ ସ୍ଥାନରେ ନିର୍ବାଚିତ ହେଉଛନ୍ତି। ତ୍ୟାଗ, ରାଜନୈତିକ ଆଦର୍ଶ ନିର୍ବାଚନରେ ଜିତିବା ପାଇଁ ସାଧନ ନ ହୋଇ ବାହୁବଳ, ଧନବଳ, ଧାର୍ମିକ ଆବେଗ ଓ ଭାବପ୍ରବଣତା ନିର୍ବାଚନ ଜିତିବାରେ ନିର୍ଣ୍ଣାୟକ ହୋଇ ଯାଉଛି। ଫଳତଃ କ୍ଷମତା ସ୍ତରକୁ ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଆସୁଛନ୍ତି ଓ ନିର୍ବାଚନ ଜିତିବାରେ କଳାଟଙ୍କା ପ୍ରାଧାନ୍ୟ ନେଉଛି। ବିଭିନ୍ନ ଦଳର କ୍ଷମତାପ୍ରାପ୍ତ ବ୍ୟକ୍ତିମାନେ କିପରି କୋଟି କୋଟି ଟଙ୍କାର ସ୍କାମ ସହ ଜଡିତ ତାହା ଗଣମାଧ୍ୟମରେ ପ୍ରକାଶ ପାଉଛି। ଏପରିକି ସିଏଜି ପରି ସାମ୍ବିଧାନିକ ସଂସ୍ଥା ଏହି ଦୁର୍ନୀତିର ଚିତ୍ର ଦେଶ ସମ୍ମୁଖକୁ ଆଣୁଛନ୍ତି। ଟୁଜି ସ୍ପେକ୍ଟ୍ରମ୍

ସ୍କାମ, କର୍ଣ୍ଣାଟକ ୱାକଫ ବୋର୍ଡ ଲ୍ୟାଣ୍ଡ ସ୍କାମ, ଉତ୍ତର ପ୍ରଦେଶ ଏନଏଚଆରଏମ୍ ସ୍କାମ, କୋଲବ୍ଲକ ବଣ୍ଟନ ଦୁର୍ନୀତି, କମନୱେଲଥ ଗେମ ଦୁର୍ନୀତି ଇତ୍ୟାଦିରେ କେନ୍ଦ୍ର ଓ ରାଜ୍ୟ ସରକାରମାନେ କିପରି ଲକ୍ଷ ଲକ୍ଷ କୋଟିର ରାଜସ୍ୱ ହରାଇଛନ୍ତି ତାହାର ଚିତ୍ର ଗଣମାଧ୍ୟମରୁ ଜଣାଯାଏ । ସେହିପରି ଅପରାଧମୂଳକ ଅଭିଯୋଗ ଥିବା କେତେକ ବ୍ୟକ୍ତି କିପରି ରାଜ୍ୟମାନଙ୍କର ବିଧାନସଭା ଓ ସଂସଦକୁ ନିର୍ବାଚିତ ହେଉଛନ୍ତି ତାହା ବି ଗଣମାଧ୍ୟମରେ ପ୍ରକାଶ ପାଉଛି । ଦେଶର ରାଜନୈତିକ ବ୍ୟବସ୍ଥାରେ ଭଲ ଲୋକଙ୍କ ଅପେକ୍ଷା ଦୁର୍ନୀତିଗ୍ରସ୍ତ ଲୋକଙ୍କର ଅଧିକ ପ୍ରଭାବ ରହିବା ଆମ ଗଣତାନ୍ତ୍ରିକ ବ୍ୟବସ୍ଥାର ଦୁର୍ବଳତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆମର ପ୍ରଶାସନିକ ବ୍ୟବସ୍ଥାରେ କେତେକ ସଚ୍ଚୋଟ ବ୍ୟକ୍ତି ରହିଥିଲେ ବି ସରକାରୀ କଳର ବିଭିନ୍ନ କ୍ଷେତ୍ରରେ ଦୁର୍ନୀତି ବ୍ୟାପକ ଭାବେ ରହିଛି । ଜଣେ ନାଗରିକର ନ୍ୟାୟୋଚିତ କାର୍ଯ୍ୟଟି ପ୍ରଶାସନିକ ବ୍ୟବସ୍ଥାରେ ଅକ୍ଳେଶରେ ହୋଇଯିବା ଦରକାର । କିନ୍ତୁ ଅନେକ କ୍ଷେତ୍ରରେ ତାହା ହେବା ସମ୍ଭବ ହୁଏ ନାହିଁ । ଆଇନର ଜଟିଳତା ଓ କର୍ମ ସଂସ୍କୃତିର ଅଭାବରେ ଜଣେ ସାଧାରଣ ବ୍ୟକ୍ତି ପ୍ରତ୍ୟେକ ସ୍ତରରେ ପ୍ରତିବଂଧକର ସମ୍ମୁଖୀନ ହୁଏ । ଡ୍ରାଇଭିଂ ଲାଇସେନ୍ସଟିଏ ପାଇବାରେ ହେଉ, ଜମି ଖରିଦ ବିକ୍ରି କ୍ଷେତ୍ରରେ ହେଉ, ଗ୍ୟାସ ସଂଯୋଗ କ୍ଷେତ୍ରରେ ହେଉ କିମ୍ବା କୃଷିଋଣ ପାଇବା କ୍ଷେତ୍ରରେ ହେଉ ଜଣେ ସାଧାରଣ ଲୋକ ଏହିପରି ପ୍ରତ୍ୟେକ କ୍ଷେତ୍ରରେ ଆମ ବ୍ୟବସ୍ଥାରେ ପ୍ରତିବଂଧକର ସାମ୍ନା କରେ । ତାହାର କାର୍ଯ୍ୟଟି ଯେତେ ନ୍ୟାୟୋଚିତ ହେଲେ ମଧ୍ୟ ବ୍ୟକ୍ତିଗତ ସଂପର୍କ ନ ଥିଲେ କିମ୍ବା ହାତଗୁଂଜା ନ ଦେଲେ କାର୍ଯ୍ୟଟି ଅକ୍ଳେଶରେ ହୋଇପାରେ ନାହିଁ । ବିକାଶମୂଳକ କାର୍ଯ୍ୟରେ ପ୍ରଶାସନିକ ଅଧିକାରୀମାନେ ପର୍ସେଣ୍ଟ ଖୋଲାଖୋଲି ଭାବେ ନିଅନ୍ତି । କଣ୍ଟ୍ରାକ୍ଟର ବହୁ କ୍ଷେତ୍ରରେ ଲାଞ୍ଚ, ଘୋଷ ଦେଉଥିବାରୁ କାର୍ଯ୍ୟରେ ଗୁଣାତ୍ମକ ମାନ ରକ୍ଷା କରିପାରେ ନାହିଁ । ଜଣେ ବ୍ୟବସାୟୀ ବିଭିନ୍ନ ସ୍ତରରେ ଚାନ୍ଦା ଦିଏ, ସଂପୃକ୍ତ ବିଭାଗୀୟ କର୍ମଚାରୀଙ୍କୁ ଉତ୍କୋଚ ଦିଏ ଓ ତାର କ୍ଷତି ଭରଣା କରିବାକୁ ଯାଇ ଆୟକର ଫାଙ୍କେ, ଅପମିଶ୍ରଣ କରେ । କେତେକ ସରକାରୀ ପଦରେ ଏତେ ଲାଞ୍ଚ ମିଛର କାରବାର ହୁଏ ଯେ ସଂପୃକ୍ତ ଅଧିକାରୀମାନେ ରାଜନୈତିକ ବସ୍‌ମାନଙ୍କୁ ପ୍ରଚୁର ଉତ୍କୋଚ ଦେଇ ମନୋନୀତ ସ୍ଥାନକୁ ବଦଳି ହୁଅନ୍ତି । ମଝିରେ ମଝିରେ କାଁ ଭାଁ ଯେଉଁଠି ଭିଜିଲାନ୍ସ ଚଢ଼ଉ ହୁଏ ସେଥିରେ କର୍ମଚାରୀମାନେ ଅପର୍ଯ୍ୟାପ୍ତ କଳାଟଙ୍କାର ଅଧିକାରୀ ହୋଇଥିବା ଜଣାଯାଏ । ଆମ ବ୍ୟବସ୍ଥାରେ ଯିଏ ଯେଉଁ

କ୍ଷେତ୍ରରେ ଅଛି ସେ ନିଜ ପଦ, ପଦବୀର ଅପବ୍ୟବହାର କରି ଧରାପଡିବାର ଭୟ ନଥିଲେ ଉତ୍କୋଚ ନେବାରେ କୌଣସି ବିବେକର ଦଂଶନ ପାଏ ନାହିଁ। ପରିଣାମତଃ ନିଜର କର୍ମ କ୍ଷେତ୍ରରେ ଜଣେ ନିଜର ପ୍ରଭୁତ୍ୱ ବିସ୍ତାର କରେ ଓ ଅନ୍ୟ କ୍ଷେତ୍ରରେ ନିଜକୁ ଅସହାୟ ମନେକରେ। ଆମର ପ୍ରଶାସନିକ ସ୍ତରରେ ଏକ ଦୁର୍ନୀତିମୁକ୍ତ ଉତ୍ତରଦାୟୀ କର୍ମସଂସ୍କୃତି ସୁଦୃଢ଼ ଭିତ୍ତି ନେଇପାରୁ ନାହିଁ। ସବୁ କ୍ଷେତ୍ରରେ ଭିଜିଲାନ୍ସ ଧରପଗଡ କରି ଭୟଜନିତ କାରଣରୁ ଦୁର୍ନୀତିକୁ ରୋକିବା ପ୍ରାୟତଃ ସମ୍ଭବ ନୁହେଁ। ଲୋକଙ୍କର ଦୃଷ୍ଟିଭଙ୍ଗୀ, ନୈତିକ ବିଚାରବୋଧ, କର୍ମସଂସ୍କୃତି ଓ ସାମାଜିକ ଉତ୍ତରଦାୟିତ୍ୱବୋଧ ଉନ୍ନତ ନ ହେଲେ ଭୟ ଜନିତ କାରଣରୁ ଦୁର୍ନୀତିକୁ ସଂପୂର୍ଣ୍ଣ ବିଲୋପ କରିବା ସମ୍ଭବ ନୁହେଁ।

ଆଉ ଆମର ସାମାଜିକ ଜୀବନ ପ୍ରବାହ କେଉଁ ଚିତ୍ର ଦିଏ? ସମାଜର ବ୍ୟାପକ କ୍ଷେତ୍ରରେ ଅନ୍ୟକୁ ଠକିବାର ମାନସିକତା ବ୍ୟାପକ ଭାବେ ରହିଥିବା ଦେଖାଯାଏ। ଆମ ସମାଜରେ ଔଷଧ, ଖାଦ୍ୟ ପଦାର୍ଥ, କ୍ଷୀର ଓ ଏପରିକି ଶିଶୁ ଖାଦ୍ୟରେ ବି ଅପମିଶ୍ରଣ ହୁଏ। ପରିବାରେ ରଙ୍ଗ ଦିଆଯାଏ, ପେଟ୍ରୋଲରେ କିରୋସିନ ମିଶାଯାଏ, ତେଲ, ହଳଦୀ, ଜିରା ପରି ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁରେ ବି ଅପମିଶ୍ରଣ କରାଯାଏ। ଆମ ବ୍ୟବସ୍ଥାରେ କେଉଁଟି ଅସଲି ବା ନକଲି ଜାଣିବା ସମ୍ଭବ ନୁହେଁ। ଆମର ସାଂସ୍କୃତିକ ପରଂପରା କ୍ଷେତ୍ରରେ ଆମ ଦୁର୍ନୀତିର ଚିତ୍ରଟି ବି କିଛି କମ୍ ନୁହେଁ। ଧାର୍ମିକ ବିଶ୍ୱାସ ଆଳରେ ଅନେକ ପୂଜା, ପାର୍ବଣ, ହୋମ ଯଜ୍ଞ ବର୍ଷସାରା ପାଳିତ ହୁଏ। ପୂଜା ପାର୍ବଣ ଜନିତ କାରଣରୁ ଆମର ପରିବେଶ କେତେ ମାତ୍ରାରେ ପ୍ରଦୂଷିତ ହୁଏ ସେ ପ୍ରତି ଆମେ ସମ୍ପୂର୍ଣ୍ଣ ଉଦାସୀନ। ନଦୀ, ପୁଷ୍କରିଣୀ ପରି ଜଳାଶୟରେ ପୂଜାସାମଗ୍ରୀକୁ ଫିଙ୍ଗିବା, ରାସାୟନିକ ରଙ୍ଗରେ ନିର୍ମିତ ମୂର୍ତ୍ତିମାନଙ୍କର ବିସର୍ଜନ କରିବା ଦ୍ୱାରା ଜଳର ପ୍ରଦୂଷଣ ହୁଏ। ପୂଜାପୀଠରେ ମାଇକରେ ଯେଉଁ ଗୀତ ବାଜେ ତଦ୍ୱାରା ଶବ୍ଦ ପ୍ରଦୂଷିତ ହୁଏ। ପୂଜାସ୍ଥଳ ମାନଙ୍କରେ ଶୋଷଣ ଓ ଠକାମୀ, ବିଭିନ୍ନ ପୂଜା ଆଳରେ ଜବରଦସ୍ତ ଚାନ୍ଦା ଆଦାୟ ଆମ ଜନଜୀବନର ସାଧାରଣ ଘଟଣା। ପୂଜା ସ୍ଥଳରେ କୌଣସି ମହତ୍ତର ଜୀବନ ପାଇଁ ପ୍ରେରଣା ମିଳେ ନାହିଁ, ବରଂ ଧର୍ମ ନାମରେ ବ୍ୟବସାୟ ଚାଲେ। ଏପରିକି ଆମ ଦେଶରେ କେତେ କେତେ ବାବା, ମାତା, ଅବତାର, ଭଗବାନ ମାନଙ୍କର ଆବିର୍ଭାବ ହୁଏ। ଚମତ୍କାରିତା ଆଳରେ ସେମାନେ ନିଜର ସାମ୍ରାଜ୍ୟ ସୃଷ୍ଟି କରନ୍ତି ଓ ଜନଗଣଙ୍କୁ ସ୍ୱପ୍ନ ବାଣ୍ଟନ୍ତି। ସାଧାରଣ ଜୀବନ

ପ୍ରବାହକୁ ସୁନ୍ଦର, ଦୁର୍ନୀତିମୁକ୍ତ ଓ ନ୍ୟାୟଯୁକ୍ତ କରିବା ପରିବର୍ତ୍ତେ ସେମାନେ ସ୍ୱର୍ଗ, ଈଶ୍ୱରପ୍ରାପ୍ତି, ମୁକ୍ତି କଥା କହି ଭିନ୍ନ ଜଗତର ସ୍ୱପ୍ନ ଦିଅନ୍ତି । ସାଧାରଣ ମଣିଷକୁ ଧାର୍ମିକ ବିଶ୍ୱାସ ଆଳରେ ପ୍ରଭାବିତ କରିବାର କଳା ବାବାମାନଙ୍କୁ ସୁନ୍ଦର ଭାବେ ଜଣା । ବୃହତ୍ତର ସମାଜକୁ ଠକିବାର ମାନସିକତା ଯଦି ବ୍ୟତିକ୍ରମ ନହୋଇ ସାମାଜିକ ଜୀବନର ଧାରା ହୋଇଯାଏ, ତେବେ ଆମ ସମାଜ କେତେ କ୍ଷୟଶୀଳ ତାହା ସହଜରେ ଅନୁମେୟ ।

ସମାଜରେ ଏହି ଅବକ୍ଷୟ ଓ କ୍ଷୟଶୀଳ ପରିବେଶକୁ ପରିବର୍ତ୍ତନ କରିବା କ୍ଷେତ୍ରରେ ଗଣମାଧ୍ୟମ ବା ମିଡିଆର ଭୂମିକା ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ । ସାଂପ୍ରତିକ ଜୀବନ ପ୍ରବାହରେ ମିଡିଆର ଏକ ପ୍ରଭାବଶାଳୀ ଭୂମିକା ରହିଥିବା ଅନସ୍ୱୀକାର୍ଯ୍ୟ । ଗଣମାଧ୍ୟମ ସାଧାରଣତଃ ରେଡିଓ, ଟେଲିଭିଜନ, ଇଣ୍ଟରନେଟ୍ ପରି ଇଲେକଟ୍ରୋନିକ୍ ମିଡିଆକୁ ବୁଝାଏ କିମ୍ବା ସମ୍ବାଦପତ୍ର, ମାଗାଜିନ ଇତ୍ୟାଦି ପରି ପ୍ରିଣ୍ଟ ମିଡିଆକୁ ବୁଝାଏ । ଜନମତକୁ ପ୍ରଭାବିତ କରିବାରେ ମିଡିଆ ଏକ ବଳିଷ୍ଠ ଭୂମିକା ନେଇପାରୁଛି । ବିଶେଷକରି ରାଜନୈତିକ ଦୁର୍ନୀତି ଓ ସ୍କାମମାନଙ୍କୁ ଜନଗଣଙ୍କୁ ଜଣାଇବାରେ ଏହା ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରୁଛି । ତେବେ ଏକ ଉପଭୋକ୍ତାବାଦୀ ସଂସ୍କୃତିର ବିକାଶ ଦିଗରେ ମିଡିଆ ଯେଉଁ ଭୂମିକା ନେଉଛି ତାକୁ କ'ଣ କୁହାଯିବ ? ରେଡିଓ ଓ ଦୂରଦର୍ଶନ ଇତ୍ୟାଦି ଗଣମାଧ୍ୟମରେ ଯେଉଁ ସବୁ ବିଜ୍ଞାପନ ଦିଆଯାଇ ଲୋକମାନଙ୍କୁ କେତେକ ଜିନିଷ କିଣିବାକୁ ଯେପରି ଅହେତୁକ ଭାବେ ପ୍ରଭାବିତ କରାଯାଉଛି ତାହାକୁ ଦୁର୍ନୀତି କୁହାଯିବ କି ନାହିଁ ? ଏଠାରେ କେତୋଟି ଉଦାହରଣର ଅବତାରଣା କରାଯାଇପାରେ । ଅମୁକ ସାଂପୋ ଲଗାଇଲେ କେଶ ଏତେ ଲମ୍ବା ହୋଇଯିବ ଓ ଚିକ୍କଣ ଦିଶିବ ଯେ ଏହା ସ୍ୱର୍ଗୀୟ ସୌନ୍ଦର୍ଯ୍ୟର ଆକର୍ଷଣ ସୃଷ୍ଟି କରିବ । ଅମୁକ ପେଷ୍ଟରେ ଦାନ୍ତ ଘସିଲେ ଦାନ୍ତ ଜୀବନସାରା ଅକ୍ଷୟ ରହିବ ଓ ଚିକ୍ ଚିକ୍ କରିବ, ଅମୁକ ତେଲ ମୁଣ୍ଡରେ ଲଗାଇଲେ ମେଧା ଶକ୍ତି ଏତେ ବଢ଼ିଯିବ ଯେ ଯେତେ ଦୁର୍ବଳ ଛାତ୍ର ହୋଇଥିଲେ ବି ସେ ପ୍ରତିଭାବାନ ହୋଇ ଉଠିବ, ଅମୁକ ସାବୁନ ଦେହରେ ଲଗାଇଲେ ମଣିଷ କୌଣସି ଜୀବାଣୁ ଜନିତ ରୋଗରେ ଆକ୍ରାନ୍ତ ହେବ ନାହିଁ, ଅମୁକ ଥଣ୍ଡା ପାନୀୟ ପିଇଲେ ଦାରା ସିଂହର ବଳ ଆସିଯିବ - ଏହିପରି ଅସଂଖ୍ୟ ପ୍ରକାର ବିଜ୍ଞାପନ ବିଭିନ୍ନ କମ୍ପାନୀମାନେ ଗଣମାଧ୍ୟମରେ ପ୍ରଚାର କରୁଛନ୍ତି । ଗୋଟିଏ ପ୍ରସାଧାନ ସାମଗ୍ରୀ ବା

ଆବଶ୍ୟକ ନ ଥିବା କୌଣସି ଜିନିଷକୁ ଏପରି ଅତିଶୟ ବିଶେଷଣ ଲଗାଇ ପ୍ରଚାର କରିବାର ମନୋଭାବକୁ ଦୁର୍ନୀତି କୁହାଯିବ କି ନାହିଁ ?

ସାଂପ୍ରତିକ ଜୀବନଶୈଳୀରେ ଉତ୍କଟ ପ୍ରତିଯୋଗିତା ଓ ନାନା ପ୍ରକାର ମାନସିକ ଉତ୍ତେଜନା ଏବଂ ଉଦ୍‌ବେଳନ ବୃଦ୍ଧି ପାଇଚାଲିଛି। ଲୋକଙ୍କର ଏହି ମାନସିକ ଅସ୍ଥିରତାକୁ ଲକ୍ଷ୍ୟ କରି କେତେକ ବ୍ୟକ୍ତି ତାଙ୍କର ପସରା ମେଲି ଲୋକମାନଙ୍କୁ ଠକିବାର ଉଦ୍ୟମ କରୁଛନ୍ତି। ବିଡମ୍ବନାର ବିଷୟ କୁସଂସ୍କାରର ପ୍ରସାର ପାଇଁ ସେମାନେ ଗଣମାଧ୍ୟମକୁ ଆୟୁଧ କରୁଛନ୍ତି। ଅମୁକ ମାଳା ପିନ୍ଧିଲେ, ସମୁକ ମୁଦି ଲଗାଇଲେ ମନରୁ ସମସ୍ତ ଚାପ ଦୂର ହୋଇଯିବ । କେଉଁ ଦେବୀଙ୍କ ପାଖରେ ପୂଜା ହୋଇ ଆସିଥିବା ରତ୍ନ ପଥର ଜନିତ ମୁଦି ପିନ୍ଧିଲେ ଜୀବନରୁ ସମସ୍ତ ହତାଶା, ନୈରାଶ୍ୟ ଚାଲିଯିବ, ଦେବୀଙ୍କ କୃପାରୁ ମନରେ ଶାନ୍ତି ବିରାଜମାନ କରିବ। ଅମୁକ ଯନ୍ତ୍ର ଘରେ ରଖିଲେ ଘରକୁ ଦେବୀଙ୍କ ଆଶୀର୍ବାଦ୍‌ରୁ ଅର୍ଥର ସୁଅ ଛୁଟିବ, ସମୁକ ମୂର୍ତ୍ତି ଘରେ ସ୍ଥାପନ କଲେ ସମସ୍ତ ରିଷ୍ଟ ଖଣ୍ଡନ ହୋଇଯିବ। ଗ୍ରହର ପ୍ରଭାବ, ରାଶିଫଳ, ବାସ୍ତୁବିଦ୍ୟା ପରି ଅବୈଜ୍ଞାନିକ ଓ ଅହେତୁକ ଭାବନାର ପ୍ରଚାର ଗଣମାଧ୍ୟମରେ ନିୟମିତ କରାଯାଇ ଜନମାନସକୁ ବିଭ୍ରାନ୍ତ କରାଯାଉଛି। ଜଣେ ବ୍ୟକ୍ତି ଅନ୍ୟକୁ ଠକି କିଛି ରୋଜଗାର କରିବା ଓ ଗଣମଧ୍ୟମ ଜରିଆରେ ଜନଗଣଙ୍କୁ ବିଭ୍ରାନ୍ତ କରି କୋଟି କୋଟି ଟଙ୍କା ରୋଜଗାର କରିବା ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିଛି । ଜଣେ ସାଧାରଣ ମଣିଷର ଠକାମିଠାରୁ ଏହି ପରି ବ୍ୟାବସାୟିକ ଠକାମି ଯେ ସହସ୍ର ଗୁଣ ଅଧିକ ତାହା କହିଲେ ଅତ୍ୟୁକ୍ତି ହେବନାହିଁ ।

ଆଧୁନିକ ଜୀବନ ପ୍ରବାହରେ ମିଡିଆର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହୁଥିବାରୁ ଏହାଦ୍ୱାରା ସମାଜରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନର ସୂତ୍ରପାତ କରାଯାଇ ପାରିବ । ବ୍ୟାବସାୟିକ ଲାଭଖୋର ମନୋବୃତ୍ତିରୁ ମୁକ୍ତ ରହି ମିଡିଆକୁ ଯଦି ସୁଉଦ୍ଦେଶ୍ୟରେ ବିନିଯୋଗ କରାଯିବ, ତେବେ ସମାଜରେ ପରିକଳ୍ପିତ ଲକ୍ଷ୍ୟ ହାସଲ ହୋଇପାରିବ । ଜନମତକୁ ପ୍ରଭାବିତ କରିବା ପାଇଁ ଏହା ସବୁଠାରୁ ବଡ଼ ଆୟୁଧ ହୋଇଥିବାରୁ ଯଦି ସମାଜରେ ଏକ ଦୁର୍ନୀତିମୁକ୍ତ ବ୍ୟବସ୍ଥା ପାଇଁ ଏହା ମାଧ୍ୟମରେ ପ୍ରୟାସ କରାଯାଏ ତେବେ ଏକ ବଡ଼ ପରିବର୍ତ୍ତନ ଆସିପାରିବ । ଦୁର୍ନୀତି ଯେ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ଓ ମାନବିକତା ବିରୋଧୀ ଏହି ବିଚାର ଜନଗଣଙ୍କ ଭିତରେ ସୃଷ୍ଟି

କରାଯାଇପାରିବ । ଏହା ସହିତ ଏ ଯୁଗର କେତେକ ସାର୍ବଜନୀନ ଆଦର୍ଶ ଯଥା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ବିଚାର, ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ସମାଜରେ ପ୍ରସାର କରାଯାଇ ପାରିବ । ପରିଣାମତଃ ଅସାଧୁ ଉପାୟରେ ଉପାର୍ଜନ କରୁଥିବା, ସାଧାରଣ ସଂପତ୍ତିକୁ ଆତ୍ମସାତ କରୁଥିବା, ଜନକଲ୍ୟାଣକାରୀ ଯୋଜନାର ଅର୍ଥକୁ ବାଟମାରଣା କରୁଥିବା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆସିପାରିବ । ଦୁର୍ନୀତି ବିରୁଦ୍ଧରେ ସାମାଜିକ ସଚେତନତା ବୃଦ୍ଧି ପାଇଲେ ବୃହତ୍ତର ପରିବେଶରେ ରହିଥିବା ନାନା ଅବକ୍ଷୟ, ଅପସଂସ୍କୃତି ଓ କ୍ଷୟଶୀଳତାକୁ ଦୂର କରାଯିବା ସମ୍ଭବ ହେବ । ଏସବୁ ପାଇଁ ମିଡିଆ ଏକ ପ୍ରମୁଖ ଭୂମିକା ନେଇ ପାରିବ ।



# ସାଂସ୍କୃତିକ ନବଜାଗରଣ

ମାନବ ସଭ୍ୟତାର କ୍ରମବିକାଶକୁ ଅନୁଶୀଳନ କଲେ ଏହା ଜଣାଯାଏ ଯେ ମଣିଷ ସମାଜ ଏକ ଆଦିମ ଅବସ୍ଥାରୁ ନାନା ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ଆଜିର ସ୍ଥିତିକୁ ଆସିଛି । ଏହି କ୍ରମ ଉତ୍ତରଣ ପଛରେ ରହିଛି ଏକ ସୁଦୀର୍ଘ କାହାଣୀ । ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଘଟଣା ପ୍ରବାହ ମଧ୍ୟ ଦେଇ ବିକାଶର ଧାରା ଆଗକୁ ଯାଇଛି ଓ ଗୁଣାତ୍ମକ ଜୀବନର ପରିବେଶ ସୃଷ୍ଟି ହୋଇଛି । ଜୀବନର ଭୌତିକ ଓ ଗୁଣାତ୍ମକ ମୂଲ୍ୟ ଆଜି ଯେଉଁ ସ୍ଥିତିରେ ପହଞ୍ଚିଛି ଗୋଟିଏ ଦୁଇଟି ଶତାବ୍ଦୀ ତଳେ ତାହା ଅଚିନ୍ତନୀୟ ଥିଲା । ମଣିଷ ସମାଜର କ୍ରମୋନ୍ନତି ପଶ୍ଚାତରେ ନାନା କାରଣ ଭିତରୁ ଚାରୋଟି କାରଣ ବିଷୟରେ ଏଠାରେ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ । ପ୍ରଥମରେ ମଣିଷ ଭିତରେ ରହିଥିବା ସାମାଜିକ ପ୍ରବୃତ୍ତି ଯୋଗୁ ସେ ସର୍ବଦା ସାମାଜିକ ଗୋଷ୍ଠୀ ଭିତରେ ଜୀବନ ବଞ୍ଚିଛି। ପ୍ରାକୃତିକ ବିବର୍ତ୍ତନ ପ୍ରକ୍ରିୟାରେ ମଣିଷ ସବୁଠାରୁ ବୁଦ୍ଧିମାନ ହେଲେ ବି ମଣିଷ ଶିଶୁ ସବୁଠାରୁ ଅସହାୟ ମନେହୁଏ । ପରିବାର, ସାମାଜିକ ପରିବେଶ, ଗୋଷ୍ଠୀ ଜୀବନ ବ୍ୟତୀତ ଜୀବନର ଗୁଣାତ୍ମକ ବିକାଶ ସମ୍ଭବ ନୁହେଁ। ମଣିଷର ସାମାଜିକ ପ୍ରବୃତ୍ତି ଯୋଗୁ କ୍ଷୁଦ୍ର ଗୋଷ୍ଠୀଠାରୁ ରାଜ୍ୟ, ରାଷ୍ଟ୍ର ଓ ଅନ୍ତରାଷ୍ଟ୍ରୀୟ ଭାବନାର କ୍ରମବିକାଶ ହେବା ଜଣାଯାଏ । ଦ୍ୱିତୀୟରେ ମଣିଷ ଜୀବ ଜଗତର ଏକମାତ୍ର ପ୍ରାଣୀ ଯିଏ ଭାଷାଦ୍ୱାରା ଭାବ ବ୍ୟକ୍ତ କରିବାକୁ ସମର୍ଥ। ଭାଷାର ବ୍ୟବହାର ଯୋଗୁ ଜ୍ଞାନ ବିଜ୍ଞାନର କ୍ରମ ବିକାଶ ସମ୍ଭବ ହେବା ଜଣାଯାଏ। ଇତର ପ୍ରାଣୀମାନେ ହଜାର ହଜାର ବର୍ଷ ତଳେ ଯେଉଁ ସ୍ଥିତିରେ ଥିଲେ ଆଜି ମଧ୍ୟ ସେହି ସ୍ଥିତିରେ ରହିଛନ୍ତି । କିନ୍ତୁ ମଣିଷ ସମାଜ ଜ୍ଞାନ ବିଜ୍ଞାନର ବିକାଶ ଘଟାଇ ଥିବାରୁ ସର୍ବଦା ବିକାଶର ଶିଡିରେ ଆଗକୁ ଯିବାରେ ସମର୍ଥ ହୋଇଛି ।

ଆଦିମ ସମାଜର ଗୋଷ୍ଠୀ ଜୀବନ ଯୋଗୁ ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ରହିଛି, ଯଦିବା ଦୁଇ ଶହଟି ଭାଷା ଉନ୍ନତ ଭାଷା ଭାବରେ ସ୍ୱୀକୃତ ହୋଇଛି । ଭାଷା କହିବାର ସାମର୍ଥ୍ୟ ଯୋଗୁ ମଣିଷ ହିଁ ବୌଦ୍ଧିକ ସ୍ତରରେ ଆଗକୁ ଯାଇଛି । ତୃତୀୟରେ ପ୍ରକୃତିର ଉପାଦାନ ସକଳକୁ ନେଇ ମଣିଷ ନାନା ବସ୍ତୁ ନିର୍ମାଣ କରିପାରୁଛି । ଯାହା କିଛି ଆମ ଚତୁର୍ପାର୍ଶ୍ୱରେ ରହିଛି ତାହାର ଅଧିକାଂଶ ବସ୍ତୁ ମଣିଷ ନିର୍ମାଣ କରିଛି । ରାସ୍ତା, ଘାଟ, ଗାଡି ମଟର, ଘରଦ୍ୱାର, ବିଭିନ୍ନ ଉପକରଣ ମଣିଷ ପ୍ରାକୃତିକ ଉପାଦାନରେ ପ୍ରସ୍ତୁତ କରିବାରେ ସମର୍ଥ ହୋଇଛି । ମଣିଷର ଏହି ସୃଜନଶୀଳ ସାମର୍ଥ୍ୟ ଯୋଗୁଁ ସଭ୍ୟତାର କ୍ରମବିକାଶ ସମ୍ଭବ ହୋଇଛି । ଚତୁର୍ଥରେ ମଣିଷ ଭିତରେ ବିଚାରଶୀଳ ସାମର୍ଥ୍ୟ ଯୋଗୁ ମଣିଷ ହିଁ କ୍ରମୋନ୍ନତି ଧାରାରେ ଆଦିମ ସ୍ତରରୁ ଏ ପର୍ଯ୍ୟନ୍ତ ଆସି ପାରିଛି। ପ୍ରକୃତି, ପରିବେଶ, ନିଜର ସାମାଜିକ ପରିସ୍ଥିତି, ଜୀବନର ଘଟଣା ପ୍ରବାହ ନେଇ ମଣିଷ ଚିନ୍ତାକରେ, ଜୀବନକୁ ଅଧିକ ନିରାପଦ, ପ୍ରୀତିପଦ ଓ ସୁଖମୟ କରିବାରେ ମଣିଷ ପ୍ରୟାସ କରି ଆସିଛି । ଏହା ବିଚାରଶୀଳତା ଯୋଗୁଁ ସମ୍ଭବ ହୋଇଛି । ପ୍ରତ୍ୟେକ ସମାଜର ବୁଦ୍ଧିମାନ ଲୋକମାନେ ବିଭିନ୍ନ ସମସ୍ୟା ଓ ସଂକଟକୁ ଦୂର କରିବାକୁ ଚିନ୍ତା କରୁଛନ୍ତି । ମଣିଷ ଭିତରର ବିଚାରଶୀଳତା ଯୋଗୁ ମଣିଷ ପ୍ରକୃତି, ପରିବେଶ ଓ ଜୀବନକୁ ଅବବୋଧ କରିବାକୁ ଉଦ୍ୟମ କରିଛି । ଏହି ଉଦ୍ୟମ ଯୋଗୁ ହିଁ ସଭ୍ୟତାର କ୍ରମବିକାଶ ସମ୍ଭବ ହୋଇଛି ।

ପୃଥିବୀରେ ଶିଳ୍ପ ସଭ୍ୟତାର ଯୁଗ ଆସିବା ପୂର୍ବରୁ ସର୍ବତ୍ର କୃଷିଭିତ୍ତିକ ଗ୍ରାମୀଣ ଜୀବନ ରହିଥିଲା । ସ୍ଥଳପଥରେ ଲୋକମାନେ ଘୋଡା ବା ହାତୀ ଉପରେ ଯାଉଥିଲେ, ଫଳତଃ ସଭ୍ୟତାମାନଙ୍କ ମଧ୍ୟରେ ବିଶେଷ ଆଦାନ ପ୍ରଦାନ ସମ୍ଭବ ନଥିଲା । ପୃଥିବୀର ଲୋକସଂଖ୍ୟା ସୀମିତ ଥିଲା ଓ ବିସ୍ତୃତ ଅଞ୍ଚଳରେ ବଣ ଜଙ୍ଗଲ ରହିଥିଲା । ଅଠର ଶହ ମସିହାରେ ପୃଥିବୀର ଜନସଂଖ୍ୟା ମାତ୍ର ଏକ ଶହ କୋଟି ଥିଲା । ହଇଜା, ବସନ୍ତ, ପ୍ଲେଗ ଭଳି ରୋଗମାନ ଗଣମୃତ୍ୟୁର ପରିବେଶ ସୃଷ୍ଟି କରୁଥିଲା । କୌଣସି ଅଞ୍ଚଳରେ ବାତ୍ୟା, ଭୂକଂପ, ବନ୍ୟା ଇତ୍ୟାଦି ହେଲେ ଲୋକମାନେ ଅସହାୟ ଭାବେ ମୃତ୍ୟୁବରଣ କରୁଥିଲେ। ଗଣମୃତ୍ୟୁର ପରିବେଶ ଯୋଗୁଁ ଜନସଂଖ୍ୟାର ଅଭିବୃଦ୍ଧି ହାର ଅତି ଅଳ୍ପ ଥିଲା । କାଁ ଭାଁ ଅଞ୍ଚଳକୁ ବାଦ୍ ଦେଲେ ସାରା ପୃଥିବୀରେ ରାଜତନ୍ତ୍ର ରହିଥିଲା । ରାଜତନ୍ତ୍ର ଯୁଗରେ ସାମନ୍ତବାଦ ରହିଥିଲା ଓ ମୁଷ୍ଟିମେୟ ଲୋକ ସମାଜରେ ପ୍ରଭାବ ବିସ୍ତାର କରି ରହିଥିଲେ। ବିଶେଷକରି ପୂଜକ ବର୍ଗ ଓ ଶାସକ ସାମନ୍ତ ବର୍ଗ ଅତ୍ୟନ୍ତ

କ୍ଷମତାଶୀଳ ଥିଲେ ଓ ସମାଜର ସାଧାରଣ ମଣିଷ ସେମାନଙ୍କ ଦ୍ୱାରା ପ୍ରପୀଡିତ ହୋଇ ରହିଥିଲେ । ରାଜ୍ୟ ରାଜ୍ୟ ମଧ୍ୟରେ ଯୁଦ୍ଧ, ବିଭୀଷିକା ସର୍ବଦା ଲାଗି ରହିଥିଲା ଓ ସାଧାରଣ ଜୀବନ ନିରାପଦବିହୀନ ଥିଲା । ସବୁ ସ୍ତରରେ ଧାର୍ମିକ ବିଶ୍ୱାସର ପ୍ରାବଲ୍ୟ ରହିଥିଲା ଓ ମଣିଷର ବୌଦ୍ଧିକ ଦୃଷ୍ଟି ପାରଲୌକିକ ରହିଥିଲା । ସ୍ୱର୍ଗ, ନରକ, ବିଚାର ଦିବସ, ମୁକ୍ତି, ମୋକ୍ଷ, ଆତ୍ମା, ପରମାତ୍ମା, ପରଲୋକ ଇତ୍ୟାଦି ଭାବନା ସବୁ ସମାଜରେ ନାନା ରୂପରେ ଓ ଢ଼ଙ୍ଗରେ ରହିଥିଲା । ଧର୍ମଗ୍ରନ୍ଥର ବାଣୀ ଅଲଙ୍ଘ୍ୟ ଓ ଚିରନ୍ତନ ବୋଲି ବିଶ୍ୱାସ ସବୁ ସମାଜରେ ରହିଥିଲା । ପ୍ରତ୍ୟେକ ଧର୍ମଗୋଷ୍ଠୀର ଲୋକମାନେ ନିଜ ଧର୍ମଗ୍ରନ୍ଥକୁ ସନାତନ, ଈଶ୍ୱର-ଦତ୍ତ ବୋଲି ମନେ କରୁଥିଲେ । ନୀତି, ନୈତିକତା ଧାର୍ମିକ ବିଶ୍ୱାସ ଆଧାରରେ ନିର୍ଣ୍ଣୀତ ହେଉଥିଲା । ରାଜତନ୍ତ୍ର, ସାମନ୍ତବାଦ, ପାରଲୌକିକ ଜୀବନଦୃଷ୍ଟି, ଭାଗ୍ୟବାଦ, ଧର୍ମଶାସନ ବା ଥିଓକ୍ରାସି ମଧ୍ୟଯୁଗୀୟ ଜୀବନ ପ୍ରବାହର ମୂଳଭିତ୍ତି ଥିଲା ।

ୟୁରୋପ ବା ପାଶ୍ଚାତ୍ୟ ଭୂଖଣ୍ଡରେ କୃଷିଭିତ୍ତିକ ସଭ୍ୟତା ଶିଳ୍ପ ସଭ୍ୟତାରେ ରୂପାନ୍ତରିତ ହେବାର ସନ୍ଧିକ୍ଷଣରେ ଥିଲା ଏକ ସାଂସ୍କୃତିକ ଜାଗରଣ । ଏହାକୁ ସାଧାରଣତଃ ନବ ଜାଗରଣ ବା ରିନାସାଁ କୁହାଯାଏ । ନବଜାଗରଣ ଥିଲା ମଧ୍ୟ ଯୁଗ ବିରୁଦ୍ଧରେ ଏକ ବିଦ୍ରୋହ । ଏହାଦ୍ୱାରା ଯେଉଁ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡନ ଆସିଲା ତାହା ସମାଜର ବିଭିନ୍ନ ସ୍ତରରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ରାଜନୀତି, ଅର୍ଥନୀତି, ଜୀବନଦୃଷ୍ଟି, ମୂଲ୍ୟବୋଧ ସବୁ ସ୍ତରରେ ୟୁରୋପୀୟ ନବଜାଗରଣ ବୈପ୍ଳବାତ୍ମକ ପରିସ୍ଥିତି ସୃଷ୍ଟି କଲା । ନବ ଜାଗରଣର ଜନ୍ମଭୂମି ଇଟାଲୀ ହୋଇଥିଲେ ହେଁ, ନବଜାଗରଣ ଯୁଗର ଆଦର୍ଶ ପାଶ୍ଚାତ୍ୟ ଭୂଖଣ୍ଡରେ ପରିବ୍ୟାପ୍ତ ହୋଇଗଲା । ନବ ଜାଗରଣ ଯୁଗ ଦୁଇଟି କ୍ଷେତ୍ରରେ ଯେଉଁ ବିଚାର ବିମର୍ଶର ଆଲୋଡନ ଆଣିଲା ତାହା ଏକ ସାର୍ବଜନୀନ ଆଦର୍ଶ ଭାବେ ଚିନ୍ତାରାଜ୍ୟରେ ସ୍ୱୀକୃତ ହେବାକୁ ଲାଗିଲା । ସେହି ଦୁଇଟି ଆଦର୍ଶ ହେଲା ମାନବବାଦର ପ୍ରତିଷ୍ଠା ଓ ବୈଜ୍ଞାନିକ ଚିନ୍ତାର ଅଭ୍ୟୁଦୟ । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ପରସ୍ପର ସହ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ହେବା ଦେଖାଯାଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମୁକ୍ତ ମନରେ ବୈଜ୍ଞାନିକ ପ୍ରଣାଳୀ ଜନିତ ପର୍ଯ୍ୟବେକ୍ଷଣ-ପରୀକ୍ଷଣକୁ ଆଧାର କରି ବିଶାଳ ପ୍ରକୃତିକୁ ଅନୁଶୀଳନ କରିବାକୁ ଲାଗିଲା । ପ୍ରକୃତିର ସୂକ୍ଷ୍ମାତିସୂକ୍ଷ୍ମ ଗବେଷଣା ଜ୍ଞାନର ଦିଗ୍‌ବଳୟକୁ ବିସ୍ତାରିତ

କରିଚାଲିଲା । ପ୍ରକୃତିବାଦ ବୈଜ୍ଞାନିକ ଜ୍ଞାନର ମୂଳଭିତ୍ତି ହେଲା । ପ୍ରକୃତିବାଦ ଅନୁଯାୟୀ ପ୍ରକୃତିରେ ଯାହା କିଛି ଘଟେ ତାହା ପାଶ୍ଚାତରେ କେବଳ ପ୍ରାକୃତିକ ନିୟମ, ଶୃଂଖଳା ଓ ଏକରୂପତା ରହିଛି । ପ୍ରକୃତିରେ ବହୁ ରହସ୍ୟ ରହିଛି, ହେଲେ ପ୍ରକୃତିରେ କୌଣସି ଆଧିଦୈବିକ କାରଣ ନାହିଁ । ପ୍ରକୃତିର ବିଭିନ୍ନ ସ୍ତରରେ ଯେଉଁ ଶୃଂଖଳା, ଏକରୂପତା ଓ ନିୟମ ରହିଛି ସେସବୁ ପରସ୍ପର ସହ ସମତାଳଯୁକ୍ତ । ପ୍ରକୃତିର ଶୃଙ୍ଖଳା, ଏକରୂପତା, ନିୟମକୁ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଆଧାରରେ ଆବିଷ୍କାର କରିବାକୁ ହେବ । କାର୍ଯ୍ୟ-କାରଣ ନିୟମ ପ୍ରାକୃତିକ ଘଟଣାକୁ ବ୍ୟାଖ୍ୟା କରିବା କ୍ଷେତ୍ରରେ ସାର୍ବଜନୀନ ଭାବରେ ଗୃହୀତ ହେବାକୁ ଲାଗିଲା । ତେବେ ବୈଜ୍ଞାନିକ ସିଦ୍ଧାନ୍ତମାନ ନୂତନ ଅନୁଭୂତି ଓ ପର୍ଯ୍ୟବେକ୍ଷଣ ଆଧାରରେ ପରିବର୍ତ୍ତନଶୀଳ । ପ୍ରକୃତି ଏତେ ବିଶାଳ ଓ ଜଟିଳ ଯେ ଆମର ପର୍ଯ୍ୟବେକ୍ଷଣର ପରିସର ଯେତିକି ବ୍ୟାପକ ହେଉଥିବ, ପ୍ରକୃତିର ନୂଆ ନୂଆ ରହସ୍ୟ ଓ ତଥ୍ୟ ସମ୍ମୁଖକୁ ଆସୁଥିବ । ଏହି ଦୃଷ୍ଟିରୁ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ତେବେ ବୈଜ୍ଞାନିକ ଜ୍ଞାନ ମୁକ୍ତ, ସାର୍ବଜନୀନ, ପରୀକ୍ଷିତ, ଓ ପ୍ରଗତିଶୀଳ । ବୈଜ୍ଞାନିକ ପଦ୍ଧତି ହିଁ ଯେକୌଣସି ବସ୍ତୁନିଷ୍ଠ ଜ୍ଞାନଲାଭ କ୍ଷେତ୍ରରେ ନିର୍ଭରଶୀଳ, କାରଣ ଏହା ନିରପେକ୍ଷ ଓ ସାର୍ବଜନୀନ । ବିଜ୍ଞାନର ଏହି ସବୁ ସିଦ୍ଧାନ୍ତ ଆଧାରରେ ବିଜ୍ଞାନ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚିତ କରି ଜ୍ଞାନର ଦିଗ୍‌ବଳୟକୁ ବିସ୍ତାରିତ କରିଚାଲିଛି । ନବଜାଗରଣ ଯୁଗରୁ ଆରମ୍ଭ ହୋଇଥିବା ବୈଜ୍ଞାନିକ ଚିନ୍ତାର ଅଭ୍ୟୁଦୟ ଆଜି ଜ୍ଞାନର ପରିସରକୁ ବିସ୍ତାରିତ କରିପାରିଛି। ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିବା ବୈଜ୍ଞାନିକ ଚିନ୍ତନ ଆଜି ବିଜ୍ଞାନକୁ ଏକ ଉତ୍ତୁଙ୍ଗ ଶିଖରକୁ ନେଇପାରିଛି । ବୈଜ୍ଞାନିକ ନିୟମ ଓ ସିଦ୍ଧାନ୍ତକୁ ଜାଣିବା ପରେ ତାକୁ ଆଧାର କରି ନୂଆ ନୂଆ ପ୍ରଯୁକ୍ତିମାନ ଗଢ଼ି ଉଠିବାରେ ଲାଗିଛି । ସକଳ ବିକାଶ, ପ୍ରଗତି, ଉତ୍ପାଦନ, ସ୍ୱାସ୍ଥ୍ୟରକ୍ଷା ଇତ୍ୟାଦି ବୈଜ୍ଞାନିକ ଧାରାରେ ସମ୍ଭବ ହେଉଛି । ବିଜ୍ଞାନକୁ ଛାଡି ବିକାଶର ପରିକଳ୍ପନା କରାଯାଇପାରିବ ନାହିଁ । ସଭ୍ୟତାର ରୂପରେଖ ପରିବର୍ତ୍ତନ କରିବାରେ ବିଜ୍ଞାନ ଓ ପ୍ରଯୁକ୍ତି ନିର୍ଣ୍ଣାୟକ ଭୂମିକା ନେଇଥିବା ନିଃସନ୍ଦେହ ମନେହୁଏ ।

ନବଜାଗରଣ ଯୁଗର ଅନ୍ୟ ଏକ ଆଦର୍ଶ ହେଲା ମାନବବାଦୀ ଜୀବନଦୃଷ୍ଟି । ମାନବବାଦ ମାନବିକ ମହତ୍ତ୍ୱ ଓ ବ୍ୟକ୍ତି ମର୍ଯ୍ୟାଦାବୋଧକୁ ପ୍ରାଧାନ୍ୟ ଦେଇଆସିଛି । ଏହା କୌଣସି ପାରଲୌକିକ ଜୀବନଦୃଷ୍ଟିର କଥା କହେ ନାହିଁ, ବରଂ ଏହି ଜୀବନକୁ

ଓ ସାମାଜିକ ସମ୍ବନ୍ଧକୁ ଉନ୍ନତ କରିବାର ସନ୍ଦେଶ ଦିଏ । ମାନବିକ ଅଧିକାର, ସାମାଜିକ ନ୍ୟାୟ ଓ ଗଣତାନ୍ତ୍ରିକ ଜୀବନଶୈଳୀ ମାନବବାଦର ମୂଳାଦର୍ଶ ଅଟେ। ଏହା ଯେ କୌଣସି ପ୍ରକାରର ସାମାଜିକ ଭେଦଭାବ ଓ ମାନବିକ କ୍ରୂରତାକୁ ବିରୋଧ କରିଥାଏ। ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶ, ଶିକ୍ଷାର ଅଧିକାର, ମର୍ଯ୍ୟାଦାର ଜୀବନକୁ ଏହା ପ୍ରାଧାନ୍ୟ ଦିଏ । ଆମ ସଂସାରରେ ରହିଥିବା ନାନା ଭେଦଭାବ ଯଥା ରଙ୍ଗଭେଦ, ଜାତିଭେଦ, ଲିଙ୍ଗଭେଦ ଇତ୍ୟାଦି ଯେ ମାନବିକତାର ପରିପନ୍ଥୀ ଏହା ମାନବବାଦର ଆଦର୍ଶ ଅଟେ । ଆଇନ ଦୃଷ୍ଟିରେ ସବୁ ମଣିଷ ସମାନ, ଯେକୌଣସି ପ୍ରକାରର ଭେଦଭାବ ଏକ ମାନବିକତା-ବିରୋଧୀ ଭାବନା । ଏତଦ୍‌ବ୍ୟତୀତ ମାନବବାଦ ଅନୁଯାୟୀ ସକଳ ବିକାଶ ବା ଗୁଣାତ୍ମକ ଜୀବନ ମଣିଷର ପ୍ରୟାସରେ ସମ୍ଭବ । ମଣିଷ ହିଁ ତା'ର ପ୍ରୟାସରେ ଏକ ଉନ୍ନତ ସମାଜ ନିର୍ମାଣ କରିପାରିବ । ସମାଜରେ ଯାହା ଉପଲବ୍ଧ ବା ଯେଉଁ ଆଦର୍ଶ ସାମାଜିକ ମୂଲ୍ୟବୋଧ ଭାବେ ସ୍ୱୀକୃତ ସେସବୁ ମଣିଷର ପ୍ରୟାସ ଓ ଚିନ୍ତାରୁ ସମ୍ଭବ ହୋଇଛି । ସଭ୍ୟତାର ସକଳ କୀର୍ତ୍ତିକରଣୀ ମଣିଷର ଉଦ୍ୟମରୁ ସମ୍ଭବ ହୋଇଛି । ସମାଜରେ ପ୍ରଚଳିତ ସମସ୍ତ ଆଦର୍ଶ, ନୀତି, ମୂଲ୍ୟବୋଧ ସାମାଜିକ ବିବର୍ତ୍ତନ ଧାରାରେ ଉଦ୍ଭବ ହୋଇଛି । ସକଳ ବିକାଶ ମାନବିକ ଉଦ୍ୟମର ପରିଣାମ । ଯେଉଁ ସମାଜ ବା ରାଷ୍ଟ୍ରମାନ ବିକଶିତ ହୋଇଛନ୍ତି ବା ଯେଉଁଠି ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଛି ସେମାନଙ୍କୁ ଦୈବୀ ଆଶୀର୍ବାଦ ମିଳିନାହିଁ । ଯେଉଁଠି ଅନଗ୍ରସରତା ରହିଛି ଓ ସାମାଜିକ ଜୀବନରେ ହିଂସା, ସନ୍ତ୍ରାସବାଦ, ଭେଦଭାବ, ଦୁର୍ନୀତି ଭରପୁର ହୋଇ ରହିଛି ତାହା ଦୈବୀ ଅଭିଶାପରୁ ହୋଇନାହିଁ । ମଣିଷର ନିଷ୍ଠାପର ଓ ସଙ୍ଘବଦ୍ଧ ଉଦ୍ୟମରୁ ସମାଜ ଉନ୍ନତ ହୁଏ । ସମାଜ ପ୍ରତି ସ୍ପର୍ଶକାତରଶୂନ୍ୟ ମନୋଭାବ, ପାରଲୌକିକ ଜୀବନଦୃଷ୍ଟି ଓ ମାନବିକ ପ୍ରୟାସ ପ୍ରତି ଉଦାସୀନତା ସମାଜକୁ ଅନଗ୍ରସର କରିଥାଏ । ତେବେ ନବଜାଗରଣ ଯୁଗରେ ମାନବବାଦ ବିଚାରର ଯେଉଁ କ୍ରାନ୍ତିକାରୀ ଭାବନା ଆସିଥିଲା ତାହା କାଳକ୍ରମେ ରାଜନୀତି, ଅର୍ଥନୀତି, ଶିକ୍ଷା, ସଂସ୍କୃତି ସବୁ ସ୍ତରରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ କଲା । ମାନବବାଦ ଏକ ଉଚ୍ଚତର ଆଦର୍ଶ ଭାବେ ଆଜି ସାର୍ବଜନୀନ ହେବାରେ ଲାଗିଛି ।

ୟୁରୋପୀୟ ନବଜାଗରଣ ଯୁଗରେ ବୈଜ୍ଞାନିକ ବିଚାରଦୃଷ୍ଟି ଓ ମାନବବାଦର ଯେଉଁ ଧାରା ସୃଷ୍ଟି ହୋଇଥିଲା ତାହା ନାନା ଦିଗରେ ବିକଶିତ ହୋଇ ସଭ୍ୟତାର ଉତ୍ତରଣ ଦିଗରେ ନିର୍ଣ୍ଣାୟକ ହେଲା । ପାଶ୍ଚାତ୍ୟ ଦେଶମାନଙ୍କର ବିକଶିତ ଅର୍ଥନୀତି,

ଗଣତାନ୍ତ୍ରିକ ବ୍ୟବସ୍ଥା, ସାର୍ବଜନୀନ ଓ ଗୁଣାତ୍ମକ ଶିକ୍ଷା, ନାନା କ୍ଷେତ୍ରରେ ମୌଳିକ ଗବେଷଣା ଇତ୍ୟାଦି ଜୀବନର ମାନକୁ ଉନ୍ନତ କରିପାରିଛି ।

ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ର ମାନଙ୍କରେ ନାନା ସମସ୍ୟା ରହିଛି । ଏବେ ବି ଆମ ଦେଶର ଜନସଂଖ୍ୟାର ଏକ ପ୍ରମୁଖ ଅଂଶ ନିରକ୍ଷର ରହିଛନ୍ତି ଓ ଦାରିଦ୍ର୍ୟ ସୀମାରେଖାର ତଳେ ରହି ଜୀବନ ବଞ୍ଚୁଛନ୍ତି । ବାଳଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ବେଶ୍ୟାବୃତ୍ତି ପରି ସମସ୍ୟା ମାନ ଆମ ଦେଶରେ ଉତ୍କଟ ହୋଇରହିଛି । ସହରମାନଙ୍କର ସ୍ଲମ-ମାନଙ୍କରେ ବହୁ ଲୋକ ଅତି ଦୟନୀୟ ସ୍ଥିତିରେ ଜୀବନ ବଞ୍ଚିବା ଏକ ସାମାଜିକ ବାସ୍ତବତା । ଶିକ୍ଷା, ସ୍ୱାସ୍ଥ୍ୟସେବା ସବୁ ମଣିଷଙ୍କ ପାଇଁ ଉପଲବ୍ଧ ହୋଇପାରୁ ନାହିଁ । ବେକାରୀ ସମସ୍ୟା, ଚାଷୀ ଆତ୍ମହତ୍ୟା, ଦୁର୍ନୀତି ଆମ ସମାଜରେ ସାଧାରଣ ଘଟଣା । ଏହା ସହିତ ଜାତିଆଣ ମାନସିକତା, ସାମାଜିକ ଭେଦଭାବ ପରି ମନ୍ଦ ବ୍ୟବସ୍ଥାରୁ ଆମ ସମାଜ ମୁକ୍ତ ହୋଇପାରୁ ନାହିଁ । ସାମାଜିକ ଅନ୍ୟାୟ, ଶୋଷଣ ଓ ଅତ୍ୟାଚାର ହେତୁ ହିଂସା, ପ୍ରତିହିଂସା, ସନ୍ତ୍ରାସବାଦ, ଆତଙ୍କବାଦ ନାନାଭାବରେ ସୃଷ୍ଟି ହେଉଛି । ସେହିପରି ସାଂପ୍ରଦାୟିକତା ସମାଜରେ ଭରପୁର ହୋଇ ରହିଛି ଓ ଅତି କୌଶଳତାର ସହ ଭେଦଭାବର ମାନସିକତାକୁ ପ୍ରସାର କରାଯାଉଛି । ଅଧିକନ୍ତୁ ନାନା ପ୍ରକାରର କୁସଂସ୍କାର, ଅନ୍ଧବିଶ୍ୱାସ, ଅହେତୁକ ପରଂପରା ସମାଜରେ ପରିବ୍ୟାପ୍ତ ହୋଇ ରହିଛି । ଏସବୁ ଅବକ୍ଷୟ ସହିତ ନାଗରିକ ଶୃଂଖଳାବୋଧ ଓ ଉଚ୍ଚ କର୍ମସଂସ୍କୃତି ଆମ ସମାଜରେ ନାହିଁ । ପନ୍ଥାର ପବିତ୍ରତା ଓ ସାମାଜିକ ଦାୟିତ୍ୱ କ୍ଷେତ୍ରରେ ସାଧୁତା ସମାଜରେ ହ୍ରାସ ପାଇ ଚାଲିଛି । ଯେକୌଣସି ପନ୍ଥାରେ ଯାଇ ଅଭିଳଷିତ ଲକ୍ଷ୍ୟ ହାସଲ କରିବାର ମାନସିକତା ସମାଜରେ ଭରପୁର ହୋଇ ରହିଛି ।

ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ଯେଉଁ ନବଜାଗରଣର ଯୁଗ ଆସିଥିଲା ତାହାର ଅବଧିକାଳକୁ ଐତିହାସିକମାନେ ନିରୂପଣ କରିଛନ୍ତି । ପଞ୍ଚଦଶ ଶତାବ୍ଦୀର ମଧ୍ୟ ଭାଗରୁ ଆରମ୍ଭ ହୋଇ ଏହା ସପ୍ତଦଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପ୍ରାୟ ୨୫୦ବର୍ଷ କାଳ (୧୪୫୩ ରୁ ୧୬୯୦) ଚାଲିଥିଲା । ମାନବବାଦ ଓ ବୈଜ୍ଞାନିକ ଚିନ୍ତାର ପ୍ରତିଷ୍ଠା ଏହି ଆଲୋଡନର ମୁଖ୍ୟ ସନ୍ଦେଶ ଥିଲା । ଆମ ଦେଶରେ ସାମ୍ରାଜ୍ୟବାଦ ଯୁଗରେ ଏକ ନବଜାଗରଣର ପରିବେଶ ଯେତେ ସୀମିତ ଅର୍ଥରେ ହେଲେ ବି ଆରମ୍ଭ ହୋଇଥିଲା । ଉନବିଂଶ ଶତାବ୍ଦୀ ଆରମ୍ଭରୁ କେତେକ ସଂସ୍କାରକ ସମାଜ ସଂସ୍କାର

ପାଇଁ କିଛି ପଦକ୍ଷେପ ନେଇଥିଲେ । ଭାରତୀୟ ନବ ଜାଗରଣ କ୍ଷେତ୍ରରେ ବଙ୍ଗ ହିଁ ପଥ ପ୍ରଦର୍ଶକ ଥିଲା । ସେତେବେଳର ଭାରତୀୟ ସମାଜରେ ରହିଥିବା କେତେକ ଅମାନବୀୟ ପରଂପରା ବିରୁଦ୍ଧରେ ସେମାନେ ସ୍ୱର ଉତ୍ତୋଳନ କରିଥିଲେ । ରାଜା ରାମମୋହନ ରାୟ ସତୀ ପ୍ରଥା, ବାଲ୍ୟ ବିବାହ ପ୍ରଥା, ବଳିପ୍ରଥା ଇତ୍ୟାଦି ବିରୁଦ୍ଧରେ ଜନଚେତନା ଜାଗ୍ରତ କରିବାକୁ ପ୍ରୟାସ କରିଥିଲେ । ପାଶ୍ଚାତ୍ୟ ଗଣତନ୍ତ୍ର, ସାର୍ବଜନୀନ ଶିକ୍ଷା ଓ ଉଚ୍ଚ ଶିକ୍ଷାର ପ୍ରଭାବରୁ କେତେକ ସଂସ୍କାରକ ଭାରତୀୟ ସମାଜର କୁସଂସ୍କାର ବିରୁଦ୍ଧରେ ସ୍ୱର ଉଠାଇଥିଲେ । ରକ୍ଷଣଶୀଳ ଗୋଷ୍ଠୀର ବହୁ ବିରୋଧ ସତ୍ତ୍ୱେ ସରକାରୀ ସମର୍ଥନ ଓ ଆଇନର ବ୍ୟବସ୍ଥା ଯୋଗୁଁ ଭାରତୀୟ ସମାଜରୁ ସତୀଦାହ ପ୍ରଥା ଭଳି ଜଘନ୍ୟ ପରଂପରାକୁ ବନ୍ଦ କରାଯାଇ ପାରିଲା । ତେବେ ଭାରତୀୟ ସମାଜର ସବୁଠାରୁ ଅମାନବିକ ପରଂପରା ହେଲା ଜାତିପ୍ରଥା ଓ ଅସ୍ପୃଶ୍ୟତା । ଦେଶର ବିଭିନ୍ନ ଭୂଖଣ୍ଡରେ ସଂସ୍କାରକ ମାନେ ଅସ୍ପୃଶ୍ୟତା ଓ ସାମାଜିକ ଭେଦଭାବ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ସୁଦ୍ଧା ସ୍ୱାଧୀନତା ଆନ୍ଦୋଳନ ଯୁଗରେ ହିଁ ଏହା ଏକ ଜାତୀୟ ରୂପରେଖ ନେଲା । ତାହା ପୂର୍ବରୁ ଏହା  ଆଞ୍ଚଳିକ ସ୍ତରରେ ସୀମିତ ରହିଥିଲା ।

ମହାରାଷ୍ଟ୍ରର ଜ୍ୟୋତିରାଓ ଫୁଲେ (୧୮୨୭-୧୮୯୦), କେରଳର ନାରାୟଣ ସ୍ୱାମୀ (୧୮୫୬-୧୯୨୮) ସାମାଜିକ ସଂସ୍କାର କ୍ଷେତ୍ରରେ ଥିଲେ ବେଶ୍ କ୍ରାନ୍ତିକାରୀ, ହେଲେ ସେମାନଙ୍କର ଆନ୍ଦୋଳନ ସୀମିତ ଅଞ୍ଚଳରେ ସୀମାବଦ୍ଧ ଥିଲା । ବିଂଶ ଶତାବ୍ଦୀରେ ସ୍ୱାଧୀନତା ଆନ୍ଦୋଳନ ପୃଷ୍ଠଭୂମିରେ ସମାଜ ସଂସ୍କାରକୁ କେତେକ ଅତି ପ୍ରାଧାନ୍ୟ ଦେଇଥିଲେ । ବିଶେଷକରି ଅସ୍ପୃଶ୍ୟତା ଦୂରୀକରଣ ଓ ଏକ ରାଷ୍ଟ୍ରୀୟ ଚେତନାର ବିକାଶରେ ପେରିୟାର ରାମସ୍ୱାମୀ (୧୮୭୯-୧୯୭୩), ବାବାସାହେବ ଆମ୍ବେଦକର (୧୮୯୧-୧୯୫୬), ମହାତ୍ମାଗାନ୍ଧୀ (୧୮୬୯-୧୯୪୮) ଓ ଗୋରା (୧୯୦୨-୧୯୭୫) ଭାରତୀୟ ସମାଜ ସଂସ୍କାର ଇତିହାସରେ ପ୍ରମୁଖ ସ୍ଥାନ ନେଇଛନ୍ତି । ଭାରତୀୟ ସମାଜରେ ଯୁଗ ଯୁଗ ଧରି ଦଳିତମାନେ ଯେଉଁପରି ଶୋଷିତ, ପଦଦଳିତ ଓ ଲାଂଛିତ ହୋଇ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ ହୋଇଛନ୍ତି ତାହା ବିରୁଦ୍ଧରେ ସଂଗ୍ରାମ ଥିଲା ଅଧିକ ଜଟିଳ । ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ ବେଳେ ଦେଶର ଜନଗଣଙ୍କର ଅକୁଣ୍ଠ ସମର୍ଥନ ମିଳୁଥିଲା ବେଳେ ସାମାଜିକ ଦାସତ୍ୱ ବିରୁଦ୍ଧରେ ସଂଗ୍ରାମ ନାନା ପ୍ରତିବନ୍ଧକର ସମ୍ମୁଖୀନ ହେବାକୁ ପଡୁଥିଲା । ଇତିହାସରେ ଏହାର ବହୁ ମର୍ମାନ୍ତିକ କାହାଣୀ ଦେଖିବାକୁ ମିଳେ ।

ସ୍ୱାଧୀନତା ପ୍ରାପ୍ତିର ଏତେ ଦଶନ୍ଧି ପରେ ମଧ୍ୟ ଏବେ ବି ଭାରତୀୟ ସମାଜରୁ ଅସ୍ପୃଶ୍ୟତା ପରି ଅମାନବିକ ପ୍ରଥା ପୂର୍ଣ୍ଣ ଦୂର ହୋଇନାହିଁ । ଜାତିଆଣ ଭେଦଭାବ ଏବେ ବି ସମାଜର ବିଭିନ୍ନ ସ୍ତରରେ କାୟା ବିସ୍ତାର କରି ରହିଛି । ଏହା ଛଡା ପାରଲୌକିକ ବିଶ୍ୱାସ, ନାନା ଅହେତୁକ ପରଂପରା ଓ ନାନା ଅବୈଜ୍ଞାନିକ ଭାବନା ଆମ ଜନ ଜୀବନରେ ଦୃଢ଼ ହୋଇ ରହିଛି । ଧାର୍ମିକ ଆବେଗ ଆଧାରରେ ଜନଗଣଙ୍କୁ ଯେତେ ଶୀଘ୍ର ପ୍ରଭାବିତ କରିହୁଏ, ମାନବବାଦୀ ଆଦର୍ଶ, ବୈଜ୍ଞାନିକ ବିଚାରବୋଧ, ସାମାଜିକ ନ୍ୟାୟ ପାଇଁ ଜନମାନସକୁ ପ୍ରଭାବିତ କରିହୁଏ ନାହିଁ । ବୃହତ୍ତର ସମାଜ ଓ ପ୍ରଶାସନିକ ବ୍ୟବସ୍ଥା ଉପରେ ଜନଗଣ ଆସ୍ଥା ରଖି ନ ପାରିଲେ ସେମାନେ ଭାଗ୍ୟ, ଈଶ୍ୱରୀୟ କରୁଣା, ଦୈବୀ କୃପା ଇତ୍ୟାଦିରେ ବିଶ୍ୱାସ କରିବା ସହଜ ହୋଇଥାଏ । କେଉଁଠି ଶୁଭ ବେଳାରେ ବୁଡ ପକାଇଲେ, କାହାର ପାଦ ଦର୍ଶନ କଲେ, କେଉଁଠିକୁ ନଡିଆ ପଠାଇଲେ, କେଉଁ ଦଉଡିକୁ ସ୍ପର୍ଶକଲେ, କେଉଁ ଦେବୀଙ୍କ ପାଖରେ ବଳି ପକାଇଲେ ଜୀବନର ଅଭିଳଷିତ ଲକ୍ଷ୍ୟ ପୂରଣ ହେବ-ଏହି ମାନସିକତା ଆମ ସମାଜରେ ବ୍ୟାପକ ହୋଇ ରହିବା ଆମ ଅହେତୁକ ବିଶ୍ୱାସର ସୂଚନା ଦିଏ । ଦାରିଦ୍ର୍ୟ, ଅନଗ୍ରସରତା, ପ୍ରଚଳିତ ପରଂପରା ପ୍ରତି ଅହେତୁକ ଶ୍ରଦ୍ଧା ଓ ଅଶିକ୍ଷା ଆମ ସାମାଜିକ ଜୀବନର ନିଛକ ବାସ୍ତବତା । ଏବେ ବି ମଧ୍ୟଯୁଗୀୟ ପରଂପରା ଓ ସାମନ୍ତବାଦର ପ୍ରଭାବ ସମାଜରେ ଯଥେଷ୍ଟ ରହିଥିବା ମନେହୁଏ । ଆମ ଦେଶରେ ରାଜନୈତିକ ସ୍ୱାଧୀନତା ସହ ଗଣତନ୍ତ୍ର ରହିଥିଲେ ମଧ୍ୟ ଗଣତନ୍ତ୍ର ଏକ ଜୀବନଶୈଳୀ ଓ ମହତ୍ତର ସଭ୍ୟ ମୂଲ୍ୟବୋଧ ଭାବେ ସାମାଜିକ ଜୀବନରେ ପ୍ରତିଷ୍ଠା ଲାଭ କରିପାରି ନାହିଁ । ଆମ ସମ୍ବିଧାନରେ ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ଗୁରୁତ୍ୱ ଦିଆଯାଇଥିଲେ ସୁଦ୍ଧା ଆମର ବାସ୍ତବ ଜୀବନଧାରରେ ଏ ସବୁ ଦୃଢ଼ ଭିତ୍ତି ନେଇ ନାହିଁ । ଅନୁଶୋଚନାରେ ବିଷୟ ଆମ ଦେଶର ଗଣମାଧମ ବିଭିନ୍ନ ଅହେତୁକ ବିଶ୍ୱାସ ଓ କୁସଂସ୍କାର ପ୍ରସାର ଦିଗରେ ଯେତେ ଅନୁକୂଳ, ବୈଜ୍ଞାନିକ ସଚେତନତା ଓ ମାନବବାଦ ପ୍ରସାର କ୍ଷେତ୍ରରେ ସେତିକି ଯତ୍ନଶୀଳ ହେବା ମନେହୁଏ ନାହିଁ । ସମାଜର ପ୍ରଭାବଶାଳୀ ବ୍ୟକ୍ତି ବିଶେଷ କୁସଂସ୍କାରରୁ ମୁକ୍ତ ନହେବା ମଧ୍ୟ ଏକ ବିଡମ୍ବନା ।

ଏହି ସ୍ଥିତିରେ ସମାଜରେ ଏକ ନବଜାଗରଣ ଆଣିବାର ଆବଶ୍ୟକତା ଅନୁଭୂତ ହୁଏ । ସମାଜରୁ କୁସଂସ୍କାର, ଅହେତୁକ ଓ ଚିନ୍ତାଶୂନ୍ୟ ମନୋଭାବ, ଧର୍ମାନ୍ଧତା ଓ ଜାତିଆଣ ମାନସିକତାକୁ ଦୂର କରିବାକୁ ହେଲେ ଆବଶ୍ୟକ ଏକ ସାଂସ୍କୃତିକ କ୍ରାନ୍ତି ।

ଆମ ଦେଶର ଦାରିଦ୍ର୍ୟ ଓ ଅନଗ୍ରସରତା ସହିତ ଏସବୁର ବି ଗୁରୁତ୍ୱପୂର୍ଣ୍ଣ ସଂପର୍କ ରହିଛି । ସମାଜରୁ ଦାରିଦ୍ର୍ୟ ଓ ଅନଗ୍ରସରତାର ବିଲୋପ ପାଇଁ ଅର୍ଥନୈତିକ ଯୋଜନା ସହ ସାମାଜିକ କ୍ରାନ୍ତି ପାଇଁ ମଧ୍ୟ ଚିନ୍ତା ପ୍ରକଟ କରିବାକୁ ହେବ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ବିଚାରର ପ୍ରସାର ନହେଲେ ସମାଜର ସାଂସ୍କୃତିକ ଓ ନୈତିକ ଉତ୍ତରଣ ହେବ ନାହିଁ । କେବଳ ସାକ୍ଷରତା ବୃଦ୍ଧି ପାଇଲେ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ଆସିପାରିବ ନାହିଁ । ଆମ ଦେଶର ଶିକ୍ଷିତ ଲୋକମାନେ ଶୂନ୍ୟରୁ ବସ୍ତୁ ସୃଷ୍ଟି ହେବା, ଯଜ୍ଞଦ୍ୱାରା ବିଶ୍ୱ ଶାନ୍ତି ସମ୍ଭବ, ମନ୍ତ୍ରମୁଦି ଧାରଣ କଲେ ଗ୍ରହଦୋଷ ଜନିତ ମନ୍ଦ ପରିସ୍ଥିତି କଟିଯିବ, ବାସ୍ତୁ ନିୟମରେ ଗୃହ ନିର୍ମାଣ କଲେ ପାରିବାରିକ ଶାନ୍ତି ଅତୁଟ ରହିପାରିବ ଇତ୍ୟାଦି ଅହେତୁକ କଥାରେ ଅଧିକ ବିଶ୍ୱାସ କରିବା ଦେଖାଯାଏ । ଏସବୁ ଭାବନାକୁ ପ୍ରଚାର କରୁଥିବା ବ୍ୟକ୍ତିମାନେ ସାଧାରଣ ଲୋକଙ୍କର ଅଜ୍ଞତା ଓ ଭୟର ସୁଯୋଗ ନେଇ ବେଶ୍ ଉପାର୍ଜନ କରୁଥିବା ଜଣାଯାଏ । କୁସଂସ୍କାରର ପ୍ରସାର କରାଇ ଶ୍ରମବିହୀନ ଉପାର୍ଜନ କରିବାର ମନୋଭାବ ଯଦି ସମାଜରେ ବ୍ୟାପକ ରହେ, ତେବେ ସମାଜ ଯେ କ୍ଷୟଶୀଳ ଏହା ନିଃସନ୍ଦେହ ମନେହୁଏ। ସାମାଜିକ କ୍ଷୟଶୀଳତା ଅନଗ୍ରସରତା ଓ ଅନ୍ଧସଂସ୍କାରର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଜ୍ଞାନ ବିଜ୍ଞାନର ବିକାଶ ହେଲେ ମଧ୍ୟ କୁସଂସ୍କାରର ପ୍ରାବଲ୍ୟ ସମାଜକୁ କ୍ଷୟଶୀଳ କରି ରଖିବା ଏକ ଐତିହାସିକ ଉପଲବ୍ଧି ।

କେଉଁ କଳ୍ପିତ ଦିଅଁ, ଦେବତା, ଠାକୁର ସମାଜକୁ ପରିବର୍ତ୍ତନ କରିଦେବେ ନାହିଁ । ଏସବୁରେ ବିଶ୍ୱାସ ଦ୍ୱାରା ସମାଜରେ ନାଗରିକ ଶୃଂଙ୍ଖଳାବୋଧର ସ୍ତର ଉନ୍ନତ ହେବ ନାହିଁ। ବରଂ ସାଧୁତା, ସମାଜପ୍ରତି ଉତ୍ତରଦାୟିତ୍ୱବୋଧ, ଉଚ୍ଚ କର୍ମ ସଂସ୍କୃତି ଜୀବନର ଗୁଣାତ୍ମକ ମାନକୁ ବୃଦ୍ଧି କରିପାରିବ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦୀ ଜୀବନ ଦର୍ଶନ, ଧର୍ମନିରପେକ୍ଷ ଆଦର୍ଶ, ଗଣତାନ୍ତ୍ରିକ ବିଚାରବୋଧ, ସାମାଜିକ ନ୍ୟାୟ ଓ ସମତାବୋଧ ହେଉଛି ଏ ଯୁଗର ସାର୍ବଜନୀନ ମୂଲ୍ୟବୋଧ। ଏହି ମୂଲ୍ୟବୋଧ ସାମାଜିକ ଜୀବନ ପ୍ରବାହରେ ଯେତେ ଅଧିକ ପ୍ରତିଫଳିତ, ସମାଜ ସେତିକି ପ୍ରଗତିଶୀଳ ଓ ଉନ୍ନତ। ଯେଉଁ ସମାଜରେ ଏହାର ବିପରୀତ ପରିବେଶର ପ୍ରାବଲ୍ୟ ଥାଏ, ତାହା କ୍ଷୟଶୀଳ ଓ ଅନଗ୍ରସର ବିବେଚିତ ହୋଇଥାଏ। ଏତଦ୍‌ବ୍ୟତୀତ ଏହା ମଧ୍ୟ ଏକ ଐତିହାସିକ ଉପଲବ୍ଧି ଯେ ମଣିଷ ନିଜର ସମ୍ମିଳିତ ପ୍ରୟାସଦ୍ୱାରା ନିଜ ପରିବେଶକୁ ବଦଳାଇ ପାରିବ ବା ଗୁଣାତ୍ମକ ଜୀବନର ବିକାଶ କରାଇପାରିବ। ଏକ ଉତ୍ତମ

ସମାଜ ଓ ସାମାଜିକ ମୂଲ୍ୟବୋଧ ମଣିଷର ପ୍ରୟାସଦ୍ୱାରା ଦୃଢ଼ ଭିତ୍ତି ନେଇପାରିବ। ଏସବୁ ଉପରେ ଜୀବନର ଗୁଣାତ୍ମକ ମାନ ନିର୍ଭର କରିଥାଏ।

ଆମ ସାମାଜିକ ସ୍ଥିତିରେ ଏକ ଗୁଣାତ୍ମକ ପରିବର୍ତ୍ତନ ପାଇଁ ଆବଶ୍ୟକ ଏକ ସାଂସ୍କୃତିକ ଜାଗରଣ। ଦୁର୍ନୀତି, ଅନଗ୍ରସରତା, ଭେଦଭାବମୂଳକ ପରିବେଶରୁ ସମାଜକୁ ମୁକ୍ତ କରିବାକୁ ଆମକୁ ଆତ୍ମ ସମୀକ୍ଷା କରିବାକୁ ହେବ। ସ୍ୱାଧୀନତା ଆନ୍ଦୋଳନ ଯୁଗରେ ରାଷ୍ଟ୍ର ନିର୍ମାଣ କ୍ଷେତ୍ରରେ ଯେଉଁ ସ୍ୱପ୍ନ ଥିଲା ଓ ବିଂଶ ଶତାବ୍ଦୀ ଆରମ୍ଭରେ ନବଜାଗରଣର ଯେଉଁ ସ୍ଫୁଲିଙ୍ଗ ସୃଷ୍ଟି ହୋଇଥିଲା, ଗୋଟିଏ ଶତାବ୍ଦୀ ପରେ ଆମର ସ୍ଥିତି କେଉଁ ସ୍ତରକୁ ଯାଇଛି ତାହା ଏବେ ବି ଅନୁଶୀଳନର ବିଷୟ।



# ହେତୁବାଦ : ଏକ ଜୀବନ-ଦର୍ଶନ

ଜଗତ ଓ ଜୀବନର ଘଟଣା ପ୍ରବାହ ବହୁ ସମୟରେ ମଣିଷ ପାଇଁ ରହସ୍ୟମୟ ମନେହୋଇଛି । ଆମ ଚତୁର୍ପାର୍ଶ୍ୱରେ ରହିଥିବା ବିଶାଳ ପୃଥିବୀ, ପ୍ରାକୃତିକ ପରିବେଶ, ସୀମାହୀନ ଆକାଶ, ଗ୍ରହମଣ୍ଡଳକୁ ନେଇ ଆମର ଜଗତ । ଜଗତ ଯେତିକି ବିଶାଳ ଓ ପରିବ୍ୟାପ୍ତ ତାହା ସେତିକି ଜଟିଳ ଓ ରହସ୍ୟମୟ । ଜଗତ ପରି ଆମ ଜୀବନ, ଜୀବନର ଘନଘଟା, ସାମାଜିକ ପରିବେଶ, ମାନବ ସମୁଦାୟ, ମଣିଷର ଦୁଃଖ ଦୁର୍ଦ୍ଦଶା ବେଳକେ ଜଟିଳ ଓ ରହସ୍ୟମୟ ମନେହୁଏ। ସାମାଜିକ ଜୀବନ ପ୍ରବାହରେ ରହିଥିବା ଭିନ୍ନତା, ପାର୍ଥକ୍ୟ ଓ ଭେଦଭାବ ଅତ୍ୟନ୍ତ ଗୂଢ଼ ଓ ସାଧାରଣ ଅବିବୋଧରେ ଅବୋଧ୍ୟ ଓ ଅସ୍ପଷ୍ଟ ବୋଧ ହୁଏ । ଜଗତର ବିଶାଳତା ଓ ଜୀବନର ଜଟିଳତାକୁ ମଣିଷର ଚିନ୍ତାଧାରାର ବିକାଶ ପରଠାରୁ ସେ ନିଜସ୍ୱ ଧାରାରେ ଅବବୋଧ କରିବାକୁ ପ୍ରୟାସ କରି ଆସିଛି । ଏହି ଅବବୋଧ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ପ୍ରକାରର ହୋଇଛି । ଜ୍ଞାନ ବିଜ୍ଞାନର ବିକାଶ ନାନା ସ୍ତର ଦେଇ ଆଗକୁ ଯାଇଛି। ମଣିଷ ଭିତରେ ଅନ୍ତର୍ନିହିତ ଥିବା କୌତୂହଳ ପ୍ରବଣତା, ଅନୁସନ୍ଧିତ୍ସୁ ମନୋଭାବ ଓ ଯୁକ୍ତିଶୀଳ ଦୃଷ୍ଟି ଯୋଗୁ ଜଗତ ଓ ଜୀବନ ନେଇ ମଣିଷର ବିଚାରବୋଧ କ୍ରମବିକାଶ ଧାରାରେ ଅଧିକରୁ ଅଧିକ ବାସ୍ତବ, ବୁଦ୍ଧିଦୀପ୍ତ ଓ ବିଜ୍ଞାନସମ୍ମତ ହୋଇଛି । ଏହି ବୁଦ୍ଧିଦୀପ୍ତ ଓ ବିଜ୍ଞାନ ସମ୍ମତ ଅବବୋଧ ହିଁ ହେତୁବାଦ । ଏହି ଦୃଷ୍ଟିରୁ ଦେଖିଲେ ହେତୁବାଦ ଏକ ଜୀବନଦର୍ଶନ ଓ ପ୍ରାୟତଃ ଏକ ଯୁକ୍ତିଯୁକ୍ତ ଓ ନୀତିଯୁକ୍ତ ଜୀବନ ଦର୍ଶନ । ହୁଏତ ବିଭିନ୍ନ ଜୀବନଦର୍ଶନର ପରିକଳ୍ପନା କରାଯିବା ଅସମ୍ଭବ ନୁହେଁ । ତେବେ ଯେଉଁ ଜୀବନଦର୍ଶନ ସତ୍ୟାଧାରିତ ଓ ସାମୂହିକ ଜୀବନର ନୈତିକ ଓ ଗୁଣାତ୍ମକ ଉତ୍କର୍ଷ ପାଇଁ ଅଭିପ୍ରେତ ତାହା ହିଁ ହେତୁବାଦ ବା ହେତୁବାଦର ଅଭିଳଷିତ ଲକ୍ଷ୍ୟ ।

ମାନବ ସଭ୍ୟତାର କ୍ରମବିକାଶକୁ ଅନୁଶୀଳନ କଲେ ଜଣାଯାଏ ଯେ ମଣିଷ ଦିନେ ଆଦିମ ସ୍ତରରେ ରହିଥିଲା । ବଣ ଜଂଗଲରେ ବୁଲି ଜୀବନ ନିର୍ବାହ କରୁଥିଲା । ତେବେ କୃଷିର ଜ୍ଞାନ ବା ଉଦ୍ଭାବନ ଓ କେତେକ ପଶୁଙ୍କୁ ଗୃହପାଳିତ କରିବା ପରେ ସେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ନଦୀକୂଳମାନଙ୍କରେ ସ୍ଥାୟୀ ଭାବରେ ବସତି ସ୍ଥାପନ କଲା । କୃଷି ଜନିତ ଜ୍ଞାନ ହିଁ ଥିଲା ସଭ୍ୟତାର କ୍ରମବିକାଶର ପହିଲି ପର୍ବ । ସଭ୍ୟତାର କ୍ରମବିକାଶ କ୍ଷେତ୍ରରେ ଚାରୋଟି ବିଷୟ ମଣିଷ ପାଇଁ ସହାୟକ ହୋଇଥିବା ମନେହୁଏ । ନିଜ ଚତୁର୍ପାର୍ଶ୍ୱରେ ଥିବା ଓ ପ୍ରକୃତିରେ ଉପଲବ୍ଧ ହେଉଥିବା ବିଭିନ୍ନ ବସ୍ତୁ ସାହାଯ୍ୟରେ ବିଭିନ୍ନ ପଦାର୍ଥ ନିର୍ମାଣ କରିବାର ସାମର୍ଥ୍ୟ ମଣିଷ ଭିତରେ ରହିଛି । ନିଜର ବାସଗୃହ, ପୋଷାକ, ଉପକରଣଠାରୁ ନାନା ଜଟିଳ ବସ୍ତୁ ମଣିଷ ନିର୍ମାଣ କରିବାକୁ ସମର୍ଥ ହୋଇଛି । ଏହି ସାମର୍ଥ୍ୟ ଯୋଗୁଁ ଜୀବନର ମାନରେ କ୍ରମୋନ୍ନତି ଘଟିଛି । ଦ୍ୱିତୀୟରେ ମଣିଷ ସ୍ୱଭାବତଃ ଏକ ସାମାଜିକ ପ୍ରାଣୀ । ପ୍ରକୃତିରେ ଯେତେ ପ୍ରାଣୀ ରହିଛନ୍ତି ସେମାନଙ୍କ ମଧ୍ୟରେ ମଣିଷ ସବୁଠାରୁ ବୁଦ୍ଧିମାନ ଓ ବିକଶିତ ହୋଇଥିଲେ ମଧ୍ୟ ମଣିଷ ଶିଶୁ ସବୁଠାରୁ ବଡ଼ ଅସହାୟ ମନେହୁଏ । ମଣିଷ ଶିଶୁ ପରିବାରର ଯତ୍ନ, ସାମାଜିକ ପରିବେଶର ସହଯୋଗ ନ ପାଇଲେ ବଞ୍ଚିପାରିବ ନାହିଁ । ସ୍ୱରୂପତଃ ମଣିଷ ନିଜର ଅସହାୟତା ଯୋଗୁ ଗୋଷ୍ଠୀ ଜୀବନ ଯାପନ କରିବାକୁ ବାଧ୍ୟ । ପରିବାର, କ୍ଷୁଦ୍ର ଗୋଷ୍ଠୀଠାରୁ ଆରମ୍ଭ କରି ରାଜ୍ୟ, ରାଷ୍ଟ୍ର ଓ ଆନ୍ତରାଷ୍ଟ୍ରୀୟ ଭାବନାର ବିକାଶ କ୍ଷେତ୍ରରେ ମଣିଷର ସାମାଜିକ ପ୍ରବୃତ୍ତି ଅନ୍ତର୍ନିହିତ । ତୃତୀୟରେ ମଣିଷ ଭାଷା କହିବାକୁ ସମର୍ଥ । ଭାଷା କହିବାର ସାମର୍ଥ୍ୟ ଓ ଭାଷାମାନଙ୍କର କ୍ରମବିକାଶ ଯୋଗୁ ଜ୍ଞାନବିଜ୍ଞାନର ପ୍ରଗତି ସମ୍ଭବ ହୋଇଛି । ସାରା ପୃଥିବୀରେ ପ୍ରାୟ ପାଞ୍ଚହଜାର ଭାଷା ଥିଲେ ମଧ୍ୟ ସେ ମଧ୍ୟରୁ ଦୁଇ ଶହଟି ଭାଷା ଉନ୍ନତ । ଯେଉଁ ଯୁଗରେ ଯେଉଁ ଜ୍ଞାନରାଜିର ବିକାଶ ହୋଇଛି ତାହାକୁ ଲିପିବଦ୍ଧ କରିରଖିବା ଦ୍ୱାରା ଜ୍ଞାନ ବିଜ୍ଞାନର ବିକାଶରେ କ୍ରମବର୍ଦ୍ଧିଷ୍ଣୁ ଉନ୍ନତି ହୋଇଚାଲିଛି । ଚତୁର୍ଥରେ ମଣିଷ ଭିତରର ବୌଦ୍ଧିକ କୌତୂହଳତା, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଓ ବିଚାରଶୀଳ ଦୃଷ୍ଟି ସଭ୍ୟତାର କ୍ରମ ବିକାଶରେ ସହାୟକ ହୋଇଛି । ମଣିଷ ଯେତେବେଳେ ଯାହା ସମସ୍ୟା ଓ ସଂକଟର ସମ୍ମୁଖୀନ ହୋଇଛି, ସେ ସେଥିରୁ ନିଷ୍କୃତି ପାଇଁ ଉପାୟ ଚିନ୍ତା କରିଛି । ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସା ଯୋଗୁଁ ସଭ୍ୟତା ଆଗକୁ ଯାଇଛି, ସାମାଜିକ ଜୀବନରେ ସ୍ଥିରତା ପ୍ରକାଶ ପାଇଛି ଓ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇବାରେ ଲାଗିଛି ।

ପୃଥିବୀର ବିଭିନ୍ନ ଅଞ୍ଚଳରେ ଗଢ଼ି ଉଠିଥିବା ସଭ୍ୟତା ମଧ୍ୟ ଦେଇ ସମାଜର ଦୃଢ଼ୀକରଣ ସମ୍ଭବ ହୋଇଛି। ଗ୍ରାମୀଣ ଜୀବନଧାରାରେ ସାମାଜିକ ଜୀବନ ପ୍ରବାହ ଭିତରୁ ଧାର୍ମିକ ଚେତନାର ବିକାଶ ହୋଇଛି। ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ଯୋଗୁଁ ସମାଜରେ ଏକ ନୂତନ ଜାଗରଣ ଆସିଛି। ସାମାଜିକ ଜୀବନ ପ୍ରବାହ ଓ ମଣିଷର ବୌଦ୍ଧିକ ଚିନ୍ତାରାଜିକୁ ପ୍ରଭାବିତ କରିଥିବା କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ବିଚାର, ଜୀବନଦୃଷ୍ଟି ଆନୁଷ୍ଠାନିକ ଧର୍ମମାନଙ୍କର ବିକାଶରେ ସହାୟକ ହୋଇଛି। ଖ୍ରୀ.ପୂ. ୮୦୦ ବର୍ଷଠାରୁ ଖ୍ରୀଷ୍ଟାବ୍ଦ ଆରମ୍ଭ ଭିତରେ ଭାରତ ଭୂଖଣ୍ଡରେ ଉପନିଷଦ୍ ମାନଙ୍କର ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବ ଭାରତୀୟ ଚିନ୍ତାମାନସକୁ ଧର୍ମୀୟ ଆଦର୍ଶରେ ପ୍ରଭାବିତ କରିଛି। ସେହି ସମସାମୟିକ ଯୁଗରେ ଇସ୍ରାଏଲରେ ହିବ୍ରୁ ସନ୍ଥ ମାନଙ୍କର ଆବିର୍ଭାବ ହୋଇ ଧାର୍ମିକ ଚେତନା ପ୍ରକାଶ ପାଇଛି। ସେହିପରି ଜୋରାଷ୍ଟରଙ୍କ ଆବିର୍ଭାବ ଅନ୍ୟ ଏକ ଭୂଖଣ୍ଡରେ ଧାର୍ମିକ ଆଲୋଡନ ସୃଷ୍ଟି କରିଛି। ଚୀନରେ କନଫୁସିଅସଙ୍କର ବୈଚାରିକ ଆଲୋଡନ ଟାଓବାଦକୁ ଜନ୍ମ ଦେଇଛି। ହିବ୍ରୁ ଧର୍ମଧାରା ଭିତରୁ ଦୁଇଟି ବଡ଼ ସାଂସ୍କୃତିକ ଆଲୋଡ଼ନ ଖ୍ରୀଷ୍ଟଧର୍ମ ଓ ଇସଲାମ ଧର୍ମ ବିକଶିତ ହୋଇଛି। ଖ୍ରୀଷ୍ଟଧର୍ମ ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବରୁ ଓ ଇସଲାମ ଧର୍ମ ଆରବ ଭୂଖଣ୍ଡରେ ମହମ୍ମଦଙ୍କ କ୍ରାନ୍ତିକାରୀ ବିଚାରକୁ ନେଇ ଦୃଢ଼ ଭିତ୍ତି ନେଇଛି। ଖ୍ରୀ.ପୂ. ୮୦୦ ରୁ ଖ୍ରୀଷ୍ଟାବ୍ଦ ସପ୍ତମ ଶତାବ୍ଦୀ ଏହି ଦେଢ଼ ହଜାର ବର୍ଷ ଭିତରେ ଅଧିକାଂଶ ଧର୍ମ ଦୃଢ଼ ଭିତ୍ତି ନେଇଛନ୍ତି। ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ପରିବେଶରେ ଏକ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡନ ଭାବେ ଜନମାନସକୁ ଗଭୀର ଭାବେ ପ୍ରଭାବିତ କରିଛି। ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଜନଗଣଙ୍କ ମଧ୍ୟରେ ଏକ ସାଂସ୍କୃତିକ ସଂହତି ସ୍ଥାପନ କରିବାରେ ଧର୍ମ ଏକ ପ୍ରମୁଖ ଭୂମିକା ନେଇଛି। ଜଗତର ବିଶାଳତା ଓ ଜୀବନର ଜଟିଳତାକୁ ଅବବୋଧ କରିବାରେ ଏହା ଏକ ବୌଦ୍ଧିକ ଆବେଦନ ସୃଷ୍ଟି କରିଛି। ସେତେବେଳେ ଯେହେତୁ ରାଜତନ୍ତ୍ର ଥିଲା ଓ ରାଜା ହିଁ ସର୍ବେସର୍ବା ଥିଲେ, ରାଜତନ୍ତ୍ରର ସମର୍ଥନ ଲାଭ କରି ଏହା ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହୋଇ ଜନମାନସରେ ଏକ ସାଂସ୍କୃତିକ ଅସ୍ମିତା ସୃଷ୍ଟି କରିଛି। ସେହି ଯୁଗରେ ମଣିଷର ବୌଦ୍ଧିକ ଅବବୋଧ ଅତି ସୀମିତ ଥିବାରୁ ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ଏକ ସାଧାରଣ ଘଟଣା ହୋଇ ରହିଥିଲା । ଦୃଷ୍ଟିର ଅନ୍ତରାଳରେ ରହି ସବୁ କିଛିକୁ ନିୟନ୍ତ୍ରିତ

କରୁଥିବା ଐଶ୍ୱରିକ, ଅତିପ୍ରାକୃତିକ ସତ୍ତାରେ ବିଶ୍ୱାସ ଜଗତ ଓ ଜୀବନକୁ ବୁଝିବାରେ ସହାୟକ ହୋଇଥିଲା । ବସ୍ତୁତଃ ସମାଜରେ ଏକ ବଡ଼ ବୌଦ୍ଧିକ ଓ ସାଂସ୍କୃତିକ ଆଲୋଡ଼ନ ଆଣିବାରେ କ୍ରାନ୍ତିକାରୀ ପଥପ୍ରଦର୍ଶକଙ୍କୁ ଈଶ୍ୱର ପ୍ରେରିତ ବ୍ୟକ୍ତିଭାବେ ଚିତ୍ରଣ କରାଗଲା । ଈଶ୍ୱରଙ୍କ ପୁତ୍ର, ଈଶ୍ୱରଙ୍କ ଦୂତ, ଈଶ୍ୱରଙ୍କ ଅବତାର ଭାବନା ବିଭିନ୍ନ ଧର୍ମ ସହ ସଂଶ୍ଳିଷ୍ଟ ହୋଇଥିବା ଓ ସେହି ମନୀଷୀମାନଙ୍କ ଜୀବନ ଓ କାର୍ଯ୍ୟଧାରା ସହ ନାନା ଚମତ୍କାରିତା ସଂଯୁକ୍ତ ହୋଇଥିବା ଦେଖାଯାଏ । ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କ ମଧ୍ୟରେ ସାଂସ୍କୃତିକ ଐକ୍ୟ ସ୍ଥାପନ କରିବାରେ, ସାମାଜିକ ଜୀବନ ପ୍ରବାହକୁ ଏକ ସୁନିୟନ୍ତିତ ଧାରାରେ ପରିଚାଳିତ କରିବାରେ, ନୀତିବୋଧର ଭାବନା ଆଣିବାରେ, ଯେତେ ଭ୍ରମାତ୍ମକ ହେଲେ ମଧ୍ୟ ଜୀବନର ଲକ୍ଷ୍ୟକୁ ଅବବୋଧ କରିବାରେ ଓ ପ୍ରାକୃତିକ ଘଟଣା ପ୍ରବାହକୁ ବୁଝିବାରେ ସାହାଯ୍ୟ କରିଥିବା ମନେହୁଏ । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ବିଭିନ୍ନ ସଭ୍ୟତାର ବିକାଶ ହେବା ଯେପରି ଏକ ଐତିହାସିକ ଘଟଣା, ସେହିପରି ବିଭିନ୍ନ ସଭ୍ୟତାରେ ଧର୍ମକୁ ଆଧାର କରି ଉଦ୍ଭବ ହୋଇଥିବା ସାଂସ୍କୃତିକ ଜାଗରଣ ମଧ୍ୟ ଏକ ଐତିହାସିକ ଘଟଣା । ଜଗତ ଓ ଜୀବନ ସଂପର୍କରେ ଗୋଟିଏ ଧର୍ମର ଅବବୋଧ ଯେତେ କାଳ୍ପନିକ ସିଦ୍ଧାନ୍ତ ଉପରେ ଆଧାରିତ ହେଲେ ମଧ୍ୟ ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ପ୍ରବାହ ଓ ଏକ ଜୀବନଧାରା । ସମାଜକୁ ଦୃଢ଼ ଭିତ୍ତି ଦେବାରେ, ଏକେଶ୍ୱରବାଦ ଭାବନା ସୃଷ୍ଟି କରିବାରେ, ଜନଜାତୀୟ ନୈତିକତାରୁ ନୀତିବୋଧର ଆବେଦନ ସୃଷ୍ଟି କରିବାରେ ଓ ଯେତେ କାଳ୍ପନିକ ହେଲେ ମଧ୍ୟ ଜୀବନର ଏକ ଲକ୍ଷ୍ୟ ଆନୟନ କରିବାରେ ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡରେ ଏକ ସାଂସ୍କୃତିକ ଐକ୍ୟ ଆଣିବାରେ ସହାୟକ ହୋଇଥିବା ମନେହୁଏ । ଏହା ଛଡ଼ା ଧର୍ମ ସାମାଜିକ ନିୟନ୍ତ୍ରଣର ଭିତ୍ତି ହେବା ସହ ରାଜନୀତି, ଶିକ୍ଷା ଓ ଜୀବନ ପ୍ରବାହକୁ ଗଭୀର ଭାବେ ପ୍ରଭାବିତ କରିବା ଦେଖାଯାଏ । ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ସହ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ପ୍ରତ୍ୟେକ ଧର୍ମର ଐତିହାସିକ କ୍ରମବିକାଶ, ତାତ୍ତ୍ୱିକ ଅବବୋଧ, ନୀତିବୋଧ, କର୍ମକାଣ୍ଡ, ମୁଖ୍ୟ ଗୋଷ୍ଠୀ, ଧର୍ମଶାସ୍ତ୍ର ବିଷୟରେ ସ୍ପଷ୍ଟ ଚିତ୍ର ମିଳିବା ସମ୍ଭବ ହେଲା ।

ଜନଜୀବନରେ ଧର୍ମର ଗଭୀର ପ୍ରଭାବ ଓ ନିୟନ୍ତ୍ରଣ, କୃଷିଭିତ୍ତିକ ଗ୍ରାମୀଣ ସମାଜ, ରାଜତନ୍ତ୍ର, ସାମନ୍ତବାଦୀ ସମାଜ ବ୍ୟବସ୍ଥା ସାରା ପୃଥିବୀରେ ରହିଥିବା ବେଳେ

ୟୁରୋପରେ ପଞ୍ଚଦଶ ଶତାବ୍ଦୀରୁ ଏକ ନୂତନ ଜାଗରଣର ପରିବେଶ ଆସିଲା। ନବଜାଗରଣ ବା ରେନାସାଁ ଓ ପ୍ରବୋଧ ବା ଏନଲାଇଟ୍‌ନମେଣ୍ଟ ଯୁଗର ଆବିର୍ଭାବ ଅଢ଼େଇ ଶହ ବର୍ଷ ଧରି ଚିନ୍ତାରାଜ୍ୟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ଯେଉଁ କ୍ରାନ୍ତିକାରୀ ବିଚାରର ପରିବେଶ ଆସିଲା, ସେଥିରୁ ବିଜ୍ଞାନର ଯୁଗ ଆରମ୍ଭ ହେଲା । ସଭ୍ୟତାର ଇତିହାସ ବହୁ ପ୍ରାଚୀନ ହେଲେ ମଧ୍ୟ ଆଧୁନିକ ବିଜ୍ଞାନର ବିକାଶ ପର୍ବ ତିନି ଶହ ବର୍ଷ ତଳେ ଅର୍ଥାତ୍ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇଥିଲା । ବିଜ୍ଞାନର ଯୁଗ ଦୁଇଟି ବୈଚାରିକ ଆଲୋଡ଼ନରୁ ବିକାଶ ଲାଭ କଲା, ଅର୍ଥାତ୍ ବିଜ୍ଞାନର ବିକାଶ ପଶ୍ଚାତରେ ଦୁଇଟି ମୌଳିକ ଭାବନା ଭିତ୍ତି ଯୋଗାଇଲା । ପ୍ରଥମ ଭାବନାଟି ହେଉଛି ପ୍ରକୃତିରେ ଯାହା କିଛି ଅଛି ବା ଯାହା କିଛି ଘଟଣା ଘଟେ ତାହା ପ୍ରାକୃତିକ। ପ୍ରତ୍ୟେକଟି ଘଟଣା ପଶ୍ଚାତରେ କୌଣସି ପ୍ରାକୃତିକ କାରଣ ରହିଛି, ତାହା ଆମେ ଜାଣୁ ବା ନଜାଣୁ । ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଆଧିଭୌତିକ, ଦୈବୀ ବା ଈଶ୍ୱରୀୟ କାରଣ ନାହିଁ । ପ୍ରକୃତିରେ କେତେକ ଶୃଙ୍ଖଳା ବା ଏକରୂପତା ରହିଛି । ସେହି ପ୍ରାକୃତିକ ଶୃଂଖଳା ଓ ଏକରୂପତାକୁ ଆବିଷ୍କାର କଲେ ଘଟଣା ସକଳକୁ ବ୍ୟାଖ୍ୟା କରି ହେବ । ଏହି ସିଦ୍ଧାନ୍ତକୁ "ବୈଜ୍ଞାନିକ ପ୍ରକୃତିବାଦ" କୁହାଯାଏ, ଯାହା ବିଜ୍ଞାନରେ ଏକ ସ୍ୱତଃସିଦ୍ଧ ନିୟମ ଭାବେ ସ୍ୱୀକୃତ। ବିଜ୍ଞାନର ବିକାଶ ପଶ୍ଚାତର ଦ୍ୱିତୀୟ ଭାବନାଟି ହେଉଛି ଏକ ଉପଯୁକ୍ତ ପ୍ରଣାଳୀ। ବସ୍ତୁ ଜଗତକୁ ଜାଣିବାର ବା ବ୍ୟାଖ୍ୟା କରିବାର ପ୍ରଣାଳୀ ହେଉଛି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଆଧାରରେ ଆମେ ବିଭିନ୍ନ ଘଟଣାର କାରଣକୁ ଅନୁସନ୍ଧାନ କରିବା ସମ୍ଭବ । ପର୍ଯ୍ୟବେକ୍ଷଣ, ପରୀକ୍ଷଣ ମାଧ୍ୟମରେ ପ୍ରକୃତିର ନିୟମକୁ ଜାଣିବା ସମ୍ଭବ ଯାହାରି ଆଧାରରେ ଆମେ ସାମାନ୍ୟୀକରଣ କରିପାରିବା। ଏହି ପ୍ରକ୍ରିୟାକୁ ତର୍କଶାସ୍ତ୍ରର ଭାଷାରେ "ଆରୋହଣ ପଦ୍ଧତି"ବା ଇଣ୍ଡକ୍‌ଟିଭ୍ ମେଥଡ କୁହାଯାଏ । ବସ୍ତୁତଃ ବୈଜ୍ଞାନିକ ପ୍ରକୃତିବାଦ ଓ ଆରୋହଣ ପଦ୍ଧତି ବୈଜ୍ଞାନିକ ଜ୍ଞାନର ବିକାଶ କ୍ଷେତ୍ରରେ ପଥପ୍ରଦର୍ଶକ ହେବା ମନେହୁଏ ।

ବିଜ୍ଞାନର ବିକାଶ ଜନିତ ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ। ଗୋଟିଏ ପଟେ ଧାର୍ମିକ ବିଶ୍ୱାସ ଓ ଅନ୍ୟ ପଟରେ ବୈଜ୍ଞାନିକ ସିଦ୍ଧାନ୍ତ ଭିତରେ ଗମ୍ଭୀର ଦ୍ୱନ୍ଦ୍ୱ

ସୃଷ୍ଟି ହେଲା । ଧର୍ମଗ୍ରନ୍ଥର ବାଣୀକୁ ବିଜ୍ଞାନର ବିକାଶ ପୂର୍ବରୁ ମଣିଷ ଚିରନ୍ତନ ଓ ଧ୍ରୁବ ସତ୍ୟ ବୋଲି ଭାବି ଆସିଥିଲା । ବିଜ୍ଞାନର ସିଦ୍ଧାନ୍ତ ଧର୍ମର ଅଧିକାଂଶ ମତକୁ ଅସତ୍ୟ ଓ ନିରାଧାର ବୋଲି ଦର୍ଶାଇଲା । ଏହି ବିଶାଳ ବିଶ୍ୱକୁ କେହି ଛ' ଦିନରେ ଛ' ହଜାର ବର୍ଷ ତଳେ ସୃଷ୍ଟି କରି ନାହାନ୍ତି, ପୃଥିବୀ ଓ ଆମ ଗ୍ରହମଣ୍ଡଳ କୋଟି କୋଟି ବର୍ଷ ଧରି ପରିବର୍ତ୍ତିତ ଓ ବିବର୍ତ୍ତିତ ହୋଇ ଆସିଛି । ମଣିଷକୁ କେଉଁ ଈଶ୍ୱର ନିଜର ସ୍ୱରୂପରେ ଗଢ଼ି ନାହାନ୍ତି, ମଣିଷ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ବର୍ତ୍ତମାନର ସ୍ଥିତିକୁ ଆସିଛି । ପୃଥିବୀ ସ୍ଥିର ନୁହେଁ, ଏହା ସୂର୍ଯ୍ୟ ଚାରିପଟେ ଘୂର୍ଣ୍ଣାୟମାନ । ପୃଥିବୀ ସୃଷ୍ଟି ହେବାର କୋଟି କୋଟି ବର୍ଷର ବ୍ୟବଧାନପରେ ପାହାଡ଼, ପର୍ବତ, ନଦୀ, ସମୁଦ୍ର ଉଦ୍ଭବ ହୋଇଛନ୍ତି । ଏହି ଭଳି ଅନେକ ବିଚାର ଧର୍ମର ଭାବନାକୁ ମିଥ୍ୟା ପ୍ରମାଣିତ କରିବାରୁ ଧର୍ମ ଓ ବିଜ୍ଞାନ ଭିତରେ ଏକ ସଂଘର୍ଷର ପରିବେଶ ସୃଷ୍ଟି ହୋଇଛି । ପରିଣାମତଃ ବିଜ୍ଞାନର ବହୁ ପ୍ରତିଭାଧର ମନୀଷୀଙ୍କୁ କାଠଗଡାରେ ଛିଡାହେବାକୁ ପଡିଛି, ବନ୍ଦୀ ଜୀବନ ବିତାଇବାକୁ ହୋଇଛି ଓ ଏପରିକି ମୃତ୍ୟୁ ଦଣ୍ଡରେ ପ୍ରାଣବଳି ଦେବାକୁ ପଡିଛି । ତେବେ ବିଜ୍ଞାନର ସିଦ୍ଧାନ୍ତମାନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ ଓ ସତ୍ୟାଧାରିତ ହୋଇଥିବାରୁ ଧର୍ମ ବିଜ୍ଞାନର ବିଜୟ ଯାତ୍ରାକୁ ପ୍ରତିହତ କରିପାରି ନାହିଁ । ବିଜ୍ଞାନର ବିକାଶ ସପ୍ତଦଶ ଶତାବ୍ଦୀରୁ ଆରମ୍ଭ ହୋଇ ଏହି ତିନି ଶହ ବର୍ଷ ଭିତରେ ଏକ ନୂଆ ଦୁନିଆ ଗଢ଼ିବା ସହିତ ଜୀବନର ଗୁଣାତ୍ମକ ମାନରେ ଯଥେଷ୍ଟ ପରିବର୍ତ୍ତନ ଆଣିଛି । ପ୍ରକୃତିର ବିଭିନ୍ନ କ୍ଷେତ୍ରକୁ ଅନୁଧ୍ୟାନ ଦ୍ୱାରା ବିଜ୍ଞାନ ଜ୍ଞାନର ଦିଗନ୍ତକୁ ବିସ୍ତାର କରିଚାଲିଛି । ପ୍ରକୃତିରେ ବହୁ ରହସ୍ୟ ରହିଛି, ହେଲେ ଚମତ୍କାରିତା ବା ମିରାକେଲ୍ ନାହିଁ । ପ୍ରକୃତିର ବିଭିନ୍ନ କ୍ଷେତ୍ରରେ ଆବିଷ୍କୃତ ଓ ଉଦ୍ଭାବିତ ନିୟମମାନ ମଧ୍ୟରେ ସମତାଳତା ଓ ସଂହତି ଦୃଷ୍ଟିଗୋଚର ହୋଇଥାଏ । ପ୍ରକୃତିର ବିଶାଳତା ଓ ଜଟିଳତା ପୃଷ୍ଠଭୂମିରେ ଆମର ପର୍ଯ୍ୟବେକ୍ଷଣ-ପରୀକ୍ଷଣର ପରିସର ଯେତେ ବିସ୍ତାରିତ ହେବାରେ ଲାଗିଛି, ନୂତନ ତଥ୍ୟ ଆଧାରରେ ଅତୀତର ସିଦ୍ଧାନ୍ତ ପରିବର୍ତ୍ତନ ହେବାର ସମ୍ଭାବନା ରହିଛି। ବିଜ୍ଞାନ ଏହି ଦୃଷ୍ଟିରୁ ସୈଦ୍ଧାନ୍ତିକ ପରିବର୍ତ୍ତନକୁ ସ୍ୱୀକାର କରିଥାଏ । ମୋଟାମୋଟି ଭାବରେ କହିଲେ ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ସ୍ୱସଂଶୋଧନାତ୍ମକ (self-corrective), ବସ୍ତୁନିଷ୍ଠ, ପରୀକ୍ଷା ସାପେକ୍ଷ ଓ ସାର୍ବଜନୀନ ।

ପାଶ୍ଚାତ୍ୟ ଭୂଖଣ୍ଡରେ ଧର୍ମ ସହ ବିଜ୍ଞାନର ସଂଘର୍ଷ ବିଜ୍ଞାନର ଆଦିପର୍ବରେ ହୋଇଛି । ପ୍ରାଚ୍ୟ ଭୂଖଣ୍ଡରେ ଧର୍ମ ସହ ସମାଜ-ସଂସ୍କାରର ସଂଘର୍ଷ ହୋଇଛି । ଭାରତ ବର୍ଷରେ ନାରୀ ନିର୍ଯ୍ୟାତନା, ଅସ୍ପୃଶ୍ୟତା, ଜାତିପ୍ରଥା, ସତୀଦାହ ପ୍ରଥା ଇତ୍ୟାଦି କୁସଂସ୍କାର ବିରୁଦ୍ଧରେ ଯେଉଁ ସମାଜ ସଂସ୍କାରକ ମାନେ ସ୍ୱର ଉତ୍ତୋଳନ କରିଛନ୍ତି, ଧର୍ମାନ୍ଧ ଓ ରକ୍ଷଣଶୀଳ ଲୋକମାନେ ତାହାକୁ ତୀବ୍ର ବିରୋଧ କରିଛନ୍ତି । ଏହି ଦୃଷ୍ଟିରୁ ପ୍ରାଚ୍ୟ ଭୂଖଣ୍ଡରେ ଧର୍ମ ସଂସ୍କାର-ବିରୋଧୀ ଓ ମାନବିକତା-ବିରୋଧୀ ହୋଇଛି ।

ଯେଉଁ ପ୍ରଣାଳୀକୁ ପ୍ରୟୋଗ କରି ପ୍ରକୃତିର ବହୁ ରହସ୍ୟକୁ ପ୍ରାକୃତିକ ବିଜ୍ଞାନ ବ୍ୟାଖ୍ୟା କରିଛି ସେହି ପ୍ରଣାଳୀକୁ ପ୍ରୟୋଗ କରି ସମାଜ ବିଜ୍ଞାନ ସମାଜର ନାନା ବିଷୟକୁ ଅନୁଧ୍ୟାନ ଓ ଅନୁଶୀଳନ କରିଛି । ସମାଜ ବିଷୟକ ଅଧ୍ୟୟନରୁ ବହୁ ସାମାଜିକ ଦୁର୍ଗତି ବା ସୋସିଆଲ ଇଭିଲ ନେଇ ବହୁ ତଥ୍ୟ ପଦାକୁ ଆସିଛି । ଏହି ପରିପ୍ରେକ୍ଷୀରେ ମାନବବାଦର ପ୍ରତିଷ୍ଠା ଜୀବନ ଓ ସମାଜ ପ୍ରତି ଦୃଷ୍ଟିଭଙ୍ଗୀରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ମାନବବାଦୀ ବିଚାରର ପରିଣାମରୁ ଗଣତାନ୍ତ୍ରିକ ଜୀବନଧାରା, ଧର୍ମନିରପେକ୍ଷ ଜୀବନଦୃଷ୍ଟି, ସାମାଜିକ ନ୍ୟାୟ ଓ ସମତାର ଭାବ ଚିନ୍ତାରାଜ୍ୟରେ ସ୍ୱୀକୃତ ହୋଇଛି । ପରିଣାମତଃ ସାର୍ବଜନୀନ ଶିକ୍ଷା, ବ୍ୟକ୍ତିମର୍ଯ୍ୟାଦାବୋଧ, ପ୍ରତ୍ୟେକ ବ୍ୟକ୍ତିର ମାନବିକ ଅଧିକାର, ମହିଳା ସଶକ୍ତିକରଣ ଇତ୍ୟାଦି ବିଂଶ ଶତାବ୍ଦୀରେ ଦୃଢ଼ ଭିତ୍ତି ନେଇଛି । ବୈଜ୍ଞାନିକ ବିଚାରବୋଧ ଓ ମାନବବାଦ ଚିନ୍ତାରାଜ୍ୟରେ ଓ ସାମାଜିକ ବ୍ୟବସ୍ଥାରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଛି । ରାଜନୈତିକ ଦୃଶ୍ୟପଟରେ ଏକଛତ୍ରବାଦ, ସାମ୍ରାଜ୍ୟବାଦ, ଉପନିବେଶବାଦ ଯେ ଅନୈତିକ ଓ ଆମାନବିକ ଏହି ଭାବନା ବୌଦ୍ଧିକ ସ୍ତରରେ ସ୍ୱୀକୃତ ହୋଇଛି । ଧର୍ମ ଓ ସଂସ୍କୃତି ପୃଷ୍ଠଭୂମିରେ ସାଂପ୍ରଦାୟିକତାବାଦ, ମୌଳବାଦ ଅପସଂସ୍କୃତୀୟ ବୋଲି ବିଚାର ସୁଦୃଢ଼ ହେବାରେ ଲାଗିଛି । ସେହିପରି ସାମାଜିକ ଦୃଶ୍ୟପଟରେ ଲିଙ୍ଗଗତ, ଜାତିଗତ, ବର୍ଣ୍ଣଗତ ବୈଷମ୍ୟକୁ ଦୂର କରି ସବୁ ବ୍ୟକ୍ତିଙ୍କର ମାନବିକ ମହତ୍ତ୍ୱ ନେଇ ବିଶ୍ୱସ୍ତରରେ ସଚେତନା ବୃଦ୍ଧି ପାଇବାରେ ଲାଗିଛି । ପ୍ରତ୍ୟେକ ରାଷ୍ଟ୍ର ଜନମଙ୍ଗଳକାରୀ ଯୋଜନା, ସବୁ ନାଗରିକଙ୍କର ସ୍ୱାସ୍ଥ୍ୟ ସେବା, ଶିକ୍ଷା ଓ ଗୁଣାତ୍ମକ ଜୀବନ ପ୍ରତି ପ୍ରାଧାନ୍ୟ ଦେବାକୁ ଲାଗିଛି । ଏତଦ୍‌ବ୍ୟତୀତ ସାରା ବିଶ୍ୱରେ ଏକ ଆନ୍ତର୍ଜାତୀୟ ଦୃଷ୍ଟିଭଙ୍ଗୀ ଓ ସାର୍ବଜନୀନ ମାନସିକତାର ବିକାଶ ହେବାର ପରିବେଶ ସୃଷ୍ଟି ହୋଇଛି । ଏସବୁ ମାନବବାଦୀ ଜୀବନଦର୍ଶନରୁ ଉଦ୍ଭବ ହୋଇଛି ।

ହେତୁବାଦ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦର ଏକ ସମନ୍ୱିତ ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ମୁକ୍ତ ମନ, ବୈଜ୍ଞାନିକ ପ୍ରଣାଳୀର ସାର୍ବଜନୀନତା, ବିଚାରଶୀଳତାର ପ୍ରାଧାନ୍ୟ ଓ ସତ୍ୟ ପ୍ରତି ପ୍ରତିବଦ୍ଧତାକୁ ହିଁ ବୁଝାଇଥାଏ । ମାନବବାଦ ସେହିପରି ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ, ମର୍ଯ୍ୟାଦା, ମାନବିକ ଅଧିକାରକୁ ଗୁରୁତ୍ୱ ଦେଇଥାଏ । ଯେକୌଣସି ପ୍ରକାରର ଭେଦଭାବ, ଶୋଷଣ ଓ ବୈଷମ୍ୟ ମାନବବାଦର ପରିପନ୍ଥୀ । ଏତଦ୍‌ବ୍ୟତୀତ ହେତୁବାଦର ଆଉ ଦୁଇଟି ଗୁରୁତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ମଧ୍ୟ ରହିଛି । ହେତୁବାଦରେ ବିଶ୍ୱାସ କରାଯାଏ ଯେ ମଣିଷ ହିଁ ସଂଘବଦ୍ଧ ଉଦ୍ୟମରେ ଜୀବନର ଗୁଣାତ୍ମକ ମୂଲ୍ୟ ବୃଦ୍ଧି କରିପାରିବ । ସଭ୍ୟତାରେ ଯାହା କିଛି ସମ୍ଭବ ହୋଇଛି ତାହା ମଣିଷର ପ୍ରୟାସ ଓ ବୌଦ୍ଧିକ ଅନୁସନ୍ଧିତ୍ସା ଯୋଗୁ ସମ୍ଭବ ହୋଇଛି । ଗୋଟିଏ ଆଦିମ ସ୍ତରରୁ କ୍ରମୋନ୍ନତି ଦେଇ ଆଜିର ସ୍ଥିତିକୁ ଆସିବା ପଶ୍ଚାତରେ ମଣିଷର ଉଦ୍ୟମ ହିଁ ରହିଛି । କୌଣସି ବିକାଶ, ସମୃଦ୍ଧି କେଉଁ ଦେବତାର ଆଶୀର୍ବାଦରୁ ସମ୍ଭବ ହୋଇ ନାହିଁ ବା ଆକାଶରୁ ଖସି ନାହିଁ । ସଭ୍ୟତା ଧୀର ମନ୍ଥର ଗତିରେ ଆଗକୁ ଯାଇଛି ଓ ବିଜ୍ଞାନର ଯୁଗ ଆରମ୍ଭ ପରଠାରୁ ବିକାଶର ଅଗ୍ରଗତି ତ୍ୱରାନ୍ୱିତ ହୋଇଛି । ଦ୍ୱିତୀୟରେ ହେତୁବାଦରେ ଏହି ଜୀବନକୁ ଗୁରୁତ୍ୱ ଦିଆଯାଏ । ଧର୍ମମାନଙ୍କର ବିଶ୍ୱାସ ସ୍ୱର୍ଗ, ନରକ, ମୁକ୍ତି, ମୋକ୍ଷ, ଈଶ୍ୱରପ୍ରାପ୍ତି, ନିର୍ବାଣ କେବଳ ଗୁଡିଏ କାଳ୍ପନିକ ଅନୁମାନ । ହେତୁବାଦୀମାନେ ଧର୍ମମାନଙ୍କର ଏହି କାଳ୍ପନିକ କଥାରେ ଆସ୍ଥା ପୋଷଣ କରନ୍ତି ନାହିଁ। ଜୀବନକୁ ପ୍ରୀତିପଦ, ସୁଖକର କରିବାକୁ ସେମାନେ ମାନବିକ ପ୍ରୟାସ ଉପରେ ପ୍ରାଧାନ୍ୟ ଦିଅନ୍ତି । ସ୍ନେହ, ପ୍ରୀତି, ଭାତୃତ୍ୱଭାବ, ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ସେମାନେ ସୁଖକର ଓ ପ୍ରୀତିପୂର୍ଣ୍ଣ ଜୀବନ ପାଇଁ ଅପରିହାର୍ଯ୍ୟ ମନେକରନ୍ତି । ନୈତିକ ଆଚରଣ ଏକ ସାମାଜିକ କର୍ତ୍ତବ୍ୟ। ମଣିଷ ସମାଜରେ ବିଚାରଶୀଳ ଓ ବିବେକବୋଧର ଅନ୍ତର୍ଦୃଷ୍ଟିରୁ ନୈତିକତାର ଭାବନା ବିକଶିତ ହୋଇଛି । "ଆମ ପ୍ରତି ଯେଉଁ ଆଚରଣ ଆମକୁ ଆଘାତ ଦେଇଥାଏ ସେହି ଆଚରଣ ଅନ୍ୟ ପ୍ରତି ପ୍ରଦର୍ଶନ ନକରିବା ହିଁ ଆମର କର୍ତ୍ତବ୍ୟ"-ହେତୁବାଦୀ ନୈତିକତାର ଏହା ହିଁ ସାରମର୍ମ ।

ବ୍ୟକ୍ତି ମରଣଶୀଳ, କିନ୍ତୁ ସମାଜ ବା ମଣିଷ ଜାତି ସବୁଦିନ ପାଇଁ ରହିବା ହେତୁବାଦର ଆଦର୍ଶ । ତେବେ ମଣିଷ ସମାଜ କିପରି ଉନ୍ନତରୁ ଉନ୍ନତତର ସ୍ଥିତିକୁ

ଯିବ ତଥା ସାମାଜିକ ଜୀବନ ଅଧିକ ପ୍ରୀତିପଦ ଓ ଭାତୃତ୍ୱପୂର୍ଣ୍ଣ ହେବ ଏହା ହିଁ ହେତୁବାଦର କାମ୍ୟ । ଆଧୁନିକ ଜ୍ଞାନକୌଶଳ, ବିଜ୍ଞାନ ଓ ପ୍ରଯୁକ୍ତି ଜୀବନର ଭୌତିକ ମାନକୁ ଅଧିକରୁ ଅଧିକ ସୁଖପ୍ରଦ କରିପାରିବ । ବିଜ୍ଞାନର ଅପପ୍ରୟୋଗ ନହୋଇ ଯଦି ଏହାର ଉତ୍ତମ ଓ ସୃଜନାତ୍ମକ ପ୍ରୟୋଗ ହୁଏ ତେବେ ପୃଥିବୀରୁ ଅନେକ ଦୁଃଖ, ରୋଗ, ଯନ୍ତ୍ରଣା ଦୂର ହୋଇ ପାରିବ । ସେହିପରି ମାନବବାଦର ପ୍ରସାର ଦ୍ୱାରା ଆମ ସଂସାର ଅଧିକ ପ୍ରୀତିପଦ, ଭାତୃତ୍ୱପୂର୍ଣ୍ଣ ହୋଇପାରିବ । ଆମ ସଂସାରରେ ଯେତେ ଦୁଃଖ ଦୁର୍ଦ୍ଦଶା ରହିଛି ତାହା ଯେତେ ପ୍ରାକୃତିକ ନୁହେଁ ତାଠାରୁ ଅଧିକ ମାନବକୃତ । ମଣିଷ ଯୋଗୁ ମଣିଷର ଦୁଃଖ ଅପରିମିତ । ଯଦି ନ୍ୟାୟବୋଧ, ସମତାଭାବ ଓ ସମ୍ବେଦନଶୀଳ ଦୃଷ୍ଟିର ପ୍ରସାର କରାଯାଇ ପ୍ରତ୍ୟେକ ବ୍ୟକ୍ତିକୁ ହେତୁବାଦୀ ଜୀବନଦର୍ଶନରେ ପ୍ରଶିକ୍ଷିତ କରାଯାଇ ପାରିବ, ତେବେ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ସମ୍ଭବ ହେବ । ବ୍ୟକ୍ତିଠାରୁ ସମଷ୍ଟି ପର୍ଯ୍ୟନ୍ତ ଜୀବନର ଭୌତିକ ଓ ନୈତିକ ମାନରେ ଗୁଣାତ୍ମକ ବିକାଶ ଘଟାଇବା ହେତୁବାଦର ମୌଳିକ ଆଭିମୁଖ୍ୟ ।



# ହେତୁବାଦ ଓ ଓଡିଶାରେ ହେତୁବାଦୀ ଆନ୍ଦୋଳନ

ଶଂସିତ ପ୍ରବନ୍ଧଟିରେ ପ୍ରଥମେ ହେତୁବାଦର ଆଲୋଚନା ସହ ଓଡିଶାରେ ହେତୁବାଦୀ ଆନ୍ଦୋଳନ ସଂପର୍କରେ ସଂକ୍ଷିପ୍ତ ସୂଚନା ଦିଆଯାଇଛି। ପ୍ରସଙ୍ଗ ଗୁଡିକ ବ୍ୟାପକ ଓ ଏହାର ସମସ୍ତ ଦିଗକୁ ସ୍ପର୍ଶ କରିବା ସମ୍ଭବ ନୁହେଁ। ପ୍ରବନ୍ଧର ସୀମିତ କଳେବର ଭିତରେ ପ୍ରତ୍ୟେକ ବଷୟରେ ସାମାନ୍ୟ ଆଲୋଚନା କରିବା ଆମର ଲକ୍ଷ୍ୟ।

ହେତୁବାଦ କହିଲେ କ'ଣ ବୁଝାଏ ? ସାଧାରଣ ଭାବେ କହିଲେ ବିଚାରଶୀଳତା ଓ ମହତ୍ତର ଜୀବନବୋଧର ଏକ ସମନ୍ୱିତ ପରିପ୍ରକାଶ ହିଁ ହେତୁବାଦ। ଏହି ଦୃଷ୍ଟିରୁ ଦେଖିଲେ ହେତୁବାଦ ଏକ ଜୀବନଧାରା ଓ ଏକ ଜୀବନଦର୍ଶନ। ସାମାଜିକ ବିକାଶଧାରାକୁ ଅନୁଶୀଳନ କଲେ ଜଣାଯାଏ ଯେ ମଣିଷ ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଓ କ୍ରମବିକାଶ ଦେଇ ଆଜିର ସ୍ଥିତିକୁ ଆସିଛି। ଆଦିମ ଗୋଷ୍ଠୀ ଜୀବନରୁ ଗ୍ରାମୀଣ ଜୀବନ, କ୍ଷୁଦ୍ର ରାଜ୍ୟ ଓ ରାଷ୍ଟ୍ରୀୟ ଭାବନାର କ୍ରମବିକାଶ ଘଟିଛି। କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ଆଜିର ଅନ୍ତରାଷ୍ଟ୍ରୀୟ ଜୀବନଦୃଷ୍ଟିର ବିକାଶ ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି। ସାମାଜିକ ଓ ରାଜନୈତିକ ସଂଗଠନର ବିକାଶ ଓ ଜୀବନଧାରାର କ୍ରମ ଉତ୍ତରଣ ଆମର ବୌଦ୍ଧିକ ଅନୁସନ୍ଧିତ୍ସା ଓ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ପାଇଁ ପ୍ରୟାସରୁ ସମ୍ଭବ ହୋଇଛି। ସମାଜର ବିକାଶ ପ୍ରକ୍ରିୟା, ଗୁଣାତ୍ମକ ଜୀବନ ନେଇ ସଚେତନତା ଓ ମାନବ ସମୁଦାୟର କଲ୍ୟାଣ ସାଧନ ପାଇଁ ପ୍ରୟାସ ପଶ୍ଚାତରେ ରହିଛି ମଣିଷର ବିଚାରଶୀଳ ଦୃଷ୍ଟି ଓ ମାନବିକ ସଂପୃକ୍ତି। ବିଭିନ୍ନ ସଭ୍ୟତାର କ୍ରମବିକାଶ ଓ ଚେତନାର ସଂପ୍ରସାରଣ ପଶ୍ଚାତରେ ମଣିଷର ଚିନ୍ତା, ବିଚାରବୋଧ, ବୌଦ୍ଧିକ ଅନୁସନ୍ଧିତ୍ସା ଜନିତ ହେତୁବାଦୀ ପ୍ରଜ୍ଞା ଯେ ରହିଛି ଏହା,

ନିଃସନ୍ଦେହ ମନେହୁଏ। ମୁକ୍ତମନ, ସ୍ୱାଧୀନଚିନ୍ତାର ବିକାଶ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ଜ୍ଞାନ ବିଜ୍ଞାନର ସଂପ୍ରସାରଣ ତଥା ନୂଆ ନୂଆ ପ୍ରଯୁକ୍ତିର ଉଦ୍‌ଭାବନରେ ସହାୟକ ହୋଇଛି। ସେହିପରି ମାନବବାଦୀ ଜୀବନଦୃଷ୍ଟିରୁ ସମତା, ସାମାଜିକ ନ୍ୟାୟ, ମାନବିକ ଅଧିକାର, ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥା, ଧର୍ମନିରପେକ୍ଷ ମୂଲ୍ୟବୋଧ ଓ ବ୍ୟକ୍ତିମର୍ଯ୍ୟାଦାବୋଧ ପରି ମୂଲ୍ୟଚୟର ବିକାଶ ହୋଇଛି। ବସ୍ତୁତଃ ବିଚାରଶୀଳତା ଓ ମାନବିକତା ହେଉଛି ହେତୁବାଦର ଏକ ସାର୍ବଜନୀନ ଅଭିବ୍ୟକ୍ତି।

ବିଚାରଶୀଳତା ସହିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଟି ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ। ବିଜ୍ଞାନର ବିକାଶ ସହିତ ବୈଜ୍ଞାନିକ ବିଚାରବୋଧର ବିକାଶ ଓତପ୍ରୋତ ଭାବେ ଜଡିତ। ମଣିଷ ସଭ୍ୟତାର ଇତିହାସ ବହୁ ପ୍ରାଚୀନ ହେଲେ ମଧ ବୈଜ୍ଞାନିକ ଅନୁଶୀଳନର ଯୁଗ ସପ୍ତଦଶ ଶତାବ୍ଦୀରୁ ହିଁ ଆରମ୍ଭ ହୁଏ। ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ଯୋଗୁ ୟୁରୋପରେ ଯେଉଁ ସାଂସ୍କୃତିକ ଆଲୋଡନଟି ଆସିଥିଲା ତାହାର ପରିଣାମରୁ ବିଜ୍ଞାନର ଯୁଗଟି ଆରମ୍ଭ ହୋଇଥିଲା। ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ। ଧାର୍ମିକ ବିଶ୍ୱାସ, ଜଗଦ୍‌ଦୃଷ୍ଟି ସହିତ ବୈଜ୍ଞାନିକ ସତ୍ୟର ଦ୍ୱନ୍ଦ୍ୱରୁ ଅନେକ ବୈଜ୍ଞାନିକଙ୍କୁ ନାନା ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡିଛି। ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ, ପରୀକ୍ଷାସାପେକ୍ଷ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ ହୋଇଥିବାରୁ ବିଜ୍ଞାନର ଅଗ୍ରଗତିକୁ ଧର୍ମ ପ୍ରତିରୋଧ କରିପାରି ନାହିଁ। ଏହି ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ ବିଜ୍ଞାନର ଏକ ସ୍ୱତଃସିଦ୍ଧ ବିଶ୍ୱାସ ହେଉଛି ଯେ ପ୍ରକୃତିରେ ଥିବା ସମସ୍ତ ବସ୍ତୁ ବା ପ୍ରକୃତିରେ ଘଟୁଥିବା ସମସ୍ତ ଘଟଣା ପାଷାତରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି। ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଈଶ୍ୱରୀୟ, ଦୈବୀ ବା ଅଧିଦୈବିକ କାରଣ ନାହିଁ। ସେହିପରି ପ୍ରକୃତିରେ ରହିଥିବା ନିୟମ, ଶୃଂଙ୍ଖଳା ବା ଏକରୂପତାକୁ ପଯ୍ୟବେକ୍ଷଣ - ପରୀକ୍ଷଣ ସାହାଯ୍ୟରେ ଅନୁଶୀଳନ କରାଯାଇ ପାରିବ । ପର୍ଯ୍ୟବେକ୍ଷଣ-ପରୀକ୍ଷଣ ହିଁ ବସ୍ତୁନିଷ୍ଠ ଜ୍ଞାନର ମୂଳ ଆଧାର। ସକଳ ବୈଜ୍ଞାନିକ ଜ୍ଞାନର ଉତ୍ସ ହେଉଛି ବୈଜ୍ଞାନିକ ପ୍ରକୃତିବାଦ ଓ ବୈଜ୍ଞାନିକ ପ୍ରଣାଳୀ । ବୈଜ୍ଞାନିକ ପ୍ରକୃତିବାଦ ଓ ବୈଜ୍ଞାନିକ ପ୍ରଣାଳୀର ପ୍ରୟୋଗରୁ ବିଜ୍ଞାନର ଦିଗନ୍ତ ବିସ୍ତାରଲାଭ କରିଥିବା ମନେହୁଏ । ଏହି ପରିପ୍ରେକ୍ଷୀରେ ଏହା କୁହାଯାଇପାରେ ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ବିଜ୍ଞାନର ଏହି ସିଦ୍ଧାନ୍ତକୁ ସ୍ୱୀକାର କରେ । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି

ବିଜ୍ଞାନର ଛାତ୍ର ହେବା ଅବଶ୍ୟମ୍ଭାବୀ ନୁହେଁ କିମ୍ବା ପ୍ରତ୍ୟେକ ବିଜ୍ଞାନର ଛାତ୍ର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ନାହିଁ । ବରଂ ଯେଉଁମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ସେମାନେ ହେତୁବାଦୀ ହୋଇଥାନ୍ତି ।

ଆମର ଭାବନା ଯୁକ୍ତିସଂଗତ ଓ ତର୍କସମ୍ମତ ହେବା ଆବଶ୍ୟକ, ତେବେ ଯୁକ୍ତି ବା ତର୍କ କେବଳ ଏକ ସାଧନ । ଯୁକ୍ତି ବା ତର୍କକୁ ଏକ ଉତ୍ତମ ଲକ୍ଷ୍ୟ ଦିଗରେ ବିନିଯୋଗ କରାଯାଇପାରେ କିମ୍ବା ଏକ ମନ୍ଦ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇପାରେ । ଏହି ସାଦୃଶ୍ୟରେ ଏହା କୁହାଯାଇପାରେ ଯେ ବିଜ୍ଞାନ ମାନବ ସମାଜର କଲ୍ୟାଣ ଦିଗରେ ପ୍ରୟୋଗ ହୋଇପାରେ କିମ୍ବା ଏହା ସଭ୍ୟତାର ଧ୍ୱଂସ ଦିଗରେ ବି ପ୍ରୟୋଗ ହୋଇପାରେ । ଏଣୁ ଏଠାରେ ନୈତିକତାର ପ୍ରଶ୍ନ ଆସେ । ସୁତରାଂ ହେତୁବାଦ ମାନବବାଦର ପ୍ରସଙ୍ଗ ଆଣେ । ମଣିଷର ସୁଖ,ଶାନ୍ତି, ଭାତୃତ୍ୱଭାବ, ସହନଶୀଳତା ଓ କଲ୍ୟାଣ ହିଁ ମାନବବାଦୀ ଦୃଷ୍ଟିଭଙ୍ଗୀ ସହ ସଂଶ୍ଳିଷ୍ଟ । ଜୀବନର ନୈତିକ ଉତ୍ତରଣ କ୍ଷେତ୍ରରେ ମାନବବାଦୀ ଦୃଷ୍ଟିଭଙ୍ଗୀ ମହତ୍ତ୍ୱପୂର୍ଣ୍ଣ ହୋଇଥାଏ ।

ହେତୁବାଦୀ ଜୀବନଦର୍ଶନ କାଳ୍ପନିକ ସ୍ୱର୍ଗ, ନରକ, ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱରପ୍ରାପ୍ତି ଇତ୍ୟାଦି ପାରଲୌକିକ ସ୍ଥିତିରେ ଆସ୍ଥା ପୋଷଣ କରେ ନାହିଁ । ଏଗୁଡିକ ଧର୍ମ ଜନିତ ବିଶ୍ୱାସ । ପୁନଶ୍ଚ ଏହି ବିଶ୍ୱାସ ଭିନ୍ନ ଭିନ୍ନ ଧର୍ମରେ ପରସ୍ପରଠାରୁ ପୃଥକ୍ । ଆତ୍ମାର ଅମରତ୍ୱ, ପୁନର୍ଜନ୍ମ, ସ୍ୱର୍ଗପ୍ରାପ୍ତି, ଆତ୍ମାର ସ୍ୱରୂପ ଇତ୍ୟାଦି ପ୍ରସଙ୍ଗ ଗୁଡିକ ସଂପୂର୍ଣ୍ଣ କାଳ୍ପନିକ ହୋଇଥିବାରୁ ବିଭିନ୍ନ ଧର୍ମରେ ଏଗୁଡିକ ବିଷୟରେ ପୃଥକ୍ ପୃଥକ୍ କଳ୍ପନା ବ୍ୟକ୍ତ ହୋଇଛି । ଏସବୁ ବିଶ୍ୱାସ ପଶ୍ଚାତରେ କୌଣସି ବସ୍ତୁନିଷ୍ଠ ବା ଯୁକ୍ତିନିଷ୍ଠ କାରଣ ନଥିବାରୁ ହେତୁବାଦ ଏ ସବୁକୁ ସ୍ୱୀକାର କରେ ନାହିଁ । ପୁନଶ୍ଚ ହେତୁବାଦ ସ୍ୱୀକାର କରେ ଯେ କୌଣସି ବିକାଶ, ପ୍ରଗତି ବା ଉନ୍ନତି ଦୈବୀ ଆଶୀର୍ବାଦରୁ ହୋଇ ନାହିଁ କିମ୍ବା ଆକାଶରୁ ଖସି ନାହିଁ । ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ସେସବୁ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ଯେଉଁ ରାଷ୍ଟ୍ରମାନେ ଉନ୍ନତ ହୋଇଛନ୍ତି ଓ ଯେଉଁ ଦେଶମାନଙ୍କରେ ଜୀବନର ଭୌତିକମାନ ଉନ୍ନତ ଓ ରୁଚିପୂର୍ଣ୍ଣ ହୋଇଛି ସେସବୁ ଦେବତାର ବା ଈଶ୍ୱରୀୟ ଆଶୀର୍ବାଦରୁ ସମ୍ଭବ ହୋଇନାହିଁ ଓ ଯେଉଁ ଦେଶମାନେ ଅନଗ୍ରସର ରହିଛନ୍ତି (ଭାରତ ପରି ତୃତୀୟ ବିଶ୍ୱର ରାଷ୍ଟ୍ରମାନେ) ସେମାନଙ୍କୁ ଈଶ୍ୱରଙ୍କର ଅଭିଶାପ ମିଳିନାହିଁ । ରାଷ୍ଟ୍ରର ବିକାଶ, ଭୌତିକ ଅଗ୍ରଗତି, ଜୀବନର ଗୁଣାତ୍ମକ ମାନ ଓ ନୀତିପୂର୍ଣ୍ଣ ସାମାଜିକ ସଂପର୍କ ମଣିଷର ଉଦ୍ୟମରେ ସମ୍ଭବ ହୋଇଛି । ସେହିପରି

ନୀତି, ନୈତିକତା, ଉନ୍ନତ ସାମାଜିକ ଜୀବନ, ନାଗରିକ କର୍ତ୍ତବ୍ୟବୋଧ, ମାନବିକ ସମ୍ବେଦନଶୀଳତା, ସାଧୁତା, ସତ୍ୟବାଦିତା ପରି ମୂଲ୍ୟଚୟର ଧର୍ମ ବା ଈଶ୍ୱର ଉପାସନା ସହ ସଂପର୍କ ନାହିଁ । ଗୋଟିଏ ଯୁଗରେ ଓ ବିଶେଷକରି ଧର୍ମର ଗଭୀର ପ୍ରଭାବ ରହିଥିବାବେଳେ ସମାଜରେ ଏହି ବିଶ୍ୱାସ ବ୍ୟାପ୍ତ ଥିଲା ଯେ ଈଶ୍ୱରଙ୍କଠାରେ ବିମଳ ବିଶ୍ୱାସ ଦ୍ୱାରା ବ୍ୟକ୍ତି ନୀତିବାନ ହୁଏ; ଅର୍ଥାତ୍ ଈଶ୍ୱରଙ୍କଠାରେ ବିଶ୍ୱାସ ନୈତିକତାର ପ୍ରଧାନ ଅବଲମ୍ବନ । ନୈତିକତା ଓ ଈଶ୍ୱର ବିଶ୍ୱାସ ଭିତରେ ହୁଏତ ଏକ ମନସ୍ତାତ୍ତ୍ୱିକ ସଂପର୍କ ଥାଇପାରେ, କିନ୍ତୁ ଏହି ଦୁଇ ଭାବନା ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ନୈତିକତା ଏବଂ ଈଶ୍ୱର ବୈଚାରିକ ମାନଦଣ୍ଡରୁ ଦୁଇଟି ପୃଥକ୍ ଭାବନା । ଜୀବନର ଅନୁଭୂତି, ଉତ୍ତମ ଜୀବନ ନେଇ ବିଚାରବୋଧ ଓ ସୁଖ-ଶାନ୍ତି ବିଷୟରେ ଅନୁଶୀଳନରୁ ମଣିଷ ନୀତି, ନୈତିକତାକୁ ସଭ୍ୟ ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେ କରେ । ମଣିଷର ନୈତିକ ବିଚାର ଗୁଡିକ ଜୀବନର ଘଟଣା ପ୍ରବାହ ଓ ସାମାଜିକ ସ୍ଥିତି ନେଇ ପରିବର୍ତ୍ତିତ ହେଉଥାଏ । ସାମାଜିକ ସ୍ଥିରତା, ସୁଖ-ଶାନ୍ତି, ସଂପ୍ରୀତି, ଭାତୃତ୍ୱଭାବ ଓ ମାନବିକ ସମ୍ବେଦନଶୀଳତା ପୃଷ୍ଠଭୂମିରେ ନୈତିକତା ମହତ୍ତ୍ୱପୂର୍ଣ୍ଣ, ଏହା ସହ ଧର୍ମ, ଈଶ୍ୱର ବିଶ୍ୱାସର ସମ୍ପର୍କ ହିଁ ନାହିଁ ।

ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟଭଙ୍ଗୀରେ ଗୁରୁତ୍ୱରୁ ଏହା ଭବିବା ଯଥାର୍ଥ ନୁହେଁ ଯେ ହେତୁବାଦ କଳା, ସାହିତ୍ୟ ପରି ସୃଜନଶୀଳ କ୍ଷେତ୍ରକୁ କୌଣସି ପ୍ରାଧାନ୍ୟ ଦିଏ ନାହିଁ । ଜୀବନରେ ଅନ୍ତର୍ବୋଧ ଓ ସୃଜନଶୀଳ ଅଭିବ୍ୟକ୍ତିର ବହୁ ପ୍ରାଧାନ୍ୟ ମଧ ରହିଛି । ମହତ୍ତର ଜୀବନବୋଧ ପାଇଁ ସୃଜନଶୀଳ ଆବେଗର ପ୍ରେରଣାକୁ କେହି ଅସ୍ୱୀକାର କରିବେ ନାହିଁ । ବରଂ ଜନଜୀବନର ଗୁଣାତ୍ମକ ବିକାଶରେ କେଉଁ ସୃଜନଶୀଳ ଆବେଗର ମହତ୍ତ୍ୱ ରହିଛି ତାହା ବିଚାରଶୀଳ ଭାବେ ନିର୍ଣ୍ଣୟ କରାଯାଇପାରିବ। ଧାର୍ମିକ ଆବେଗ ଦ୍ୱାରା ପରିଚାଳିତ ହୋଇ ସୁସ୍ଥ ମଣିଷର ସେବା ପାଇଁ ଜଣେ ନିଜ ଜୀବନକୁ ଉତ୍ସର୍ଗ କରିପାରେ, ପୁନଶ୍ଚ ଅନ୍ୟ ଜଣେ ସେହି ଧାର୍ମିକ ଆବେଗଦ୍ୱାରା ଅଭିପ୍ରେରିତ ହୋଇ ସାଂପ୍ରଦାୟିକ ହିଂସାଜନିତ ନାନା ନାରକୀୟ କାର୍ଯ୍ୟ କରିପାରେ। କେଉଁ ଆବେଗ ମଣିଷକୁ ଅଧିକ ସମ୍ବେଦନଶୀଳ କରାଏ ବା ଅଧିକ ପ୍ରତିହିଂସା ପରାୟଣ କରାଏ, ତାହାର ମାନଦଣ୍ଡ ଏକ ବିଚାରଶୀଳ ଦୃଷ୍ଟିରୁ ହିଁ ଆସିଥାଏ । ସୁତରାଂ ସୃଜନଶୀଳ ଆବେଗ, କଳାତ୍ମକ ଅଭିବ୍ୟକ୍ତି ବିଚାରଶୀଳତାର ପରିପନ୍ଥୀ ନୁହେଁ, ବରଂ ବିଚାରଶୀଳତା ଆଧାରରେ ତାହା ଅଧିକ ଜୀବନଧର୍ମୀ, ମାନବିକ ଓ ସମ୍ବେଦନଶୀଳ ହୋଇଥାଏ ।

ସବୁ ଯୁଗରେ ଓ ସବୁ ସଭ୍ୟତାରେ ହେତୁବାଦୀମାନେ ପ୍ରଜ୍ଞାଦୀପ୍ତ ବ୍ୟକ୍ତି ଓ ମୁଖ୍ୟତଃ ସମାଜ ସଂସ୍କାରକ । ସେହିମାନେ ହିଁ ଗଭୀର ନ୍ୟାୟବୋଧ ଓ ମାନବିକ ମହତ୍ତ୍ୱକୁ ଅନୁଭବ କରି ସାମାଜିକ କୁସଂସ୍କାରକୁ ବିରୋଧ କରିଥାନ୍ତି । ରକ୍ଷଣଶୀଳତା, ରୂଢ଼ିବାଦ, ଧର୍ମାନ୍ଧତା ଓ ଆଧାରହୀନ ବିଶ୍ୱାସର ବିଲୋପ ପାଇଁ ହେତୁବାଦୀ ମାନେ ସର୍ବଦା ସ୍ୱର ଉତ୍ତୋଳନ କରିଥାନ୍ତି । ସବୁ ସମାଜରେ କିଛି ନା କିଛି କୁସଂସ୍କାର ରହିଛି । ତେବେ ଏପରି କେତେକ କୁସଂସ୍କାର କେତେକ ସମାଜରେ ରହିଛି ଯାହା ଜ୍ଞାନବିଜ୍ଞାନର ପରିପନ୍ଥୀ ଓ ମାନବିକତା-ବିରୋଧୀ । ସାଧାରଣ ଭାବେ କହିଲେ କୁସଂସ୍କାର "ଆଧିଦୈବିକ ଶକ୍ତିରେ ପୂର୍ଣ୍ଣ ବିଶ୍ୱାସ, ଅଜ୍ଞେୟ ଶକ୍ତି ପାଇଁ ଅହେତୁକ ଭୟ, ଭୟଜନିତ କେତେକ ଅର୍ଥହୀନ କର୍ମକାଣ୍ଡ, କେତେକ ଆଧାରହୀନ ବିଶ୍ୱାସ ଓ ଅଜ୍ଞତାବଶତଃ ଗ୍ରହଣ କରୁଥିବା କେତେକ ଅବୈଜ୍ଞାନିକ ବ୍ୟାଖ୍ୟାକୁ" ବୁଝାଇଥାଏ । କୁସଂସ୍କାରର ଭିତ୍ତି ଭୟ, ଅର୍ଥହୀନ ବିଶ୍ୱାସ, ଅହେତୁକ ମନୋଭାବ ଓ ଚିନ୍ତାଶୂନ୍ୟତା ଉପରେ ହିଁ ରୂପ ନେଇଥାଏ । କୁସଂସ୍କାର ସମାଜର ସାଧାରଣ ବ୍ୟକ୍ତିଠାରୁ ସମାଜର ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପାଖରେ ନାନା ଭାବରେ ରହିପାରେ । କୁସଂସ୍କାରର ପରିସରର ବ୍ୟାପକତା ଦୃଷ୍ଟିରୁ ସେଗୁଡିକୁ ଧର୍ମଗତ, ପରଂପରାଗତ, ବୃତ୍ତିଗତ ଓ ବ୍ୟକ୍ତିଗତ ଭାବରେ ଶ୍ରେଣୀ ବିଭାଜନ କରାଯାଇପାରେ । ହେତୁବାଦୀମାନେ ହିଁ କୁସଂସ୍କାର ବିରୋଧୀ ଓ ସମାଜରୁ କୁସଂସ୍କାର ବିଲୋପ ପାଇଁ ସ୍ୱର ଉତ୍ତୋଳନକାରୀ । ପ୍ରତ୍ୟେକ ହେତୁବାଦୀ ଏହି ଦୃଷ୍ଟିରୁ ଜଣେ ସମାଜ ସଂସ୍କାରକ ତେବେ ପ୍ରତ୍ୟେକ ସମାଜ ସଂସ୍କାରକ ହେତୁବାଦୀ ହୋଇନପାରନ୍ତି । ହେତୁବାଦର ମୌଳିକ ସିଦ୍ଧାନ୍ତ ଉପରେ ଆସ୍ଥା ସ୍ଥାପନକରି ସଂସ୍କାରର ବାର୍ତ୍ତାକୁ ଆଗକୁ ନେଉଥିବା ବ୍ୟକ୍ତିମାନେ ହିଁ ହେତୁବାଦୀ ।

ହେତୁବାଦ ଉପରେ ଏହି ସଂକ୍ଷିପ୍ତ ଆଲୋଚନା ପରେ ଓଡିଶାରେ ହେତୁବାଦୀ ଆନ୍ଦୋଳନ ସଂପର୍କରେ ଆମେ ସଂକ୍ଷିପ୍ତ ଆଲୋଚନା କରିବା । ହେତୁବାଦର ସୈଦ୍ଧାନ୍ତିକ ତାତ୍ପର୍ଯ୍ୟକୁ ବୁଝିବାପରେ ହେତୁବାଦୀ ସଂଗଠନର ଆଭିମୁଖ୍ୟକୁ ବୁଝିବା ସହଜସାଧ ହୋଇଥାଏ ।

ଯେଉଁମାନେ ଅସ୍ପୃଶ୍ୟତା, ଉଗ୍ର ଜାତିଆଣ ମାନସିକତା ଓ ସାମାଜିକ ଭେଦଭାବ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ ସେମାନେ ପ୍ରାୟତଃ ସଂସ୍କାରିତ ଚେତନାର ବ୍ୟକ୍ତି ଓ ସେହି ଦୃଷ୍ଟିରୁ ହେତୁବାଦୀ ଭାବଧାରାର ସମର୍ଥକ । ସେହିପରି ଯେଉଁମାନେ ଶାକ୍ତପୀଠ ମାନଙ୍କରେ ପଶୁବଳି ଭଳି କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି

ଆସିଛନ୍ତି ସେମାନେ ନିଶ୍ଚୟ ସମାଜ ସଂସ୍କାରରେ ବିଶ୍ୱାସୀ। ନାରୀ ମାନଙ୍କର ଶିକ୍ଷା, ମାନବିକ ମର୍ଯ୍ୟାଦା ଓ ଅଧିକାର ତଥା ସ୍ୱାଭିମାନ ପାଇଁ ଯେଉଁମାନେ କାର୍ଯ୍ୟ କରୁଛନ୍ତି ସେମାନେ ବି ସମାଜର ଏକ ସଂସ୍କାରିତ ବର୍ଗ। ଏହିପରି ଦେଖିଲେ ସମାଜରେ ଅନେକ ବ୍ୟକ୍ତି ବିଭିନ୍ନ ସ୍ତରରେ ଗୁଣାତ୍ମକ ଜୀବନ, ବୈଜ୍ଞାନିକ ମାନସିକତାର ବିକାଶ ଓ ମାନବିକ ଅଧିକାର ଦିଗରେ କାର୍ଯ୍ୟ କରୁଛନ୍ତି। ସେମାନେ ହେତୁବାଦୀ ହୁଅନ୍ତୁ ବା ନ ହୁଅନ୍ତୁ ସେମାନେ ଯେ ହେତୁବାଦର ବାର୍ତ୍ତାବହନକାରୀ ଏହା କୁହାଯାଇପାରେ।

ଏହି ପୃଷ୍ଠଭୂମିରେ ଦେଖିଲେ ସ୍ୱାଧୀନତା ପୂର୍ବରୁ ଓଡିଶାର ଜନଜୀବନରେ କିଛି କିଛି ସମାଜ ସଂସ୍କାରର ପରିବେଶ ସୃଷ୍ଟି ହୋଇଛି। ଏହି କ୍ଷେତ୍ରରେ କେତେକ ବ୍ୟକ୍ତିବିଶେଷ କାର୍ଯ୍ୟକରିବା ଓ ଏକ ସଂଗଠନ ଜରିଆରେ କାର୍ଯ୍ୟକରିବା ଭିତରେ ପାର୍ଥକ୍ୟ ରହିପାରେ। ଓଡିଶାରେ ସମାଜ ସଂସ୍କାର ଦିଗରେ କାର୍ଯ୍ୟ କରିଥିବା କେତେକ ବ୍ୟକ୍ତିବିଶେଷଙ୍କର ସଂକ୍ଷିପ୍ତ ସୂଚନା ଦେବା ସହ ଆମେ କେତେକ ସଂଗଠନ ବିଷୟରେ ମଧ୍ୟ ଏଠାରେ ସଂକ୍ଷିପ୍ତ ଅବତାରଣା କରିବା।

ଜଳନ୍ଧର ଦେବ (୧୮୭୨-୧୯୫୨) ଓ ମୋହିନୀ ମୋହନ ସେନାପତି (୧୮୮୧-୧୯୪୫) ଓଡିଶାର ଦୁଇଜଣ ସୃଜନଶୀଳ ଲେଖକ ଯେଉଁମାନଙ୍କ ରଚନାରେ ସମୀକ୍ଷାମୂଳକ ଚିନ୍ତନର (critical thinking) ଅନେକ ଉପାଦାନ ଦେଖିବାକୁ ମିଳେ। ଜଳନ୍ଧର ଦେବ ଏକ ରାଜ ପରିବାରରେ ଜନ୍ମଗ୍ରହଣ କରିଥିଲେ ଓ ତାଙ୍କର କୌଣସି ବିଶ୍ୱବିଦ୍ୟାଳୟ ଶିକ୍ଷା ବା ଡିଗ୍ରୀ ନଥିଲା। ତେବେ ତାଙ୍କର ବିଭିନ୍ନ ଲେଖାରେ ସମାଜ-ସଂସ୍କାରର ବାର୍ତ୍ତା ସୁସ୍ପଷ୍ଟ। ତାଙ୍କ ସମୟର କେତେକ ସାମାଜିକ କୁସଂସ୍କାର ଯଥା ବାଲ୍ୟବିବାହ, ଜାତିବାଦ ବିରୁଦ୍ଧରେ ସଚେତନତା ସୃଷ୍ଟି, ବିଧବା ବିବାହ ସପକ୍ଷରେ ମତପୋଷଣ କରିବା ସହ ବିଭିନ୍ନ ପୌରାଣିକ କାହାଣୀମାନଙ୍କର ଅବାସ୍ତବତା ବିଷୟରେ ସେ ମତ ବ୍ୟକ୍ତ କରିଥିଲେ। ହିନ୍ଦୁ ସମାଜରେ ରହିଥିବା ବ୍ରାହ୍ମଣବାଦୀ ଦୃଷ୍ଟିଭଙ୍ଗୀର ସେ ଥିଲେ ବଡ଼ ସମାଲୋଚକ। ମୋହିନୀ ମୋହନ ସେନାପତି ଥିଲେ ଦର୍ଶନ ଅଧ୍ୟାପକ। ଦର୍ଶନର ଅଧ୍ୟୟନରୁ ସେ ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ଓ ତର୍କଶୀଳ ବିଚାରର ପୃଷ୍ଠପୋଷକ ଥିଲେ। ତାଙ୍କର ଲିଖିତ ପୁସ୍ତକ "ବିବିଧ ପ୍ରସଙ୍ଗ" ପ୍ରବଂଧ ସଂକଳନରେ ସେ ମୁକ୍ତ-ଚିନ୍ତନର ଓ ବୈଜ୍ଞାନିକ ବିଚାରବୋଧର ବାର୍ତ୍ତା ଦେଇଛନ୍ତି। ସେ ବ୍ୟକ୍ତିଗତ ବିଚାରରେ ନିରୀଶ୍ୱରବାଦୀ ଥିଲେ ଓ ସମାଜର ବହୁ କୁସଂସ୍କାରକୁ ସମାଲୋଚନା କରୁଥିଲେ। ବୈରାଗୀ ମିଶ୍ର ବିଂଶ ଶତାବ୍ଦୀ ଆରମ୍ଭର ଥିଲେ ଜଣେ ସମାଜ ସଂସ୍କାରକ। ସେ ଏକ

କିରାଣୀ ଚାକିରୀରେ ରହିଥିଲେ ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ପ୍ରାପ୍ତ ହୋଇ ନଥିଲେ। ତେବେ ସେ ଭଗବତ୍ ଗୀତା ଉପରେ ଲେଖିଥିବା ଗ୍ରନ୍ଥ ଓ ଅନେକ ପ୍ରବଂଧରେ ଏକ ତର୍କଶୀଳ ଓ ମାନବବାଦୀ ଦୃଷ୍ଟିର ଅବତାରଣା କରିବା ଦେଖାଯାଏ। ପଣ୍ଡିତ ନୀଳକଣ୍ଠ ଦାସ (୧୮୮୪-୧୯୬୭) ଥିଲେ କବି, ପ୍ରାବଂଧିକ, ସମାଲୋଚକ ଓ ଓଡିଆ ସାହିତ୍ୟର ଜଣେ ଯଶସ୍ୱୀ ବ୍ୟକ୍ତି। ସାମାଜିକ ରକ୍ଷଣଶୀଳତା ଓ ରୂଢ଼ିବାଦ ବିରୁଦ୍ଧରେ ସ୍ୱର ଉଠାଇ ସେ ଲେଖା ମାଧ୍ୟମରେ ସମାଜ ସଂସ୍କାରର ବାର୍ତ୍ତା ପ୍ରସାର କରିଥିଲେ। ମାଳତୀ ଚୌଧୁରୀ(୧୯୦୪-୧୯୯୮) ଥିଲେ ଗାନ୍ଧୀବାଦୀ, ସ୍ୱାଧୀନତା ସଂଗ୍ରାମୀ ଓ ସାମାଜିକ ନ୍ୟାୟ ପାଇଁ ଏକ ସଂଗ୍ରାମୀ ବ୍ୟକ୍ତିତ୍ୱ। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଗାନ୍ଧୀବାଦୀ ମୂଲ୍ୟବୋଧର ପ୍ରସାର କ୍ଷେତ୍ରରେ ସେ ଥିଲେ ଏକ ଉତ୍ସର୍ଗୀକୃତ ମଣିଷ। ମନମୋହନ ମିଶ୍ର (୧୯୨୦-୨୦୦୦) ଥିଲେ ଜଣେ ବିପ୍ଲବୀ କବି, ମାର୍କ୍ସୀୟ ତତ୍ତ୍ୱବିତ୍ ଓ ଓଡିଶାରେ ବାମପନ୍ଥୀ ଆନ୍ଦୋଳନ ସହ ସଂପୃକ୍ତ ଜଣେ ସଂଗ୍ରାମୀ ପ୍ରତିଭା। ତାଙ୍କ କବିତାରେ ମାନବବାଦ, ମେହନତୀ ମଣିଷର ମୁକ୍ତି, ସାମାଜିକ ନ୍ୟାୟ ଓ ହେତୁବାଦର ସ୍ୱର ସ୍ପଷ୍ଟ। ଅନେକ ବାମପନ୍ଥୀ ବୁଦ୍ଧିଜୀବୀ, ପ୍ରଗତିଶୀଳ ଲେଖକଙ୍କ ବିଚାରଧାରାରେ ହେତୁବାଦୀ ଜୀବନ-ଦର୍ଶନର ପ୍ରତିଫଳନ ଦେଖିବାକୁ ମିଳେ। ପ୍ର. ରାଧାନାଥ ରଥ (୧୯୨୦-୨୦୧୪) ଜଣେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ମନୋବିଜ୍ଞାନୀ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ଅବସରପ୍ରାପ୍ତ ପ୍ରଫେସର । ସେ ବହୁ ପ୍ରବଂଧ, ପୁସ୍ତକ ଓ ମନୋବୈଜ୍ଞାନିକ ରଚନା ଜରିଆରେ ହେତୁବାଦ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବାର୍ତ୍ତା ସୁନ୍ଦର ଭାବେ ବ୍ୟକ୍ତ କରିଛନ୍ତି । ସାମାଜିକ ଗୁରୁତ୍ୱ ଥିବା ବହୁ ପ୍ରସଙ୍ଗ ଉପରେ, ସେ ଲେଖିଥିବା ପ୍ରବଂଧମାନଙ୍କରେ, ତାଙ୍କ ରଚିତ ବହୁ ଉପନ୍ୟାସର ଚରିତ୍ର ଭିତରେ ସେ ହେତୁବାଦର ବାର୍ତ୍ତା ବ୍ୟକ୍ତ କରିଛନ୍ତି । ଓଡିଶାରେ କିଛି ପ୍ରଗତିଶୀଳ ବୁଦ୍ଧିଜୀବୀ ରହିଥିଲେ ମଧ୍ୟ ହେତୁବାଦ, ବୁଦ୍ଧିବାଦ, ସମାଜସଂସ୍କାର, ମାନବବାଦ ପ୍ରସାର କ୍ଷେତ୍ରରେ ଏହିମାନେ ଅଧିକ ବିଚାର ସ୍ତରକୁ ଆସିଥାନ୍ତି ।

ସାଂଗଠନିକ ସ୍ତରରେ ଦେଖିଲେ ଗତ ଶତାବ୍ଦୀର ସତୁରୀ ଦଶକରେ ରାଉରକେଲାଠାରେ ଷ୍ଟିଲ ପ୍ଲାଣ୍ଟର କେତେକ କର୍ମଚାରୀ "ଓଡିଶା ରେସ୍‌ନାଲିଷ୍ଟ ଆସୋସିଏସନ" (ଓରେଆ) ନାମରେ ଏକ ସଂଗଠନ ପ୍ରତିଷ୍ଠା କରିଥିଲେ । ସେମାନେ ପ୍ରାୟତଃ କେରଳରୁ ଆସିଥିଲେ ଓ କେରଳରେ ହେତୁବାଦୀ ଆନ୍ଦୋଳନର ଏକ ପରଂପରା ରହିଥିଲା। ସେହି ପୃଷ୍ଠଭୂମିରେ କେରଳରୁ ଆସି ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ

ଚାକିରି କରିଥିବା ଏହି ହେତୁବାଦୀ ମାନେ 'ଓରେଆ' ଆନୁକୂଲ୍ୟରେ ସଭାସମିତି କରୁଥିଲେ, ମଝିରେ ମଝିରେ ଗୋଟିଏ ସ୍ମରଣିକା ପ୍ରକାଶ କରୁଥିଲେ ଓ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ହେତୁବାଦୀ "ଆବ୍ରାହମ କୋଭୁରଙ୍କୁ" ନିମନ୍ତ୍ରଣ କରି କାର୍ଯ୍ୟକ୍ରମ କରିଥିଲେ। ଆବ୍ରାହମ କୋଭୁର ୧୯୬୪ ରେ ଆହ୍ୱାନ ଦେଇଥିଲେ ଯେ ଯଦି କୌଣସି ବ୍ୟକ୍ତି ଏକ ଚମତ୍କାରିତା ଦେଖାଇ ପାରିବେ ତେବେ କୋଭୁର ତାଙ୍କୁ ଏକ ଲକ୍ଷ ଟଙ୍କା ଦେବେ। ଓରେଆର କାର୍ଯ୍ୟକ୍ରମ ରାଉରକେଲାରେ ସୀମିତ ଥିଲା ଓ ସେଥିରେ ସଂପୃକ୍ତ ଥିବା କର୍ମଚାରୀମାନେ ଅବସର ନେବା ବା ବଦଳି ହେବାଦ୍ୱାରା ସଂଗଠନଟି ଧୀରେ ଧୀରେ ନିଷ୍କ୍ରିୟ ହୋଇଥିବା ମନେହୁଏ। ସତୁରୀ-ଅଶୀ ଦଶକରେ ଏହି ଲେଖକର ଉଦ୍ୟମରେ "ଓଡିଶା ରେସନାଲିଷ୍ଟ ସୋସାଇଟି" ବା 'ଓଡିଶା ହେତୁବାଦୀ ସମାଜ' (ଓହେସ୍) ନାମରେ ଏକ ସଂଗଠନ ସୃଷ୍ଟି ହୋଇଥିଲା। ପ୍ରଥମ କରି ୧୯୮୩ ମସିହାରେ ଢେଙ୍କାନାଳ ଜିଲ୍ଲାର ଭୁବନଠାରେ ଏକ ରାଜ୍ୟସ୍ତରୀୟ ସମ୍ମିଳନୀ ମୋ ଉଦ୍ୟମରେ ହୋଇଥିଲା, ଯେଉଁଥିରେ ଓଡିଶାର ବିଭିନ୍ନ ସ୍ଥାନରୁ କିଛି ପ୍ରଗତିଶୀଳ ଲେଖକ, ବୁଦ୍ଧିଜୀବୀ ଯୋଗ ଦେଇଥିଲେ। ଏହାପରେ ମୁଁ ଫୁଲବାଣୀରେ ଅଧ୍ୟାପକ ଥିବା ବେଳେ ଫୁଲବାଣୀଠାରେ ଏକ ସକ୍ରିୟ ଗୋଷ୍ଠୀ ସାହାଯ୍ୟରେ ବିଭିନ୍ନ କାର୍ଯ୍ୟକ୍ରମ ହାତକୁ ନିଆଯାଇଥିଲା। ଓହେସର ମୌଳିକ ଆଭିମୁଖ୍ୟ ରହି ଆସିଛି:- (୧) ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ସାମାଜିକ ସମତା ଜନିତ ବିଚାରର ପ୍ରସାର (୨) ଓଡିଆ ଭାଷାରେ ପୁସ୍ତକ, ପତ୍ରିକା ପ୍ରକାଶ କରି ସାମାଜିକ ସ୍ତରରେ ହେତୁବାଦୀ ଜୀବନଦୃଷ୍ଟିର ପ୍ରସାର (୩) ସଭା, ସମିତି, କର୍ମଶାଳା ଜରିଆରେ ଜନସଚେତନତା କାର୍ଯ୍ୟକ୍ରମ ଆୟୋଜନ (୪) ସମାଜରୁ କୁସଂସ୍କାର, ଅହେତୁକ ବିଶ୍ୱାସ, ସାମାଜିକ ଭେଦଭାବ ଦୂରକରି ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ବାର୍ତ୍ତା ପ୍ରଚାର (୫) ତଥାକଥିତ ଚମତ୍କାରିତା, ଅଲୌକିକତା ଓ ଭୌତିକ କାଣ୍ଡର ଅନୁସନ୍ଧାନ କରି ସତ୍ୟର ପ୍ରତିଷ୍ଠା କରିବା। ଏହି ଦଶନ୍ଧି ଗୁଡିକ ଭିତରେ ଓହେସ ଏହି ଲକ୍ଷ୍ୟ ଦିଗରେ କାର୍ଯ୍ୟ କରି ଆସୁଛି ଓ ସମାଜର କିଛି ସଂସ୍କାର ପ୍ରୟାସୀ ବ୍ୟକ୍ତି ଏ କ୍ଷେତ୍ରରେ ଉତ୍ସର୍ଗୀକୃତ ଭାବେ କାର୍ଯ୍ୟକରୁଛନ୍ତି। ଓହେସର ବରିଷ୍ଠ ସଭ୍ୟ ଶ୍ରୀ ଦେବେନ୍ଦ୍ର ସୁତାର ଚର୍ଚ୍ଚା ପ୍ରକାଶନ ଗଠନ କରି କେତେକ ହେତୁବାଦୀ ସାହିତ୍ୟ ପ୍ରକାଶ କରିବା ସହ ଏକ ହେତୁବାଦୀ ପତ୍ରିକା " ବୈଜ୍ଞାନିକ ଚର୍ଚ୍ଚା" ପ୍ରକାଶ କରୁଛନ୍ତି। ଓହେସ ପ୍ରତ୍ୟେକ ମାସରେ ଭୁବନେଶ୍ୱରଠାରେ ଗୋଟିଏ ବୈଠକ ଆୟୋଜନ କରିଆସୁଛି। ଓଡିଶାର ବିଭିନ୍ନ

ସ୍ଥାନରେ ଓହେସର ଶାଖାମାନ ଗଠନ କରାଯାଇ ଲୋକମାନଙ୍କ ଭିତରେ ସାମାଜିକ ଚେତନାର ବିକାଶ କରାଯାଉଛି । "ଚମତ୍କାରିତା ପଶ୍ଚାତରେ ବିଜ୍ଞାନ" କାର୍ଯ୍ୟକ୍ରମ ବିଭିନ୍ନ ସ୍ଥାନରେ ଆୟୋଜନ କରାଯାଇ ଜନମାନସକୁ କୁସଂସ୍କାର ବିରୁଦ୍ଧରେ ସଚେତନ କରାଯାଉଛି । ଜାତୀୟ ସ୍ତରରେ ରହିଥିବା "ଫେଡେରେସନ ଅଫ୍ ଇଣ୍ଡିଆନ୍ ରେସନାଲିଷ୍ଟ ଆସୋସିଏସନ" ସହିତ ଓହେସ ସଂଯୁକ୍ତ ରହି ସାମ୍ବିଧାନିକ କର୍ତ୍ତବ୍ୟ ପାଳନ ଦିଗରେ କାର୍ଯ୍ୟ କରୁଛି । ଭାରତୀୟ ସମ୍ବିଧାନରେ ନାଗରିକ କର୍ତ୍ତବ୍ୟ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ସଂସ୍କାର ପ୍ରସାର କରିବା କୁହାଯାଇଛି ।

୨୦୧୨ ରେ ଓହେସ ଦୁଇଟି ସଫଳତା ହାସଲ କରିଛି । ଓଡିଶା ଉଚ୍ଚ ନ୍ୟାୟାଳୟରେ ଓହେସ ତରଫରୁ ଦୁଇଟି ଜନସ୍ୱାର୍ଥ ମାମଲା ସଂପାଦକ ଦାଏର କରିଥିଲେ । ଓଡିଶାରେ ପ୍ରତିବର୍ଷ ଗୁଣି ଟୁଣି ଓ ଡାହାଣୀ ସନ୍ଦେହରେ ନିରୀହ ମହିଳାମାନଙ୍କୁ ଯେଉଁପରି ଉତ୍ପୀଡନ ବା ହତ୍ୟା କରାଯାଉଛି ତାକୁ ବନ୍ଦ କରିବାକୁ ସରକାର କଳାଯାଦୁକୁ ଧର୍ତ୍ତବ୍ୟ ଅପରାଧ କରିବା ଆବଶ୍ୟକ । ହାଇକୋର୍ଟରେ ଏହି ଜନସ୍ୱାର୍ଥ ମାମଲା ଯୋଗୁ ନ୍ୟାୟାଳୟ ସରକାରଙ୍କୁ ନିର୍ଦ୍ଦେଶ ଦେବାରୁ ଓଡିଶା ସରକାର ଗୁଣିଗାରେଡିକୁ ଏକ ଧର୍ତ୍ତବ୍ୟ ଅପରାଧ ବୋଲି ଆଇନ କରିଛନ୍ତି । ଦ୍ୱିତୀୟରେ ଜନସ୍ୱାର୍ଥମାମଲା ଜରିଆରେ ମୃତ୍ୟୁପରେ ଶରୀର ଦାନ ପାଇଁ ଇଚ୍ଛୁକ ବ୍ୟକ୍ତିମାନେ ଶରୀର ଦାନ କରିପାରିବେ ବୋଲି ସରକାର ଆଇନ କରିଛନ୍ତି । କୌଣସି ବ୍ୟକ୍ତି ଇଚ୍ଛା ପ୍ରକାଶ କରିଥିଲେ ତାଙ୍କ ଦେହାନ୍ତ ପରେ ତାଙ୍କର ମୃତ ଶରୀରକୁ କୌଣସି ମେଡିକାଲକୁ ପରିବାର ଲୋକେ ଦେଇପାରିବେ । ମୃତ ଶରୀରର ଅଙ୍ଗ ଆବଶ୍ୟକ କରୁଥିବା ବ୍ୟକ୍ତି ପାଖରେ ରୋପଣ କରିବା ବା ଚକିତ୍ସା ବିଜ୍ଞାନର ଗବେଷଣା ଓ ପ୍ରାକ୍ଟିକାଲ ପାଇଁ ମୃତ ଶରୀର ଆବଶ୍ୟକତା ଏହା ଦ୍ୱାରା ପୂରଣ ହୋଇ ପାରିବ । ଓହେସ ଏହି କ୍ଷେତ୍ରରେ ଓଡିଶାରେ ପଥ ପ୍ରଦର୍ଶକ ହୋଇ ପାରିଛି । କେତେକ ସ୍ଥାନରେ ଭୌତିକ କାଣ୍ଡ ଘଟୁଥିବା, କେଉଁ ବିଦ୍ୟାଳୟର ଛାତ୍ରୀମାନେ ଅଚେତ ହୋଇଯିବା ପରି ସମ୍ବାଦ ପଢ଼ି ଓହେସର ବରିଷ୍ଠ ସଦସ୍ୟ ଡ. ପ୍ରତାପ କୁମାର ରଥ ଓ ଶ୍ରୀ ସୁଧାଂଶୁ ଧଡା ସେସବୁ ସ୍ଥାନକୁ ଯାଇ ଘଟଣାର ଅନୁସନ୍ଧାନ କରି ସତ୍ୟ ପ୍ରକାଶ କରିଛନ୍ତି । ଗଂଜାମ ଜିଲ୍ଲାରେ ବିଭିନ୍ନ ଗ୍ରାମରେ ଚୋରୀ ଘଟଣାରେ ଖଟ ବୁଲା, କୁଲାବୁଲା ପରି କାର୍ଯ୍ୟକୁ ଶ୍ରୀ ରବୀନ୍ଦ୍ର ଗୌଡ଼ ଓ ସାଥୀମାନେ ବନ୍ଦ କରିବାରେ ମୁଖ୍ୟ ଭୂମିକା ନେଇଛନ୍ତି । ଆଧାରହୀନ ବିଶ୍ୱାସ, କୁସଂସ୍କାର, ରୂଢ଼ିବାଦୀ ମାନସିକତା ଦୂରକରିବା ପାଇଁ ଓହେସ ନିଜର ଶକ୍ତି ସାମର୍ଥ୍ୟ ଭିତରେ କାର୍ଯ୍ୟ କରିଆସୁଛି ।

ଓଡିଶାରେ "ଆମୋଫୋଇ" ନାମରେ ଏକ ସଂଗଠନ ଜାତି-ଜାତକ-ଯୌତୁକଶୂନ୍ୟ ବିବାହ କରାଇ ସାମାଜିକ ପରିବର୍ତ୍ତନ ପାଇଁ ପ୍ରୟାସ କରିଆସୁଛି। ଅଧ୍ୟାପକ ବି. ରାମଚନ୍ଦ୍ର ଏହି ସଂଗଠନ ସ୍ଥାପନ କରି ପ୍ରାୟ ପାଞ୍ଚହଜାରରୁ ଅଧିକ ଜାତିବିହୀନ ବିବାହ କରାଇ ସାମାଜିକ କ୍ରାନ୍ତି ଦିଗରେ କାର୍ଯ୍ୟକରୁଛନ୍ତି। ସମାଜରେ ଜାତିବିହୀନ ବିବାହର ପ୍ରସାର ଦ୍ୱାରା ଜାତିଗତ ଉଚ୍ଚନୀଚ ଭେଦଭାବ ଯେ ଦୂର ହେବ ଏହା ନିଃସନ୍ଦେହ ମନେହୁଏ। ହେତୁବାଦୀ ମାନେ ମାନବିକ ଅଧିକାର, ସାମାଜିକ ସମତା ଓ ବ୍ୟକ୍ତିମର୍ଯ୍ୟାଦା ବୋଧକୁ ପ୍ରାଧାନ୍ୟ ଦେଉଥିବାରୁ ଯେଉଁମାନେ ଏ କ୍ଷେତ୍ରରେ କାର୍ଯ୍ୟକରୁଛନ୍ତି ସେମାନଙ୍କୁ ଓହେସ୍ ନୈତିକ ସମର୍ଥନ ଦେଇଆସୁଛି। କେତେକ ବେସରକାରୀ ସଂଗଠନ ବା ଏନଜିଓ ସେମାନଙ୍କର ଲକ୍ଷ୍ୟ ପୂରଣ କରିବା ସହ ସମାଜ ସଂସ୍କାର ଦିଗରେ କିଛି କାର୍ଯ୍ୟ କରୁଛନ୍ତି। ଯେଉଁ ବ୍ୟକ୍ତି ବା ସଂଗଠନ ସମାଜ ସଂସ୍କାର, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଓ ମାନବିକ ଅଧିକାର ଲକ୍ଷ୍ୟରେ କାର୍ଯ୍ୟକ୍ରମ କରୁଛନ୍ତି ସେମାନଙ୍କ ପ୍ରତି ଓହେସ ସହାନୁଭୂତିର ହାତ ପ୍ରସାର କରିଆସିଛି। ଓହେସ ଏକ ଅଣରାଜନୈତିକ ସଂଗଠନ ଭାବେ ଅହିଂସ ପନ୍ଥାରେ ଏହାର ଲକ୍ଷ୍ୟ ଦିଗରେ କାର୍ଯ୍ୟକରୁଛି। ଆମ ଦେଶର ସମ୍ବିଧାନର ଧାରା ୫୧ ଏ(ଏଚ)ରେ କୁହାଯାଇଛି ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ, ଅନୁସନ୍ଧିତ୍ସୁ ମନୋଭାବ ଓ ସମାଜ ସଂସ୍କାର ପ୍ରସାର କରିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ। ଏହି ସାମ୍ବିଧାନିକ କର୍ତ୍ତବ୍ୟକୁ ବାସ୍ତବରେ ରୂପାୟିତ କରିବାକୁ ଓହେସ ଉତ୍ସର୍ଗୀକୃତ।

ଓହେସ ଓ କେତେକ ପ୍ରଗତିଶୀଳ ସଂଗଠନର କିଛି କାର୍ଯ୍ୟକ୍ରମ ସତ୍ତ୍ୱେ ଆମ ରାଜ୍ୟରେ ନାନା ସ୍ତରରେ କୁସଂସ୍କାର ବ୍ୟାପକ ଭାବେ ରହିଛି। ପରିତାପର ବିଷୟ ଏକ ବିଂଶ ଶତାବ୍ଦୀରେ ବି ଆମ ଜନଜୀବନରେ ନାନା କୁସଂସ୍କାର, ସାଂପ୍ରଦାୟିକ ମନୋଭାବ, ତନ୍ତ୍ର, ମନ୍ତ୍ର, ଗୁଣି-ଗାରେଡି, ଫଳିତ ଜ୍ୟୋତିଷ, ବାସ୍ତୁ ଇତ୍ୟାଦିରେ ବିଶ୍ୱାସ ଭରପୁର ହୋଇ ରହିଛି। ସେହିପରି ଜାତିଆଣ ଭେଦଭାବ, ଗାଁ ଗହଳରେ ଅସ୍ପୃଶ୍ୟତା ଏବେ ବି ରହିଛି। ସାଂପ୍ରଦାୟିକ ଦଙ୍ଗା ଧାର୍ମିକ ଆବେଗକୁ ନେଇ ସୃଷ୍ଟି କରାଯାଉଛି। ସଂତ୍ରାସବାଦ, ହିଂସା-ପ୍ରତିହିଂସା, ଭ୍ରଷ୍ଟାଚାର ନାନା ରୂପରେ ସମାଜରେ ରହିଆସିଛି। ପାରଲୌକିକ ଦୃଷ୍ଟିଭଙ୍ଗୀ ସମାଜରେ ଭରପୁର ହୋଇ ରହିଛି। ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଯେତେ ହେଲେ ମଧ୍ୟ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଆଶାନୁରୂପ ହୋଇପାରୁନାହିଁ। ବିଡମ୍ବନାର ବିଷୟ ଗଣମାଧ୍ୟମ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ

ପ୍ରାଧାନ୍ୟ ଦେଉନାହିଁ ବରଂ କେତେକ କାର୍ଯ୍ୟକ୍ରମ ଦ୍ୱାରା କୁସଂସ୍କାରର ପ୍ରସାର ବ୍ୟାପକ ହେଉଛି । ବିଜ୍ଞାନର ସାଧନକୁ କୁସଂସ୍କାର ପ୍ରସାରରେ ବିନିଯୋଗ କରିବା ଆମ ଅହେତୁକ ଦୃଷ୍ଟିର ସଙ୍କେତ ଦେଇଥାଏ ।

ଯେତେଦିନ ପର୍ଯ୍ୟନ୍ତ ସାମାଜିକ ପରିବେଶ ଓ ମନସ୍ତତ୍ତ୍ୱ ଭିତରେ କୁସଂସ୍କାର, ରୂଢ଼ିବାଦ, ଧର୍ମାନ୍ଧତା, ମାନବିକ ଅଧିକାରର ଉଲଂଘନ ଓ ଭେଦଭାବ ରହିଥିବ, ହେତୁବାଦୀ ସଂଗଠନର ଗୁରୁତ୍ୱ ଓ ପ୍ରାଧାନ୍ୟ ରହିଥିବ । ହେତୁବାଦୀମାନେ କୁସଂସ୍କାରମୁକ୍ତ, ଭେଦଭାବରହିତ ସମତା ଭିତ୍ତିକ ଓ ଭ୍ରାତୃତ୍ୱପୂର୍ଣ୍ଣ ସମାଜର ସ୍ୱପ୍ନ ଦ୍ରଷ୍ଟା । ସେମାନେ ନିଜ ସମୟଠାରୁ ବହୁ ଆଗକୁ ଚିନ୍ତା କରନ୍ତି ଓ ଏକ ଉନ୍ନତ ସମାଜର ବାର୍ତ୍ତା ଦେଇଥାନ୍ତି । ସାମାଜିକ ପରିବର୍ତ୍ତନ ମଣିଷର ପ୍ରୟାସରେ ହିଁ ସମ୍ଭବ ହେବ ଓ ସଭ୍ୟତାର ଇତିହାସରେ ଯାହା ସବୁ ଉନ୍ନତି ହୋଇଛି ତାହା ମଣିଷର ଉଦ୍ୟମରେ ହୋଇଛି । ବିଜ୍ଞାନର ବିକାଶ ଯୋଗୁ ନୂଆ ନୂଆ ପ୍ରଯୁକ୍ତି ଜୀବନର ଭୌତିକ ମାନରେ ଯଥେଷ୍ଟ ଉନ୍ନତି ଆଣିଛି । ସେହିପରି ଗଣତାନ୍ତ୍ରିକ ବିଚାରବୋଧ, ମାନବିକ ଅଧିକାର ଜନିତ ବ୍ୟକ୍ତିମର୍ଯ୍ୟାଦାବୋଧ, ମାନବବାଦୀ ଦୃଷ୍ଟିଭଙ୍ଗୀ, ପୃଥିବୀର ଜନଗଣଙ୍କୁ କ୍ଷୁଧାମୁକ୍ତ, ହିଂସାମୁକ୍ତ ଓ ଭେଦଭାବରହିତ ପରିବେଶ ଦେବାକୁ ଆନ୍ତର୍ଜାତିକ ସଂପୃକ୍ତି ପରି ଅନେକ ସାର୍ବଜନୀନ ଭାବନା ହେତୁବାଦୀ ଚିନ୍ତନ ଦେଇ ସାରା ବିଶ୍ୱରେ ବିସ୍ତାର ଲାଭ କରିଛି । ଏସବୁ ବିଚାର ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନର ନାନା ସମ୍ଭାବନା ସୃଷ୍ଟି କରିଛି । ସବୁ ସଭ୍ୟତାରେ ଓ ସବୁ ଯୁଗରେ ହେତୁବାଦୀ ମାନେ ମଣିଷର ସମସ୍ୟାକୁ ଦୂର କରିବାକୁ ଗଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ଜୀବନକୁ ଅଧିକ ସୁଖପ୍ରଦ, ସାମାଜିକ ବ୍ୟବସ୍ଥାକୁ ନୀତିପୂର୍ଣ୍ଣ ଓ ମାନବିକ ସଂପର୍କକୁ ଅଧିକ ଭ୍ରାତୃତ୍ୱପୂର୍ଣ୍ଣ କରିବାକୁ ସେମାନେ ଚେଷ୍ଟା କରିଆସିଛନ୍ତି । ସେହି ଲକ୍ଷ୍ୟ ପ୍ରତି ଉତ୍ସର୍ଗୀକୃତ ରହି ଓଡିଶା ହେତୁବାଦୀ ସମାଜ କ୍ଷୁଦ୍ର ପରିସରରେ କାର୍ଯ୍ୟ କରୁଛି । ଏହି ସଂଗଠନ ସହ ସଂଶ୍ଲିଷ୍ଟ ଥିବା କିଛି କୀର୍ତ୍ତି-ଅବିଦିତ ବ୍ୟକ୍ତି (unsung heroes) ନାନା ପ୍ରତିକୂଳ ସ୍ଥିତି ସତ୍ତ୍ୱେ ନିଜ ଆଦର୍ଶ ଓ ମୂଲ୍ୟବୋଧ ପ୍ରତି ଉତ୍ସର୍ଗୀକୃତ ରହିଛନ୍ତି ।



# ମାନବୀୟ ସଂକଟ ଓ ଭବିଷ୍ୟତ

ବୈଜ୍ଞାନିକ ଅନୁଶୀଳନ ଅନୁଯାୟୀ ପ୍ରାୟ ଚାରି ଶହ ପଚାଶ କୋଟି ବର୍ଷ ତଳେ ଆମ ପୃଥିବୀର ଉତ୍ପତ୍ତି ହୋଇଥିଲା ଓ ପ୍ରାୟ ଶହେ କୋଟି ବର୍ଷ ତଳେ ଧରାପୃଷ୍ଠରେ ଜୀବନର ସତ୍ତା ଉଦ୍‌ଭବ ହେଲା। ନାନା ପାରିବେଶିକ ଓ ଜୈବ ବିବର୍ତ୍ତନ ମଧ୍ୟ ଦେଇ ମଣିଷର ଉତ୍ପତ୍ତି ଏକ ଲକ୍ଷ ବର୍ଷ ତଳେ ହୋଇଥିବା ଅନୁମାନ କରାଯାଏ। ନୃତାତ୍ତ୍ୱିକ ବିଶ୍ଳେଷଣରୁ ଅନୁମାନ କରାଯାଏ ପ୍ରାୟ ଦଶ ହଜାର ବର୍ଷ ତଳେ କୃଷିର ଉଦ୍ଭାବନ ହୋଇଥିଲା ଓ ସେହିଠାରୁ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହେଲା। କୃଷିର ଜ୍ଞାନ ପରେ ମଣିଷ ସ୍ଥାୟୀ ଭାବେ ଗୋଷ୍ଠୀ ଜୀବନ ଆରମ୍ଭ କଲା ଓ ତାର ଯାଯାବର ଜୀବନର ଧୀରେ ଧୀରେ ପରିସମାପ୍ତି ଘଟିଲା। ଏକ ଆଦିମ ସ୍ତରରୁ ନାନା କ୍ରମବିକାଶ ମଧ୍ୟ ଦେଇ ମଣିଷ ଆଜିର ସ୍ତରକୁ ଆସିଛି। କ୍ଷୁଦ୍ର ଦଳରେ ଗୋଷ୍ଠୀ ଜୀବନଠାରୁ ଗ୍ରାମୀଣ ଜୀବନ, ରାଜ୍ୟ ଓ ରାଷ୍ଟ୍ରର ଭାବନା ବିକଶିତ ହୋଇଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ଆନ୍ତରାଷ୍ଟ୍ରୀୟ ଦୃଷ୍ଟିଭଙ୍ଗୀର ବିକାଶ ମଧ୍ୟରେ ଏକ ସୁଦୀର୍ଘ ଇତିହାସ ରହିଛି। ଏହି ଉତ୍ତରଣ ପଶ୍ଚାତରେ ନୃତତ୍ତ୍ୱବିତ୍‌ମାନେ ଯେଉଁ କେତେକ କାରଣର ପରିକଳ୍ପନା କରିଥାନ୍ତି ସେଥିରେ ଚାରୋଟି ମୁଖ୍ୟ ସ୍ଥାନ ନେଇଥାଏ। ପ୍ରଥମତଃ ମଣିଷ ଭିତରେ ଏକ ସାମାଜିକ ପ୍ରବୃତ୍ତି ରହିଛି। ମଣିଷ ପ୍ରକୃତିରେ ସବୁଠାରୁ ଅଧିକ ବୁଦ୍ଧିମାନ ହେଲେ ମଧ୍ୟ ମଣିଷ ଶିଶୁଟି ସବୁଠାରୁ ଅସହାୟ। ଗୋଟିଏ ଶିଶୁ ଜନ୍ମର ବହୁବର୍ଷ ପର୍ଯ୍ୟନ୍ତ ବାପା-ମା, ପରିବାର, ସାମାଜିକ ପରିବେଶର ସାହାଯ୍ୟ ଓ ସହଯୋଗ ନ ପାଇଲେ ସେ ବଞ୍ଚିପାରିବ ନାହିଁ। ଏପରିକି ସେ ବଡ ହେଲା ପରେ ମଧ୍ୟ ସେ ଜୀବନର ଆବଶ୍ୟକତାକୁ ନିଜେ ପୂରଣ କରିପାରିବ ନାହିଁ। ଜୀବନର ଆବଶ୍ୟକତା ପୂରଣ ପାଇଁ ସେ ସମାଜ ବା ବୃହତ୍ତର ପରିବେଶ ଉପରେ ନିର୍ଭର କରିବାକୁ ବାଧ୍ୟ।

ଦ୍ୱିତୀୟରେ ତାର ପରିବେଶରେ ଯାହା ଉପଲବ୍ଧ, ସେହି ଉପାଦାନରେ ମଣିଷ ବିଭିନ୍ନ ବସ୍ତୁ ନିର୍ମାଣ କରିବାରେ ସମର୍ଥ। ନାନା ଉପକରଣ, ଯାନବାହାନ, ଗୃହନିର୍ମାଣ ପରି କାର୍ଯ୍ୟ ମଣିଷ ହିଁ ପ୍ରସ୍ତୁତ କରିଛି। ମଣିଷ ଭିତରେ ବସ୍ତୁ ନିର୍ମାଣ କରିବାର ଶକ୍ତି ଓ ସାମର୍ଥ୍ୟ ଯୋଗୁ ସଭ୍ୟତାର ଅଗ୍ରଗତି ସମ୍ଭବ ହୋଇଛି। ତୃତୀୟରେ ପ୍ରକୃତିରେ ମଣିଷ ଏକମାତ୍ର ପ୍ରାଣୀ ଯେ ଭାଷା କହିବାକୁ ସମର୍ଥ। ଭାଷାର ବିକାଶ ଯୋଗୁଁ ହିଁ ସାହିତ୍ୟ, ଦର୍ଶନ, ଜ୍ଞାନ-ବିଜ୍ଞାନ ସମ୍ଭବ ହୋଇଛି। ଯେଉଁ ସମୟରେ ଯେଉଁ ଜ୍ଞାନର ବିକାଶ ହୋଇଛି ତାହା ଆଗାମୀ ପିଢ଼ି ପାଇଁ ସଂରକ୍ଷିତ ରହିଛି ଫଳରେ ସେଥିରେ କ୍ରମୋନ୍ନତି ଘଟିଛି। ଭାଷା କହିବାର ସାମର୍ଥ୍ୟରୁ ବୌଦ୍ଧିକ ବିକାଶ ସମ୍ଭବପର ହୋଇଛି, ଭାଷା ନଥିଲେ ମଣିଷ ପଶୁଭଳି ଜୀବନ ଧାରଣ କରୁଥାନ୍ତା। ପୃଥିବୀରେ ପ୍ରାୟ ପାଞ୍ଚ ହଜାର ଭାଷା ରହିଥିଲେ ମଧ୍ୟ ସେଥିରୁ ଦୁଇ ଶହଟି ଭାଷା ଉନ୍ନତ। ଯେଉଁ ଭାଷାର ଲିପି ରହିଛି, ସାହିତ୍ୟ ସଂଭାର ରହିଛି, ଜ୍ଞାନବିଜ୍ଞାନର ବିକାଶ ପାଇଁ ତାହା ମାଧ୍ୟମ ହୋଇପାରୁଛି ତାହା ଏକ ଉନ୍ନତ ଭାଷା। ଚତୁର୍ଥରେ ମଣିଷ ଭିତରେ ବିଚାରଶୀଳତା ଓ ବୁଦ୍ଧି ରହିଛି। ବିଚାରଶୀଳତା ଯୋଗୁ ମଣିଷ ଅନୁସନ୍ଧିତ୍ସୁ ହୁଏ, ପ୍ରକୃତି, ପରିବେଶକୁ ବୁଝିବାକୁ ଉଦ୍ୟମ କରେ। କୌଣସି ସମସ୍ୟାକୁ ଦୂର କରିବାକୁ ବୁଦ୍ଧି ଖଟାଏ। ଜୀବନର ଘନଘଟାକୁ ବୁଝିବାକୁ ପ୍ରଯତ୍ନ କରେ। ବୁଦ୍ଧିର ବିକାଶ ଓ ଏକ ଅନୁସନ୍ଧିତ୍ସୁ ମାନସିକତାରୁ ହିଁ ଜ୍ଞାନ, ପ୍ରଯୁକ୍ତିର ବିକାଶ ହୁଏ ଓ ସଭ୍ୟତା ଆଗକୁ ଯାଏ। ମୋଟଉପରେ କହିଲେ ମଣିଷର ସାମାଜିକ ପ୍ରବୃତ୍ତି, ବସ୍ତୁ ନିର୍ମାଣ କରିବାର ସାମର୍ଥ୍ୟ, ଭାଷା କହିବାର ଦକ୍ଷତା ଓ ବିଚାର ବୁଦ୍ଧିର ପ୍ରୟୋଗ ଯୋଗୁ ସଭ୍ୟତାର କ୍ରମ ଉତ୍ତରଣ ସମ୍ଭବ ହୋଇଛି।

ସଭ୍ୟତାର ଆଦିପର୍ବରେ ହେଉ ବା ଆଜିର ଅତ୍ୟାଧୁନିକ ସ୍ଥିତିରେ ହେଉ ସବୁ ସମୟରେ ମଣିଷ ସମାଜରେ କିଛି ସମସ୍ୟା ଓ ସଂକଟ ରହିବା ଦେଖାଯାଏ। ବ୍ୟକ୍ତିର ହେଉ, ଗୋଷ୍ଠୀର ହେଉ, ରାଷ୍ଟ୍ରର ହେଉ ବା ମଣିଷ ସମୁଦାୟର ହେଉ ମଣିଷର ଅସ୍ତିତ୍ୱ ସହିତ କିଛି ସମସ୍ୟା ଜଡିତ। ସମସ୍ୟା ରହିତ ପରିବେଶ ପ୍ରାୟତଃ ସମ୍ଭବ ନୁହେଁ। ବହୁ ସମସ୍ୟା ଓ ସଂକଟ ଭିତରୁ ଏଠାରେ ଚାରୋଟି ସଂକଟ ବିଷୟରେ ସୂଚନା ଦିଆଯାଇପାରେ ଯାହା ସମ୍ଭବତଃ ମୌଳିକ ମନେହୁଏ। ସବୁ ସମୟରେ ମଣିଷ ସମୁଦାୟର କିଛି ଅଂଶ ବୁଭୁକ୍ଷୁ ରହିଛନ୍ତି ଓ ସେମାନଙ୍କ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ ହୋଇପାରେ ନାହିଁ। ଜ୍ଞାନ ବିଜ୍ଞାନର ବହୁ ବିକାଶ ଓ ସଭ୍ୟତାର ଅଗ୍ରଗତି ସତ୍ତ୍ୱେ ଏବେ ବି ଜନସଂଖ୍ୟାର ଏକ ଅଂଶ ଅନାହାର କ୍ଲିଷ୍ଟ ରହି ଅପପୁଷ୍ଟିରେ

ଆକ୍ରାନ୍ତ ହୁଅନ୍ତି। ତୃତୀୟ ବିଶ୍ୱ ରାଷ୍ଟ୍ରମାନଙ୍କରେ ନିରକ୍ଷରତା, ଶିଶୁ ଶ୍ରମିକ ପ୍ରଥା, ଭିକ୍ଷାବୃତ୍ତି, ସର୍ବନିମ୍ନ ସ୍ୱାସ୍ଥ୍ୟସେବାର ଅଭାବ ଓ ବେଶ୍ୟାବୃତ୍ତି ପରି ସମସ୍ୟା ମାନ ରହିଛି। ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ସ୍ଲମମାନଙ୍କରେ ଏବେ ବି ଅଗଣିତ ମଣିଷ ବାସ କରନ୍ତି। ଏ ସବୁ ସମସ୍ୟାର କାରଣ କୁହାଯାଏ ଯେ ସମ୍ବଳର ଅଭାବ ଯୋଗୁଁ ସବୁ ମଣିଷଙ୍କ ପାଖକୁ ଜନମଙ୍ଗଳକାରୀ ଯୋଜନା ଓ ବିକାଶର ସୁଫଳ ଯାଇପାରୁନାହିଁ। ଜ୍ଞାନ ବିଜ୍ଞାନର ଯେତେ ବିକାଶ ହେଲେ ମଧ୍ୟ ମଣିଷର ସୀମିତ ଜ୍ଞାନ ଯୋଗୁଁ ସଂସାରରେ ବହୁ ଦୁଃଖ ଦୁର୍ଦ୍ଦଶା ଥିବା କୁହାଯାଏ। ପ୍ରକୃତିର ବିଶାଳତା ଓ ଜୀବନର ଜଟିଳତା ଯୋଗୁ ଏବେ ବି ବହୁ ବିଷୟ ମଣିଷ ଜ୍ଞାନର ବହିର୍ଭୂତ ଅଟେ। ବାତ୍ୟା, ଭୂକଂପ, ସୁନାମି, ପ୍ରାକୃତିକ ଦୁର୍ବିପାକକୁ ମଣିଷ ସମ୍ଭବତଃ ଅତିକ୍ରମି ପାରିବ ନାହିଁ। ପ୍ରାକୃତିକ ଦୁର୍ବିପାକ ଜୀବନକୁ ନାନା ଆହ୍ୱାନର ସମ୍ମୁଖୀନ କରାଇଥାଏ। ପ୍ରକୃତି ଉପରେ ପୂର୍ଣ୍ଣ ନିୟନ୍ତ୍ରଣ ଆଣିବା ମଣିଷ ପକ୍ଷରେ ପ୍ରାୟ ସମ୍ଭବ ନୁହେଁ। ସୀମିତ ସଂପଦ ଓ ସୀମିତି ଜ୍ଞାନ ପାଇଁ ମଣିଷ ଦାୟୀ ନୁହେଁ, କାରଣ ଏହା ମଣିଷ ସାମର୍ଥ୍ୟର ବହିର୍ଭୂତ। ତୃତୀୟରେ ସୀମିତ ବିଚାରଶୀଳତା (limited rationality) ସଭ୍ୟତାରେ ଅନେକ ଦୁଃଖ-ଦୁର୍ଦ୍ଦଶା ପାଇଁ ଦାୟୀ। ଜଣେ ଦାର୍ଶନିକ ମଣିଷର ସଂଜ୍ଞା ଦେବାକୁ ଯାଇ କହିଥିଲେ ଯେ 'ମଣିଷ ଏକ ବିଚାରଶୀଳ ପ୍ରାଣୀ'। ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହତା ଦେଖି ଓ ମଣିଷର ଅବିବେକିତାକୁ ଅନୁଭବ କରି ଆଉ ଜଣେ ଦାର୍ଶନିକ ସବୁ ମଣିଷ ଯେ ବିଚାରଶୀଳ ଏଥିରେ ସନ୍ଦେହ ବ୍ୟକ୍ତ କରିଥିଲେ। ବିଚାରହୀନ ଭାବେ କାଳ୍ପନିକ କାହାଣୀ ବା ମିଥ୍‌ରେ ବିଶ୍ୱାସ ବିଭିନ୍ନ ସମାଜରେ କିପରି ଅଗଣିତ ମଣିଷଙ୍କ ଉପରେ ଦୁଃଖର ବୋଝ ଲଦି ଦେଇଛି ତାହା ଜଣେ ଦାର୍ଶନିକ ବିଶ୍ଳେଷଣ କରିଛନ୍ତି। ଜର୍ମାନୀର ଏକଛତ୍ରବାଦୀ ଶାସକ ହିଟଲର ବିଶ୍ୱାସ କଲେ ଯେ ଜର୍ମାନମାନେ ଏକ ଉନ୍ନତ ଜାତି ଓ ସେମାନଙ୍କର ରକ୍ତ ବିଶୁଦ୍ଧ, ତେଣୁ ସେମାନେ ଅନ୍ୟମାନଙ୍କ ଉପରେ ଶାସନ କରିବା ସେମାନଙ୍କର ଅଧିକାର। ଏହିପରି ଏକ ବିଶ୍ୱାସରୁ ସେ ଏକ ବିଶ୍ୱଯୁଦ୍ଧ ସୃଷ୍ଟିକଲେ ଯାହା ପୃଥିବୀରେ କେତେ ଦୁଃଖ ଯନ୍ତ୍ରଣାର ପରିବେଶ ଆଣିଥିଲା ତାହା କହିବା ନିଷ୍ପ୍ରୟୋଜନ। ୟୁରୋପର ଗୋରା ଲୋକମାନେ ଗୋଟିଏ ସମୟରେ ବିଶ୍ୱାସ କରୁଥିଲେ ଯେ ସେମାନେ କଳା ଲୋକଙ୍କଠାରୁ ଉନ୍ନତ। ଈଶ୍ୱର କଳାମାନଙ୍କୁ ଦାସ ହେବାକୁ କଳା କରିଛନ୍ତି। ପୃଥିବୀରେ ଦାସତ୍ୱ ପ୍ରଥା, ଭାରତବର୍ଷରେ ଜାତିଭେଦ ଜନିତ ଅସ୍ପୃଶ୍ୟତା, ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ଜନିତ ଆପରଥେଡ୍ ଅଗଣିତ ମଣିଷଙ୍କୁ ଯେପରି ଦୁର୍ଦ୍ଦଶାଗ୍ରସ୍ତ

କରିଛି ତାହା ଅତ୍ୟନ୍ତ ଅମାନବିକ ମନେହୁଏ । ସେହିପରି ସୀମିତ ସମ୍ବେଦନଶୀଳତା ଯୋଗୁଁ ବହୁ ମଣିଷ ନାନା ନିର୍ଯ୍ୟାତନାର ଶିକାର ହୋଇଛନ୍ତି । ପ୍ରାକୃତିକ ଦୁଃଖ ଦୁର୍ଦ୍ଦଶା ଅପେକ୍ଷା ମଣିଷକୃତ କ୍ରୂରତା, ହିଂସା, ଯୁଦ୍ଧ ଇତ୍ୟାଦି ସମାଜରେ କଳ୍ପନାତୀତ ଦୁଃଖର ପରିବେଶ ସୃଷ୍ଟି କରିଛି । ମଣିଷ ହିଁ ସର୍ବଦା ଅନ୍ୟ ମଣିଷ ପାଇଁ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଆସିଛି । ସୀମିତ ସମ୍ବଳ ଓ ସୀମିତି ଜ୍ଞାନ ମଣିଷ ପାଇଁ ଯେପରି ଦୁଃଖର ପରିବେଶ ଆଣିଛି, ସେହିପରି ସୀମିତ ବିଚାରଶୀଳତା ଓ ସୀମିତ ସମ୍ବେଦନଶୀଳତା ସଂସାରରେ ବହୁ ଦୁଃଖର କାରଣ ହୋଇଛି ।

ଯେବେଠାରୁ ମଣିଷ କୃଷିଜୀବୀ ହେଲା, ସ୍ଥାୟୀ ଭାବରେ ବସତି ସ୍ଥାପନ କଲା ଓ ଭାଷା ବ୍ୟବହାର କଲା ସେବେଠାରୁ ମଣିଷର ସାମାଜିକ ଜୀବନ ଦୃଢ଼ ଭିତ୍ତି ନେବାକୁ ଲାଗିଲା । ଏହି ପ୍ରକ୍ରିୟାରେ ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତା ମାନ ଆରମ୍ଭ ହେଲା । ସଭ୍ୟତାର କ୍ରମ ବିକାଶ ଧାରାରେ ପ୍ରତ୍ୟେକ ସଭ୍ୟତାର କିଛି ସ୍ୱାତନ୍ତ୍ର୍ୟ ଥିଲେ ମଧ ବିଭିନ୍ନ ସଭ୍ୟତା ଭିତରେ ଅନେକ କଥା ସାମଂଜସ୍ୟ ରହିଥିବା ଜଣାଯାଏ । ପ୍ରତ୍ୟେକ ସଭ୍ୟତାରେ ରାଜତନ୍ତ୍ର ବିକଶିତ ହୋଇଛି ଓ କିଛି ସାଂସ୍କୃତିକ ଆଲୋଡନ ଜୀବନ ପ୍ରବାହରେ କିଛି ନୂତନତ୍ୱର ପରିବେଶ ଆଣିଛି । ସମାଜ ଯେତିକି ଦୃଢ଼ ଭିତ୍ତି ନେଇଛି ଧୀରେ ଧୀରେ ବିଭିନ୍ନ ନୀତି, ନିୟମ, ଧର୍ମବିଶ୍ୱାସ, ଅତି ପ୍ରାକୃତିକ ସତ୍ତାରେ ଆସ୍ଥା ସ୍ଥାପନ ଭିନ୍ନ ଭିନ୍ନ ଧାରାରେ ବିଭିନ୍ନ ସଭ୍ୟତାରେ ସୃଷ୍ଟି ହୋଇଛି । ଏହି ପ୍ରକ୍ରିୟାରେ ଖ୍ରୀ.ପୂ. ଏକ ହଜାର ପରଠାରୁ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଗଢ଼ି ଉଠୁଥିବା ସଭ୍ୟତା ମାନଙ୍କ ମଧ୍ୟରେ ଧାର୍ମିକ ସୃଜନଶୀଳତାର ପରିବେଶ ଆସିଛି । କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ଓ ଚିନ୍ତନ ନୂତନ ଜାଗରଣର ପରିବେଶ ସୃଷ୍ଟି କରିଛି । ଆନୁଷ୍ଠାନିକ ଧର୍ମମାନଙ୍କର ଆବିର୍ଭାବ ସଭ୍ୟତା ମାନଙ୍କର ବିକାଶ ଧାରାରେ ଗୋଟିଏ ଗୋଟିଏ ବଡ଼ ସାଂସ୍କୃତିକ ଆଲୋଡନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତ ବର୍ଷରେ ଉପନିଷଦ୍ ମାନଙ୍କର ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବ ଭାରତୀୟ ଚିନ୍ତାମାନସକୁ ଧର୍ମୀୟ ଆଦର୍ଶରେ ପ୍ରଭାବିତ କରିଛି । ଅନ୍ୟ ଏକ ସଭ୍ୟତାରେ ହିବ୍ରୁ ସନ୍ଥ ମାନଙ୍କର ଆବିର୍ଭାବ ଦ୍ୱାରା ଇସ୍ରାଏଲରେ ପବିତ୍ର ଜୀବନ ଓ ନ୍ୟାୟବୋଧର ଭାବନା ସୃଷ୍ଟି ହୋଇଛି । ଏକ ଭିନ୍ନ ଭୂଖଣ୍ଡରେ ଜୋରାଷ୍ଟରଙ୍କର ଆବିର୍ଭାବ ଦ୍ୱାରା ଅନ୍ୟ ଏକ ଧାର୍ମିକ ଆଲୋଡନର ପରିବେଶ ଆସିଛି । ଚୀନରେ କନ୍‌ଫୁସିଅସଙ୍କ ବୈଚାରିକ ଆଲୋଡନକୁ ନେଇ ଟାଓବାଦ ଏକ

ଶୃଂଖଳିତ ନୈତିକ ଜୀବନ ପାଇଁ ପ୍ରେରଣାର ଉତ୍ସ ହୋଇଛି । ହିବ୍ରୁ ଧର୍ମଧାରା ଭିତରୁ ଆଉ ଦୁଇଟି ବଡ଼ ସାଂସ୍କୃତିକ ଆଲୋଡ଼ନ ସୃଷ୍ଟି ହୋଇଛି ଯାହା ଖ୍ରୀଷ୍ଟଧର୍ମ ଓ ଇଶଲାମ୍ ଧର୍ମ ଭାବରେ ପରେ ବିସ୍ତାରଲାଭ କରିଛି । ଯୀଶୁଖ୍ରୀଷ୍ଟଙ୍କର ଆବିର୍ଭାବ ଓ ନୈତିକ ପରାକାଷ୍ଠା ଏକ ବଳିଷ୍ଠ ସାଂସ୍କୃତିକ ପ୍ରଭାବ ଭାବେ ୟୁରୋପୀୟ ଚିନ୍ତାମାନସକୁ ଗଭୀର ଭାବେ ପ୍ରଭାବିତ କରିଛି । ସପ୍ତମ ଶତାବ୍ଦୀରେ ମହମ୍ମଦଙ୍କର ଆବିର୍ଭାବ ପରେ ଆରବ ଭୂଖଣ୍ଡରେ ଇଶଲାମ୍ ଧର୍ମ ଦୃଢ଼ ଭିତ୍ତି ନେଇଛି । ବୌଦ୍ଧଧର୍ମର ପ୍ରଭାବରେ ଭାରତ ଭୂଖଣ୍ଡରେ ବୈଦିକ ହିନ୍ଦୁଧର୍ମର ଯେଉଁ ଅବକ୍ଷୟ ସୃଷ୍ଟି ହୋଇଥିଲା ଅଷ୍ଟମ ଶତାବ୍ଦୀରେ ରାଜନୈତିକ ଓ ସାଂସ୍କୃତିକ ଆଲୋଡ଼ନ ଓ ଶଙ୍କରାଚାର୍ଯ୍ୟଙ୍କ ପ୍ରଭାବରୁ ବର୍ଣ୍ଣବ୍ୟବସ୍ଥାର ପ୍ରଚଳନ ପୂର୍ବକ ହିନ୍ଦୁଧର୍ମର ପୁନର୍ଉତ୍ଥାନ ସହ ବୌଦ୍ଧଧର୍ମ ଭାରତ ଭୂଖଣ୍ଡରୁ ବିଲୁପ୍ତ ହୋଇଛି । ଏହିପରି ପ୍ରତ୍ୟେକ ଧର୍ମ ଏକ ବୌଦ୍ଧିକ, ସାଂସ୍କୃତିକ ଓ ସାମାଜିକ ଆଲୋଡ଼ନ ଭାବେ ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡର ଜନଜୀବନକୁ ଗଭୀର ଭାବେ ପ୍ରଭାବିତ କରିଛି । ରାଜତନ୍ତ୍ର ଯୁଗରେ ଶାସନତନ୍ତ୍ରର ସମର୍ଥନ ପାଇ ଏହା କାଳକ୍ରମେ ଏକ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହୋଇଛି ଓ ଜନଗଣଙ୍କ ଭିତରେ ଏକ ସାଂସ୍କୃତିକ ସଂହତିର ଚେତନା ସୃଷ୍ଟି ହୋଇଛି । ପ୍ରତ୍ୟେକ ଧର୍ମ ନିଜସ୍ୱ ଧାରାରେ ଜଗତ ଓ ଜୀବନକୁ ଅବବୋଧ କରିଛି, ବିଭିନ୍ନ କର୍ମକାଣ୍ଡ ସହ ସଂଶ୍ଳିଷ୍ଟ ହୋଇଛି, ନୀତି, ନୈତିକତାର ଅବତାରଣା କରିଛି ଓ ଏହାର ଗ୍ରନ୍ଥର ବାଣୀକୁ ପବିତ୍ର ଓ ଶାଶ୍ୱତ ବୋଲି ଭାବିଆସିଛି । ସମାଜରେ ଏକ ବଡ଼ ବୌଦ୍ଧିକ ଓ ସାଂସ୍କୃତିକ ଆଲୋଡ଼ନ ଆଣିଥିବା ପଥପ୍ରଦର୍ଶକଙ୍କୁ ଈଶ୍ୱରପ୍ରେରିତ ବ୍ୟକ୍ତି ଭାବେ ଚିତ୍ରଣ କରାଯାଇଛି । ଈଶ୍ୱରଙ୍କ ପୁତ୍ର, ଈଶ୍ୱରଙ୍କ ଦୂତ, ଈଶ୍ୱରଙ୍କ ଅବତାର ଭାବନା ଧର୍ମ ସହ ସଂଶ୍ଳିଷ୍ଟ ହୋଇଛି । ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡର ଗୋଟିଏ ସାଂସ୍କୃତିକ ପ୍ରବାହ । ପୃଥିବୀରେ ବିଭିନ୍ନ ସଭ୍ୟତା ଯେପରି ଉଦ୍‌ଭବ ହୋଇଛି ସେହିପରି ବିଭିନ୍ନ ଧର୍ମ ଜନଜୀବନର ସାଂସ୍କୃତିକ ପ୍ରବାହ ଭାବେ ବିଭିନ୍ନ ଭୂଖଣ୍ଡରେ ସୃଷ୍ଟି ହୋଇଛି ।

ଗୋଟିଏ ଗୋଟିଏ ସାଂସ୍କୃତିକ ଆଲୋଡ଼ନ ଧାର୍ମିକ ଅନୁଷ୍ଠାନର ଭିତ୍ତି ନେବା ପରେ ଏହା ସାମାଜିକ ନିୟନ୍ତ୍ରଣର ଏକକ ଭିତ୍ତି ହୋଇ ଉଠିଛି । ତେବେ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ସପ୍ତଦଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ପ୍ରାୟ ଅଢ଼େଇ ଶହ ବର୍ଷ ଧରି ୟୁରୋପ ଭୂଖଣ୍ଡରେ ଯେଉଁ ନବଜାଗରଣ ଓ ନବସଂସ୍କାରର (Age of Renaissance and Enlightenment) ଯୁଗ ଆସିଛି ତାହା ମାନବ ଜାତିର

ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା । ବହୁ କ୍ରାନ୍ତିକାରୀ ବିଚାର ଓ ଭାବନାର ଉନ୍ମେଷ ଏହିଠାରୁ ଆରମ୍ଭ ହୋଇଛି । ଜୀବନ, ଜଗତ, ପ୍ରକୃତି ଓ ବିଶ୍ୱ ପ୍ରତି ଧାର୍ମିକ ଦୃଷ୍ଟିଭଙ୍ଗୀରେ ରହିଥିବା ବିଚାର କ୍ଷେତ୍ରରେ ତୁମୁଳ ପରିବର୍ତ୍ତନ ଏହି ଯୁଗରେ ଭିତ୍ତି ନେଇଛି । ସଭ୍ୟତାର ଇତିହାସ ବହୁ ପ୍ରାଚୀନ ହେଲେ ବି ଆଧୁନିକ ବିଜ୍ଞାନର ବିକାଶ ପର୍ବ ସପ୍ତଦଶ ଶତାବ୍ଦୀରୁ ହିଁ ଆରମ୍ଭ ହୋଇଛି । ତେବେ ବିଜ୍ଞାନର ବିକାଶ ପର୍ବଟି ବହୁ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛି । ବିଜ୍ଞାନର ଆଦି ପର୍ବରେ ଧର୍ମ ଓ ବିଜ୍ଞାନ ଭିତରେ ସଂଘର୍ଷର ପରିବେଶ ଆସିଛି । ଧର୍ମର ଅନେକ ବିଶ୍ୱାସ ଓ ଧର୍ମଗ୍ରନ୍ଥର ଅନେକ ସିଦ୍ଧାନ୍ତ ମିଥ୍ୟା, କପୋଳକଳ୍ପିତ ଓ ଆଧାରହୀନ ବୋଲି ବୈଜ୍ଞାନିକ ସିଦ୍ଧାନ୍ତରୁ ସାବ୍ୟସ୍ତ ହୋଇଛି । କେଉଁ ଈଶ୍ୱର ଜଗତକୁ ଓ ମଣିଷକୁ କେତୋଟି ଦିନରେ ସୃଷ୍ଟି କରି ନାହାନ୍ତି ବରଂ କୋଟି କୋଟି ବର୍ଷର ନାନା ପ୍ରାକୃତିକ, ପାରିବେଶିକ ଓ ଜୈବିକ ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟ ଦେଇ ଜୀବଜଗତର ଉଦ୍‌ଭବ ହୋଇଛି । ଧର୍ମର ବିଶ୍ୱାସ ଯେ ମିଥ୍ୟା ହୋଇପାରେ ଓ ଧର୍ମଗ୍ରନ୍ଥର ବାଣୀ ମନଗଢ଼ା କାହଣୀ ହୋଇପାରେ ଏହା ଧର୍ମବିଶ୍ୱାସୀମାନେ ଗ୍ରହଣ କରିବା ଏତେ ସହଜ ହୋଇ ନାହିଁ । ଫଳରେ ସଭ୍ୟତାକୁ ମହାନ ଅବଦାନ ଦେଇଥିବା ବହୁ ପ୍ରତିଭାଧର ବୈଜ୍ଞାନିକଙ୍କୁ କାଠଗଡ଼ାରେ ଛିଡା ହେବାକୁ ପଡିଛି, ବନ୍ଦୀ ଜୀବନ ବିତାଇବାକୁ ହୋଇଛି, ମୃତ୍ୟୁ ଦଣ୍ଡରେ ପ୍ରାଣବଳି ଦେବାକୁ ପଡିଛି । ଚିକିତ୍ସା ବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଥିବା ଆଣ୍ଡ୍ରିଆସ ଭେସାଲିୟସ, ଓ ମାଇକେଲ ସର୍ଭେଟସ ବହୁ ନିନ୍ଦିତ ହୋଇ ମୃତ୍ୟୁବରଣ କରିଛନ୍ତି, ଭୂତତ୍ତ୍ୱ ବିଜ୍ଞାନର ଜନକ ଜର୍ଜ ବୁଫୋନ ଯନ୍ତ୍ରଣାରେ ଜର୍ଜରିତ ହୋଇଛନ୍ତି । ପଦାର୍ଥ ବିଜ୍ଞାନର ପଥପ୍ରଦର୍ଶକ ଗାଲିଲିଓ ବନ୍ଦୀ ଜୀବନ ବିତାଇଛନ୍ତି, ପ୍ରକୃତିବାଦୀ ଚିନ୍ତାନାୟକ ବ୍ରୁନୋଙ୍କୁ ନିଆଁରେ ପୋଡି ସର୍ବସାଧାରଣରେ ହତ୍ୟା କରାଯାଇଛି । ଏହି କାହାଣୀ ବହୁ ମର୍ମାନ୍ତିକ ଓ ଦୀର୍ଘ । ତେବେ ବିଜ୍ଞାନ ତଥ୍ୟ ଓ ସତ୍ୟ ଆଧାରିତ ହୋଇଥିବାରୁ ବିଜ୍ଞାନର ବିକାଶକୁ ଧର୍ମ ପ୍ରତିରୋଧ କରିପାରି ନାହିଁ । ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହୋଇ ତିନି ଶହ ବର୍ଷ ଭିତରେ ଏହା ପୃଥିବୀର ରୂପରେଖ ବଦଳାଇ ଦେଇଛି ଓ ସଭ୍ୟତାର ମୋଡ ପରିବର୍ତ୍ତନ କରିପାରିଛି । ବିଜ୍ଞାନର ଅଗ୍ରଗତି ପଶ୍ଚାତରେ ଦୁଇଟି ମୌଳିକ ସିଦ୍ଧାନ୍ତ ଚିନ୍ତାରାଜ୍ୟରେ କ୍ରାନ୍ତିକାରୀ ବିଚାରର ଅବତାରଣା କରିଛି । ପ୍ରଥମରେ ବିଜ୍ଞାନ ମଧ୍ୟ ଦେଇ ଏହି ସିଦ୍ଧାନ୍ତଟି ଆସିଛି ଯେ ପ୍ରକୃତିରେ ଯାହା କିଛି ଅଛି ବା ଯାହା କିଛି ଘଟଣା ଘଟେ ସେ ସବୁ ପ୍ରାକୃତିକ । ପ୍ରତ୍ୟେକଟି ପ୍ରାକୃତିକ ଘଟଣା

ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । କାରଣ ଜଣାଥାଉ ବା ନ ଥାଁଉ ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଦେବୀ, ଆଧିଦୈବିକ ବା ଈଶ୍ୱରୀୟ କାରଣ ନାହିଁ । ପ୍ରକୃତିରେ ରହିଥିବା ଶୃଂଖଳା, ଏକରୂପତା ଓ ନିୟମକୁ ଜାଣିଲେ ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇପାରିବ । ଦ୍ୱିତୀୟରେ ପ୍ରକୃତିର ରହସ୍ୟ, ନିୟମ ବା ଶୃଂଖଳା ଜାଣିବାକୁ ହେଲେ ଆମକୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣର ସାହାଯ୍ୟ ନେବାକୁ ହେବ । ଧର୍ମଗ୍ରନ୍ଥ ବା କୌଣସି ଆପ୍ତବଚନ ଉପରେ ନିର୍ଭର ନକରି ପ୍ରକୃତିକୁ ଅନୁଶୀଳନ ଓ ପର୍ଯ୍ୟବେକ୍ଷଣ କରିବାକୁ ହେବ । ପର୍ଯ୍ୟବେକ୍ଷଣ-ପରୀକ୍ଷଣ, କାର୍ଯ୍ୟକାରଣ ନିୟମ, ପ୍ରକଳ୍ପ ପ୍ରଣୟନ ଓ ପ୍ରମାଣ ଆଧାରରେ ବିଜ୍ଞାନର ସିଦ୍ଧାନ୍ତ ମାନ ଭିତ୍ତି ନେଇଥାଏ । ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ, ତଥ୍ୟ ଭିତ୍ତିକ, ପରୀକ୍ଷାସାପେକ୍ଷ ଓ ସ୍ୱସଂଶୋଧନାତ୍ମକ । ବସ୍ତୁତଃ ବୈଜ୍ଞାନିକ ସିଦ୍ଧାନ୍ତ ମାନ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ ଓ ସାର୍ବଜନୀନ । କୌଣସି ଘଟଣାର ବ୍ୟାଖ୍ୟାନ ପ୍ରାକୃତିକ କାରଣ ସାହାଯ୍ୟରେ ହିଁ କରିବା ବିଜ୍ଞାନର ଲକ୍ଷ୍ୟ ଓ ଏହା ଆରୋହାତ୍ମକ ପଦ୍ଧତି (Inductive method) ହିଁ ଅନୁସରଣ କରିଥାଏ ।

ବିଜ୍ଞାନର ଏହି ସିଦ୍ଧାନ୍ତ ଆଧାରରେ ପ୍ରକୃତିର ବହୁ ନିୟମ ଓ ରହସ୍ୟ ମଣିଷ ଧୀରେ ଧୀରେ ଉନ୍ମୋଚନ କରିବାକୁ ସମର୍ଥ ହୋଇଛି । ପରିଣାମତଃ ଜ୍ଞାନର ଦିଗନ୍ତ କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରସାରିତ ହୋଇ ଚାଲିଛି । ଗୋଟିଏ ଗୋଟିଏ ଉଦ୍ଭାବନ ବା ଆବିଷ୍କାର ଚିନ୍ତାରାଜ୍ୟର ଦିଗ୍‌ବଳୟକୁ ବିସ୍ତାର କରିବା ସହ ଜୀବନର ଗୁଣାତ୍ମକ ମାନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିପାରିଛି । ବୈଜ୍ଞାନିକ ସିଦ୍ଧାନ୍ତକୁ ପ୍ରୟୋଗ କରି ନୂଆ ନୂଆ ପ୍ରଯୁକ୍ତିର ଉଦ୍‌ଭବ ସମ୍ଭବ ହୋଇଛି ଓ ଜୀବନଧାରାରେ ନାନା ପରିବର୍ତ୍ତନ ଏହାଦ୍ୱାରା ସଂଘଟିତ ହୋଇଛି । ଗୁଟେନବର୍ଗଙ୍କ ଦ୍ୱାରା ପ୍ରିଣ୍ଟିଂ ପ୍ରେସର ଉଦ୍ଭାବନ, ମାଇକେଲ ଫାରାଡେଙ୍କ ଦ୍ୱାରା ଇଲେକ୍‌ଟ୍ରିସିଟିର ଉଦ୍ଭାବନ, ଜର୍ଜ ଷ୍ଟିଫେନସନଙ୍କ ଦ୍ୱାରା ରେଳଗାଡିର ଉଦ୍‌ଭାବନ ସଭ୍ୟତାର ଇତିହାସରେ ଗୋଟିଏ ଗୋଟିଏ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ଲୁଇ ପାଶ୍ଚରଙ୍କଦ୍ୱାରା ଜୀବାଣୁତତ୍ତ୍ୱର ସନ୍ଧାନ, ଆଲେକଜାଣ୍ଡର ଫ୍ଲେମିଂଙ୍କ ଦ୍ୱାରା ପେନସିଲିନ ବା ଆଣ୍ଟିବାଓଟିକର ପ୍ରଚଳନ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଯୁଗାନ୍ତକାରୀ । ଏହିପରି ବହୁ ଉଦ୍ଭାବନ ଓ ଆବିଷ୍କାର ଆଧୁନିକ ଜୀବନ ଯାତ୍ରାକୁ ଅନେକ ସରଳ ଓ ସୁଖମୟ କରିପାରିଛି । ଟେଲିଫୋନ୍, ଟେଲିଭିଜନ, ମୋବାଇଲ ଫୋନ୍, ଇଣ୍ଟରନେଟ୍, ସାଟେଲାଇଟ୍ କମୁନିକେସନ ଯାହା ଗୋଟିଏ

ଶତାବ୍ଦୀ ତଳେ ଅଚିନ୍ତନୀୟ ଥିଲା ତାହା ସଂପ୍ରତି ସାଧାରଣ ମଣିଷ ପାଖରେ ବି ଉପଲବ୍ଧ। ଏହି ତିନି ଶହ ବର୍ଷ ଭିତରେ ବିଜ୍ଞାନର ଏହି ପ୍ରଗତି ଅଚିନ୍ତନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ। ଆଧୁନିକ ବିଜ୍ଞାନର ବିକାଶ ଯୁଗରେ ଚିନ୍ତା ରାଜ୍ୟରେ ଆଉ ଗୋଟିଏ ଆଲୋଡନ ମଣିଷର ବୌଦ୍ଧିକ ରାଜ୍ୟରେ ତୁମୁଳ ପରିବର୍ତ୍ତନ ଆଣିଥିବା ମନେହୁଏ। ସେହି ଭାବନାଟି ହେଉଛି ମାନବବାଦର ପ୍ରତିଷ୍ଠା। ମାନବବାଦର ଭାବନା ସାମନ୍ତବାଦ, ରାଜତନ୍ତ୍ର, ସାମାଜିକ ଭେଦଭାବ ବିରୁଦ୍ଧରେ ସ୍ୱର ଉଠାଇଲା। ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବା ତାହାର ଏକ ପ୍ରାକୃତିକ ଅଧିକାର। ସମ୍ମାନର ସହ ବଞ୍ଚିବା, ଶିକ୍ଷା ପାଇବାର ଅଧିକାର ପାଇବା, ଆବଶ୍ୟକ ବେଳେ ଚିକିତ୍ସାର ସୁଯୋଗ ନେବା, ନିଜ ସାମର୍ଥ୍ୟାନୁଯାୟୀ ନିଜର ବୃତ୍ତି ସ୍ଥିର କରିବା ପରି ବ୍ୟକ୍ତିର ଅଧିକାରର ପ୍ରସଙ୍ଗ ଆସିଲା। ସାମାଜିକ ନ୍ୟାୟ, ସମତାର ଭାବନା, ଭେଦଭାବବିହୀନ ଜୀବନଧାରା, ନାଗରିକ ସୁଯୋଗ ସୁବିଧାର ପ୍ରଶ୍ନ ମାନବବାଦୀ ଚିନ୍ତାଧାରାରୁ ଉଦ୍ଭବ ହେଲା। ୟୁରୋପରେ ଧର୍ମ ଓ ବିଜ୍ଞାନ ଭିତରେ ସଂଘର୍ଷ ସୁବିଦିତ ଯାହା ପୂର୍ବରୁ ସୂଚା ଯାଇଛି। ପ୍ରାଚ୍ୟ ଭୂଖଣ୍ଡରେ ଓ ଆମ ଦେଶରେ ଧର୍ମ ସହ ସମାଜ ସଂସ୍କାରର ସଂଘର୍ଷ ହେଲା। ଯେଉଁମାନେ ସାମାଜିକ ସ୍ତରରେ ସମତାର କଥା କହିଲେ, ନାରୀମାନଙ୍କର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ପାଇଁ ସ୍ୱର ଉଠାଇଲେ, ଦଳିତ ମାନଙ୍କର ଶିକ୍ଷାର ଅଧିକାର ପ୍ରସଙ୍ଗ ଆଣିଲେ ସେମାନେ ରକ୍ଷଣଶୀଳ ଧର୍ମାନ୍ଧ ଲୋକଙ୍କର ଶିକାର ହେଲେ। ମହାରାଷ୍ଟ୍ରର ଜ୍ୟୋତିରାଓ ଫୁଲେ ଓ ଆମ୍ବେଦକର, କେରଳର ନାରାୟଣ ସ୍ୱାମୀ, ତାମିଲନାଡୁର ପେରିୟାର, ଆନ୍ଧ୍ରର ଗୋରା (ଗୋପରାଜୁ ରାମଚନ୍ଦ୍ର ରାଓ)ଙ୍କ ପରି ମାନବବାଦୀ ସଂସ୍କାରକ ମାନେ ରକ୍ଷଣଶୀଳ ଲୋକଙ୍କ ଦ୍ୱାରା କେତେ ବିରୋଧର ସମ୍ମୁଖୀନ ହୋଇଛନ୍ତି ତାହା ସୁବିଦିତ। ଧର୍ମ ଯାହା ଏକଦା ଏକ ସାଂସ୍କୃତିକ ଆଲୋଡନ ଭାବେ ଜୀବନର ଗୁଣାତ୍ମକ ଉତ୍ତରଣ ଓ ସାମାଜିକ ସଂହତି କ୍ଷେତ୍ରରେ ନିର୍ଣ୍ଣାୟକ ମନେ ହେଉଥିଲା ତାହା କାଳକ୍ରମେ ପାଶ୍ଚାତ୍ୟ ଦେଶ ମାନଙ୍କରେ ବିଜ୍ଞାନର ଅଗ୍ରଗତିରେ ଓ ପ୍ରାଚ୍ୟ ଭୂଖଣ୍ଡରେ ମାନବବାଦ ବିକାଶରେ ଗଭୀର ଅନ୍ତରାୟ ହେବା ଏକ ବଡ ବିଡମ୍ବନା ମନେହୁଏ।

ବିଜ୍ଞାନର ବିଜୟ ଯାତ୍ରା ଓ ମାନବବାଦୀ ଜୀବନ-ଦର୍ଶନର ପ୍ରସାରରୁ କେତେକ ବିଚାର ଚିନ୍ତାରାଜ୍ୟରେ ଗୃହୀତ ହେବାରେ ଲାଗିଛି। ସଭ୍ୟତାରେ ଯାହା କିଛି ଅଗ୍ରଗତି ହୋଇଛି ବା ଯାହା କିଛି ବିକାଶଲାଭ କରିଛି ତାହା ମଣିଷର ପ୍ରୟାସରେ ହିଁ ସମ୍ଭବ

ହୋଇଛି । ମଣିଷର ଉଦ୍ୟମ ଓ ବୌଦ୍ଧିକ ପ୍ରୟାସରୁ ଜ୍ଞାନବିଜ୍ଞାନର ବିକାଶ ହୋଇଛି ଓ ସଭ୍ୟତାର ରୂପ ବଦଳିଛି । କୌଣସି ବିକାଶ ସ୍ୱର୍ଗରୁ ଖସି ନାହିଁ ବା କେଉଁ ଦେବତାର ଆଶୀର୍ବାଦରୁ ମିଳି ନାହିଁ । ମଣିଷର ଚେଷ୍ଟାରେ ସମାଜ ଉନ୍ନତ ହେବାସହ ସମାଜରୁ ଦୁଃଖ ଦୁର୍ଦ୍ଦଶା ଦୂର ହୋଇପାରିବ । ଯେଉଁ ଦେଶମାନେ ଉନ୍ନତ ବା ବିକଶିତ ସେମାନଙ୍କୁ ଈଶ୍ୱରଙ୍କର ଆଶୀର୍ବାଦ ମିଳିନାହିଁ ଓ ଯେଉଁ ଦେଶମାନ ଅନଗ୍ରସର ସେମାନଙ୍କୁ ଈଶ୍ୱରଙ୍କର ଅଭିଶାପ ମିଳିନାହିଁ । ମଣିଷର ସମ୍ମିଳିତ ପ୍ରୟାସ, ଜ୍ଞାନ ବିଜ୍ଞାନର ଉନ୍ନତି, ମାନବିକ ମୂଲ୍ୟବୋଧର ପ୍ରସାର, ଉନ୍ନତ ସାମାଜିକ ବ୍ୟବସ୍ଥା ଦ୍ୱାରା ଦେଶର ସ୍ଥିତି ବଦଳି ପାରିବ ଓ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିପାରିବ । ଆମ ସଂସାରରେ ଅତୀତରେ ଘଟିଯାଇଥିବା ଯୁଦ୍ଧ, ବିଭୀଷିକା, ମାନବିକ କ୍ରୂରତା ଓ ଭେଦଭାବ ଜନିତ ଦୃଷ୍ଟିଭଙ୍ଗୀ ବହୁ ଦୁଃଖର କାରଣ ହୋଇଛି । ପ୍ରାକୃତିକ ଦୁର୍ବିପାକରୁ ମଣିଷ ସମାଜରେ ଯେତେ ଦୁଃଖ ଦୁର୍ଦ୍ଦଶା ଆସିଛି, ତାଠାରୁ ବହୁ ଗୁଣରେ ଦୁଃଖଦୁର୍ଦ୍ଦଶା ମଣିଷ ଯୋଗୁ ଘଟିଛି । ସମାଜରେ ରହିଥିବା ଭେଦଭାବ, ବୈଷମ୍ୟ ଓ ମାନବକୃତ ହିଂସାକୁ ଦୂର କଲେ ସମାଜରୁ ଅନେକ ଦୁଃଖଦୁର୍ଦ୍ଦଶା ଦୂର ହୋଇପାରିବ । ଆମ ଉଦ୍ୟମରେ ଏକ ପ୍ରୀତିପଦ, ଭାତୃତ୍ୱପୂର୍ଣ୍ଣ ଓ ନ୍ୟାୟଯୁକ୍ତ ସମାଜ ପ୍ରତିଷ୍ଠିତ ହୋଇପାରିବ । ଏହି ବିଚାରରୁ ଇହଲୌକିକ ଜୀବନଦୃଷ୍ଟିର ଭାବନା ଦୃଢ଼ ହେବାରେ ଲାଗିଛି । ଧାର୍ମିକ ମାନସିକତାରେ ଯେଉଁ ପାରଲୌକିକ ଜୀବନଦୃଷ୍ଟି ରହିଛି ତାହା ଯେ ମନଗଢ଼ା ଓ କାଳ୍ପନିକ ଏହି ଭାବନା ମାନବବାଦରୁ ଉଦ୍‌ଭବ ହୋଇଛି । ବ୍ୟକ୍ତି ମରଣଶୀଳ, ମୃତ୍ୟୁ ହିଁ ଜୀବନର ଅନ୍ତିମ ପରିଣତି । କିନ୍ତୁ ମାନବଜାତି ବା ମାନବସମାଜ ସବୁଦିନ ପାଇଁ ରହିବ । ସମାଜ କିପରି ଅଧିକରୁ ଅଧିକ ଉନ୍ନତ ହେବ, ଜୀବନର ଗୁଣାତ୍ମକ ମାନ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତ ହୋଇ ଚାଲିବ, ସକଳ ମାନବୀୟ ସମସ୍ୟା ମଣିଷର ପ୍ରୟାସରେ ଶାନ୍ତିପୂର୍ଣ୍ଣ ଭାବେ ସମାଧାନ ହେବ ଏହି ସବୁ ଭାବନା ମାନବବାଦୀ ଜୀବନଦର୍ଶନରୁ ଉଦ୍‌ଭବ ହୋଇଛି । ମାନବବାଦୀ ଜୀବନଦୃଷ୍ଟିରେ ନୀତି, ନୈତିକତା, ସମ୍ବେଦନଶୀଳତା ଓ ସକଳ ମୂଲ୍ୟବୋଧ ଉନ୍ନତ ଜୀବନ ନେଇ ମଣିଷର ବୌଦ୍ଧିକ ବିଚାରରୁ ସମ୍ଭବ ହୋଇଛି । ଗୋଟିଏ ସମୟରେ ବିଶ୍ୱାସ ରହିଥିଲା ଯେ ଗଭୀର ଈଶ୍ୱର ବିଶ୍ୱାସରୁ ମଣିଷ ନୀତିପୂର୍ଣ୍ଣ ଜୀବନ ପ୍ରତି ଆକୃଷ୍ଟ ହୋଇଥାଏ । ସାଂପ୍ରତିକ ବିଚାରରେ "ନୈତିକତା" ଏକ ସାମାଜିକ କର୍ତ୍ତବ୍ୟ ଓ ଏହା ସହିତ ଧର୍ମ, ଈଶ୍ୱରବିଶ୍ୱାସର ସଂପର୍କ କେବଳ ମନସ୍ତାତ୍ତ୍ୱିକ । ପ୍ରତ୍ୟେକ ଧର୍ମବିଶ୍ୱାସୀ ବ୍ୟକ୍ତି ନୀତିବାନ ନୁହନ୍ତି ବା ନୈତିକ ଆଚରଣକୁ

ସମ୍ମାନ ଦେଉଥିବା ବା ଜୀବନରେ ନୀତିବାଦୀ ହୋଇଥିବା ପ୍ରତ୍ୟେକ ବ୍ୟକ୍ତି ଈଶ୍ୱର ବିଶ୍ୱାସୀ ନୁହନ୍ତି । ଜୀବନର ଅନୁଭୂତି, ଉତ୍ତମ ଜୀବନ ନେଇ ଅନୁଶୀଳନ ଓ ଏକ ପ୍ରସାରିତ କର୍ତ୍ତବ୍ୟବୋଧରୁ ବ୍ୟକ୍ତି ନୈତିକ ମୂଲ୍ୟଚୟକୁ ପ୍ରାଧାନ୍ୟ ଦେଇଥାଏ । 'ନୈତିକତା ଏକ ସଭ୍ୟ ଜୀବନଦୃଷ୍ଟିର ଅଭିବ୍ୟକ୍ତି ଓ ଏକ ସାମାଜିକ କର୍ତ୍ତବ୍ୟ", ମାନବବାଦୀ ଦର୍ଶନରୁ ଉଦ୍‌ଭବ ହୋଇଛି ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦୃଷ୍ଟି ଦୁଇଟି ସାର୍ବଜନୀନ ଆଦର୍ଶ । ବିଜ୍ଞାନର ବିକାଶଧାରାରେ ବିଂଶଶତାବ୍ଦୀ ବହୁଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ । ବହୁ ମୂଲ୍ୟବାନ ଆବିଷ୍କାର ଓ ଉଦ୍‌ଭାବନ ଗତ ଶହେ ବର୍ଷ ଭିତରେ ହୋଇଛି, ବିଂଶ ଶତାବ୍ଦୀ ଜୀବନର ଭୌତିକ ଓ ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ତଥାପି ମଣିଷ ସମାଜର ସଂକଟ ଘନିଭୂତ ହେବାରେ ଲାଗିଛି । ଅଜିର ଯୁଗରେ ମଣିଷ ସମାଜ ପାଇଁ ସବୁଠାରୁ ବଡ଼ ସଂକଟ ହେଉଛି ବିଜ୍ଞାନର ଅପପ୍ରୟୋଗ । ଆଣବିକ ଅସ୍ତ୍ରନିର୍ମାଣ ବିଜ୍ଞାନର ଏକ ବଡ଼ ଅପପ୍ରୟୋଗ ମନେହୁଏ । ପୃଥିବୀର କେତେକ ରାଷ୍ଟ୍ର ଗଣବିଧ୍ୱଂସୀ ମାରଣାସ୍ତ୍ର ନିର୍ମାଣ କରିବାକୁ ପରସ୍ପର ଭିତରେ ପ୍ରତିଯୋଗିତା କରିବା ଦେଖାଯାଉଛି । ନିଜ ରାଷ୍ଟ୍ରର ସୁରକ୍ଷା ଆଳରେ ଯେଉଁ ସଭ୍ୟତାବିନାଶକାରୀ ମାରଣାସ୍ତ୍ର ପୃଥିବୀର କିଛି ରାଷ୍ଟ୍ର ନିର୍ମାଣ କରୁଛନ୍ତି ତାହା ଦୁର୍ମୂଲ୍ୟ ଓ ସୀମିତ କେତେକ ପ୍ରାକୃତିକ ସମ୍ବଳକୁ ନଷ୍ଟ କରିବାରେ ଲାଗିଛି । ଯଦି କୌଣସି ରାଷ୍ଟ୍ର ଆଣବିକ ଅସ୍ତ୍ର ପ୍ରୟୋଗ କରେ ତେବେ ତାହା ସଭ୍ୟତାକୁ ଧ୍ୱଂସ ମୁଖକୁ ନେଇଯିବ । ଏହି ପୃଷ୍ଠଭୂମିରେ ଏକ ବିଶ୍ୱ-ସରକାରର ଭାବନା କେତେକ ରାଷ୍ଟ୍ରନୀତିଜ୍ଞ ଓ ମାନବହିତୈଷୀ ବ୍ୟକ୍ତି ବ୍ୟକ୍ତ କରୁଛନ୍ତି । ରାଷ୍ଟ୍ରୀୟତା, ସାର୍ବଭୌମତ୍ୱ ଭାବନାକୁ ପରିହାର କରି ସମଗ୍ର ମଣିଷ ସମାଜ ପାଇଁ ଏକ ବିଶ୍ୱ-ରାଷ୍ଟ୍ର ପରିକଳ୍ପନା ସମଗ୍ର ମଣିଷ ଜାତି ପାଇଁ ଉପଯୋଗୀ ହେବ ବୋଲି ସେମାନେ ମତପୋଷଣ କରୁଛନ୍ତି । ସାଂପ୍ରତିକ ସ୍ଥିତିରେ ଏହା ଏକ କଳ୍ପନା ବା ୟୁଟୋପିଆ ମନେ ହେଉଛି । ତେବେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଯେପରି ପୃଥିବୀକୁ କ୍ଷୁଦ୍ର-ଗ୍ରାମରେ ରୂପାନ୍ତରିତ କରିବାରେ ଲାଗିଛି ସେଥିରେ ଏହି ପ୍ରକଳ୍ପର ସମ୍ଭାବନା ହୁଏତ ଭବିଷ୍ୟତରେ ଯେ ରୂପରେଖ ନେବ, ତାହା ଅନୁମାନ କରାଯାଇପାରେ ।

ଏକବିଂଶ ଶତାବ୍ଦୀର ଆଉ ଦୁଇଟି ବଡ ସଂକଟ ହେଉଛି ଜନସଂଖ୍ୟାର ବିସ୍ଫୋରଣ ଓ ପରିବେଶ ପ୍ରଦୂଷଣ । ୧୯୦୦ ମସିହାରେ ପୃଥିବୀର ଲୋକସଂଖ୍ୟା

୧୬୦ କୋଟି ଥିଲା। ୨୦୦୦ ମସିହାରେ ଜନସଂଖ୍ୟା ବୃଦ୍ଧି ପାଇ ହେଲା ୬୦୦ କୋଟି ଓ ୨୦୧୦ ରେ ଏହା ହାଇଛି ୭୦୦ କୋଟି। ଆଧୁନିକ ଚିକିତ୍ସାର ବିକାଶ ଯୋଗୁ ବହୁ ମହାମାରୀ ରୋଗକୁ ନିୟନ୍ତଣ କରାଯିବାରୁ ଓ ଦୁର୍ଭିକ୍ଷ ଜନିତ ପରିସ୍ଥିତିକୁ ବିଶ୍ୱ ସ୍ତରରେ ମୁକାବିଲା କରାଯିବା ସମ୍ଭବ ହେବାରୁ ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି ଘଟିଚାଲିଛି। ପରିବାର ନିୟୋଜନ ଜନିତ ଜ୍ଞାନ ଚିକିତ୍ସା ବିଜ୍ଞାନରେ ଉପଲବ୍ଧ ସତ୍ତ୍ୱେ ଜନସଂଖ୍ୟାକୁ ନିୟନ୍ତଣ କରାଯାଇ ପାରୁ ନାହିଁ। କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଚାପ ଯୋଗୁଁ ବିକାଶଶୀଳ ଦେଶ ମାନଙ୍କରେ ଦାରିଦ୍ର୍ୟ ବହୁଭାବରେ ରହିଛି। ଅନେକ ପ୍ରାକୃତିକ ବସ୍ତୁ ଯଥା କୋଇଲା, ପେଟ୍ରୋଲ ଇତ୍ୟାଦି ପୃଥିବୀରୁ ସରି ସରି ଆସୁଛି। ଜନସଂଖ୍ୟାର ଅଭିବୃଦ୍ଧି ଓ ସାଧାରଣ ମଣିଷର ଆୟୁ ବୃଦ୍ଧି ଯୋଗୁଁ ଆମ ଧରିତ୍ରୀ ଜନବହୁଳ ହୋଇ ଉଠୁଛି। ଏହାକୁ ନିୟନ୍ତଣରେ ନ ରଖିଲେ ଭବିଷ୍ୟତରେ ଏହା ବହୁ ସଂକଟର ପରିସ୍ଥିତି ସୃଷ୍ଟି କରିବ। ମଣିଷ ଜାତି ପାଇଁ ଅନ୍ୟ ଏକ ସଂକଟ ହେଉଛି ପରିବେଶ ପ୍ରଦୂଷଣ। ଜନସଂଖ୍ୟାର ଅଭିବୃଦ୍ଧି ଯୋଗୁ ନୂଆ ନୂଆ ବସ୍ତିମାନ ଗଢ଼ିଉଠୁଛି। ଶିଳ୍ପର ବିକାଶ ଓ କଳକାରଖାନା ଗଢ଼ି ଉଠୁଥିବା ଯୋଗୁଁ ସ୍ଥଳ ଭାଗରେ ଥିବା ଜଙ୍ଗଲ ସଂପଦ ଦ୍ରୁତ ଭାବରେ କମିବାରେ ଲାଗିଛି। କୃଷି ଉତ୍ପାଦନର ଅଭିବୃଦ୍ଧି ପାଇଁ ବିଭିନ୍ନ ରାସାୟନିକ୍ ସାର, କୀଟନାଶକର ପ୍ରୟୋଗ ଯୋଗୁ ମାଟିର ଅମ୍ଳତା ବୃଦ୍ଧି ପାଇବାରେ ଲାଗିଛି। ଗମନାଗମନର ବିକାଶ ହେତୁ ଜୈବିକ ଇନ୍ଧନର ଅବକ୍ଷୟ ହୋଇଚାଲିଛି। କଳ କାରଖାନାରୁ ନିର୍ଗତ ବର୍ଜ୍ୟ ବସ୍ତୁ ଯୋଗୁ ଜଳ ଉତ୍ସ ଗୁଡିକ ପ୍ରଦୂଷିତ ହୋଇଚାଲିଛି। ନାନା କାରଣ ନେଇ ବିଭିନ୍ନ ଅଞ୍ଚଳର ପ୍ରାକୃତିକ ଜୈବ ବିବିଧତା ନଷ୍ଟ ହେବାରେ ଲାଗିଛି। ବାୟୁ ମଣ୍ଡଳର ଅଙ୍ଗାରକାମ୍ଳ ବାଷ୍ପର ବୃଦ୍ଧି ଯୋଗୁ ଓଜନ ସ୍ତର ପ୍ରଭାବିତ ହେଉଛି। ଏହି ସବୁ କାରଣ ନେଇ ପ୍ରାକୃତିକ  ଭାରସାମ୍ୟତା ନଷ୍ଟ ହୋଇ ଚାଲିଛି ଓ ଏ ସବୁ ଏକ ଭୟାନକ ଭବିଷ୍ୟତର ଚିତ୍ର ଦେଉଛି। ତେବେ ସାରା ପୃଥିବୀରେ ପରିବେଶ ପ୍ରଦୂଷଣ ନେଇ ଭବିଷ୍ୟତର ଯେଉଁ ଚିତ୍ରଟି ମିଳୁଛି ତାହା ବହୁ ପରିବେଶ ବିଜ୍ଞାନୀ, ମାନବହିତୈଷୀ ହେତୁବାଦୀଙ୍କୁ ବିଚଳିତ କରୁଛି। ଆଧୁନିକ ବିକାଶ ଯେପରି ଭବିଷ୍ୟତ ପାଇଁ ବିନାଶର କାରଣ ନହୁଏ ଏଥିପାଇଁ ସାରା ବିଶ୍ୱରେ ଅନେକ ସଚେତନତା ପ୍ରକାଶ  ପାଇବାରେ  ଲାଗିଛି।

ସଭ୍ୟତାର ବିକାଶକାଳରୁ ଆଜିର ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ସବୁ ସମୟରେ ବିଭିନ୍ନ ସଂକଟ ଆସିଛି। ଜ୍ଞାନ ବିଜ୍ଞାନର ବିକାଶ ହୋଇନଥିବା ସମୟରେ ମଣିଷ

ଯେପରି ସଂକଟର ସମ୍ମୁଖୀନ ହେଉଥିଲା ଆଜିର ଯୁଗରେ ବି ସେହିପରି ସଂକଟ ଜନକ ପରିସ୍ଥିତିର ମୁକାବିଲା କରୁଛି। ସଭ୍ୟତା ଯେତେ ଆଗକୁ ଗଲେ ବି ମଣିଷଜାତି ସଂକଟ ରହିତ ହୋଇପାରୁନାହିଁ। ତେବେ ମଣିଷ ଭିତରର ବୌଦ୍ଧିକତା ଓ ସୃଜନଶୀଳତା ଭିତରୁ ପରିସ୍ଥିତିକୁ ମୁକାବିଲା କରି ନୂତନତ୍ୱର ସନ୍ଧାନ କରିବାକୁ ସେ ପ୍ରୟାସ କରିଛି। ମଣିଷ ଯେତେ ଅଧିକ ବିଚାରଶୀଳ ଓ ସମ୍ବେଦନଶୀଳ ହେବ ଓ ସେହି ମୂଲ୍ୟବୋଧକୁ ସାର୍ବଜନୀନ ଭାବେ ବିସ୍ତାର କରିପାରିବ, ଆଗାମୀ ବିଶ୍ୱ ଆମ ପାଇଁ ସେତିକି ପ୍ରୀତିପଦ ହୋଇପାରିବ। ବିଂଶଶତାବ୍ଦୀ ସୁଦ୍ଧା ଜ୍ଞାନ-ବିଜ୍ଞାନର ଯେଉଁ ବିକାଶ ହୋଇଛି ଓ ସାରା ପୃଥିବୀରେ ଯେଉଁ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ହୋଇଛି ତାହା ଆମ ସଂସାରରୁ ବହୁ ମନ୍ଦ ସ୍ଥିତିକୁ ଦୂର କରିପାରିବ ବୋଲି ଆଶା କରାଯାଏ। ଜ୍ଞାନବିଜ୍ଞାନର ଅଗ୍ରଗତି ସହ ବିଚାରଶୀଳତା ଓ ମାନବିକ ସମ୍ବେଦନଶୀଳତାର ଅଭିବୃଦ୍ଧି ନହେଲେ ସଭ୍ୟତା ଉତ୍ତୁଙ୍ଗ ଶିଖରକୁ ଯାଇ ମଧ୍ୟ ମାନବ ସମୁଦାୟରୁ ସଂକଟ ଦୂରହେବ ନାହିଁ। ସଭ୍ୟତା ଯଦି ଆତ୍ମହତ୍ୟା ନକରେ ତେବେ ବୌଦ୍ଧିକ ସ୍ତରରେ ଉଦ୍ଭବ ଜ୍ଞାନବିଜ୍ଞାନ ଓ ମାନବବାଦ ସହ ସଂଶ୍ଳିଷ୍ଟ ବହୁ ମହନୀୟ ଆଦର୍ଶ ଆମ ସଂସାରକୁ ମଧୁମୟ କରିପାରିବ।



# ସଭ୍ୟତାର କ୍ରମବିକାଶ ଓ ବିଜ୍ଞାନ

ପ୍ରାଣୀ ଜଗତରେ ଯେତେ ଜୀବ ରହିଛନ୍ତି ସେ ମଧ୍ୟରେ ମନୁଷ୍ୟ ହିଁ ଅନୁସନ୍ଧିତ୍ସୁ। ମନୁଷ୍ୟ ଅନୁସନ୍ଧିତ୍ସୁ ହୋଇଥିବା ଯୋଗୁ ସେ ସଭ୍ୟତା, ସଂସ୍କୃତି ନିର୍ମାଣ କରିବାକୁ ସମର୍ଥ ହୋଇଛି। ଏହା ସମ୍ଭବ ହୋଇଛି କାରଣ ମଣିଷର ଏକ ଉନ୍ନତ ମସ୍ତିଷ୍କ ରହିଛି। ଅନ୍ୟ ଇତର ପ୍ରାଣୀଙ୍କର ମସ୍ତିଷ୍କ ବିକଶିତ ହୋଇ ନଥିବା ବେଳେ ବିବର୍ତ୍ତନ ପ୍ରକ୍ରିୟାରେ ମଣିଷର ମସ୍ତିଷ୍କ ହିଁ ବିକଶିତ ହୋଇଛି। ସେଥିପାଇଁ ମଣିଷ ଭାଷା କହିବାକୁ ଓ ଭାଷା ସୃଷ୍ଟି କରିବାକୁ ସମର୍ଥ ହୋଇଛି। ପ୍ରକୃତି ମଣିଷ ପାଖରେ ଯେଉଁ ସ୍ୱରଯନ୍ତ୍ର ଦେଇଛି ତାହା ସାହାଯ୍ୟରେ ମଣିଷ ନିଜର ଭାବ ବିନିମୟ କରିବାକୁ ଭାଷା ସୃଷ୍ଟି କରିଛି। ମଣିଷ କେବେ ଭାଷା କହିବା ଆରମ୍ଭ କଲା, ଭାଷାର ସୃଷ୍ଟି କିପରି ହେଲା, ପ୍ରତ୍ୟେକ ଭାଷାରେ ଶବ୍ଦମାନ କିପରି ସୃଷ୍ଟିହେଲେ ଏ ବିଷୟ ଏବେ ବି ରହସ୍ୟମୟ ହୋଇ ରହିଛି। ତେବେ ସଭ୍ୟତାର ବିକାଶ ଯୋଗୁ ଏହା ଜଣାଯାଏ ଯେ ପୃଥିବୀରେ ପାଞ୍ଚହଜାରରୁ ଅଧିକ ଭାଷା ରହିଛି। ଆଦିମ ଅବସ୍ଥାର ଗୋଷ୍ଠୀ ଜୀବନରୁ ଗୋଟିଏ ଗୋଟିଏ ଭାଷା ଜନଗୋଷ୍ଠୀ ଭିତରେ ସୃଷ୍ଟି ହୋଇଛି। ନଦୀ, ପାହାଡ, ପର୍ବତ, ସମୁଦ୍ର, ମରୁଭୂମି ଯୋଗୁ ଆମ ପୃଥିବୀ ଭାଗ ଭାଗ ହୋଇ ରହିଥିଲା। ଆଦିମ ଯୁଗରେ ମଣିଷର ସଂସାରଟି ଖୁବ୍ ସଙ୍କୁଚିତ ଥିଲା ଓ ମଣିଷର ଗତିଶୀଳତା ଅତ୍ୟନ୍ତ ସୀମିତ ଥିବାରୁ ଅନ୍ୟ ଭୂଖଣ୍ଡ ଓ ଜନଗୋଷ୍ଠୀ ବିଷୟରେ ଜାଣିବାର ଅବକାଶ ନଥିଲା। ସେହି ଧାରାରେ କାଳକ୍ରମେ ହଜାର ହଜାର ଭାଷାର ଉତ୍ପତ୍ତି ହେଲା। ତେବେ କେତେକ ଭାଷା ବେଶ୍ ବିକଶିତ ହୋଇ ନଦୀ, ସାଗର ସଦୃଶ ପ୍ରସାରିତ ହୋଇପାରିଲେ ଓ ଅନ୍ୟ କେତେକ ଭାଷା କୂପଟିଏ ପରି ସୀମିତ ହୋଇଗଲେ। ଭାଷା ବ୍ୟବହାର ସହିତ ବିଭିନ୍ନ ଭୂଖଣ୍ଡରେ କେତେକ ବ୍ୟକ୍ତି ନିଜର ବିଚାର ବୁଦ୍ଧି ପ୍ରୟୋଗ କରି ଜୀବନଧାରାରେ

ପରିବର୍ତ୍ତନ ଆଣିବାକୁ ପ୍ରୟାସ କଲେ। ଏହି ପ୍ରକ୍ରିୟାରେ କୁହାଯାଏ କୃଷିର ଜ୍ଞାନଠାରୁ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହେଲା। ପ୍ରାୟ ପାଞ୍ଚ ଛ' ହଜାର ବର୍ଷ ତଳେ କୃଷିକରି ଉତ୍ପାଦନ କରିବାର ଜ୍ଞାନରୁ ମଣିଷର ଯାଯାବର ଜୀବନର ପରିସମାପ୍ତି ଘଟିଲା। ମଣିଷ ସ୍ଥାୟୀ ଭାବରେ ବାସ କରିବାକୁ ଲାଗିଲା। ପରିଣାମତଃ ପାରିବାରିକ ଜୀବନର ଭିତ୍ତି ପଡିଲା। ଚାଷ କରିବା ପାଇଁ ମାଟି ଖୋଳିବା, ହଳ କରିବା, ଫସଲ ଅମଳ କରିବାର ଆବଶ୍ୟକତାରୁ ନୂଆ ନୂଆ ହାତ ହତିଆର, ଯନ୍ତପାତି ପ୍ରସ୍ତୁତ କରିବା, କେତେକ ପଶୁଙ୍କର ସାହାଯ୍ୟ ନେବାର ପରିବେଶ ଆସିଲା। ପାରିବାରିକ ଜୀବନର ବିସ୍ତାରରୁ ଗ୍ରାମୀଣ ଜୀବନ, ରାଜ୍ୟର ପ୍ରତିଷ୍ଠା ହେଲା ଓ ଏକ ରାଜନୈତିକ ବ୍ୟବସ୍ଥା ମୁଣ୍ଡ ଟେକିଲା। ଧୀରେ ଧୀରେ ସମାଜରେ ନୀତି, ରୀତି, ନୈତିକତା, ଧାର୍ମିକ ପୂଜା-ପାଠର ଆବେଗ ଆସିଲା। ଖ୍ରୀଷ୍ଟଙ୍କ ଜନ୍ମ ପୂର୍ବରୁ ବିଭିନ୍ନ ଭୂଖଣ୍ଡରେ କେତେକ ସଭ୍ୟତା ବିକଶିତ ହୋଇଥିଲା। ପ୍ରତ୍ୟେକ ସଭ୍ୟତାରେ କିଛି ବୁଦ୍ଧିଜୀବୀ ଜ୍ଞାନ ବିଜ୍ଞାନ, ଜୀବନର ରହସ୍ୟ, ସାମାଜିକ ବ୍ୟବସ୍ଥା ନେଇ କିଛି ଚିନ୍ତା ବ୍ୟକ୍ତ କରିଥିଲେ। କେତେକ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ବିଚାର ଓ ଚିନ୍ତନକୁ ନେଇ ଧର୍ମମାନଙ୍କର ବିକାଶ ହୋଇଥିଲା। ସଭ୍ୟତାର ଅଗ୍ରଗତି ସହ ଧର୍ମ ସାମାଜିକ ନିୟନ୍ତ୍ରଣର ମୁଖ୍ୟ ଆଧାର ହେଲା ଓ ଏକ ଜନଗୋଷ୍ଠୀ ଭିତରେ ସାଂସ୍କୃତିକ ସଂହତି ସୃଷ୍ଟି କରିପାରିଲା। କାଳକ୍ରମେ ରାଜତନ୍ତ୍ରର ଅଭ୍ୟୁଦୟ ହେଲା ଓ ସାମନ୍ତବାଦର ପରିବେଶ ଆସିଲା। ରାଜତନ୍ତ୍ର ଯୁଗରେ ରାଜ୍ୟଜୟ, ରାଜ୍ୟ ବିସ୍ତାର, ଯୁଦ୍ଧ ଅତି ସାଧାରଣ ଘଟଣା ହୋଇ ରହିଥିଲା। ଏହି ପ୍ରକ୍ରିୟାରେ କେତେକ ରାଜ୍ୟର ପତନ ହେଉଥିଲା, ନୂଆ ରାଜ୍ୟ ସୃଷ୍ଟି ହେଉଥିଲା ଓ ସେହି ସ୍ଥିତିରେ ଜୀବନ ଅଧିକ ବିପଦସଂକୁଳ ଥିଲା। ଗ୍ରାମୀଣ ଜୀବନଧାରାରେ କୃଷି, କୁଟୀରଶିଳ୍ପ ଗ୍ରାମୀଣ-ଅର୍ଥନୀତିର ମୁଖ୍ୟ ଆୟୁଧ ହୋଇ ରହିଥିଲା। ପୂଜକ ଓ ଶାସକ ସାମନ୍ତ ଗୋଷ୍ଠୀଟି ସମାଜରେ ବେଶ୍ ଶକ୍ତିଶାଳୀ ରହିଥିଲେ।

ହଜାର ହଜାର ବର୍ଷର କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତାରେ ଏକ ବିରାଟ ପରିବର୍ତ୍ତନ ସପ୍ତାଦଶ-ଅଷ୍ଟାଦଶ ଶତାବ୍ଦୀରେ ଆରମ୍ଭ ହେଲା। ପାଶ୍ଚାତ୍ୟ ଭୂଖଣ୍ଡ ବା ଇଉରୋପରେ ଯେଉଁ ନବଜାଗରଣ ଯୁଗଟି ଆରମ୍ଭ ହେଲା ତାହା ବୈଚାରିକ ସ୍ତରରେ ଓ ସାମାଜିକ ଜୀବନ ପ୍ରବାହରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କରାଇଲା। ଏହି ନବ ଜାଗରଣ ଯୁଗରେ ଆଧୁନିକ ବିଜ୍ଞାନ ଜନ୍ମଲାଭ କଲା। ବିଜ୍ଞାନର ବିକାଶ ପର୍ବ

ଆରମ୍ଭ ପାଶ୍ଚାତରେ କେତେକ ମୌଳିକ ବିଚାର ରହିଥିଲା । ପ୍ରକୃତିରେ ଯାହା କିଛି ଅଛି ବା ଯାହା କିଛି ଘଟଣା ଘଟୁଛି ସେ ସବୁ ପ୍ରାକୃତିକ । ପ୍ରତ୍ୟେକ ପ୍ରାକୃତିକ ଘଟଣା ପଶ୍ଚାତରେ କେତେକ ପ୍ରାକୃତିକ କାରଣ ରହିଛି । ପ୍ରାକୃତିକ କାରଣକୁ ଅନୁସନ୍ଧାନ ଦ୍ୱାରା ବାହାର କରିବାକୁ ହେବ । ଏହି ପୃଷ୍ଠଭୂମିରେ ବିଜ୍ଞାନ ପ୍ରକୃତିକୁ ଅନୁଶୀଳନ କରିବା ପାଇଁ ଏକ ସୁବ୍ୟବସ୍ଥିତ ପ୍ରଣାଳୀ ସୂତ୍ରପାତ କରାଇଲା । ପର୍ଯ୍ୟବେକ୍ଷଣ-ପରୀକ୍ଷଣ ହିଁ ବୈଜ୍ଞାନିକ ଜ୍ଞାନର ମୂଳ ଭିତ୍ତି ହେଲା । ପ୍ରକୃତି ଯେତେ ବିଶାଳ ଓ ଜଟିଳ ହେଲେ ମଧ୍ୟ ବୈଜ୍ଞାନିକ ଧାରାରେ ସେ ସବୁର ଅନୁଶୀଳନ ଦ୍ୱାରା ବହୁ ରହସ୍ୟ ପଦାକୁ ଆସିଲା । ଧୀରେ ଧୀରେ ବିଜ୍ଞାନ ଜଗତରେ ଏହା ସ୍ୱୀକୃତ ହେଲା ଯେ ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଆଧିଭୌତିକ, ଈଶ୍ୱରୀୟ କାରଣ ନାହିଁ । ଯୁଗ ଯୁଗର ଧାର୍ମିକ ବିଶ୍ୱାସ ସହିତ ଏହି ପରିପ୍ରେକ୍ଷୀରେ ବିଜ୍ଞାନର ମତଭେଦ ଆରମ୍ଭ ହେଲା । ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ । ବିଶ୍ୱକୁ ଈଶ୍ୱର କେତେ ହଜାର ବର୍ଷ ତଳେ ସୃଷ୍ଟି କରିଛନ୍ତି, ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ରୂପ ଦେଇଛନ୍ତି, ପ୍ରକୃତିରେ ଯାହା କିଛି ଘଟୁଛି ସେ ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ହେଉଛି, ସବୁ ଦୁଃଖ ଯନ୍ତ୍ରଣା ଓ ପ୍ରାକୃତିକ ବିପର୍ଯ୍ୟୟ ଦୈବୀ ପ୍ରକୋପର ପରିଣାମ ମାତ୍ର - ବିଶ୍ୱାସ ଗୁଡ଼ିକ ସହିତ ବିଜ୍ଞାନର ସିଦ୍ଧାନ୍ତ ମାନଙ୍କର ମତପାର୍ଥକ୍ୟ ହେଲା । ବିଶ୍ୱ କୋଟି କୋଟି ବର୍ଷ ହେଲା ରହିଛି, ଲକ୍ଷ ଲକ୍ଷ ବର୍ଷର ନାନା ପରିବର୍ତ୍ତନ ଓ ଜୈବିକ ବିବର୍ତ୍ତନ ଦେଇ ମଣିଷ ଆଜିର ସ୍ଥିତିକୁ ଆସିଛି, ସ୍ୱର୍ଗ, ନରକ, ପୁନର୍ଜନ୍ମ, ଆତ୍ମାର ଅମରତ୍ୱ, ମୁକ୍ତି, ମୋକ୍ଷ, ନିର୍ବାଣ କେବଳ ମଣିଷର କଳ୍ପନା ମାତ୍ର ଭାବନା ସକଳ ଚିନ୍ତାରାଜ୍ୟରେ ବେଶ୍ ଆଲୋଡ଼ନ ସୃଷ୍ଟି କଲା । ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟ-ଆଧାରିତ, ପରୀକ୍ଷା ସାପେକ୍ଷ, ସତ୍ୟଭିତ୍ତିକ, ସାର୍ବଜନୀନ ଓ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ ହୋଇଥିବାରୁ ବିଜ୍ଞାନର ବିକାଶକୁ ଧର୍ମବିଶ୍ୱାସ ପ୍ରତିହତ କରିପାରିଲା ନାହିଁ । ବିଜ୍ଞାନର ବିଜୟଯାତ୍ରା ଅବ୍ୟାହତ ରହିଲା ଓ ବିଂଶ ଶତାବ୍ଦୀରେ ବିଜ୍ଞାନ ଏକ ନିର୍ଣ୍ଣାୟକ ସ୍ଥିତିକୁ ଆସିଲା । ବୈଜ୍ଞାନିକ ଜ୍ଞାନକୁ ଆଧାର କରି ନୂଆ ନୂଆ ପ୍ରଯୁକ୍ତି ସୃଷ୍ଟି ହେଲା । ପ୍ରାଯୁକ୍ତିକ କୌଶଳ ଆଧାରରେ ଶିଳ୍ପ ବିପ୍ଳବ ଆସିଲା । ଏହାପରେ ସମୁଦ୍ର ଯାତ୍ରା ଜନିତ ଜ୍ଞାନରୁ ନୂଆ ନୂଆ ଭୂଖଣ୍ଡ ମାନ ଆବିଷ୍କୃତ ହେଲା । ସଭ୍ୟତା-ସଭ୍ୟତା ଭିତରେ ଓ ବିଭିନ୍ନ ଭୌଗୋଳିକ ଭୂଖଣ୍ଡ ମାନଙ୍କ ମଧ୍ୟରେ ସଂପର୍କ ସୃଷ୍ଟି ହେଲା । ଯେଉଁ ଦେଶମାନେ ସାମରିକ ଶକ୍ତିରେ ଉନ୍ନତ ଥିଲେ ସେମାନେ ଅନ୍ୟ ଭୂଖଣ୍ଡକୁ ବାଣିଜ୍ୟ କରିବାକୁ ଯାଇ

ସାମ୍ରାଜ୍ୟବାଦ ପ୍ରତିଷ୍ଠା କଲେ। ସାମ୍ରାଜ୍ୟବାଦର ବିସ୍ତାରଦ୍ୱାରା କେତେକ ଦେଶର ରାଜନୈତିକ ସ୍ୱାଧୀନତା ଲୋପ ପାଇଲା ଓ ପୃଥିବୀର ଦୃଶ୍ୟପଟରେ ବହୁ ପରିବର୍ତ୍ତନର ସୂତ୍ରପାତ ହେଲା। କୃଷିଭିତ୍ତିକ ସଭ୍ୟତା ଧୀରେ ଧୀରେ ଶିଳ୍ପ ସଭ୍ୟତାରେ ରୂପାନ୍ତରିତ ହେବାକୁ ଲାଗିଲା ଓ ଅର୍ଥନୀତି କ୍ଷେତ୍ରରେ ଏକ ବଡ ପରିବର୍ତ୍ତନ ଆସିଲା। ଶିଳ୍ପ, କଳ କାରଖାନା ଯେତିକି ବୃଦ୍ଧି ପାଇଲା, ପୁଂଜିବାଦର ସେତିକି ବିକାଶ ହେଲା। ବିଭିନ୍ନ ଦେଶରେ ଧନୀକ ଗୋଷ୍ଠୀ ଓ ଶ୍ରମିକ ଗୋଷ୍ଠୀ ଭିତରେ ଆର୍ଥିକ ବୈଷମ୍ୟ ବଢ଼ିବାକୁ ଲାଗିଲା। ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ସାମ୍ରାଜ୍ୟବାଦ, ପୁଂଜିବାଦ, ସାମନ୍ତବାଦ ଶୀର୍ଷ ସ୍ତରରେ ପହଞ୍ଚି ସାରିଥିଲା।

ସଭ୍ୟତାର ବିକାଶ ଇତିହାସରେ ବିଂଶଶତାବ୍ଦୀ ବହୁ ଦୃଷ୍ଟିରୁ ଯୁଗାନ୍ତକାରୀ ଥିଲା। ସଭ୍ୟତାର ଆରମ୍ଭ କାଳରୁ ଊନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଯାହା ସବୁ ଜ୍ଞାନବିଜ୍ଞାନ ସ୍ତରରେ ବିକାଶଲାଭ କରିଥିଲା, କେବଳ ବିଂଶ ଶତାବ୍ଦୀରେ ତାଠାରୁ ଅଧିକ ବିକାଶ ହେବା ଦେଖାଯାଏ। ବିଂଶଶତାବ୍ଦୀ ଜ୍ଞାନବିଜ୍ଞାନ, ନୂତନ ପ୍ରଯୁକ୍ତି, ଜୀବନର ମାନରେ ତୁମୁଳ ପରିବର୍ତ୍ତନ ଆଣିବାରେ ସହାୟକ ହେଲା। ବିଂଶଶତାବ୍ଦୀ ଆରମ୍ଭରୁ ସିନେମା ଓ ଚଳଚିତ୍ରର ଯୁଗ ଆରମ୍ଭ ହେଲା। ରେଡିଓର ଉଦ୍‌ଭାବନ ସଭ୍ୟତାର ବିକାଶ ଧାରାରେ ଏକ ଯୁଗାନ୍ତକାରୀ ଘଟଣା ଥିଲା। ବିଂଶ ଶତାବ୍ଦୀର ତୃତୀୟ ଦଶକରେ ବ୍ରିଟିଶ ବ୍ରଡ କାଷ୍ଟିଂ ସେଣ୍ଟର ସ୍ଥାପନ ପରେ ବିଭିନ୍ନ ଦେଶରେ ବେତାର କେନ୍ଦ୍ରମାନ ପ୍ରତିଷ୍ଠିତ ହେଲା। ଏହି ସମୟରେ ମଟରକାର ନିର୍ମାଣ କରାଗଲା ଓ ସୁଲଭ ମୂଲ୍ୟରେ ତାହା ଉପଲବ୍ଧ ହେଲା। ବିଂଶଶତାବ୍ଦୀ ଆରମ୍ଭରେ ଉଡାଜାହାଜର ଉଦ୍‌ଭାବନ ସଭ୍ୟତାର ବିକାଶରେ ଥିଲା ଏକ ବଡ ସଫଳତା। ଏହାଦ୍ୱାରା ପୃଥିବୀର ଦୂରତ୍ୱ କମିଯିବାକୁ ଲାଗିଲା। ବିଂଶ ଶତାବ୍ଦୀ ପୂର୍ବରୁ ପୃଥିବୀରେ ମହାମାରୀର ଆତଙ୍କ ରହିଥିଲା। ହଇଜା, ବସନ୍ତ, ପ୍ଲେଗ, ଯକ୍ଷ୍ମା ପରି ରୋଗମାନ ମହାମାରୀ ଭାବେ ଆସି ମୃତ୍ୟୁର ତାଣ୍ଡବ ସୃଷ୍ଟି କରୁଥିଲା। ବିଂଶ ଶତାବ୍ଦୀରେ ଚିକିତ୍ସା ବିଜ୍ଞାନରେ ଗବେଷଣା ଯୋଗୁ ଏହି ସବୁ ରୋଗମାନଙ୍କର ନିୟନ୍ତ୍ରଣ ସମ୍ଭବପର ହେଲା। ସେହିପରି ପେନ୍‌ସିଲିନ ବା ଆଣ୍ଟିବାଓଟିକ୍‌ର ଉଦ୍‌ଭାବନ ଚିକିତ୍ସା ବିଜ୍ଞାନର ଇତିହାସରେ ଯୁଗାନ୍ତକାରୀ ଥିଲା। ଫଳରେ ଜଟିଳ ଅସ୍ତ୍ରୋପଚାର ସମ୍ଭବପର ହେଲା ଓ ଚିକିତ୍ସା ବିଜ୍ଞାନ ନାନା ଚମକପ୍ରଦ ସଫଳତା ହାସଲ କଲା। ବିଂଶ ଶତାବ୍ଦୀରେ ରେଡିୟମର ଆବିଷ୍କାର ଓ ଅଣୁର ବିଭାଜନ ଜନିତ ସିଦ୍ଧାନ୍ତରୁ "ଏକ୍‌ସ ରେ" ବାହାରିଲା ଓ ଚିକିତ୍ସା ବିଜ୍ଞାନ ଗୋଟିଏ ପରେ

ଗୋଟିଏ ସଫଳତା ହାସଲ କରିବାକୁ ଲାଗିଲା । ରକ୍ତଦାନ, ଅଙ୍ଗ-ପ୍ରତିରୋପଣ ପରି କଳ୍ପନାତୀତ ଘଟଣା ଚିକିତ୍ସା ବିଜ୍ଞାନ ସମ୍ଭବ କରିପାରିଲା ।

ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଭାବନା ଥିଲା ଯେ ବିଶ୍ୱରେ ଯାହା କିଛି ରହିଛି ତାହାର ମୂଳାଧାର ହେଉଛି କେତୋଟି ମୌଳିକ ପଦାର୍ଥ ଓ ଶକ୍ତି । କିନ୍ତୁ ବିଂଶଶତାବ୍ଦୀରେ ଆଇନଷ୍ଟାଇନ୍ ଏକ ସିଦ୍ଧାନ୍ତର ଅବତାରଣା କଲେ ଯେ ବସ୍ତୁ ଓ ଶକ୍ତି ପରସ୍ପରଠାରୁ ଭିନ୍ନ କିମ୍ବା ପୃଥକ୍ ନୁହନ୍ତି । ବସ୍ତୁ ଭିତରେ ଅଫୁରନ୍ତ ଶକ୍ତି ରହିଛି । ଅଣୁର ବିଭାଜନ ଜନିତ ଜ୍ଞାନରୁ ପରମାଣୁର ଭାବନା ଓ ଅଫୁରନ୍ତ ଶକ୍ତିର ପ୍ରକଳ୍ପ ବିଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିପାରିଲା । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆରମ୍ଭ ହେଲା ମହାକାଶ ଯାତ୍ରାର ଯୁଗ । ପୃଥିବୀର ଜଳ, ସ୍ଥଳ ସବୁ ଭାଗ ଉପରେ ଜ୍ଞାନ ପରେ ପରେ ପୃଥିବୀ ବାହାରେ ଥିବା ବିଭିନ୍ନ ଗ୍ରହ, ଉପଗ୍ରହକୁ ମଣିଷର ଯାନ ପ୍ରେରଣ, ଚନ୍ଦ୍ର ପୃଷ୍ଠରେ ଅବତରଣ, ପୃଥିବୀ ସଂପର୍କରେ ବିଭିନ୍ନ ତଥ୍ୟ ଗ୍ରହଣ ଜୀବନଧାରାରେ ଅନେକ ପରିବର୍ତ୍ତନ ଆଣିଥିବା ମନେହୁଏ । ବିଂଶଶତାବ୍ଦୀର ଦ୍ୱିତୀୟ ଭାଗରେ ଟେଲିଭିଜନର ଉଦ୍‌ଭାବନ ମଧ୍ୟ ଏକ ଚମକପ୍ରଦ ଘଟଣା କହିଲେ ଅତ୍ୟୁକ୍ତି ହେବ ନାହିଁ । ସାଟେଲାଇଟ କମ୍ୟୁନିକେସନ ବା ଉପଗ୍ରହ ଜରିଆରେ ପ୍ରସାରଣ ଜନିତ ଜ୍ଞାନ ସେହିପରି ଅନେକ କ୍ଷେତ୍ରରେ ନାନା ପରିବର୍ତ୍ତନ ଆଣିଥିବା ମନେହୁଏ । ମୋବାଇଲ ଫୋନ୍, ଇଣ୍ଟରନେଟ୍ ଏସବୁ ବିଂଶଶତାବ୍ଦୀ ଶେଷ ଭାଗରେ ଯେପରି ବ୍ୟାପକ ଭାବରେ ପ୍ରସାରିତ ହୋଇଛି ତାହା ଗୋଟିଏ ଶତାବ୍ଦୀ ତଳେ ଅଚିନ୍ତନୀୟ ଥିବା ମନେହୁଏ । ଏହି ଶହେ ବର୍ଷ ଭିତରେ ପୃଥିବୀର ଦୃଶ୍ୟପଟ, ଜୀବନ ପ୍ରବାହର ଶୈଳୀ ଓ ସାମାଜିକ ଚିତ୍ର ଏପରି ପରିବର୍ତ୍ତନ ହେବା ଏକ ଉଲ୍ଲେଖନୀୟ ଘଟଣା । ଆଜି ମାନବ ସଭ୍ୟତା ବିକାଶର ଯେଉଁ ସୋପାନକୁ ଆସିଛି ତାହା ପଶ୍ଚାତରେ ରହିଛି ଶହ ଶହ ଜ୍ଞାନପିପାସୁ ପ୍ରତିଭାଧର ବୈଜ୍ଞାନିକଙ୍କର ସାଧନା ଓ ଅନୁସନ୍ଧିତ୍ସା । ଜ୍ଞାନବିଜ୍ଞାନର ପ୍ରତ୍ୟେକ ସ୍ତରରେ ଯେଉଁ ମୌଳିକ ଗବେଷଣା ଚାଲିଛି ତାହା ସଭ୍ୟତାର ରୂପରେଖ ପରିବର୍ତ୍ତନ କରିବାରେ ନିର୍ଣ୍ଣାୟକ ମନେ ହେଉଛି । ଏସବୁ ସଫଳତା ପଶ୍ଚାତରେ ରହିଛି ମାନବୀୟ ଜିଜ୍ଞାସା ଓ ଅନୁସନ୍ଧିତ୍ସା । ସକଳ ପ୍ରଗତି ଓ ବିକାଶ ମଣିଷର ଉଦ୍ୟମ ଓ ନିଷ୍ଠା ଯୋଗୁ ସମ୍ଭବ ହୋଇଛି । ଏହା କେଉଁ ଦିଅଁ ଦେବତାଙ୍କର ଆଶୀର୍ବାଦରୁ ହୋଇନାହିଁ । ସକଳ ବିକାଶ ଓ ପ୍ରଗତି ପଶ୍ଚାତରେ ରହିଛି ମଣିଷର ପ୍ରୟାସ ଓ ଅନୁସନ୍ଧିତ୍ସୁ ମାନସିକତା ।

ବୈଜ୍ଞାନିକ ଅନୁସନ୍ଧିତ୍ସା କ୍ଷେତ୍ରରେ ଯେପରି ବିଂଶଶତାବ୍ଦୀ ଯୁଗାନ୍ତକାରୀ, ସେହିପରି ସାମାଜିକ ପରିବର୍ତ୍ତନ ଓ ଜୀବନର ମାନ ଉନ୍ନତ କରିବାରେ ଏହି ଶତାବ୍ଦୀ ମଧ୍ୟ ବେଶ୍ ଉଲ୍ଲେଖନୀୟ । ବିଶ୍ୱବିଦ୍ୟାଳୟ ମାନଙ୍କର ପ୍ରତିଷ୍ଠା ଓ ଶିକ୍ଷାର ସାର୍ବଜନୀନ ପ୍ରସାର ବିଂଶଶତାବ୍ଦୀରେ ଅଧିକ ପ୍ରାଧାନ୍ୟ ନେଇଥିବା ମନେହୁଏ । ରେଡିଓ ଓ ଗଣମାଧ୍ୟମର ପ୍ରସାର ଫଳରେ ଶିକ୍ଷାର ସାମାଜିକୀକରଣ ହେବା ତଥା ବିଶ୍ୱବିଦ୍ୟାଳୟ ଶିକ୍ଷାର ବ୍ୟାପକତା ଫଳରେ ସାମାଜିକ ସଚେତନତା ବେଶ୍ ବୃଦ୍ଧିପାଇଲା । ପୃଥିବୀର ଯେଉଁ ଅଞ୍ଚଳ ମୃତବତ୍ ପଡି ରହିଥିଲେ ସେଠାରେ ଜାଗରଣ ଦେଖାଦେଲା । ସାମ୍ରାଜ୍ୟବାଦୀ ଶୋଷଣରୁ ମୁକ୍ତ ହେବା ପାଇଁ ପରାଧୀନ ଦେଶମାନଙ୍କରେ ଜନ ଆନ୍ଦୋଳନ ସଂଘଟିତ ହେବାକୁ ଲାଗିଲା ଓ ସାମ୍ରାଜ୍ୟବାଦର ଜବନିକା ପଡିଲା । ଏତଦ୍‌ବ୍ୟତୀତ କେତେକ ରାଷ୍ଟ୍ରରେ ସମାଜବାଦୀ ଆନ୍ଦୋଳନ ଏକ ନୂତନ ରାଜନୈତିକ ସଂସ୍କୃତିକୁ ଜନ୍ମ ଦେଲା । ସାମ୍ରାଜ୍ୟବାଦ ସହିତ ସାମନ୍ତବାଦ ଓ ପୁଂଜିବାଦ ବିରୁଦ୍ଧରେ ସ୍ୱର ଉଠିଲା । ପୁଂଜିବାଦ ଯେଉଁ ଶୋଷଣ ଓ ଆର୍ଥିକ ବୈଷମ୍ୟର ପରିବେଶ ସୃଷ୍ଟି କରିଥିଲା ତାହା ବିରୁଦ୍ଧରେ କେତେକ ଦେଶରେ ସାମ୍ୟବାଦୀ ଆନ୍ଦୋଳନ ମୁଣ୍ଡ ଟେକିଲା । ସାମ୍ୟବାଦୀ ଆନ୍ଦୋଳନ ଏକ ବିକଳ୍ପ ରାଜନୈତିକ ଓ ଅର୍ଥନୈତିକ ସଂସ୍କୃତିକୁ ଜନ୍ମ ଦେଲା । ଯେକୌଣସି ରାଜନୈତିକ ବା ଅର୍ଥନୈତିକ ବ୍ୟବସ୍ଥାକୁ ରାଷ୍ଟ୍ର ଗ୍ରହଣ କରୁ ନା କାହିଁକି ଜନମଙ୍ଗଳକାରୀ ଯୋଜନା ପ୍ରତ୍ୟେକ ରାଷ୍ଟ୍ରର ଆଭିମୁଖ୍ୟ ହେବାକୁ ଲାଗିଲା ।

ଇଉରୋପୀୟ ନବଜାଗରଣର ପରିଣାମରୁ ଯେପରି ଆଧୁନିକ ବିଜ୍ଞାନ ଜନ୍ମଲାଭ କରିଥିଲା, ସେହିପରି ମାନବବାଦ ଏକ ଜୀବନ-ଦର୍ଶନ ଭାବେ ସପ୍ତଦଶ ଶତାବ୍ଦୀରୁ ଚିନ୍ତାରାଜ୍ୟରେ ପରିବର୍ତ୍ତନର ସୂତ୍ରପାତ କରିଥିଲା । ମାନବବାଦ ଏକ ସାମାଜିକ ଦର୍ଶନ ଭାବେ ଚିନ୍ତାରାଜ୍ୟରେ ଗଣତାନ୍ତ୍ରିକ ଭାବନା, ଧର୍ମନିରପେକ୍ଷତା, ସାର୍ବଜନୀନ ଶିକ୍ଷା, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟଚୟର ବିକାଶରେ ସହାୟକ ହେଲା । ବର୍ଣ୍ଣବୈଷମ୍ୟ, ସାମାଜିକ ଭେଦଭାବ, ଦାସତ୍ୱ ପ୍ରଥା, ଆପରଥେଡ୍, ଅସ୍ପୃଶ୍ୟତା ପରି ଯେଉଁ କଳଙ୍କ ଗୁଡିକ ବିଭିନ୍ନ ସମାଜରେ ରହିଥିଲା ତାହା ବିରୁଦ୍ଧରେ ଚେତନା ଜାଗ୍ରତ ହେଲା । ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ପରି ଯେଉଁ ଭେଦଭାବର ମାନସିକତା ବିଭିନ୍ନ ସମାଜରେ ବିଭିନ୍ନ ଧାରାରେ ରହିଥିଲା ସେ ସବୁ ଯେ ମାନବିକତା ବିରୋଧୀ, ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ ଏହି ଚେତନା ସମାଜରେ ସୃଷ୍ଟି ହେଲା । ତେବେ

ସଭ୍ୟତାର ଇତିହାସରେ ଯେତେ ଯେତେ କଳଙ୍କମୟ ଘଟଣା ଘଟି ଯାଇଛି ସେ ସବୁ ନେଇ ବିଶ୍ୱ ସ୍ତରରେ ଚେତନା ଜାଗ୍ରତ ହେଲା। ଏହି ଦୃଷ୍ଟିରୁ ଦେଖିଲେ ମଣିଷ ସମାଜର ଇତିହାସ ଯେତିକି ସ୍ୱର୍ଣ୍ଣାଭ, ସେତିକି ମଧ୍ୟ କଳଙ୍କମୟ। ସ୍ୱର୍ଣ୍ଣାଭ ଏହି ଦୃଷ୍ଟିରୁ ଯେ ନାନା ଘାତ, ପ୍ରତିଘାତ, ପ୍ରାକୃତିକ ବିପର୍ଯ୍ୟୟ, ଯୁଦ୍ଧ, ବିଭୀଷିକା, ମାନିବକ କ୍ରୂରତା ସତ୍ତ୍ୱେ ସମାଜର ବିକାଶଧାରା ସର୍ବଦା ଅବ୍ୟାହତ ରହିଛି। ଏକ ଆଦିମ ସ୍ଥିତିରୁ ନାନା ବିବର୍ତ୍ତନ ଓ ପରିବର୍ତ୍ତନ ମଧ୍ୟ ଦେଇ ସମାଜ ଆଗକୁ ଯାଇଛି ଓ ସଭ୍ୟ ଜୀବନ ଦୃଷ୍ଟିର ବିକାଶ ହୋଇଛି। ସଭ୍ୟତାର ଇତିହାସରେ ଅନେକ କଳଙ୍କମୟ ଘଟଣା ମଧ୍ୟ ଘଟିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜର୍ମାନୀରେ ହିଟଲର ଲକ୍ଷ ଲକ୍ଷ ଜିଉମାନଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରିଛନ୍ତି। ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ପର୍ଯ୍ୟନ୍ତ ପ୍ରାୟତଃ ପ୍ରତି ଶତାବ୍ଦୀରେ ନାନା ଯୁଦ୍ଧ ହୋଇ ଅନେକ ମଣିଷଙ୍କର ସଂସାର ଦୁର୍ଦ୍ଦଶା ଭିତରକୁ ଯାଇଛି। ସାମ୍ରାଜ୍ୟବାଦ ବା ଉପନିବେଶବାଦ ବିସ୍ତାର ଆରମ୍ଭରେ ଆମେରିକା ଓ ଅଷ୍ଟ୍ରେଲିଆର ମୂଳ ନିବାସୀମାନେ ବହୁ ମାନବିକ କ୍ରୂରତାର ସମ୍ମୁଖୀନ ହୋଇ ପ୍ରାୟତଃ ଧ୍ୱଂସର ସମ୍ମୁଖୀନ ହୋଇଛନ୍ତି। ଆଫ୍ରିକାରୁ ଲକ୍ଷ ଲକ୍ଷ ନିଗ୍ରୋମାନଙ୍କୁ ଜୋର୍ ଜବରଦସ୍ତ ବାନ୍ଧିକରି ନେଇ ଆମେରିକାରେ କ୍ରୀତଦାସ କରି ବିକ୍ରି କରାଯାଇଛି। ଭାରତ ଭୂଖଣ୍ଡରେ କୋଟି କୋଟି ମଣିଷଙ୍କୁ ହଜାର ହଜାର ବର୍ଷ ଧରି ଅସ୍ପୃଶ୍ୟ କରାଯାଇ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ କରାଯାଇଛି। ସଭ୍ୟତାର ଇତିହାସରେ ମାନବିକ କ୍ରୂରତା ଓ ହିଂସାର ଅନେକ କାହାଣୀ ରହିଛି। ସବୁ ସଭ୍ୟତାରେ କିଛି ମାନବଦରଦୀ ବ୍ୟକ୍ତି ଭାତୃତ୍ୱ ଓ ସମ୍ବେଦନଶୀଳତାର ବାର୍ତ୍ତା ଦେଇଥିଲେ ମଧ୍ୟ ସେ ସବୁ କେବଳ ପୋଥିର ଆଦର୍ଶ ହୋଇଛି, ବାସ୍ତବତାରେ ରୂପାନ୍ତରିତ ହୋଇ ନାହିଁ।

ଜ୍ଞାନବିଜ୍ଞାନ କ୍ଷେତ୍ରରେ ବିସ୍ଫୋରଣ ଓ ଆଧୁନିକ ପ୍ରଯୁକ୍ତି ପୃଥିବୀରୁ ଦୂରତା ଓ ସମୟକୁ ହ୍ରାସ କରିବାରେ ସମର୍ଥ ହେବା ପରଠାରୁ ଗୋଟିଏ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର କ୍ରମବର୍ଦ୍ଧିଷ୍ଣୁ ବିକାଶ ହେବା ସମ୍ଭବ ହୋଇଛି। ପୃଥିବୀର ଯେଉଁଠି ଯାହା ନୂତନ ଜ୍ଞାନର ବିକାଶ ହେଉଛି ତାହାର ସୁଫଳ ସମଗ୍ର ମନୁଷ୍ୟ ସମାଜ ପାଇବାକୁ ସମର୍ଥ ହେଉଛି। ବିଜ୍ଞାନ ଜାତୀୟତା ଓ ଧର୍ମର ପ୍ରାଚୀରକୁ ଭାଙ୍ଗି ମଣିଷ ସମାଜକୁ ଏକ ଡୋରିରେ ବାନ୍ଧିବାକୁ ସକ୍ଷମ ହୋଇଛି। ଜ୍ଞାନ ସାର୍ବଜନୀନ ହେବା ଓ ସର୍ବସାଧାରଣ ତାହାର ସୁଫଳ ଉପଭୋଗ କରିବା ସଭ୍ୟତାର କ୍ରମବିକାଶରେ ଏକ ବଡ଼ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ।

ଆନ୍ତର୍ଜାତିକ ଚେତନା ଓ ସାର୍ବଜନୀନ ଜୀବନଦୃଷ୍ଟିର ବିକାଶରେ କେତେକ ଘଟଣା ଇତିହାସରେ ବେଶ୍ ସ୍ୱାକ୍ଷର ରଖିପାରିଛି । ଜାତି, ଧର୍ମ, ଜାତୀୟତା, ଜୀବନଦୃଷ୍ଟି ନିର୍ବିଶେଷରେ ଯେଉଁ ପ୍ରତିଭାଧର ବ୍ୟକ୍ତିଗଣ ମନୁଷ୍ୟ ସମାଜର ମଙ୍ଗଳ ପାଇଁ କିଛି ମୌଳିକ ଅବଦାନ ଦେଉଛନ୍ତି ସେମାନଙ୍କ ଅବଦାନର ସ୍ୱୀକୃତି ପାଇଁ ଜଣେ ବ୍ୟକ୍ତି ଏକ ଆନ୍ତର୍ଜାତକ ପୁରସ୍କାରର ଭାବନା ସୃଷ୍ଟି କରିଥିଲେ । ସୁଇଡେନର ବିଶିଷ୍ଟ ବୈଜ୍ଞାନିକ ଆଲଫ୍ରେଡ ନୋବେଲ ତାଙ୍କର ଉଦ୍‌ଭାବନ ଯୋଗୁ ପ୍ରଚୁର ସଂପତ୍ତିର ମାଲିକ ହୋଇଥିଲେ । ତାଙ୍କର ସମସ୍ତ ସଂପତ୍ତି ସେ ଏକ ଟ୍ରଷ୍ଟକୁ ଦେଇଥିଲେ । ଆନ୍ତର୍ଜାତିକ ସ୍ତରରେ ଯେଉଁ ବ୍ୟକ୍ତି ମନୁଷ୍ୟ ସମାଜର ମଙ୍ଗଳ ପାଇଁ କୌଣସି ନୂତନ ଜ୍ଞାନ ଦେବେ ବା ତାଙ୍କର ସାହିତ୍ୟିକ କୃତିଦ୍ୱାରା ବିଶ୍ୱ ଭ୍ରାତୃତ୍ୱର ଭାବନା ପ୍ରସାର କରିବେ ନୋବେଲଙ୍କ ଗଚ୍ଛିତ ଅର୍ଥର ସୁଧରୁ ତାଙ୍କୁ ନୋବେଲ ପୁରସ୍କାର ପ୍ରଦାନ କରାଯିବ । ୧୮୯୬ ରେ ନୋବେଲଙ୍କର ଦେହାନ୍ତ ହୋଇଥିଲା ଓ ନୋବେଲ ପୁରସ୍କାର ୧୯୦୧ ରୁ ପ୍ରଦାନ କରାଯାଉଛି । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ସାହିତ୍ୟ ଓ ଶାନ୍ତି ପାଞ୍ଚୋଟି ବିଷୟରେ ନୋବେଲ ପୁରସ୍କାର ଦିଆଯାଉଥିଲା ଓ ପରେ ୧୯୬୯ ର ଅର୍ଥନୀତିରେ ନୋବେଲ ପୁରସ୍କାର ପ୍ରଦାନ କରାଗଲା । ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଯେଉଁମାନେ ନୂତନ ଦିଗନ୍ତ ସୃଷ୍ଟି କରୁଛନ୍ତି, ବିଶ୍ୱରେ ଶାନ୍ତି ଓ ଭ୍ରାତୃତ୍ୱର ଭାବନା ପ୍ରସାରରେ ମହତ୍ତର ଅବଦାନ ଦେଉଛନ୍ତି ସେହି ପ୍ରତିଭାଧର ବ୍ୟକ୍ତିମାନଙ୍କୁ ଏହି ପୁରସ୍କାରରେ ସମ୍ମାନିତ କରାଯାଉଛି । ଯେଉଁମାନେ ନୋବେଲ ପୁରସ୍କାର ପାଆନ୍ତି ସେମାନେ ମାନବ ସମାଜର ଦୃଷ୍ଟି ଆକର୍ଷଣ କରନ୍ତି । ମନୁଷ୍ୟ ସମାଜର ଏକତ୍ୱ ଓ ଭ୍ରାତୃତ୍ୱ ହିଁ ଏହି ପୁରସ୍କାରଦ୍ୱାରା ଋଦ୍ଧିମନ୍ତ ହେବାରେ ଲାଗିଛି । ରେଡକ୍ରସ, ଆମ୍ନେଷ୍ଟି ଇଣ୍ଟରନେସନାଲ, ଇଣ୍ଟରନେସନାଲ ହିଉମାନିଷ୍ଟ ଆଣ୍ଡ ଏଥିକାଲ ୟୁନିୟନ ପରି ସଂଗଠନମାନ ସାରା ବିଶ୍ୱରେ ଆନ୍ତର୍ଜାତିକ ମନୋଭାବ, ବିଶ୍ୱ ଭ୍ରାତୃତ୍ୱ ଓ ଉନ୍ନତ ଜୀବନର ବାର୍ତ୍ତା ଦେଇ ଆସିଛନ୍ତି । କୌଣସି ପ୍ରାକୃତିକ ଦୁର୍ବିପାକ ସମୟରେ ଲୋକଙ୍କୁ ସାହାଯ୍ୟ କରିବା, ଦୁସ୍ଥ ଲୋକମାନଙ୍କୁ ସ୍ୱାସ୍ଥ୍ୟ ସେବା ଯୋଗାଇବା ବା କୌଣସି ଯୁଦ୍ଧରେ ଆହତ ସୈନ୍ୟମାନଙ୍କୁ ସାହାଯ୍ୟ କରିବା ପରି ବହୁ ଜନହିତକର କାର୍ଯ୍ୟ ରେଡକ୍ରସ ସଂଗଠନ ସାରା ପୃଥିବୀରେ କରିଆସୁଛି । ଆମ୍ନେଷ୍ଟି ଇଣ୍ଟରନେସନାଲ ମାନବିକ ଅଧିକାରର ସୁରକ୍ଷା ତଥା ବ୍ୟକ୍ତି ସ୍ୱାଧୀନତା, ଧାର୍ମିକ ସହନଶୀଳତା ଓ ସହିଷ୍ଣୁତାର ବାର୍ତ୍ତା ପ୍ରସାର କରିଆସୁଛି । ଇଣ୍ଟରନେସନାଲ ହିଉମାନିଷ୍ଟ ଆଣ୍ଡ ଏଥିକାଲ

ୟୁନିୟନ ମାନବବାଦ, ବିଶ୍ୱଦୃଷ୍ଟି, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ପାଇଁ ସାରା ପୃଥିବୀରେ କାର୍ଯ୍ୟକରୁଛି । ଏହିପରି ଅନେକ ସଂଗଠନ 'ଏକ ବିଶ୍ୱ', 'ଏକ ମାନବଜାତି' ଆଦର୍ଶକୁ ସମଗ୍ର ମାନବ ସମାଜରେ ବ୍ୟାପକ କରିବାରେ ପ୍ରୟାସ କରୁଛନ୍ତି । ପରିଣାମତଃ ଏକ ଆନ୍ତର୍ଜାତିକ ମନୋଭାବ ଓ ସାର୍ବଜନୀନ ଜୀବନଦୃଷ୍ଟି ପ୍ରସାର ପାଇଁ ଏକ ପରିବେଶ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ପୃଥିବୀରେ ଦାନା ବାନ୍ଧିବାରେ ଲାଗିଛି ।

ବହୁ ଅନୁକୂଳ ପରିସ୍ଥିତି ସତ୍ତ୍ୱେ ମନୁଷ୍ୟ ସମାଜରେ ବହୁ ସମସ୍ୟା ରହିଛି । ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ନିରକ୍ଷରତା, ରୋଗ, ଅପପୁଷ୍ଟି, ବାଳଶ୍ରମିକ ଅତି ଗମ୍ଭୀର ସମସ୍ୟା । ସେହିପରି କେତେକ କ୍ଷେତ୍ରରେ ଦେଶ-ଦେଶ ମଧ୍ୟରେ ବହୁ ଅବୁଝାମଣା ଓ ତିକ୍ତତା ରହିଛି । ପ୍ରତ୍ୟେକ ରାଷ୍ଟ୍ର ନିଜର ସୁରକ୍ଷା ପାଇଁ ଅସ୍ତ୍ର ଶସ୍ତ୍ର ନିର୍ମାଣ ପାଇଁ ଅନେକ ପ୍ରାକୃତିକ ସଂପଦ ନଷ୍ଟ କରୁଛି । ଗୋଟିଏ ସମୟରେ ବିଶେଷକରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଣବିକ ଶକ୍ତିର ଅଧିକାରୀ ହେବାକୁ ଉନ୍ନତ ରାଷ୍ଟ୍ରମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଲାଗି ରହିଥିଲା । ତେବେ ବିଜ୍ଞାନର ଜ୍ଞାନ ବିଶ୍ୱବ୍ୟାପୀ ହୋଇଯିବାରୁ ଏହି ଭାବନା ସୃଷ୍ଟି ହେଲା ଯେ ପୃଥିବୀରେ ଆଣବିକ ଯୁଦ୍ଧର ପରିବେଶ ଆସିଲେ ଜୟ ପରାଜୟର ପ୍ରଶ୍ନ ଅବାନ୍ତର ହୋଇଯିବ, ବରଂ ସାରା ପୃଥିବୀ ଧ୍ୱଂସସ୍ତୂପରେ ପରିଣତ ହୋଇଯିବ । ଦେଶ ଦେଶ ଭିତରେ ଯେଉଁ ସବୁ ସମସ୍ୟା ରହିଛି ତାହାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ପ୍ରୟାସ ନ ହେଲେ ସଭ୍ୟତାକୁ ବହୁ ମୂଲ୍ୟ ଦେବାକୁ ହେବ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାତିସଂଘର ପ୍ରତିଷ୍ଠା ସଭ୍ୟତାର ଇତିହାସରେ ଥିଲା ଏକ ଉଲ୍ଲେଖନୀୟ ଘଟଣା । ଏକ ଯୁଦ୍ଧମୁକ୍ତ ବିଶ୍ୱ ଓ ବିଭିନ୍ନ ଆନ୍ତର୍ଜାତିକ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ଜାତିସଂଘ ସବୁଠାରୁ ବଡ ଉତ୍ତରଦାୟୀ ସଂଗଠନ । ମାନବ ସମୁଦାୟରେ ଯେଉଁ ସବୁ ସମସ୍ୟା ରହିଛି ତାର ଦୂରୀକରଣ ଓ ପ୍ରତ୍ୟେକ ନାଗରିକକୁ ଏକ ଗୁଣାତ୍ମକ ଜୀବନର ପରିବେଶ ଦେବାକୁ ଜାତିସଂଘ ମାଧ୍ୟମରେ ପ୍ରୟାସ ହୋଇଆସୁଛି । 'ମାନବିକ ଅଧିକାରର ବିଶ୍ୱଘୋଷଣା' ଜାତିସଂଘର ଏକ ଉଲ୍ଲେଖନୀୟ ପଦକ୍ଷେପ । ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ରହିଛି, ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର ହେଉଛି ପବିତ୍ର । ମାନବିକ ଅଧିକାର, ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ସମତାର ଭାବନା ଏକ ଗୁଣାତ୍ମକ ଜୀବନ ପାଇଁ ଅବଶ୍ୟମ୍ଭାବୀ । ଏହି ସାର୍ବଜନୀନ ମୂଲ୍ୟବୋଧ ଗୁଡିକୁ ବାସ୍ତବତାରେ ରୂପାନ୍ତରିତ କରିବା ପାଇଁ ବିଶ୍ୱ ସ୍ତରରେ ଯେଉଁ ଆନ୍ତର୍ଜାତିକ ସଚେତନତାର ପରିବେଶ ଆସିଛି ତାହା ସଭ୍ୟତାର ଏକ

ବଡ଼ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ। ଯୁଦ୍ଧମୁକ୍ତ, କ୍ଷୁଧାମୁକ୍ତ, ଭେଦଭାବରହିତ ଏକ ବିଶ୍ୱର ପରିକଳ୍ପନା ପାଇଁ ଜାତିସଂଘ ଏହାର ଗଠନ ପରଠାରୁ ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଆସିଛି। ଆନ୍ତର୍ଜାତିକ ଚେତନାର ବିକାଶ ଓ ଏକ ମହନୀୟ ମାନବ ସମାଜ ଗଠନ ପାଇଁ ଜାତିସଂଘର ଭୂମିକା ଅନସ୍ୱୀକାର୍ଯ୍ୟ।

ବିଗତ ଦୁଇ ଶହ ବର୍ଷ ଭିତରେ ଜ୍ଞାନ ବିଜ୍ଞାନ ସ୍ତରରେ ଯେଉଁ ଅଭୂତପୂର୍ବ ବିକାଶ ହୋଇଛି ତାହା ଯଦି ମାନବ ସମୁଦାୟର କଲ୍ୟାଣ ଦିଗରେ ବିନିଯୋଗ ହୋଇପାରିବ, ତେବେ ସମ୍ଭବତଃ ପୃଥିବୀରୁ ଅନେକ ଦୁଃଖ ଦୁର୍ଦ୍ଦଶା ଦୂର ହେବା ସହ ଏକ ପ୍ରୀତିପୂର୍ଣ୍ଣ ପରିବେଶର ଉଦ୍ଭବ ହେବ। ଅବଶ୍ୟ ପୃଥିବୀରୁ ଯେ ସବୁ ସଙ୍କଟ, ସମସ୍ୟା ଦୂରୀଭୂତ ହୋଇଯିବ ଏହା ଏକ କଳ୍ପନା ବା ଇଉଟୋପିଆ ମନେ ହୋଇପାରେ। ତେବେ ସଂପ୍ରତି ଜ୍ଞାନବିଜ୍ଞାନର ଯେଉଁ ବିକାଶ ହୋଇଛି, ପ୍ରକୃତିର ବହୁ ରହସ୍ୟ ମଣିଷ ଯେପରି ନିଜର ମସ୍ତିଷ୍କ ଓ ବୁଦ୍ଧି ଖଟାଇ ଜାଣିବାକୁ ସମର୍ଥ ହୋଇପାରିଛି ସେଥିରେ ଯେକୌଣସି ପ୍ରାକୃତିକ ଦୁର୍ବିପାକର ସମ୍ମୁଖୀନ ହେବା ପାଇଁ ମନୁଷ୍ୟ ପନ୍ଥା ବାହାର କରିପାରିବ। ଏ ଯୋଗୁ ତାର ଅସହାୟତା ଅନେକାଂଶରେ ଦୂର ହୋଇପାରିଛି। ସାରା ବିଶ୍ୱର ଜନଗଣଙ୍କ ଭିତରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ଭାତୃତ୍ୱର ବଂଧନ ଦୃଢ଼ ହେବାରେ ଲାଗିଛି। ଆମ ସଂସାରରେ ବହୁ ଭାଷା, ଧର୍ମ, ସଂସ୍କୃତି, ପରଂପରା ଭୌଗୋଳିକ ବିଚ୍ଛିନ୍ନତା ଓ ଐତିହାସିକ କାରଣରୁ ଉଦ୍ଭବ ହୋଇଛି। ଗୋଟିଏ ବଗିଚାରେ ନାନା ଜାତିର ଫୁଲ ବଗିଚାର ଶୋଭା ବର୍ଦ୍ଧନ କରିଥାଏ, ସେହିପରି ଭିନ୍ନତା ମାନବୀୟ ସୃଜନଶୀଳତାର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ। ମନୁଷ୍ୟ ସମାଜରେ ଭିନ୍ନତା ରହିବ, ତେବେ ସଂପ୍ରତି ଯେଉଁ ଆନ୍ତର୍ସାଂସ୍କୃତିକ ପରିବେଶ ଓ ଆଦାନ-ପ୍ରଦାନର ସମ୍ଭାବନା ସୃଷ୍ଟି ହୋଇଛି ତାହା ଜୀବନର ଗୁଣାତ୍ମକ ଉତ୍ତରଣ ପାଇଁ ପ୍ରେରଣା ଯୋଗାଇବ। ପ୍ରତ୍ୟେକ ସଭ୍ୟତାରେ ମହତ୍ତର ଜୀବନବୋଧର ଯେଉଁ ବାର୍ତ୍ତା ରହିଛି ତାହାର ସମନ୍ୱୟରେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ସମ୍ଭବ ହୋଇପାରିବ।

ସାଂପ୍ରତିକ ପରିବେଶରେ ଏପରି କେତେକ ସଂକଟ ମୁଣ୍ଡ ଟେକୁଛି ଯାହା ଗୋଟିଏ ରାଷ୍ଟ୍ରର ପ୍ରୟାସରେ ସମାଧାନ ହୋଇପାରିବ ନାହିଁ। ବରଂ ଅନେକ କ୍ଷେତ୍ରରେ ଆନ୍ତରାଷ୍ଟ୍ରୀୟ ସହଯୋଗ ଓ ଆଧୁନିକ ବିଜ୍ଞାନର ବିନା ସହାୟତାରେ ତାହାର ସମାଧାନ ସମ୍ଭବ ନୁହେଁ। ଜନସଂଖ୍ୟାର ବିସ୍ଫୋରଣ, ପରିବେଶ ପ୍ରଦୂଷଣ, ଗମ୍ଭୀର ପ୍ରାକୃତିକ

ଦୁର୍ବିପାକ, ତୃତୀୟ ବିଶ୍ୱର କେତେକ ସମସ୍ୟା ପରି ସମସ୍ୟାମାନ ଆନ୍ତରାଷ୍ଟ୍ରୀୟ ସହଯୋଗ ବିନା ସମାଧାନ ହୋଇପାରିବ ନାହିଁ। ପୁନଶ୍ଚ ସୀମାପାର ଆତଙ୍କବାଦ, ସାଂପ୍ରଦାୟିକ ଭେଦଭାବ ପରି ସମସ୍ୟା ମାନଙ୍କର ସମାଧାନ ପାଇଁ ଅନେକ ସୁଚିନ୍ତିତ ପଦକ୍ଷେପର ଆବଶ୍ୟକତା ରହିଛି। ସେହିପରି ଅର୍ଥନୈତିକ ବୈଷମ୍ୟ, ଶୋଷଣ, ଦାରିଦ୍ର୍ୟ ପରି ସମସ୍ୟା ସବୁର କିପରି ସ୍ଥାୟୀ ପ୍ରତିକାର କରାଯିବ ସେଥିପାଇଁ ଗଭୀର ଚିନ୍ତନ ଆବଶ୍ୟକ।

ସମସ୍ୟାର ସମାଧାନ ଓ ଉନ୍ନତ ଜୀବନର ପରିବେଶ ମଣିଷର ପ୍ରୟାସରେ ହିଁ ସମ୍ଭବ। ମଣିଷର ଜିଜ୍ଞାସାବୋଧ ଓ ବୌଦ୍ଧିକ ସୃଜନଶୀଳତା ଭିତରୁ ସର୍ବଦା ସମାଧାନର ସୂତ୍ର ବାହାରିଛି। ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ହେଉ କିମ୍ବା ମାନବିକ ମୂଲ୍ୟବୋଧର ପ୍ରସାର କ୍ଷେତ୍ରରେ ହେଉ ମଣିଷ ହିଁ ସବୁ ପରିସ୍ଥିତିରେ ନଜର ବୁଦ୍ଧିର ପ୍ରୟୋଗ କରି ସମାଧାନର ପନ୍ଥା ଖୋଜିଛି। ଯେଉଁ ସାମାଜିକ ପରିବେଶରେ ଜନଗଣ ନିଜର ସ୍ଥିତିରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ମସ୍ତିଷ୍କ ଖଟାଇଛନ୍ତି, ପନ୍ଥାର ଅନ୍ୱେଷଣ କରିଛନ୍ତି, ପରିଶ୍ରମ କରି ଉନ୍ନତ କର୍ମସଂସ୍କୃତିର ପରିବେଶ ଆଣିଛନ୍ତି, ନିଜର ରାଷ୍ଟ୍ର ଓ ସମାଜକୁ ସୁସଂହତ କରିବାରେ ନିଜର ସଂପୃକ୍ତି ବ୍ୟକ୍ତ କରିଛନ୍ତି ସେମାନେ ଉନ୍ନତିର ଶିଡିରେ ଆଗକୁ ଯାଇଛନ୍ତି। ପରନ୍ତୁ ଯେଉଁଠି ଜନଗଣ ପାରଲୌକିକ ବିଶ୍ୱାସଦ୍ୱାରା ଅଧିକ ପ୍ରଭାବିତ ହୋଇଛନ୍ତି, ମାନବିକ ପ୍ରୟାସ ଉପରେ ଆସ୍ଥା ପ୍ରକଟ ନକରି ଦିଅଁ ଦେବତାର ଆଶୀର୍ବାଦରେ ଅଧିକ ବିଶ୍ୱାସ କରି ଧାର୍ମିକ ଆବେଗରେ ମତୁଆଲା ହୋଇଛନ୍ତି, ସାମାଜିକ ଦାୟିତ୍ୱବୋଧକୁ ଗୁରୁତ୍ୱ ନ ଦେଇ ଅହେତୁକ କର୍ମକାଣ୍ଡରେ ଲିପ୍ତ ହୋଇଛନ୍ତି ସେଠି ସାମାଜିକ ପରିବେଶ ଓ ସାଧାରଣ ଜୀବନର ମାନ ନ୍ୟୁନ ହୋଇ ରହିଛି।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ବିଚାରବୋଧର ସମନ୍ୱୟ ହେଲେ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ହୋଇପାରିବ। ସଭ୍ୟତାର ଅଗ୍ରଗତି ପଶ୍ଚାତରେ ଏହି ଭାବଧାରାର ଯଥେଷ୍ଟ ପ୍ରେରଣା ରହିଛି। ପ୍ରକୃତିର ରହସ୍ୟ ଓ ଜୀବନର ଘନଘଟାକୁ ବୁଝିବା ପାଇଁ ଯେଉଁମାନେ ମୁକ୍ତ-ମନ ପୋଷଣ କରି ଅନୁସନ୍ଧିତ୍ସୁ ହୋଇଛନ୍ତି ସେମାନେ ସଭ୍ୟତାର ବିକାଶ କ୍ଷେତ୍ରରେ କିଛି ସ୍ୱାକ୍ଷର ରଖିଛନ୍ତି। ଏହିପରି ଅଗଣିତ ମଣିଷଙ୍କର କିଛି କିଛି ଅବଦାନରୁ ସଭ୍ୟତା ଆଜିର ସ୍ଥିତିକୁ ଆସିଛି। ମହାକାଳର ପ୍ରବାହରେ ସେମାନେ ହୁଏତ ବିସ୍ମୃତ ହୋଇଯାଇଛନ୍ତି। ଏହା ଅନସ୍ୱୀକାର୍ଯ୍ୟ

ଯେ ବ୍ୟକ୍ତି ମରଣଶୀଳ, କିନ୍ତୁ ମାନବ ସମାଜ ଚିରନ୍ତନ। ଏହି ଚିରନ୍ତନ ପ୍ରବାହଟି କିପରି ଅଧିକରୁ ଅଧିକ ଉନ୍ନତ ହେବ, ସେଥିପାଇଁ ବ୍ୟକ୍ତିର ସଂପୃକ୍ତି ଆବଶ୍ୟକ। ବ୍ୟକ୍ତି ମାନଙ୍କୁ ବିଚାର ବୁଦ୍ଧିସଂପନ୍ନ ଓ ମାନବିକ ମୂଲ୍ୟବୋଧ ପ୍ରତି ସମ୍ବେଦନ କରାଇବା ସମାଜର ଧେୟ ହେବା ଆବଶ୍ୟକ। ସମାଜ ଯଦି ଏହି ଲକ୍ଷ୍ୟଠାରୁ ଦୂରେଇ ଯାଇ ବ୍ୟକ୍ତି ମାନସିକତାକୁ ପାରଲୌକିକ ବିଶ୍ୱାସ, ଅବୈଜ୍ଞାନିକ ବିଚାର ଓ ଭେଦଭାବମୂଳକ ଆଚାରରେ ସଂପୃକ୍ତ କରାଏ, ତେବେ ସମାଜ କ୍ଷୟଶୀଳ ହୋଇଥାଏ। ଏକ କ୍ଷୟଶୀଳ ସମାଜ ବୌଦ୍ଧିକ ଓ ସାଂସ୍କୃତିକ ମାନଦଣ୍ଡରୁ ଯେ ଅନୁନ୍ନତ ଏହା କୁହାଯାଇପାରେ।



# ଅନଗ୍ରସରତା ଓ କୁସଂସ୍କାର

ଆନ୍ତର୍ଜାତିକ ମାନଦଣ୍ଡରେ ଆମ ଦେଶ ଏକ ବିକାଶଶୀଳ ରାଷ୍ଟ୍ର। ବିକାଶଶୀଳ ରାଷ୍ଟ୍ରମାନେ ସାଧାରଣତଃ ଅନଗ୍ରସର। ଅନଗ୍ରସର ରାଷ୍ଟ୍ରମାନଙ୍କୁ ତୃତୀୟ ବିଶ୍ୱ କୁହାଯାଏ। ପ୍ରଥମ ବିଶ୍ୱର ରାଷ୍ଟ୍ରମାନେ ବିକଶିତ, ଯେଉଁଠି ଜୀବନର ଭୌତିକ ଓ ଗୁଣାତ୍ମକ ମାନ ବେଶ୍ ଉନ୍ନତ। ସମାଜବାଦୀ ରାଷ୍ଟ୍ରମାନେ ବା ଏକଦା କମ୍ୟୁନିଷ୍ଟ ଥିବା ଦେଶମାନେ ଦ୍ୱିତୀୟ ବିଶ୍ୱ, ଯେଉଁଠି ଜୀବନର ମାନ ମଧ୍ୟ ଯଥେଷ୍ଟ ଉନ୍ନତ। ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ଅନଗ୍ରସର। ଆମ ଦେଶ ଭାରତବର୍ଷ ଏକ ଅନଗ୍ରସର ରାଷ୍ଟ୍ର ଏହି ଦୃଷ୍ଟିରୁ ଯେ ଏଠାରେ ବହୁ ଦାରିଦ୍ର୍ୟ ରହିଛି। ଆମ ଦେଶ ଜନସଂଖ୍ୟାର ଏକ ଚତୁର୍ଥାଂଶରୁ ଅଧିକ ଲୋକ ନିରକ୍ଷର। ଦେଶର ବଡ ବଡ ସହରମାନଙ୍କରେ ଅଗଣିତ ଲୋକ ସ୍ଲମମାନଙ୍କରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଏକ ଅବମାନବୀୟ (sub human) ସ୍ତରରେ ଜୀବନ ନିର୍ବାହ କରନ୍ତି। ବାଳଶ୍ରମିକ ପ୍ରଥା ପରି ସମସ୍ୟା ଆମ ଦେଶରେ ବେଶ୍ ଉତ୍କଟ। କ୍ଷୁଧା ଓ ଅପପୁଷ୍ଟି ଆମ ଜନଜୀବନରେ ସାଧାରଣ ଘଟଣା। ସର୍ବନିମ୍ନ ସ୍ୱାସ୍ଥ୍ୟସେବା ବହୁ ଲୋକଙ୍କ ପାଇଁ ଅପହଞ୍ଚ। ମନ୍ଦିର, ପୂଜାସ୍ଥଳ, ଷ୍ଟେସନ ମାନଙ୍କରେ ଓ ରେଳଯାତ୍ରା ସମୟରେ ଭିକ୍ଷାବୃତ୍ତି କରୁଥିବା ବହୁ ଲୋକଙ୍କୁ ଆମେ ଦେଖିବାକୁ ପାଉ। ଦାରିଦ୍ର୍ୟ ଯୋଗୁ ଚାଷୀ ଆତ୍ମହତ୍ୟା ପରି ଘଟଣା ଓଡିଶା ପରି ଅନଗ୍ରସର ରାଜ୍ୟମାନଙ୍କରେ ଏକ ସାଧାରଣ ଘଟଣା। ଏତଦ୍‌ବ୍ୟତୀତ ଅର୍ଥନୈତିକ ବୈଷମ୍ୟ ଓ ସାମାଜିକ ଭେଦଭାବ ଆମ ସମାଜର ନିଛକ ବାସ୍ତବତା। ଦୁର୍ନୀତି, ଭ୍ରଷ୍ଟାଚାର, ନାଗରିକ ଶୃଂଖଳାବୋଧର ଅଭାବ ଆମ ସାମାଜିକ ଜୀବନ ପ୍ରବାହରେ ବ୍ୟାପକ ଭାବେ ଦୃଷ୍ଟିଗୋଚର ହୁଏ। ଏହି ସବୁ ଘଟଣାର ସମ୍ମିଳିତ ପ୍ରଭାବରୁ ଆମ ଦେଶ ଯେ ଅନଗ୍ରସର ଓ ଗରିବ ଏହା ସୁସ୍ପଷ୍ଟ ମନେହୁଏ। ଗାଁ ଗହଳ ଜୀବନରେ ଦାରିଦ୍ର୍ୟର ଚିତ୍ର ବେଶ୍ ପ୍ରକଟିତ।

ଆମ ଅନଗ୍ରସରତାର କାରଣ ମାନଙ୍କର ଅନୁଶୀଳନ କଲେ ଏକ ଗ୍ରନ୍ଥ ହେବ । ଗୁନ୍ନାର ମିର୍ଡାଲ, ଅମର୍ତ୍ତ୍ୟ ସେନଙ୍କ ପରି ନୋବେଲ ପୁରସ୍କାର ବିଜେତା ଅର୍ଥଶାସ୍ତ୍ରୀମାନେ ଦାରିଦ୍ର୍ୟ ଉପରେ ବହୁ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥମାନ ରଚନା କରିଛନ୍ତି । ତେବେ ଶଂସିତ ପ୍ରବଂଧଟିରେ ଧାର୍ମିକ ଆବେଗ ଓ କୁସଂସ୍କାର ଆମ ଅନଗ୍ରସରତା ପାଇଁ କିପରି ଦାୟୀ ତାର ସଂକ୍ଷିପ୍ତ ସୂଚନା ଦେବା ଆମର ଲକ୍ଷ୍ୟ । ଏହି ପୃଷ୍ଠଭୂମିରେ ଏକ ବ୍ୟକ୍ତିଗତ ଅନୁଭବର କଥା ଏଠାରେ ଉଲ୍ଲେଖ କରୁଛି । ଜୁଲାଇ ୨୧, ୨୦୧୪ ଦିନ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ଏକ ରିଫ୍ରେସର ପାଠ୍ୟକ୍ରମକୁ ମୁଁ ଆମନ୍ତ୍ରିତ ହୋଇଥାଏ । ଢେଙ୍କାନାଳରୁ ହୀରାକୁଦ ଯିବାକୁ ମୁଁ ଇଣ୍ଟରସିଟିରେ ପୂର୍ବରୁ ଟିକେଟ କରିଥାଏ । ସେଦିନ ଥାଏ ସୋମବାର । ମୁଁ ଢେଙ୍କାନାଳ ଷ୍ଟେସନରେ ପହଞ୍ଚିବା ବେଳକୁ ଏହା ଅତ୍ୟନ୍ତ ଲୋକାରଣ୍ୟ ଥାଏ । ପ୍ରାୟ ଏକ ହଜାରରୁ ଅଧିକ ହେବ 'ବୋଲ୍ ବମ୍' ଭକ୍ତ ଷ୍ଟେସନରେ ସେହି ଟ୍ରେନରେ ଯିବାକୁ ସମବେତ ହୋଇଥାନ୍ତି । ଟ୍ରେନ୍ ଯେହେତୁ କିଛିଟା ବିଳମ୍ବ ଥାଏ ଓ କେଉଁଠି ହେଲେ ବସିବାକୁ ସ୍ଥାନ ନଥାଏ, ମୁଁ କେତେକ ବୋଲ୍‌ବମ୍ ଭକ୍ତଙ୍କ ସହ ବିଭିନ୍ନ ବିଷୟରେ କଥା ହେବାର ଅବକାଶ ପାଇଲି । ସେମାନେ ସମସ୍ତେ କପିଳାସ ଶୈବପୀଠରେ ଜଳ ଢାଳି ନିଜର ଗ୍ରାମମାନଙ୍କୁ ଫେରୁଥାନ୍ତି । ଅଧିକାଂଶ ଭକ୍ତମାନେ ପ୍ରାୟ ଯୁବକ, ଯେଉଁମାନଙ୍କର ବୟସ ପନ୍ଦର ଷୋହଳ ବର୍ଷରୁ ଚାଳିଶ, ପଇଁଚାଳିଶ ବର୍ଷ ହେବ । ଭକ୍ତମାନଙ୍କ ମଧ୍ୟରେ କିଛି ଯୁବା ବୟସର ମହିଳା ମଧ୍ୟ ଥାନ୍ତି । ଯେଉଁମାନଙ୍କ ସହ କଥା ହେବାର ସୁଯୋଗ ପାଇଲି ସେମାନଙ୍କୁ ପଚାରି ଜାଣିବାକୁ ପାଇଲି ଯେ ପ୍ରତ୍ୟେକ କିଛି ମାନସିକ କରି ବା କପିଳାସ ସ୍ଥାନଟିକୁ ଦେଖିବାକୁ ବୋଲ୍‌ବମ୍ ଭକ୍ତ ସାଜିଛନ୍ତି । ମାନସିକ ଭିତରେ ଥାଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା, ବ୍ୟବସାୟରେ ଲାଭ ପାଇବା, ଚାକିରି ଖଣ୍ଡିଏ ପାଇବା ଇତ୍ୟାଦି ଇତ୍ୟାଦି । କେହି କେହି ପାରିବାରିକ ପ୍ରତିକୂଳ ପରିସ୍ଥିତି ଯୋଗୁ ସେଥିରେ ଉନ୍ନତି ପାଇଁ ମଧ୍ୟ ଏପରି ମାନସିକ କରି ବାହାରିଥିବା ଶୁଣିଲି । ତେବେ ସେମାନେ ଟ୍ରେନରେ ଏହି ଯାତ୍ରା କରିବା ପାଇଁ ଟିକେଟ କରନ୍ତି କି ନାହିଁ ପଚାରିବାରୁ ଗୋଟିଏ ସାଧାରଣ ଉତ୍ତରଥିଲା, ଏହି କାର୍ଯ୍ୟରେ ଯିବା ପାଇଁ ଟ୍ରେନରେ ଟିକେଟ କରିବାକୁ ପଡେ ନାହିଁ । ସେଦିନ ଟିକେଟ କରି ଯାତ୍ରା କରୁଥିବା ଯାତ୍ରୀମାନେ ଟ୍ରେନରେ ଚଢ଼ିବାକୁ କେତେ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ଓ କିପରି କଷ୍ଟରେ ଯାଇଛନ୍ତି ତାହାର ପ୍ରତ୍ୟକ୍ଷ ଅନୁଭୂତି ମୁଁ ପାଇଛି ।

ବୋଲ୍‌ବମ୍ ପରଂପରା ଓଡିଶାରେ ମାତ୍ର କେତୋଟି ଦଶନ୍ଧି ଭିତରେ ପ୍ରସାର କରିଥିବା ମନେହୁଏ। ପ୍ରାୟ ପଚାଶ ବର୍ଷ ତଳେ ଏହା ଓଡିଶାରେ ନଥିଲା। ତେବେ ଗତ ଦୁଇ ଦଶନ୍ଧି ଭିତରେ ଏହାର ପ୍ରସାର ହୋଇ ବର୍ତ୍ତମାନ ଏହା ଏକ ଗଣ-ଯାତ୍ରାରେ ପରିଣତ ହେବାକୁ ଯାଉଛି। ଗାଁ ଗହଳରୁ ଆରମ୍ଭ କରି ସହର ପର୍ଯ୍ୟନ୍ତ ହଜାର ହଜାର ଯୁବକ ଶ୍ରାବଣ ମାସର ସୋମବାର ଦିନ ପ୍ରତି ଶିବ ମନ୍ଦିରରେ ଜଳାଭିଷେକ କରିବାକୁ ଯାଉଛନ୍ତି। ଏକ ସ୍ୱତନ୍ତ୍ର ପ୍ରକାରର ପୋଷାକ ପରିଧାନ କରି, ଏକ ବାହୁଙ୍ଗିରେ କୌଣସି ନଦୀ ବା ପୁଷ୍କରିଣୀରୁ କଳସୀରେ ଜଳ ନେଇ ଦୂରର ଶିବ ଲିଙ୍ଗରେ ଢ଼ାଳିବାକୁ ଲୋକମାନେ ଯାଉଛନ୍ତି। ଓଡିଶାରେ ଥିବା ବହୁ ଶୈବ ପୀଠ ଗୁଡିକ ଶ୍ରାବଣ ମାସରେ ଚଳଚଞ୍ଚଳ ହୋଇ ଉଠୁଛି ଓ ରବିବାର ଓ ସୋମବାର ଶିବ ମନ୍ଦିରରେ ହଜାର ହଜାର ଲୋକ କେତେକ କର୍ମକାଣ୍ଡ କରି ଜଳ ଢ଼ାଳୁଛନ୍ତି। ଏହି ଯାତ୍ରାରେ ଯାଉଥିବା ପ୍ରତ୍ୟେକ ଭକ୍ତ ଯାତ୍ରାର ଉପକରଣ ବାବଦକୁ ହାରାହାରି ପାଞ୍ଚ ଶହରୁ ଏକ ହଜାର ଟଙ୍କା ପର୍ଯ୍ୟନ୍ତ ବ୍ୟୟ କରୁଛନ୍ତି। ଏହି ଉପକରଣ ପ୍ରସ୍ତୁତ କରୁଥିବା ଓ ବିକ୍ରୟ କରୁଥିବା ବ୍ୟବସାୟୀମାନେ ଏଥିରେ ବେଶ୍ କିଛି ରୋଜଗାର କରୁଛନ୍ତି। ଏହିପରି ଏକ ଧାର୍ମିକ କର୍ମକାଣ୍ଡକୁ ପ୍ରଚାର ପ୍ରସାର ପାଇଁ ବିଭିନ୍ନ ଗୀତ, କ୍ୟାସେଟ ମଧ୍ୟ ପ୍ରସ୍ତୁତ ହୋଇ ବିକ୍ରି ହେଉଛି।

ବୋଲବମ୍ ଧାର୍ମିକ ଉପାସନାରେ ଯୋଗ ଦେଉଥିବା ଲୋକମାନେ ପ୍ରାୟତଃ ଗାଁ ଗହଳର ବା ସହର ବଜାରର ସାଧାରଣ ଲୋକ। ସେମାନେ ବିଶେଷ ଶିକ୍ଷିତ ନୁହଁନ୍ତି। ଅଧିକାଂଶ ଆର୍ଥିକ ଦୃଷ୍ଟିରୁ ବିଶେଷ ସ୍ୱଛଳ ବର୍ଗର ମଧ୍ୟ ନୁହନ୍ତି। ସେମାନେ ପ୍ରାୟତଃ କିଛି ପ୍ରତିକୂଳ ସ୍ଥିତିରେ ଥିବା ମନେହୁଏ। ଯେଉଁମାନେ ଏହାକୁ ମନୋରଂଜନ ପାଇଁ ମାଧ୍ୟମ କରୁଛନ୍ତି, ସେମାନଙ୍କୁ ବାଦ୍ ଦେଲେ ଅନ୍ୟମାନେ ପ୍ରତିକୂଳ ପରିସ୍ଥିତିକୁ ଅତିକ୍ରମ କରିବାକୁ ଏପରି କାର୍ଯ୍ୟରେ ସଂପୃକ୍ତ ହେଉଛନ୍ତି। ସମାଜରେ ପ୍ରତ୍ୟେକ ବ୍ୟକ୍ତିର କିଛି ସମସ୍ୟା ରହିବା ଏକ ସାଧାରଣ ଘଟଣା। ଏହି ସମସ୍ୟା ନାନା ପ୍ରକାରର ହୋଇପାରେ। କିଏ ଆର୍ଥିକ ଦୃଷ୍ଟିରୁ ସ୍ୱାବଲମ୍ବୀ ହୋଇପାରୁ ନାହିଁ, କାହାର ସ୍ୱାସ୍ଥ୍ୟଗତ ସମସ୍ୟା ରହିଛି, କାହାର ପାରିବାରିକ ଜୀବନରେ ଅଶାନ୍ତି ଲାଗିରହିଛି, କିଏ ନିଜର କିଛି ଅଭିଳାଷ ପୂରଣ କ୍ଷେତ୍ରରେ ବହୁ ପ୍ରତିବଂଧକର ସମ୍ମୁଖୀନ ହେଉଛି, କାହା ପାଇଁ ଜୀବନର ଘଟଣା ପ୍ରବାହ ଏତେ ପ୍ରତିକୂଳ ଯେ ତା ପାଇଁ ଜୀବନର ମୂଲ୍ୟ ନିରର୍ଥକ ମନେହେଉଛି ଏହିପରି ନାନା ସମସ୍ୟା ସମାଜରେ ରହିବା ସ୍ୱାଭାବିକ। ଏହିପରି କିଛି

ସମସ୍ୟା ଭିତରେ ଜର୍ଜରିତ ହୋଇ ରହିଥିବା ବ୍ୟକ୍ତି ଆତ୍ମବିଶ୍ୱାସ ଅଭାବରେ କଳ୍ପିତ ଦିଅଁ ଦେବତାର ଆଶୀର୍ବାଦ ପାଇବାକୁ ଆଶା ପୋଷଣ କରିଥାଏ। ବିଶେଷକରି ସାମାଜିକ ପରିବେଶ ଯେଉଁଠି ବ୍ୟକ୍ତିକୁ ଏକ ସୁଖପ୍ରଦ ଓ ନିରାପଦ ଜୀବନ ନିର୍ବାହ କରିବାକୁ ସୁଯୋଗ ଦେଇପାରେ ନାହିଁ ସେଠାରେ ଧାର୍ମିକ ଆବେଗ ବ୍ୟାପକ ଭାବେ ରହିଥିଲେ ବ୍ୟକ୍ତି କୌଣସି ଦୈବୀ ଶକ୍ତିର ଆଶୀର୍ବାଦ ପାଇବାକୁ କାମନା କରିଥାଏ। ମନୁଷ୍ୟ ଯେତେବେଳେ ନିଜକୁ ଅସହାୟ ମନେକରେ, ମନସ୍ତାତ୍ତ୍ୱିକ ସ୍ତରରେ ଦୁର୍ବଳ ହୋଇପଡେ ତା ଭିତରେ ଦୃଢ଼ ଇଚ୍ଛାଶକ୍ତି ନଥିଲେ ସେ ଧାର୍ମିକ କର୍ମକାଣ୍ଡରେ ସଂପୃକ୍ତ ହୋଇଥାଏ। ଆଧୁନିକ ବିଜ୍ଞାନର ଯୁଗ ଆସିବା ପୂର୍ବରୁ ସବୁ ସଭ୍ୟତାରେ ଏହି ଦୃଷ୍ଟିଭଙ୍ଗୀ ରହିଥିଲା। ସେତେବେଳର ସମାଜରେ ବିଶ୍ୱାସ ରହିଥିଲା ଯେ ଦୃଷ୍ଟିର ଅନ୍ତରାଳରେ ରହିଥିବା କିଛି ଦୈବୀଶକ୍ତି ସବୁ କିଛିକୁ ନିୟନ୍ତ୍ରଣ କରୁଛି। ରୋଗ, ମହାମାରୀ, ଜନ୍ମ, ମୃତ୍ୟୁ, ପ୍ରାକୃତିକ ବିପର୍ଯ୍ୟୟ ଦୈବୀ ନିର୍ଦ୍ଦେଶରେ ସମାହିତ ହେଉଛି। ଯେତେବେଳେ ହଇଜା, ବସନ୍ତ, ପ୍ଲେଗ ପରି ରୋଗମାନ ମହାମାରୀର ରୂପ ନେଇ ଆସୁଥିଲା, ସେତେବେଳେ ସମାଜରେ ବିଶ୍ୱାସ ଥିଲା ଏ ସବୁ ଦୈବୀ ଦଣ୍ଡ, ଏଥିରୁ ସୁରକ୍ଷା ପାଇଁ ଦେବତାର ଆବାହନ ଆବଶ୍ୟକ। ଦୃଷ୍ଟିର ଅନ୍ତରାଳରେ କିଛି ଦୈବୀ ଶକ୍ତି ରହିଛି ଯାହାଙ୍କ ନିର୍ଦ୍ଦେଶରେ ପ୍ରକୃତିରେ ଓ ସମାଜରେ ସବୁ କିଛି ଘଟୁଛି। ସେହି ସର୍ବଶକ୍ତିମାନ ଦେବତାର ସନ୍ତୁଷ୍ଟିଦ୍ୱାରା ଜୀବନରୁ ଦୁଃଖଦୁର୍ଦ୍ଦଶା ଦୂର ହୋଇପାରିବ। ଏହିପରି ବିଶ୍ୱାସର ବଶବର୍ତ୍ତୀ ହୋଇ ବିଭିନ୍ନ ସମାଜରେ ଓ ଧର୍ମଗୋଷ୍ଠୀ ଭିତରେ ନାନା ପୂଜା ପାର୍ବଣ, ବିଶ୍ୱାସ, ଆରାଧନା ସୃଷ୍ଟି ହେବାକୁ ଲାଗିଲା। କାଳକ୍ରମେ ଏଗୁଡିକ ଏକ ପରଂପରାର ରୂପ ନେଲା ଓ ଧର୍ମଗୋଷ୍ଠୀର ସାଂସ୍କୃତିକ ଐତିହ ଭାବେ ବୃହତ୍ତର ଗୋଷ୍ଠୀରେ ପ୍ରସାରିତ ହେଲା। ପ୍ରତ୍ୟେକ ବିଶ୍ୱାସ ସହ କେତେ କେତେ କିମ୍ବଦନ୍ତୀ, ଲୋକକଥାକୁ ଯୋଡି ଦିଆଗଲା। ପାରଂପରିକ ଧର୍ମବିଶ୍ୱାସ ଗୁଡିକ କାଳକ୍ରମେ ସଭ୍ୟତାର ବିକାଶଧାରାରେ ଆନୁଷ୍ଠାନିକ ରୂପ ନେଲା ଓ ସେହି ବିଶ୍ୱାସ ମାନଙ୍କୁ ଏକ ଐଶ୍ୱରୀୟ ସ୍ୱୀକୃତି ଦେବାକୁ ପ୍ରୟାସ ହେଲା।

ସଭ୍ୟତାର ବିକାଶ ଧାରାରେ ଯେତେବେଳେ ବିଜ୍ଞାନର ଯୁଗ ଆସିଲା, ସେତେବେଳେ ପାଶ୍ଚାତ୍ୟ ଭୂଖଣ୍ଡରେ ଧର୍ମ ଓ ବିଜ୍ଞାନ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା। ଧର୍ମର ଅଧିକାଂଶ ବିଶ୍ୱାସ ଗୁଡିକ ଯେ ଆଧାରହୀନ, ଅସତ୍ୟ ଓ କାଳ୍ପନିକ କାହାଣୀ ମାତ୍ର ବିଜ୍ଞାନର ଏହି ପରୀକ୍ଷିତ ସତ୍ୟରୁ ଧର୍ମ ଓ ବିଜ୍ଞାନ ଭିତରେ ଏକ ସଂଘର୍ଷର

ପରିବେଶ ଆସିଲା । ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା ବହୁ ପ୍ରତିଭାଧର ସତ୍ୟନିଷ୍ଠ ଜ୍ଞାନପିପାସୁ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଲା, ବନ୍ଦୀ ଜୀବନ ବିତାଇବାକୁ ହେଲା ଓ ଏପରିକି ଶହୀଦ ହେବାକୁ ପଡିଲା । ପ୍ରାଚ୍ୟ ଭୂଖଣ୍ଡରେ ଅବଶ୍ୟ ଏପ୍ରକାର ସ୍ଥିତି ସୃଷ୍ଟି ହୋଇ ନାହିଁ, କାରଣ ପ୍ରାଚ୍ୟ ଦେଶମାନଙ୍କରେ ବିଜ୍ଞାନର ସେପରି କିଛି ଉଲ୍ଲେଖନୀୟ ବିକାଶ ହୋଇ ନାହିଁ । ତେବେ ଭାରତ ଭୂଖଣ୍ଡରେ ଧାର୍ମିକ ବିଶ୍ୱାସ ଓ ସମାଜ-ସଂସ୍କାର ଭିତରେ ସଂଘର୍ଷର ପରିବେଶ ଆସିଛି । ଯେତେବେଳେ ବ୍ୟକ୍ତି ମର୍ଯ୍ୟାଦାର ପ୍ରସଙ୍ଗ ଆସିଲା, ନାରୀ-ପୁରୁଷ ଭିତରେ ସାମାଜିକ ସମତାର ମନୋଭାବ ସୃଷ୍ଟି ହେଲା, ମାନବିକ ଅଧିକାରର ସ୍ୱର ଉଠିଲା ସେତେବେଳେ ରକ୍ଷଣଶୀଳ ସମାଜରେ ତାହାର ବହୁ ବିରୋଧ ହେଲା । ଭାରତବର୍ଷ ପୃଷ୍ଠଭୂମିରେ ନାନା ସଂସ୍କାରବାଦୀ ଆନ୍ଦୋଳନ ସତ୍ତ୍ୱେ ଜାତିଆଣ ଭେଦଭାବ, ଅସ୍ପୃଶ୍ୟତା, ନାରୀ ନିର୍ଯ୍ୟାତନା ପରି ମନ୍ଦ ସ୍ଥିତି ରକ୍ଷଣଶୀଳ ମାନସିକତାରୁ ରହିବା ଦେଖାଯାଏ ।

ମାନବ ସଭ୍ୟତାର ବିକାଶକୁ ଅନୁଶୀଳନ କଲେ ଏହା ଜଣାଯାଏ ଯେ ସଭ୍ୟତାରେ ଯାହା କିଛି ପ୍ରଗତି ହୋଇଛି ସେ ସବୁ ମଣିଷର ପ୍ରୟାସରେ ହିଁ ସମ୍ଭବ ହୋଇଛି । ଏକ ଆଦିମ ଅବସ୍ଥାରୁ ନାନା କ୍ରମୋନ୍ନତି ଦେଇ ମନୁଷ୍ୟ ଆଜିର ସ୍ଥିତିକୁ ଆସିଛି । ଆମର ବିକାଶ ଓ ପ୍ରଗତି ଆକାଶରୁ ଖସି ଆସିନାହିଁ ବା ଦିଅଁ ଦେବତାର ଆଶୀର୍ବାଦରୁ ହୋଇନାହିଁ । ମଣିଷର ଜିଜ୍ଞାସାବୋଧ, ଅନୁସନ୍ଧିତ୍ସା, ଆନ୍ତରିକ ନିଷ୍ଠା ଓ ସମବେତ ଉଦ୍ୟମ ଯୋଗୁ ସଭ୍ୟତାର ବିକାଶ ହୋଇଛି । ଜୀବନ ନିରାପଦ ସ୍ଥିତିକୁ ଯାଇଛି, ସଭ୍ୟ ମୂଲ୍ୟବୋଧର ଭାବନା ଆସିଛି । ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଛି । ଯେଉଁ ରାଷ୍ଟ୍ର ସମୂହ ବିକଶିତ ଓ ଯେଉଠି ଜୀବନର ଭୌତିକ ଓ ନୈତିକ ମାନ ଉନ୍ନତ ସେମାନଙ୍କୁ ଦିଅଁ ଦେବତାର ଆଶୀର୍ବାଦ ମିଳିନାହିଁ ଓ ଯେଉଁଠି ସାମାଜିକ ପରିବେଶ ଅନଗ୍ରସର ଓ ଅନୁନ୍ନତ ରହିଛି ସେହି ସମାଜକୁ ଦୈବୀ ଅଭିଶାପ ମିଳି ନାହିଁ । ବରଂ ବିଡମ୍ବନାର ବିଷୟ ଯେଉଁ ଦେଶରେ ଏତେ ପୂଜାସ୍ଥଳ, ଦିଅଁ ଦେବତାର ଆରାଧନା, ଭକ୍ତିଭାବ, ଦେବପୁରୁଷଙ୍କ ପ୍ରବଚନ ଓ ଧାର୍ମିକ ଆବେଗର ଜୁଆର ରହିଛି ସେ ଦେଶରେ ଦାରିଦ୍ର୍ୟ, ଦୁର୍ନୀତି, ଭ୍ରଷ୍ଟାଚାର, ଭେଦଭାବ ବ୍ୟାପକ ଭାବେ ରହିଛି ।

ଆମ ଦେଶର ସାଧାରଣ ଜୀବନ ପ୍ରବାହ ଓ ସଂସ୍କୃତିରେ ପାରଲୌକିକ ଜୀବନ-ଦର୍ଶନର ପ୍ରାବଲ୍ୟ ରହିଛି । ଜ୍ଞାନ-ବିଜ୍ଞାନକୁ ମାୟା, ସମାଜିକ ସମ୍ବନ୍ଧକୁ ଅଳୀକ

ବୋଲି ଆମର ବିଶ୍ୱାସ ରହିଛି । ଆମ ସମାଜର ଅଗଣିତ ମଣିଷ ମାନବକୃତ ପ୍ରୟାସ, ଜ୍ଞାନବିଜ୍ଞାନର ଗବେଷଣା ଓ ଉନ୍ନତ ସାମାଜିକ ବ୍ୟବସ୍ଥା ଉପରେ ଗୁରୁତ୍ୱ ଦିଅନ୍ତି ନାହିଁ । ଫଳସ୍ୱରୂପ ଅନେକ ଅମାନବୀୟ ପରଂପରା, ଅହେତୁକ ବିଶ୍ୱାସ ଓ ଅର୍ଥହୀନ କର୍ମକାଣ୍ଡକୁ ପ୍ରାଧାନ୍ୟ ଦେଇ ଆସିଛନ୍ତି । ଭାଗ୍ୟ, କର୍ମଫଳ, ପ୍ରାରବ୍ଧ ଇତ୍ୟାଦି ଧାର୍ମିକ ବିଶ୍ୱାସ ଉପରେ ସେମାନେ ଆସ୍ଥା ସ୍ଥାପନ କରିଥାନ୍ତି । ନିଜର ପ୍ରତିକୂଳ ସ୍ଥିତି, ବୈଷମ୍ୟପୂର୍ଣ୍ଣ ସାମାଜିକ ବ୍ୟବସ୍ଥା ପାଇଁ ଭାଗ୍ୟକୁ ଦୋଷ ଦିଅନ୍ତି । କୌଣସି ବ୍ୟକ୍ତି କୌଣସି ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ ହେଲେ ଏହା ତାର କର୍ମଫଳ ଭାବି ସେ ପ୍ରତି ଉଦାସୀନତା ପ୍ରକାଶ କରନ୍ତି । ଏହି ସବୁ ବିଶ୍ୱାସର ପ୍ରାବଲ୍ୟ ଭିତରେ କେଉଁଠି ଅଧିଆ ପଡିଲେ, କେଉଁଠି ବୁଡ ପକାଇଲେ, କେଉଁଠି ନଡିଆ ବାଡେଇଲେ, ଏକ ନିର୍ଦ୍ଦିଷ୍ଟ ଦିନରେ କାହାର ପାଦ ଦର୍ଶନ କଲେ, କାହା ଦଉଡିକୁ ଛୁଇଁଲେ, କେଉଁଠି ପାଣି ଢ଼ାଳିଲେ, କେଉଁ ସମୟରେ ଉପବାସ କଲେ ସୁଫଳ ଫଳିବ ଓ ନିଜର ପ୍ରତିକୂଳ ସ୍ଥିତି ବଦଳିଯିବ ବୋଲି ଭାବି ଆସିଛନ୍ତି । ଏସବୁକୁ ଧାର୍ମିକ ଆବେଗ ଭିତରେ ପାଳନ କରନ୍ତି, ଏଥିପାଇଁ ଯେକୌଣସି କଷ୍ଟ ସ୍ୱୀକାର କରନ୍ତି । ସେଥିପାଇଁ ଆର୍ଥିକ ଦୃଷ୍ଟିରୁ ଶୋଷିତ ହେଉଥିଲେ ମଧ୍ୟ ଏଥିରେ ଗୁରୁତ୍ୱ ଆରୋପ କରନ୍ତି ନାହିଁ। ଏପରିକି ଧାର୍ମିକ ଆବେଗ ଓ ବିଶ୍ୱାସକୁ ନେଇ ସ୍ପର୍ଶକାତର ହୋଇପଡନ୍ତି । ଧାର୍ମିକ ଭାବାବେଗରେ ପରିଚାଳିତ ହେବାବେଳେ ସେମାନେ ନାଗରିକ ଶୃଂଖଳାବୋଧ ଓ ସାମାଜିକ କର୍ତ୍ତବ୍ୟକୁ ବିଶେଷ ପ୍ରାଧାନ୍ୟ ଦିଅନ୍ତି ନାହିଁ । ଧାର୍ମିକ ଭାବାବେଗ ପାଖରେ ସାମାଜିକ ଶୃଂଖଳା, କର୍ତ୍ତବ୍ୟବୋଧ ଓ ନୀତିବୋଧ ନ୍ୟୂନ ହେବା ଏକ ସାଧାରଣ ଅନୁଭବ ।

ହିନ୍ଦୁ ଧର୍ମଚେତନାରେ ଏକେଶ୍ୱରବାଦର ଭାବନା ବ୍ୟକ୍ତ ହୋଇଥିଲେ ମଧ୍ୟ ହିନ୍ଦୁ ସମାଜ ବ୍ୟବସ୍ଥାରେ ପିତୁଳା ପୂଜା, ଅସଂଖ୍ୟ ଦେବ-ଦେବୀଙ୍କ ଆରାଧନାର ବିଶ୍ୱାସ ରହିଛି । ଏହାକୁ ଆଧାର କରି ବିଭିନ୍ନ ପର୍ବପର୍ବାଣୀ, ପୂଜା ମହୋତ୍ସବ ପାଳିତ ହୋଇଥାଏ । ପ୍ରତ୍ୟେକ ଠାକୁର ଠାକୁରାଣୀଙ୍କୁ ନେଇ କେତେ କେତେ କିମ୍ବଦନ୍ତୀ ଓ ପୂଜାବିଧିର ପରଂପରା ସୃଷ୍ଟି କରାଯାଇଛି । ସମାଜର କିଛି ପ୍ରଭାବଶାଳୀ ବ୍ୟକ୍ତି ଶ୍ରମବିହୀନ ଉପାର୍ଜନ ପାଇଁ ଏସବୁକୁ କୌଶଳତାର ସହ ପ୍ରସାର କରି ଆସିଛନ୍ତି । ପୂଜକ ଶ୍ରେଣୀ ନିଜର ସାଂସ୍କୃତିକ ସାମନ୍ତବାଦକୁ ପରଂପରା ଓ ଐତିହର ରୂପଦେଇ ଆସିଛନ୍ତି । ଧାର୍ମିକ ଆବେଗ ଜରିଆରେ ବିଭିନ୍ନ ଦେବାଦେବୀ ପୂଜା ପାଇଁ ଲୋକମାନଙ୍କୁ

ପ୍ରବର୍ତ୍ତାଯାଉଛି। କୁସଂସ୍କାରର ପ୍ରସାର ଜରିଆରେ ଧାର୍ମିକ ଶୋଷଣ ସୂକ୍ଷ୍ମଭାବରେ କରାଯାଇପାରୁଛି। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ମନୋଭବ ଜନିତ ଜୀବନବୋଧ ନେଇ ମାନବ ସମାଜର ଚେତନାରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଛି ଆମର ଯୁବମାନସ ସେଥିରୁ ବହୁ ଦୂରରେ ରହିଛନ୍ତି। ନାନା କୁସଂସ୍କାର, ଅହେତୁକ ଭାବାବେଗ, ଧାର୍ମିକ ମତୁଆଲା ଭାବ ଯେ ଜୀବନର ଉତ୍ତରଣ କ୍ଷେତ୍ରରେ ବଡ଼ ପ୍ରତିବଂଧକ ଏହି ଚେତନା ଆମ ସମାଜରେ ସୃଷ୍ଟି ହେଉନାହିଁ। ଆଜିର ଏକବିଂଶ ଶତାବ୍ଦୀରେ ପ୍ରଯୁକ୍ତି ଯେଉଁ ସ୍ତରକୁ ଗଲାଣି, ଆମେ ତାର ସୁବିଧା ସୁଯୋଗ ନେଉଥିଲେ ମଧ୍ୟ ଆମର ମାନସିକ ସ୍ତର ମଧ୍ୟଯୁଗୀୟ ବିଶ୍ୱାସ ସ୍ତରରେ ରହିଛି। ଧାର୍ମିକ କୁସଂସ୍କାର ନାନା ଢାଞ୍ଚାରେ ଓ ଢଙ୍ଗରେ ଜନଜୀବନକୁ ଯେପରି କବଳିତ କରିରଖିଛି ସେହି ବ୍ୟବସ୍ଥାର ଏକ ପ୍ରତିଫଳନ ହେଉଛି ବୋଲ୍‌ବମ୍ ସଂସ୍କୃତି। ଏହା କେତେ ସଂସ୍କୃତି ବା ଅପସଂସ୍କୃତି ତାହା ଏକ ମୁକ୍ତ ପ୍ରଶ୍ନ।

ଜନଜୀବନରୁ ମାନସିକ ଦାସତ୍ୱକୁ ଦୂର କରିବା ପାଇଁ ସବୁ ସ୍ତରରେ ଉଦ୍ୟମ ଆବଶ୍ୟକ। ସୁଖର କଥା ଆମ ଦେଶର ସମ୍ବିଧାନରେ ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ଆମର ଜାତୀୟ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଛି। ତେବେ ଏସବୁ କେବଳ ପୋଥି ଗତ ଆଦର୍ଶ ହୋଇ ରହିଛି, ବାସ୍ତବ ଜୀବନ ଓ ସାମାଜିକ ପରିବେଶ ଆମର ଲକ୍ଷ୍ୟଠାରୁ ଯୋଜନ ଦୂରରେ ରହିଛି। ବିଜ୍ଞାନକୁ ଆଧାର କରି ଯେଉଁ ସବୁ ପ୍ରଯୁକ୍ତିର ବିକାଶ ହୋଇଛି ଓ ଯାହାର ସୁଫଳ ମାନବ ସମାଜ ଉପଭୋଗ କରୁଛି, ପରିତାପର ବିଷୟ ଆଧୁନିକ ପ୍ରଯୁକ୍ତିର ସାହାଯ୍ୟରେ କୁସଂସ୍କାରର ପ୍ରସାର କରାଯାଉଛି। ଗୋଟିଏ ସମୟରେ ଆଧାରହୀନ ବିଶ୍ୱାସ, କୁସଂସ୍କାର ସୀମିତ ଅଞ୍ଚଳରେ ରହିଥିଲା, ସଂପ୍ରତି ଗଣମାଧ୍ୟମର ଦ୍ରୁତ ପ୍ରଗତି ଯୋଗୁ ଆଞ୍ଚଳିକ କୁସଂସ୍କାର ମାନ ବ୍ୟାପକ ଅଞ୍ଚଳକୁ ବ୍ୟାପି ଯାଇପାରୁଛି। ସେହି କାରଣ ଯୋଗୁ ଓଡିଶାରେ ଜଣା ନଥିବା ବୋଲବୋମ୍ ପ୍ରଥାଟି ଏହି ଦୁଇ ଦଶନ୍ଧି ଭିତରେ ଏତେ ପ୍ରସାର ଲାଭ କରିଛି।

ବୋଲବମ୍ ପ୍ରଥାରେ ଯୋଗ ଦେଉଥିବା ଯୁବକ ଯୁବତୀ ମାନେ ଗୋଟିଏ ବିଶ୍ୱାସରେ ଲୟ ରଖି ଯେଉଁ କଷ୍ଟକର ଅନୁଭୂତି ସହ୍ୟ କରୁଛନ୍ତି ଏହା କ'ଣ ପ୍ରକୃତରେ କିଛି ନୈତିକ ପ୍ରେରଣା ସେମାନଙ୍କୁ ଯୋଗାଉଛି ? ଯଦି ଏକ କଷ୍ଟକର ସାଧନା ଦ୍ୱାରା ବ୍ୟକ୍ତିର ଚାରିତ୍ରିକ ଶୃଂଖଳା ଉନ୍ନତ ହୋଇପାରନ୍ତା ଓ ସାମାଜିକ ବ୍ୟବସ୍ଥା ଶୃଂଖଳିତ

ହୋଇ ପାରନ୍ତା, ତେବେ ଏହାକୁ ଗ୍ରହଣ କରିବାରେ କିଛି ଅସଂଗତି ରହନ୍ତା ନାହିଁ। ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଯାହାର ପ୍ରଧାନ ଅଭିବ୍ୟକ୍ତି ହେଲା ନାଗରିକ ଶୃଂଖଳାବୋଧ। କିନ୍ତୁ ବିନା ଟିକେଟରେ ଯାତ୍ରା କରିବା, ରାସ୍ତାରେ ଯିବାବେଳେ ଟ୍ରାଫିକ ନିୟମକୁ ନମାନିବା, ଉଚ୍ଚ ସ୍ୱରରେ ମାଇକରେ ଗୀତ ବଜାଇ ଶବ୍ଦ ପ୍ରଦୂଷଣ ସୃଷ୍ଟି କରିବା, ପୂଜାସ୍ଥଳର ପରିଷ୍କାର ପରିଚ୍ଛନ୍ନତା ପ୍ରତି କୌଣସି ଧ୍ୟାନ ନଦେବା ଦ୍ୱାରା କେଉଁ ସାମାଜିକ ଲକ୍ଷ୍ୟ ହାସଲ ହେଉଛି ? ବରଂ ବହୁ ସମୟରେ ସାଧାରଣ ଲୋକମାନେ ବୋଲ୍‌ବମ୍ ଭକ୍ତଙ୍କ ପାଇଁ ରାସ୍ତାରେ ଗାଡି ଚଳାଇ ଯିବାରେ, ଟ୍ରେନରେ ଯାତ୍ରା କରିବା ବେଳେ ନାନା ଅସୁବିଧାର ସମ୍ମୁଖୀନ ହେଉଛନ୍ତି। ବୋଲ୍‌ବମ୍ ଯାତ୍ରାରେ ଆମେ ଆଜି ଯାହା ଦେଖୁଛେ ଏହି ସମଗ୍ର ପ୍ରଥାଟି ଓଡିଶାକୁ ବାହାରୁ ଆସିଥିବା ଏକ ଧାର୍ମିକ ବିଶ୍ୱାସ। ଯେଉଁ ସମାଜରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳ ମନୋଭାବ ଓ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର କମ୍, ସେଠାରେ ସହଜରେ କୁସଂସ୍କାର ଜନିତ ବିଶ୍ୱାସ ଖୁବ୍ ଶୀଘ୍ର ବିସ୍ତାର ଲାଭ କରିପାରେ। ଓଡିଶାର ପାଣି ପବନରେ କୁସଂସ୍କାର ଓ ଆଧାରହୀନ ବିଶ୍ୱାସ ସହଜରେ ଅଙ୍କୁରିତ ହୋଇ ବୃଦ୍ଧି ପାଇଥାଏ କାରଣ ଅନଗ୍ରସରତା ଓ କୁସଂସ୍କାର ପରସ୍ପରର ସହୋଦର ଭାଇ। ଦାରିଦ୍ର୍ୟ ଓ ଉପଯୁକ୍ତ ଶୈକ୍ଷିକ ପରିବେଶର ଅଭାବ କୁସଂସ୍କାରର ବୃଦ୍ଧି ପାଇଁ ଉର୍ବର ମାଟି ଯୋଗାଇଥାଏ। ଆଜି ଯାହା ବିଶ୍ୱାସ ସ୍ତରରେ ରହିଛି, କିଛି ଦିନ ପରେ ଏହାର ପ୍ରସାର ପରଂପରାର ରୂପନେବ। ଗୋଟିଏ ପରଂପରାକୁ ଆଧାର କରି ଭାବବିଳାସୀ ଦର୍ଶନ (speculative philosophy) ବି ସୃଷ୍ଟି ହେବ, ଯାହା ଏକ ଧାର୍ମିକ କୁସଂସ୍କାରକୁ ତାତ୍ତ୍ୱିକ ଭିତ୍ତି ଯୋଗାଇବ। ସ୍ୱାଧୀନ ଚିନ୍ତା, ବିଚାରଶୀଳତା ଓ ମାନବିକ ମୂଲ୍ୟବୋଧ ଅଭାବରେ ବିଭିନ୍ନ ଧାର୍ମିକ ବିଶ୍ୱାସ କିପରି ତାତ୍ତ୍ୱିକ ଆଧାର ନେଇ ପାରିଛି ତାହାର ବହୁ ଦୃଷ୍ଟାନ୍ତ ଆମ ଜନଜୀବନରେ ଦେଖିବାକୁ ମିଳେ। ମନୁଷ୍ୟ ନିଜେ ଦେଉଳ, ମନ୍ଦିର ଓ ପୂଜାସ୍ଥଳ ନିର୍ମାଣ କରି ସେଠାରେ ହାତ ତିଆରି ମୂର୍ତ୍ତି ସ୍ଥାପନ କରେ। ଏହାପରେ ସେ ମନୁଷ୍ୟ ନିର୍ମିତ ପ୍ରତିମୂର୍ତ୍ତିକୁ ସର୍ବଶକ୍ତିମାନ ଭାବି ସେଠାରେ ନତମସ୍ତକ ହୋଇଥାଏ। ସେହି ଚିତ୍ରିତ ମୂର୍ତ୍ତିମାନଙ୍କୁ ନେଇ ପରଂପରା ସୃଷ୍ଟି କରିବା ଓ ଭାବବିଳାସୀ ଦର୍ଶନର ବିସ୍ତାର କରିବା ଜନଜୀବନରେ ବ୍ୟାପକ ଭାବେ ଦେଖାଯାଏ। ଏହା ସହିତ ନାନା କିମ୍ବଦନ୍ତୀ କାଳକ୍ରମେ ବି ଯୋଡାଯାଏ।

ଜୀବନର ଘଟଣା ପ୍ରବାହ, ପ୍ରାକୃତିକ ପରିବେଶ ଓ ସାମାଜିକ ସ୍ଥିତି ନେଇ ଦୁଇ ପ୍ରକାରର ପୃଥକ୍ ପ୍ରତିକ୍ରିୟା ମଣିଷ ପ୍ରକାଶ କରିଥାଏ। ଆମ ଅନୁଭୂତିରେ ଆମେ ଦେଖିଥାଏ ଯେ କେତେକ ବ୍ୟକ୍ତି ଜନ୍ମରୁ ପ୍ରାଚୁର୍ଯ୍ୟପୂର୍ଣ୍ଣ ପରିବେଶରେ ବଢ଼ନ୍ତି ଓ ସାମାଜିକ ସମ୍ମାନର ଅଧିକାରୀ ହୁଅନ୍ତି। ଅନ୍ୟ କେତେକ ବ୍ୟକ୍ତି ପିଲାଟି ବେଳୁ ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୁଅନ୍ତି, କଅଁଳ ବୟସରୁ ଜୀବନର ଭାର ବହନ କରନ୍ତି, ଜୀବନସାରା ଅସମ୍ମାନିତ ହୋଇ ଜୀବନ ବଞ୍ଚନ୍ତି। କେତେକଙ୍କ ପାଇଁ ସାମାଜିକ ପରିଚୟଟି ସମ୍ମାନ ଜନକ ହୋଇଥିଲା ବେଳେ ଅନ୍ୟମାନଙ୍କ ପାଇଁ ଏହା ଅସମ୍ମାନଜନକ ହୋଇଥାଏ। ଏପରି କାହିଁକି ହୁଏ ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏସବୁ ସେମାନଙ୍କର କପାଳ ଲିଖନ, ଭାଗ୍ୟ ଓ କର୍ମଫଳ। ଏହା ଅପରିବର୍ତ୍ତନୀୟ। ଅନ୍ୟ ଏକ ଦୃଷ୍ଟିଭଙ୍ଗୀର ଉତ୍ତର ହେଉଛି ଏହି ପ୍ରଭେଦ ଗୋଟିଏ ସାମାଜିକ ପରିବେଶର ପରିଣାମ, କେତେକ ସାଂସ୍କୃତିକ, ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତିର ପରିଣତି। ତେବେ ଏହି ଭେଦଭାବ ଜନିତ ସ୍ଥିତିକୁ ପ୍ରୟାସଦ୍ୱାରା ପରିବର୍ତ୍ତନ କରାଯାଇ ପାରିବ ଓ ଏକ ସମତାପୂର୍ଣ୍ଣ ମାନବିକ ପରିବେଶ ସୃଷ୍ଟି କରିହେବ।

ଆମ ଚତୁଃପାର୍ଶ୍ୱରେ ଯାହା ସବୁ ଉନ୍ନତି ହୋଇଛି ଏହା କିପରି ସମ୍ଭବ ହୋଇଛି ? ରାସ୍ତାଘାଟ, ଯାନବାହାନ, ଶିକ୍ଷା,ଚିକିତ୍ସା, କଳାକୃତି, ସଂଗୀତ, ନାଟକ, ସ୍ଥାପତ୍ୟ କିପରି ହୋଇଛି ଯାହାଦ୍ୱାରା ଜୀବନର ଧାରା ସରଳ ସୁନ୍ଦର ହୋଇପାରିଛି ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେବ ଏସବୁ ଈଶ୍ୱରଙ୍କର ଅବଦାନ, ସେ ଯାହା ଚାହିଁଛନ୍ତି ତାହାହିଁ ସମ୍ଭବ ହୋଇଛି। ଅନ୍ୟ ଦୃଷ୍ଟିଭଙ୍ଗୀଟି ହେଉଛି ସଭ୍ୟତାରେ ଯାହା କିଛି ସମ୍ଭବ ହୋଇଛି ତାହା ମଣିଷର ସଂଘବଦ୍ଧ ପ୍ରୟାସର ପରିଣତି। ଅର୍ଥାତ୍ ଏସବୁ ମଣିଷ ହାତ ଓ ମୁଣ୍ଡର କରାମତି। ଆମର ଜ୍ଞାନ, ବିଜ୍ଞାନ, ଭାଷା, ସାହିତ୍ୟ, କଳା, ସଂସ୍କୃତି ମଣିଷ ନିଜର ମସ୍ତିଷ୍କ ଖଟାଇ ହାତରେ ସୃଷ୍ଟି କରିଛି।

ସେହିପରି ସମାଜରେ ଯେଉଁ ନୀତି, ଆଦର୍ଶ, ମୂଲ୍ୟବୋଧ, ନାଗରିକ ଶୃଂଖଳାବୋଧ ରହିଛି ଏସବୁ ଆମେ କିପରି ଲାଭ କରିଛେ ? ଗୋଟିଏ ଦୃଷ୍ଟିଭଙ୍ଗୀର ଉତ୍ତର ହେବ ଏସବୁ ଈଶ୍ୱର ଦତ୍ତ ଓ ଧର୍ମଶାସ୍ତ୍ର ମାଧ୍ୟମରେ ଈଶ୍ୱର ପ୍ରକଟିତ ଭାବନାର ଅଭିବ୍ୟକ୍ତି। ଅନ୍ୟ ଉତ୍ତରଟି ହେବ ଆମର ସକଳ ନୀତି, ମୂଲ୍ୟବୋଧ ସାମାଜିକ ସଂପର୍କ ଦେଇ ବିଚାରଶୀଳତା ମାଧ୍ୟମରେ ବିକଶିତ ହୋଇଛି। ନୀତି, ଆଦର୍ଶ, ଶିଷ୍ଟାଚାର

ସାମାଜିକ ବିକାଶଧାରାରେ ଉଦ୍ଭବ ହୋଇଛି ଓ ସେସବୁ ସ୍ଥାନ, କାଳ ପରିପ୍ରେକ୍ଷୀରେ ପୃଥକ୍ ଓ ନୂତନ ଆହ୍ୱାନ ପରିସ୍ଥିତିରେ ପରିବର୍ତ୍ତନଶୀଳ।

ଏହି ଦୁଇଟି ଦୃଷ୍ଟିଭଙ୍ଗୀ ଭିତରେ ଗୁଣାତ୍ମକ ପାର୍ଥକ୍ୟ ରହିଛି। ଜୀବନର ଘନଘଟା, ବିପଦ ଓ ସାମାଜିକ ବାସ୍ତବତାକୁ ସମ୍ମୁଖୀନ ହେବା କ୍ଷେତ୍ରରେ କେତେକ ଦୈବୀ କରୁଣାରେ ବିଶ୍ୱାସ କରନ୍ତି ଓ ଏକ ଅଦୃଷ୍ଟ ଶକ୍ତି ଯେ ସେମାନଙ୍କୁ ସହାୟକ ହେବ ଏହି ଭାବନାରେ ପ୍ରଭାବିତ ହୋଇ ନାନା ଧାର୍ମିକ ଆବେଗରେ ପରିଚାଳିତ ହୁଅନ୍ତି। ଅନ୍ୟ ଦୃଷ୍ଟିଭଙ୍ଗୀରେ ବ୍ୟକ୍ତି ନିଜର ବୁଦ୍ଧି, ମସ୍ତିଷ୍କ ଖଟାଇ ଯୁକ୍ତିଶୀଳ ଓ ବିଜ୍ଞାନ ସମ୍ମତ ପନ୍ଥାରେ ଜୀବନର ପରିସ୍ଥିତିକୁ ସମ୍ମୁଖୀନ ହୋଇଥାନ୍ତି। ମାନବିକ ପ୍ରୟାସ ଓ ସଂଘବଦ୍ଧ ପ୍ରଚେଷ୍ଟାକୁ ପ୍ରାଧାନ୍ୟ ଦେଇ ସମସ୍ୟାର ସମାଧାନ ବାହାର କରିବାକୁ ପ୍ରତିବଦ୍ଧ ହୁଅନ୍ତି। ଯେଉଁମାନେ ମାନବିକ ପ୍ରୟାସକୁ ପ୍ରାଧାନ୍ୟ ଦେଇ ବିଚାରଶୀଳ ଭାବେ ମସ୍ତିଷ୍କ ଖଟାଇଛନ୍ତି ସେମାନେ ସଭ୍ୟତାର ବିକାଶକୁ ଆଗକୁ ନେଇଛନ୍ତି ଓ ମାନବିକ ମୂଲ୍ୟବୋଧର ପ୍ରସାର ଘଟାଇଛନ୍ତି। ଅପରପକ୍ଷରେ ଯେଉଁମାନେ ମାନବିକ ସମସ୍ୟାର ସମାଧାନ ପାଇଁ ଦୈବୀକୃପାକୁ ଆଶ୍ରୟ କରିଛନ୍ତି, ପୂଜା ଓ ଧାର୍ମିକ ଆବେଗକୁ ପ୍ରାଧାନ୍ୟ ଦେଇଛନ୍ତି ସେମାନେ ଅନଗ୍ରସର ରହିଛନ୍ତି ଓ ବିକାଶର ଶିଡିରେ ଆଗକୁ ଯାଇପାରି ନାହାନ୍ତି। ଅଫିମ ଯେପରି ସ୍ନାୟୁତନ୍ତ୍ରୀକୁ ଶିଥିଳ କରିଥାଏ, ଧର୍ମର ଅଫିମ ମଣିଷର ସୃଜନଶୀଳତା ଓ ବିଚାରଶୀଳତାକୁ ଶିଥିଳ କରି ଦେଇଥାଏ। ଏହାର ବାସ୍ତବ ଅଭିବ୍ୟକ୍ତି ଆମ ଜନଜୀବନରେ ସୁସ୍ପଷ୍ଟ ଭାବେ ଦେଖିହୁଏ।



# ସଭ୍ୟତାର କାହାଣୀ

ସଂପ୍ରତି ମାନବ ସଭ୍ୟତା ଯେଉଁ ସ୍ଥିତିରେ ପହଞ୍ଚିଛି ତାହା ପାଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ନୃତାତ୍ତ୍ୱିକ ଅନୁଶୀଳନରୁ ଜଣାଯାଏ ଯେ କୃଷି ଜନିତ ଜ୍ଞାନରୁ ସଭ୍ୟତାର ଆରମ୍ଭ ହୁଏ । ଆଜକୁ ପ୍ରାୟ ପାଞ୍ଚ ଛ' ହଜାର ବର୍ଷ ତଳେ ମଣିଷ କୃଷି କରି ଖାଦ୍ୟ ଉତ୍ପାଦନ କରିବାର ଜ୍ଞାନ ହାସଲ କଲା । ସେହି ଜ୍ଞାନରୁ ତାର ଯାଯାବର ଜୀବନର ପରିସମାପ୍ତି ଘଟିଲା ଓ ବିଭିନ୍ନ ଭୂଖଣ୍ଡରେ ଗୋଷ୍ଠୀଗତ ଗ୍ରାମ୍ୟଜୀବନର ଭିତ୍ତି ପଡିଲା । ସମୟର ଅଗ୍ରଗତି ସହ ଗ୍ରାମ୍ୟଜୀବନ ବିସ୍ତାରଲାଭ କରି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସୃଷ୍ଟି ହେଲା ଓ କାଳକ୍ରମେ ରାଜତନ୍ତ୍ର ଆସିଲା । ପୃଥିବୀରେ ଧୀରେ ଧୀରେ ହଜାର ହଜାର ଭାଷା ଉଦ୍‌ଭବ ହେଲା । ଭାଷା ବିଶେଷଜ୍ଞଙ୍କ ମତରେ ଆମ ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ରହିଛି, ଯଦିଓ ସେ ମଧ୍ୟରୁ ଦୁଇଶହଟି ଭାଷା ବେଶ୍ ଉନ୍ନତ । ଯେହେତୁ ଅଞ୍ଚଳମାନ ନଦୀ, ପାହାଡ, ପର୍ବତ ଓ ସମୁଦ୍ର ଯୋଗୁଁ ସ୍ଥଳପଥରେ ପରସ୍ପରଠାରୁ ବିଚ୍ଛିନ୍ନ ଥିଲେ ଓ ମଣିଷମାନଙ୍କର ଗତିଶୀଳତା ଅତି ସୀମିତ ଥିଲା ସେହେତୁ ହଜାର ହଜାର ଭାଷାର ଉଦ୍‌ଭବ ହେଲା । କାଳକ୍ରମେ ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ଗଢ଼ି ଉଠିଲା । କେତେକ ସଭ୍ୟତା ଐତିହାସିକ କାରଣରୁ ବିପର୍ଯ୍ୟୟର ସମ୍ମୁଖୀନ ହେଲା । ସଭ୍ୟତାର ଭିତ୍ତି ପଡିବା ପରେ କେତେକ ଭୂଖଣ୍ଡରେ କିଛି କ୍ରାନ୍ତିକାରୀ ମନୀଷୀଙ୍କର ଆବିର୍ଭାବ ହେଲା । ଜଗତର ଉତ୍ପତ୍ତି, ସୁସ୍ଥ ସାମାଜିକ ଜୀବନର ଆଧାର, ନୀତି ନୈତିକତାର ଭାବନା, ଜୀବନର ଅନ୍ତିମ ଲକ୍ଷ୍ୟ, ଈଶ୍ୱରଙ୍କ ସ୍ୱରୂପ ଇତ୍ୟାଦି ପ୍ରସଙ୍ଗ ଉପରେ ସେମାନେ କେତେକ ମୌଳିକ ବିଚାରର ଭାବନା ସୃଷ୍ଟି କରିଥିଲେ । କାଳକ୍ରମେ ସେମାନଙ୍କ ବିଚାରକୁ ନେଇ ଧାର୍ମିକ ଜାଗରଣ ସୃଷ୍ଟିହେଲା ଓ ଧର୍ମ ଏକ ବୃହତ୍ତର ଜନଗୋଷ୍ଠୀ ମଧ୍ୟରେ ଏକ ସାଂସ୍କୃତିକ ସଂହତି ସୃଷ୍ଟି କରିବାରେ ସହାୟକ

ହେଲା । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ରାଜତନ୍ତ୍ର ଦୃଢ଼ ଭିତ୍ତିନେବା ପରେ ରାଜନୈତିକ ପୃଷ୍ଠପୋଷକତା ପାଇ ପ୍ରତ୍ୟେକ ଧର୍ମ ଏକ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହେଲା ଓ ଏକ ଗୋଷ୍ଠୀ ଭିତରେ ସାମାଜିକ ଅସ୍ମିତା ସୃଷ୍ଟିକଲା । ଗ୍ରାମୀଣ ଜୀବନଧାରା, କୃଷିଭିତ୍ତିକ ସମାଜ, ରାଜତନ୍ତ୍ର, ଧର୍ମର ଗଭୀର ପ୍ରଭାବ ଶିଳ୍ପ ସଭ୍ୟତାର ପରିବେଶ ଆସିବା ପର୍ଯ୍ୟନ୍ତ ସବୁ ସଭ୍ୟତାର ଆଧାର ହୋଇ ରହିଥିଲା । ରାଜତନ୍ତ୍ର ଓ ଧର୍ମର ଗଭୀର ପ୍ରଭାବରୁ ସମାଜରେ ସାମନ୍ତବର୍ଗ ସୃଷ୍ଟି ହେବାକୁ ଲାଗିଲା । ସମାଜର ସାମନ୍ତବର୍ଗ ଅର୍ଥନୈତିକ କାରଣରୁ ସମାଜର ପ୍ରଭାବଶାଳୀ ଗୋଷ୍ଠୀ ହେଲେ ।

ସଭ୍ୟତାର ବିକାଶ ଧାରାରେ ଦୁଇଟି ବୌଦ୍ଧିକ ଜାଗରଣ ଚିନ୍ତାରାଜ୍ୟରେ ଓ ଜୀବନଧାରାରେ ଗଭୀର ଆଲୋଡନ ଆଣିଲା । ଗୋଟିଏ ହେଲା ରିନାସାଁ ବା ନବଜାଗରଣର ଯୁଗ । ଏହି ଜାଗରଣ ତ୍ରୟୋଦଶ ଶତାବ୍ଦୀର ଶେଷ ଭାଗରେ ଓ ମୁଖ୍ୟତଃ ଚତୁର୍ଦ୍ଦଶ ଶତାବ୍ଦୀରେ ଇଟାଲିରେ ଆରମ୍ଭ ହୋଇ ସମଗ୍ର ଇଉରୋପରେ ପଞ୍ଚଦଶ ଶତାବ୍ଦୀରେ ପ୍ରସାରିତ ହୋଇଥିଲା । ଧର୍ମୀୟ ରକ୍ଷଣଶୀଳତା ବିରୁଦ୍ଧରେ ଏହି ଜାଗରଣ ଯୋଗୁଁ ପ୍ରତିବାଦର ସ୍ୱର ଉଠିଲା ଓ ଏହା ଆଉ ଗୋଟିଏ ବୌଦ୍ଧିକ କ୍ରାନ୍ତି ପାଇଁ ପଥପ୍ରଦର୍ଶକ ହେଲା । ଏହି ଦ୍ୱିତୀୟ କ୍ରାନ୍ତିଟିକୁ କୁହାଯାଇଛି 'ଏଜ୍ ଅଫ୍ ଏନ୍‌ଲାଇଟେନମେଣ୍ଟ' ବା ଜ୍ଞାନଦୀପ୍ତିର ଯୁଗ । ଏହା ସପ୍ତଦଶ ଶତାବ୍ଦୀରେ ଆରମ୍ଭ ହୋଇ ଚିନ୍ତାରାଜ୍ୟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ କଲା । ଏହି ସମୟରୁ ବିଜ୍ଞାନର ବିକାଶ ପର୍ବ ଆରମ୍ଭ ହେଲା । ଧର୍ମଗ୍ରନ୍ଥରେ ରହିଥିବା ବିଶ୍ୱାସ ଗୁଡିକ ଯେ ମିଥ୍ୟା, କାରଣ ସେଗୁଡିକ ତଥ୍ୟ ସମର୍ଥିତ ନୁହେଁ- ଏହା ବିଜ୍ଞାନ ଧୀରେ ଧୀରେ ପ୍ରକାଶ କରିବାକୁ ଲାଗିଲା । ବିଜ୍ଞାନର ଆଧାର ହେଲା ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ଆମ ଚତୁପାର୍ଶ୍ୱରେ ଯାହା କିଛି ଘଟୁଛି ବା ଯାହା କିଛି ଅଛି ସେସବୁ ପ୍ରାକୃତିକ କାରଣଦ୍ୱାରା ନିୟନ୍ତ୍ରିତ । ପ୍ରକୃତିରେ ଅସଂଖ୍ୟ ରହସ୍ୟ ରହିଛି ତେବେ କୌଣସି ଘଟଣା ପଶ୍ଚାତରେ କିଛି ଐଶ୍ୱରିକ ବା ଦୈବୀ କାରଣ ନାହିଁ । ଏ ବିଶ୍ୱକୁ କେଉଁ ଈଶ୍ୱର କେତେ ହଜାର ବର୍ଷ ତଳେ ସୃଷ୍ଟି କରିନାହାନ୍ତି, ମନୁଷ୍ୟ ଈଶ୍ୱର ସୃଷ୍ଟ ନୁହେଁ, ପୃଥିବୀ ସ୍ଥିର ନୁହେଁ ଓ ସୂର୍ଯ୍ୟ ଗତିଶୀଳ ନୁହେଁ- ଭାବନା ଗୁଡିକ ଧାର୍ମିକ ବିଶ୍ୱାସର ଅଜ୍ଞତାକୁ ପ୍ରକାଶ କଲା । ଶହ ଶହ କୋଟି ବର୍ଷ ତଳେ ପୃଥିବୀ ସୃଷ୍ଟି ହୋଇ ନାନା ପରିବର୍ତ୍ତନ ମଧ୍ୟ ଦେଇ ଆଜିର ସ୍ଥିତିକୁ ଆସିଛି, କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ଦେଇ ମଣିଷର ଉତ୍ପତ୍ତି ହୋଇଛି, ଆମ ଗ୍ରହମଣ୍ଡଳରେ ସୂର୍ଯ୍ୟ କେନ୍ଦ୍ରରେ ରହିଛି ଓ ପୃଥିବୀ ପରି ଗ୍ରହମାନ ସୂର୍ଯ୍ୟ ଚତୁର୍ପାର୍ଶ୍ୱରେ ଘୂରି ବୁଲୁଛନ୍ତି, ମଣିଷ ସମାଜ ଏକ ଆଦିମ ସ୍ଥିତିରୁ

ସାମାଜିକ ବିକାଶଧାରାରେ ଅଗ୍ରଗତି କରିଛି- ଏସବୁ ଭାବନା ବିଜ୍ଞାନ ବସ୍ତୁନିଷ୍ଠ ଭାବେ ପ୍ରତିଷ୍ଠା କଲା। ପରିଣାମତଃ ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ। ବହୁ ପ୍ରତିଭାଧର ବୈଜ୍ଞାନିକ ନିଜର ସତ୍ୟ ସିଦ୍ଧାନ୍ତ ପାଇଁ ଧର୍ମଗୋଷ୍ଠୀଦ୍ୱାରା ନିନ୍ଦିତ ହୋଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ଓ ଏପରିକି ଫାଶୀ ଖୁଣ୍ଟରେ ଝୁଲିଛନ୍ତି। ତେବେ ବୈଜ୍ଞାନିକ ଜ୍ଞାନ ପ୍ରଣାଳୀବଦ୍ଧ, ତଥ୍ୟଭିତ୍ତିକ, ପ୍ରଗତିଶୀଳ ଓ ସ୍ୱସଂଶୋଧନାତ୍ମକ ହୋଇଥିବାରୁ ଓ ଏହାର ଏକ ସାର୍ବଜନୀନ ଭିତ୍ତି ଥିବାରୁ ବୈଜ୍ଞାନିକ ଜ୍ଞାନକୁ ପ୍ରତ୍ୟାଖ୍ୟାନ କରିବା ସମ୍ଭବ ନୁହେଁ। ସୁତରାଂ ବିଜ୍ଞାନର ଆଦିପର୍ବଟି ନାନା ପ୍ରତିବନ୍ଧକର ସମ୍ମୁଖୀନ ହୋଇଥିଲେ ମଧ୍ୟ ବିଜ୍ଞାନର ବିକାଶ ଅଗ୍ରଗତି କରିଚାଲିଲା। ବିଜ୍ଞାନ ଏପରି ଏକ ନିର୍ଣ୍ଣାୟକ ସ୍ଥିତିକୁ ଆସିଲା ଯେ ସଭ୍ୟତାର ଭୌତିକ ବିକାଶ ଓ ଜୀବନର ଗୁଣାତ୍ମକ ମାନକୁ ଏହା ଗଭୀର ଭାବେ ପ୍ରଭାବିତ କଲା। ବିଜ୍ଞାନକୁ ବାଦ୍ ଦେଇ ସଭ୍ୟତାର ବିକାଶ ଏବେ କଳ୍ପନା କରାଯାଇ ପାରିବ ନାହିଁ।

ବିଜ୍ଞାନର ବିକାଶ ପରଠାରୁ ନୂଆ ନୂଆ ପ୍ରଯୁକ୍ତିର ଉଦ୍‌ଭାବନ ହେଲା ଓ ଏକ ଶିଳ୍ପ ବିପ୍ଳବର ଯୁଗ ଆସିଲା । ଯନ୍ତ୍ରଶିଳ୍ପର ଯୁଗ ଆସିବା ପରେ ବିଭିନ୍ନ ସ୍ତରରେ ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ତ୍ୱରାନ୍ୱିତ ହେବାକୁ ଲାଗିଲା । କୁଟୀରଶିଳ୍ପ ସାହାଯ୍ୟରେ ନିତ୍ୟବ୍ୟବହାର୍ଯ୍ୟ ବସ୍ତୁ ମଣିଷ ଯେତିକି ଉତ୍ପାଦନ କରୁଥିଲା, ଯନ୍ତ୍ର ଶିଳ୍ପ ଆଧାରରେ ତା'ର ବହୁଗୁଣର ବସ୍ତୁ ଉତ୍ପାଦନ କରିପାରିଲା । ଜଣେ ବୁଣାକାର ଚାରି ପାଞ୍ଚଦିନ ପରିଶ୍ରମରେ ଖଣ୍ଡିଏ ବସ୍ତ୍ର ବୁଣି ପାରୁଥିଲା, ଯନ୍ତ୍ର ଶିଳ୍ପର ବିକାଶ ହେତୁ ପ୍ରତି ମିନିଟ୍‌ରେ ଶହ ଶହ ବସ୍ତ୍ର ନିର୍ମିତ ହୋଇପାରିଲା । ଯନ୍ତ୍ର ଶିଳ୍ପ ଓ ସେଥିରେ କ୍ରମୋନ୍ନତି ଯୋଗୁ ବହୁ ବସ୍ତୁ ଖୁବ୍ ଅଳ୍ପ ସମୟରେ ଓ ସ୍ୱଳ୍ପ ଦୈହିକ ପରିଶ୍ରମରେ ହଜାର ହଜାର ସଂଖ୍ୟାରେ ନିର୍ମିତ ହେଲା । ଯେଉଁ ରାଷ୍ଟ୍ରମାନେ ବିଜ୍ଞାନର ସାହାଯ୍ୟରେ ନୂଆ ନୂଆ ପ୍ରଯୁକ୍ତି ଓ ଯନ୍ତ୍ରଶିଳ୍ପର ପ୍ରସାର କରିପାରିଲେ ସେମାନେ ଧୀରେ ଧୀରେ ବିକଶିତ ହୋଇଉଠିଲେ । ସଂପ୍ରତି ଯେଉଁ ରାଷ୍ଟ୍ରମାନେ ବିକଶିତ ହୋଇଛନ୍ତି ତାହା ପଶ୍ଚାତରେ ସେମାନଙ୍କର ଶିଳ୍ପୋନ୍ନତି ଏକ ମୁଖ୍ୟ ଭୂମିକା ନେଇପାରିଛି । ଯନ୍ତ୍ରଶିଳ୍ପର ବିକାଶ ଯୋଗୁଁ ସହରୀ ସଭ୍ୟତା ଗଢ଼ିଉଠିଲା । ଗ୍ରାମମାନଙ୍କରୁ ଅନେକ ଲୋକ କର୍ମସଂସ୍ଥାନ ପାଇଁ ସହରମାନଙ୍କୁ ଆସିଲେ । ଯୁଗ ଯୁଗର ଗ୍ରାମୀଣ ସଭ୍ୟତା ଧୀରେ ଧୀରେ ସହରୀ ସଭ୍ୟତାର ବିକାଶ ଯୋଗୁ ନାନା ଆହ୍ୱାନର ସମ୍ମୁଖୀନ ହେଲା । ସହରୀ ସଭ୍ୟତାର ବିକାଶରୁ ନୂଆ ନୂଆ ମାନବିକ ସମସ୍ୟାର ଉଦ୍‌ଭବ ହେଲା ।

ଊନବିଂଶ ଶତାବ୍ଦୀ ବେଳକୁ ପୃଥିବୀର ସମସ୍ତ ଅଞ୍ଚଳକୁ ଜାଣିବା ସମ୍ଭବ ହୋଇଯାଇଥିଲା । ସବୁ ସାଗର ଓ ମହାସାଗରରେ ଜାହାଜ ନେଇ ପୃଥିବୀର ବିଭିନ୍ନ ଅଞ୍ଚଳ ଓ ଜନସମୂହ ବିଷୟରେ ୟୁରୋପୀୟମାନେ ଧାରଣା କରିସାରିଥିଲେ। କେତେକ ଦେଶର ନୌବାହିନୀ ଉନ୍ନତ ହୋଇଥିବା ଯୋଗୁ ସେମାନେ ବିଭିନ୍ନ ଅଞ୍ଚଳ ଉପରେ ନିଜର ଆଧିପତ୍ୟ ବିସ୍ତାର କରିପାରିଥିଲେ। ଶିଳ୍ପବିପ୍ଳବ ଓ ସମୁଦ୍ର ଯାତ୍ରା ଜନିତ ଜ୍ଞାନରୁ ସାମ୍ରାଜ୍ୟବାଦର ଯୁଗ ଆସିଲା । ଯେଉଁ ଦେଶମାନେ, ବିଶେଷତଃ ୟୁରୋପୀୟ ରାଷ୍ଟ୍ରମାନେ, ବିକଶିତ ହୋଇଥିବା ଯୋଗୁଁ ସେମାନେ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକା ଦେଶମାନଙ୍କରେ ସାମ୍ରାଜ୍ୟବାଦ ବିସ୍ତାର କରିପାରିଲେ। ଜ୍ଞାନ ଆଧିପତ୍ୟ ବିସ୍ତାରରେ ସହାୟକ ସାଜିଲା।

ବିଂଶ ଶତାବ୍ଦୀ ଆରମ୍ଭରୁ ସିନେମା ଓ ଚଳଚିତ୍ରର ଯୁଗ ଆରମ୍ଭ ହେଲା । ଗତିଶୀଳ ଛବି ଓ କଥାର ରେକର୍ଡିଂ କରି ପ୍ରସାରଣ ଜନିତ ଏହି ପ୍ରଯୁକ୍ତି ସିନେମାର ପ୍ରସାରରେ ସହାୟକ ହେଲା। ବିଂଶଶତାବ୍ଦୀ ଆରମ୍ଭରେ ରେଡିଓର ଉଦ୍‌ଭାବନ ସଭ୍ୟତାର ବିକାଶରେ ଥିଲା ଏକ ଯୁଗାନ୍ତକାରୀ ଘଟଣା । ୧୯୨୭ ରେ ଇଂଲଣ୍ଡରେ ବ୍ରିଟିଶ ବ୍ରଡକାଷ୍ଟିଂ ସେଣ୍ଟର ବା ବିବିସିର ପ୍ରତିଷ୍ଠାପରେ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କରେ ବେତାର କେନ୍ଦ୍ରମାନ ସ୍ଥାପିତ ହେଲା। ରେଡିଓ, ସିନେମାର ପ୍ରସାର ଯୋଗୁ ଜ୍ଞାନର ବିକାଶ ଓ ସାମାଜିକୀକରଣ ସମ୍ଭବ ହେଲା। ଊନବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଉନ୍ନତ ଦେଶମାନଙ୍କରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିସ୍ଥିତି ସୃଷ୍ଟି ହୋଇଥିଲେ ବି ଉଚ୍ଚଶିକ୍ଷା କେବଳ ସଭ୍ରାନ୍ତ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲା । କାଳକ୍ରମେ ଶିକ୍ଷାର ପ୍ରସାର ବ୍ୟାପକ ହେଲା ଓ ସମାଜର ସବୁ ବର୍ଗର ଲୋକଙ୍କ ପାଇଁ ଶିକ୍ଷା ସମ୍ଭବ ହେଲା । ଊନବିଂଶ ଶତାବ୍ଦୀ ଆରମ୍ଭ ସମୟକୁ ପ୍ରିଣ୍ଟିଂ ପ୍ରେସ୍‌ର ଉଦ୍‌ଭାବନ ଓ ସେଥିରେ କିଛିଟା ଉନ୍ନତି ସାଧନ ଯୋଗୁଁ ଛପା ବହି ଉପଲବ୍ଧ ହୋଇ ସାରିଥିଲା । ଏହି ଶତାବ୍ଦୀର ମଧ୍ୟଭାଗବେଳକୁ ରେଳଯାତ୍ରାର ବିକାଶ ହୋଇଥିଲା; ଗମନା ଗମନ ଓ ପରିବହନ କ୍ଷେତ୍ରରେ ଏହା ବେଶ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ରେଳଯାତ୍ରାର ବିକାଶ ପର୍ଯ୍ୟନ୍ତ ସ୍ଥଳପଥରେ ଘୋଡା, ହାତୀ ଉପରେ ହିଁ ମଣିଷ ଯାତାୟତ ଯାହା କରୁଥିଲା । ଗୃହପାଳିତ ପଶୁମାନେ ହିଁ ଗମନାଗମନ ପାଇଁ ସ୍ଥଳଭାଗରେ ମଣିଷର ସବୁଠାରୁ ବଡ଼ ଅବଲମ୍ବନ ଥିଲା । ବିଂଶ ଶତାବ୍ଦୀ ଆରମ୍ଭରେ ଉଡା ଜାହାଜ ନିର୍ମାଣର କୌଶଳ ବାହାରିଲା ଓ ପ୍ରଥମ ବିଶ୍ୱଯୁଦ୍ଧ ପରେ ଆକାଶ ମାର୍ଗରେ ଦୂର ସ୍ଥାନକୁ ଯିବା ମଣିଷ ପାଇଁ ସମ୍ଭବ ହେଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ବସ, ଟ୍ରକ୍, କାରର ପ୍ରଚଳନ ସମ୍ଭବ ହୋଇଥିଲା। ଧୀରେ ଧୀରେ ଗମନାଗମନରେ ଦ୍ରୁତ ଅଭିବୃଦ୍ଧି ସଭ୍ୟତାର ବିକାଶ କ୍ଷେତ୍ରରେ ଏକ ମାଇଲଖୁଣ୍ଟ ହେଲା। ମଣିଷ ଆକାଶରେ ଉଡିବାର ପଚାଶବର୍ଷ ପରେ ସେ ଆରମ୍ଭ କରିଛି ମହାକାଶ ଯାତ୍ରା। ଏହା ସମ୍ଭବ ହୋଇଛି ସ୍ୱୟଂକ୍ରିୟ ଯନ୍ତ୍ରର ଜ୍ଞାନ ବା ଅଟୋମେସନ ଯୋଗୁ। ମହାକାଶକୁ ପ୍ରଥମେ ରୁଷ୍ ଦେଶ ବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଯାନ ପଠାଇଲା। ରୁଷ୍‌ର ପ୍ରତିବାଦୀ ଆମେରିକାରେ ଚହଳ ପଡିଗଲା। ରୁଷ ଯାନ ପଠାଇବାର ବାରବର୍ଷ ପରେ ଆମେରିକା ଚନ୍ଦ୍ରକୁ ୧୯୬୯ରେ ଯାନ ସହ ମଣିଷ ପଠାଇଲା। ଚନ୍ଦ୍ରପୃଷ୍ଠରେ ଅବତରଣ କରି ଚନ୍ଦ୍ରପୃଷ୍ଠର ନାନା ଫଟୋ ଉତ୍ତୋଳନ କରି ମଣିଷ ସଫଳତାର ସହ ପ୍ରତ୍ୟାବର୍ତ୍ତନ କଲା। ଏହାର କୋଡିଏ ବର୍ଷ ପରେ ଆମେରିକା ପାୟୋନିୟର-୨ ନାମକ ଏକ ଯାନ ଶନିଗ୍ରହକୁ ପଠାଇଲା। ଏହି ଯାନଟି ପୃଥିବୀଠାରୁ ୩୨୦ କୋଟି କି.ମି. ଗଲାପରେ ସେହି ଗ୍ରହର ଫଟୋ ଉତ୍ତୋଳନ କରି ସ୍ୱୟଂକ୍ରିୟଭାବେ ପୃଥିବୀକୁ ପଠାଇଲା। ଏକ ଉଡାଜାହାଜ ଯଦି ଘଣ୍ଟାକୁ ୧୪୦୦ କି.ମି. ବେଗରେ ନିରନ୍ତର ଯାତ୍ରାକରେ ତେବେ ଶନିଗ୍ରହରେ ପହଞ୍ଚିବାକୁ ତାକୁ ପ୍ରାୟ ୯୯ ବର୍ଷ ଲାଗିବ। କିନ୍ତୁ ପାୟୋନିୟର ଯାନଟି ଛ' ବର୍ଷ ପରେ ଶନିର କକ୍ଷରେ ପହଞ୍ଚି ପାରିଲା। ପୃଥିବୀର ଗୋଟିଏ ଉପଗ୍ରହ ଚନ୍ଦ୍ର, କିନ୍ତୁ ଶନିର ଦଶଟି ଉପଗ୍ରହ ବିଷୟରେ ବହୁ ରହସ୍ୟମୟ ତଥ୍ୟ ଜଣାପଡିଲା। ସେଠାରୁ ଯେଉଁ ଫଟୋଚିତ୍ର ଆସୁଥିଲା ତାହା ସ୍ୱୟଂକ୍ରିୟ ଯନ୍ତ୍ର ମାଧ୍ୟମରେ ଆସୁଥିଲା ଓ ସେହି ଯନ୍ତ୍ର କିପରି କାର୍ଯ୍ୟ କରିବ ଏଥିପାଇଁ ପୃଥିବୀରୁ ନିର୍ଦ୍ଦେଶ ଯାଉଥିଲା। ସ୍ୱୟଂକ୍ରିୟ ଯନ୍ତ୍ର ବା ଅଟୋମେସନ ମଣିଷକୁ ନାନା କ୍ଷେତ୍ରରେ ବହୁ ସଫଳତା ଆଣିଦେବା ବିଂଶ ଶତାବ୍ଦୀର ବିସ୍ମୟ କହିଲେ ଅତ୍ୟୁକ୍ତି ହେବ ନାହିଁ।

ମଣିଷ ସଭ୍ୟତାର ସୁଦୀର୍ଘ ଇତିହାସରେ ବିଂଶଶତାବ୍ଦୀ ଅନେକାଂଶରେ ନିର୍ଣ୍ଣାୟକ। ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନର ବିକାଶ ବହୁ ଦିଗନ୍ତ ଉନ୍ମୋଚିତ କରିଛି। ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ସାଇକେଲ, ଟାଇପ ରାଇଟର ଓ ସିଲେଇ ମେସିନର ବ୍ୟବହାର ହୋଇ ପାରିଥିଲା। ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଜଣାପଡିଲା ଯେ ଅଣୁ ବିଭଜ୍ୟ ଓ ଅଣୁ ବିଭାଜନର ଧାରଣାକୁ ନେଇ ବିଜ୍ଞାନ ନାନା ଦିଗରେ ବିକଶିତ ହେଲା। ପୂର୍ବରୁ ଧାରଣା ଥିଲା ଯେ ମୌଳିକ ବସ୍ତୁ ଓ ଶକ୍ତି ପ୍ରକୃତିର ମୂଳ ଉତ୍ସ। ବିଶ୍ୱରେ ଯାହା କିଛି ଅଛି ତାର ମୂଳାଧାର ହେଉଛି ମୌଳିକ ବସ୍ତୁ ଓ ଶକ୍ତି। କିନ୍ତୁ ବିଂଶ ଶତାବ୍ଦୀରେ ଭାବନା ସୃଷ୍ଟି ହେଲା ଯେ ବସ୍ତୁ ଓ ଶକ୍ତି ପରସ୍ପରଠାରୁ ଭିନ୍ନ କିମ୍ବା ପୃଥକ୍

ନୁହନ୍ତି । ବସ୍ତୁ ଭିତରେ ଅଫୁରନ୍ତ ଶକ୍ତି ରହିଛି । ଏହି ସବୁ ଜ୍ଞାନକୁ ଆଧାର କରି ନାନା ପ୍ରାଯୁକ୍ତିକ ବସ୍ତୁ ନିର୍ମିତ ହେଲା । ବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ ଟେଲିଭିଜନର ପ୍ରସାର ହେଲା । ମହାକାଶକୁ ଉପଗ୍ରହ ପ୍ରେରଣ ଓ ଏହାଦ୍ୱାରା ସାଟେଲାଇଟ କମ୍ୟୁନିକେସନ ହେବା ମାନବଜାତି ପାଇଁ ଯୁଗାନ୍ତକାରୀ ହେଲା । ବିଂଶ ଶତାବ୍ଦୀର ଶେଷ ଭାଗରେ ମୋବାଇଲ ଫୋନ, ଇଣ୍ଟରନେଟ୍ ଯୁଗ ଆସିଲା ଓ ବର୍ତ୍ତମାନର ମାନବ ସଭ୍ୟତା ଟେଲିଭିଜନ, ମୋବାଇଲ ଫୋନ୍, ଇଣ୍ଟରନେଟ୍ କିପରି ବହୁଳ ଭାବେ ବିନିଯୋଗ କରୁଛି ତାହା କହିବା ନିଷ୍ପ୍ରୟୋଜନ ।

ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଏହି ଶହେବର୍ଷ ଭିତରେ ଯେଉଁ ବିସ୍ମୟକର ଉଦ୍‌ଭାବନ ମାନ ହୋଇଛି ତାହା ମଧ୍ୟ ବେଶ୍ ଯୁଗାନ୍ତକାରୀ । ବିଂଶଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ମହାମାରୀ ପୃଥିବୀର ଜନଗଣଙ୍କୁ ଆତଙ୍କିତ କରି ରଖିଥିଲା । ହଇଜା, ବସନ୍ତ, ଯକ୍ଷ୍ମା, ପ୍ଲେଗ୍ ଇତ୍ୟାଦି ରୋଗମାନ ବ୍ୟାପକ ଭାବେ ସଂକ୍ରମିତ ହେଉଥିଲା । ପ୍ରତିବର୍ଷ ପୃଥିବୀରୁ ଲକ୍ଷ ଲକ୍ଷ ଲୋକ ମହାମାରୀରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରୁଥିଲେ । ଥରେ କୌଣସି ଅଞ୍ଚଳରେ ରୋଗ ସୃଷ୍ଟି ହେଲେ ଏହା ବ୍ୟାପି ଯାଉଥିଲା ଓ ଚିକିତ୍ସାର ଜ୍ଞାନ ନଥିବାରୁ ଲୋକମାନେ ଅସହାୟଭାବେ ମୃତ୍ୟୁବରଣ କରୁଥିଲେ । ରୋଗମାନଙ୍କ ଉପରେ ଗମ୍ଭୀର ଗବେଷଣାରୁ ବିଂଶ ଶତାବ୍ଦୀରେ ଅନେକ ରୋଗର କାରଣ ଜୀବାଣୁ ଜନିତ ବୋଲି ଜଣାପଡିଲା । ଫଳତଃ ପ୍ରତିଷେଧକ ବ୍ୟବସ୍ଥା ସୃଷ୍ଟି ହେଲା । ବିଂଶ ଶତାବ୍ଦୀରେ ପେନ୍‌ସିଲିନ୍ ବା ଆଣ୍ଟିବାଓଟିକ୍ ଉଦ୍‌ଭାବିତ ହେଲା, ଏକ୍ସରେ ଯୋଗୁ ଶରୀର ଭିତରର ସ୍ଥିତି ଜଣାପଡିଲା ଓ ନାନା ନୂଆ ନୂଆ ଯନ୍ତ୍ରମାନ ସୃଷ୍ଟି ହେଲା । ନିଶ୍ଚେତକ ବାହାରିବା ଯୋଗୁ ଅସ୍ତ୍ରୋପଚାର ସମ୍ଭବ ହେଲା ଓ ବହୁ ଜଟିଳ ଅସ୍ତ୍ରୋପଚାର ଯୋଗୁ ଅନେକ ଲୋକଙ୍କର ରୋଗକୁ ଭଲ କରାଯାଇ ପାରିଲା । ପୃଥିବୀରୁ ମହାମାରୀର ଆତଙ୍କ ଲୋପ ପାଇଲା ଓ ଗଣମୃତ୍ୟୁକୁ ବନ୍ଦ କରାଯାଇ ପାରିଲା । ପରିଣାମତଃ ସାରା ପୃଥିବୀରେ ଚିକିତ୍ସା ବିଜ୍ଞାନର ବିକାଶ ଯୋଗୁ ଜନସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇବା ପରିଲକ୍ଷିତ ହୋଇଥାଏ । ୧୮୦୦ ମହିହାରେ ପୃଥିବୀର ଲୋକସଂଖ୍ୟା ଥିଲା ପାଖା ପାଖି ୧୦୦ କୋଟି, ଚିକିତ୍ସା ବିଜ୍ଞାନର ଉନ୍ନତି ଯୋଗୁ ୧୯୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ହେଲା ୧୬୦ କୋଟି ଓ ୨୦୦୦ ମସିହାରେ ପୃଥିବୀର ଲୋକସଂଖ୍ୟା ହେଲା ୬୦୦ କୋଟି ଓ ୨୦୧୧ ଜନଗଣନା ଅନୁଯାୟୀ ପୃଥିବୀର ଲୋକସଂଖ୍ୟା ହେଉଛି ୭୦୦ କୋଟିରୁ ଅଧିକ । ଯେତେବେଳେ

ପୃଥିବୀର ଜନସଂଖ୍ୟା ୧୦୦ କୋଟି ଥିଲା, ସେତେବେଳେ କୌଣସି ନା କୌଣସି ଭୂଖଣ୍ଡରେ ଦୁର୍ଭିକ୍ଷ ଜନିତ ପରିସ୍ଥିତି ଯୋଗୁ ଖାଦ୍ୟାଭାବରେ ଲୋକମାନେ ମୃତ୍ୟୁ ମୁଖରେ ପଡୁଥିଲେ। ଏବେ ୭୦୦ କୋଟିରୁ ଅଧିକ ଲୋକଙ୍କ ପାଇଁ ଖାଦ୍ୟ ଶସ୍ୟ ଉତ୍ପାଦନ ହୋଇପାରୁଛି, ଫଳରେ ଖାଦ୍ୟାଭାବ ଜନିତ ଗଣମୃତ୍ୟୁର ପରିବେଶ ପୃଥିବୀରେ ନାହିଁ। କୃଷି ଭିତ୍ତିକ ସମାଜରେ ସୀମିତ ଜନଗଣଙ୍କର ଖାଦ୍ୟ ଆବଶ୍ୟକତାକୁ ପୂରଣ କରିବାକୁ ସମାଜର ପ୍ରାୟ ୮୦ ଭାଗ ଲୋକ କୃଷି ଉତ୍ପାଦନ ଓ କୃଷି ସଂପର୍କିତ କାର୍ଯ୍ୟରେ ସଂପୃକ୍ତ ରହୁଥିଲେ। ସଂପ୍ରତି ବିଜ୍ଞାନର ଅଗ୍ରଗତି ଯୋଗୁ କୃଷିକାର୍ଯ୍ୟ ବିଭିନ୍ନ ଯନ୍ତ୍ର ସାହାଯ୍ୟରେ କରାଯାଇ ପାରୁଛି। ଏବେ ଉନ୍ନତ ଦେଶମାନଙ୍କରେ କୃଷି କାର୍ଯ୍ୟରେ ଶତକଡା ପାଞ୍ଚଭାଗ ଲୋକ ସଂପୃକ୍ତ ରହି ଦେଶର ଲୋକଙ୍କର ଖାଦ୍ୟ ଆବଶ୍ୟକତା ପୂରଣ କରିପାରୁଛନ୍ତି। ଏହି ୩୦୦ ବର୍ଷ ଭିତରେ ବିଜ୍ଞାନ ଏକ ନୂଆ ଦୁନିଆ ଗଢ଼ିବାରେ ସଫଳ ହୋଇଛି। ବିଜ୍ଞାନକୁ ଛାଡି ବିକାଶର ପରିକଳ୍ପନା ଏବେ ସମ୍ଭବ ନୁହେଁ। ବିଜ୍ଞାନ ଓ ବୈଷୟିକ ଜ୍ଞାନକୌଶଳ କୃଷି, ଚିକିତ୍ସା, ଗମନଗମନ, ସଂଚାର ସବୁ କ୍ଷେତ୍ରରେ ତୁମୁଳ ପରିବର୍ତ୍ତନ ଆଣିବାରେ ସଂପ୍ରତି ମୁଖ୍ୟ ଆୟୁଧ ପାଲଟିଛି। କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ସକଳ ଆବଶ୍ୟକତା ପୂରଣ କରିବା ପାଇଁ ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ର ବିଜ୍ଞାନ ଓ କାରିଗରୀ କୌଶଳକୁ ପ୍ରାଧାନ୍ୟ ଦେଇଚାଲିଛନ୍ତି।

ସପ୍ତଦଶ ଶତାବ୍ଦୀରେ ଜ୍ଞାନଦୀପ୍ତି ଯୁଗର ଯେଉଁ ଧାରାଟି ସୃଷ୍ଟି ହୋଇଥିଲା, ସେଥିରୁ ବିଜ୍ଞାନର ବିକାଶପର୍ବ ଆରମ୍ଭ ହେଲା। ଏହି ତିନି ଶହ ବର୍ଷ ଭିତରେ ବିଜ୍ଞାନ କ୍ଷେତ୍ରରେ ଯେଉଁ ଅଗ୍ରଗତି ଘଟିଛି ତାହା ସଭ୍ୟତାର ରୂପରେଖ ବଦଳାଇ ଦେଇଛି। ଆଜକୁ ଦୁଇ ଶହ ବର୍ଷ ତଳର ପୃଥିବୀ ଓ ମଣିଷର ଜ୍ଞାନର ସୀମାଠାରୁ ଆଜିର ପୃଥିବୀ ଓ ମଣିଷ ଜ୍ଞାନର ସୀମା ଭିତରେ ଆକାଶ ପାତାଳ ପ୍ରଭେଦ ରହିଛି। ଜ୍ଞାନଦୀପ୍ତି ଯୁଗର ଅନ୍ୟ ଏକ ଦିଗ ଥିଲା ମାନବବାଦ। ମାନବବାଦ ସାମାଜିକ ନ୍ୟାୟ, ବ୍ୟକ୍ତି ମର୍ଯ୍ୟାଦାବୋଧ, ଗଣତାନ୍ତ୍ରିକ ଜୀବନଦୃଷ୍ଟିକୁ ପ୍ରାଧାନ୍ୟ ଦେଲା। ବିଜ୍ଞାନର ଆଭିମୁଖ୍ୟ ହେଲା ସମାଜରୁ ଅଜ୍ଞତା, କୁସଂସ୍କାର ଦୂର କରିବା; ମାନବବାଦର ଆଭିମୁଖ୍ୟ ହେଲା ସମାଜରୁ ଭେଦଭାବ, ଦାସତ୍ୱକୁ ପରିହାର କରିବା। ଏହା ଏକ ବିଡମ୍ବନା ଯେ ଆମ ସଂସାରରେ ନାନା କାରଣ ନେଇ ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି ହୋଇଛି ଓ ନାନା କାରଣ ଯୋଗୁଁ ବିଭିନ୍ନ ଭେଦଭାବ ରହିଆସିଛି। ରଙ୍ଗବେଦ, ଲିଙ୍ଗବେଦ, ଧର୍ମଭେଦ, ଜାତିଭେଦ ମାନବ ସମାଜରେ ନାନା ଘୃଣା ଓ ବିଦ୍ୱେଷର ଭାବନା ସୃଷ୍ଟି

କରିଛି । କେତେକ ଧର୍ମଗ୍ରନ୍ଥରେ ବିଶ୍ୱଭାତୃତ୍ୱ, ସମତାଭାବ, ଏକତ୍ୱଭାବର କିଛି ମହତ୍ତର ବାର୍ତ୍ତା ରହିଛି, କିନ୍ତୁ ବାସ୍ତବପକ୍ଷେ ସମାଜ ନାନା କାରଣରୁ ବିଭାଜିତ ହୋଇ ରହିଛି । ମଣିଷ ଉପରେ ମଣିଷର ଅତ୍ୟାଚାର ସକଳ ଅମାନବିକତାର ସୀମା ଲଂଘନ କରିଛି । ସାମ୍ରାଜ୍ୟବାଦ ଯୁଗରେ କେତେକ ଦେଶରେ କଳା-ଗୋରା ବର୍ଣ୍ଣବୈଷମ୍ୟ ଉତ୍କଟ ହୋଇ ରହିଥିଲା । ଭାରତବର୍ଷରେ ଜାତିଗତ ଭେଦଭାବ ଓ ଅସ୍ପୃଶ୍ୟତା ହଜାର ହଜାର ବର୍ଷ ଧରି ଆମର ଜନଜୀବନକୁ କଳୁଷିତ କରି ରଖିଥିଲା, ଆଫ୍ରିକା ମହାଦେଶର କେତେକ ଦେଶରେ ଆପ୍‌ରଥେଡ୍ ଜନିତ ଭେଦଭାବ ସୃଷ୍ଟି ହୋଇଥିଲା । ପୃଥିବୀର ବିଭିନ୍ନ ଦେଶରେ ନାରୀମାନେ ମାନବିକ ଅଧିକାରରୁ ବଞ୍ଚିତ ହୋଇ ରହିଥିଲେ । ସେହିପରି ଅର୍ଥନୈତିକ ସ୍ତରରେ ସମାଜ ବୁର୍ଜୁଆ ଓ ସର୍ବହରା କିମ୍ବା ଧନୀକ ଓ ଦରିଦ୍ର ଶ୍ରେଣୀଭାବରେ ବିଭାଜିତ ହୋଇ ରହିଥିଲା । ସମାଜରେ ଦାରିଦ୍ର୍ୟ ଓ ଅର୍ଥନୈତିକ ଶୋଷଣ ଉତ୍କଟ ହୋଇ ନାନା ଭେଦଭାବର ପରିବେଶ ସୃଷ୍ଟି କରିଥିଲା । ରାଜନୈତିକ କ୍ଷେତ୍ରରେ ରାଜତନ୍ତ୍ର ରହିଥିଲା ଓ ଏହା ବଂଶାନୁଗତ ଥିଲା । ଜ୍ଞାନଦୀପ୍ତି ଯୁଗରେ ଏସବୁ ବିରୁଦ୍ଧରେ ବୈଚାରିକ ସ୍ତରରେ କ୍ରାନ୍ତିକାରୀ ଭାବନା ଆସିଲା । ଗଣତନ୍ତ୍ର, ସମାଜ ମଙ୍ଗଳକାରୀ ରାଷ୍ଟ୍ରୀୟତା, ପ୍ରତ୍ୟେକ ସାବାଳକ ବ୍ୟକ୍ତିର ସରକାର ନିର୍ଣ୍ଣୟ କରିବାରେ ମତ ଦେବାର ଅଧିକାରର ପ୍ରସଙ୍ଗ ସବୁ ଏହି ଯୁଗରେ ସୃଷ୍ଟିହେଲା । ପରିଣାମତଃ ପୃଥିବୀରୁ ଧୀରେ ଧୀରେ ରାଜତନ୍ତ୍ର ଓ ସାମନ୍ତବାଦର ବିଲୋପ ହେଲା । ମହିଳା ସଶକ୍ତିକରଣର ଭାବନା ସୃଷ୍ଟି ହୋଇ ମହିଳାମାନେ ସମାଜର ମୁଖ୍ୟ ସ୍ରୋତରେ ସାମିଲ ହେଲେ, ବହୁ ଦେଶରେ ଗଣତନ୍ତ୍ର ଓ ସମାଜବାଦ ମଧ୍ୟ ପ୍ରତିଷ୍ଠାଲାଭ କଲା । ପୃଥିବୀରୁ ସାମ୍ରାଜ୍ୟବାଦର ବିଲୋପ ହେଲା । ବର୍ଣ୍ଣବୈଷମ୍ୟ, ଜାତିବାଦ ଯେ ଅମାନବିକ ଓ ଅନୈତିକ ଏହା ସମଗ୍ର ମାନବଜାତିର ମାନସିକତାରେ ସ୍ଥାନ ପାଇଥିବା ଦେଖାଯାଏ । ସମସ୍ତ ପ୍ରକାରର ଭେଦଭାବ, କ୍ରୂରତା, ହିଂସାକୁ ଦୂର କରିବାକୁ ଏବେ ସାରା ପୃଥିବୀର ମାନବଦରଦୀ ଦାର୍ଶନିକ, ରାଷ୍ଟ୍ରନୀତିଜ୍ଞ, ବୈଜ୍ଞାନିକ ଓ ସମାଜସେବୀମାନେ ପ୍ରୟାସ କରୁଛନ୍ତି । ଏକଦା ଯେଉଁ ମାନବବାଦୀ ଜୀବନବୋଧ ଚିନ୍ତାରାଜ୍ୟରେ ଏକ ଆଲୋଡନ ସୃଷ୍ଟି କରିଥିଲା ତାହା ସଂପ୍ରତି ସଭ୍ୟ ଜୀବନଧାରାର ମାନଦଣ୍ଡ ଭାବେ ସ୍ୱୀକୃତ ହୋଇ ପାରିଛି । ସମ୍ଭବତଃ ଏହି ଦୃଷ୍ଟିରୁ ଦେଖିଲେ ବିଜ୍ଞାନ ଓ ମାନବବାଦ ଏକ ଉନ୍ନତ ମାନବ ସମାଜ ପାଇଁ ସେମାନଙ୍କର ମୌଳିକ ଅବଦାନ ଦେଇଛନ୍ତି ।

ଏକଥା ସତ୍ୟ ଯେ ମାନବ ସମାଜ ସଂପୂର୍ଣ୍ଣ ଭାବେ ନ୍ୟାୟ, ସମତା, ବୈଷମ୍ୟରହିତ ଓ ଶୋଷଣମୁକ୍ତ ସ୍ଥିତିକୁ ଆସିପାରିବ ନାହିଁ। ତଥାପି ସଭ୍ୟତାକୁ ଆଗକୁ ନେବା ପାଇଁ, ମାନବିକ ସମ୍ବନ୍ଧକୁ ଅଧିକ ନୀତିପୂର୍ଣ୍ଣ କରିବା ପାଇଁ ଓ ସମାଜରୁ ବୈଷମ୍ୟ, ଭେଦଭାବ ଓ ହିଂସାତ୍ମକ ମନୋଭାବର ବିଲୋପ ପାଇଁ ବିଶ୍ୱ ସ୍ତରରେ ହେଉଥିବା ପ୍ରୟାସ କେବେ ହେଲେ ବ୍ୟର୍ଥ ଯିବ ନାହିଁ। ଏହାହିଁ ବିଜ୍ଞାନ ଓ ମାନବବାଦର ଆଭିମୁଖ୍ୟ।

ବିଜ୍ଞାନ ଓ ମାନବବାଦ କହିବାକୁ ଗଲେ ହେତୁବାଦୀ ଜୀବନ-ଦର୍ଶନର ସାରମର୍ମ। ବିଶେଷକରି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ହେତୁବାଦର ଅନ୍ତଃସ୍ୱର। ସେହିପରି ଏହାର ମାନବିକ ଦିଗଟି ହେଲା ମାନବବାଦୀ ଜୀବନଦୃଷ୍ଟି। ଏହି ଜୀବନଦୃଷ୍ଟିରେ ଏହା ମାନବକୈନ୍ଦ୍ରିକ ଜୀବନ-ଦର୍ଶନକୁ ପ୍ରାଧାନ୍ୟ ଦିଏ। ମଣିଷର ପ୍ରୟାସ, ବୌଦ୍ଧିକ ଜିଜ୍ଞାସା, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ସତ୍ୟ ପ୍ରତି ଅଙ୍ଗୀକାରବଦ୍ଧତା ମାନବବାଦୀ ଜୀବନଦୃଷ୍ଟିର ଅନ୍ତର୍ନିହିତ ବାର୍ତ୍ତା। ହେତୁବାଦ କାଳ୍ପନିକ ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି, ନରକଗତି ଭାବନା ପ୍ରତି ଗୁରୁତ୍ୱ ଦିଏ ନାହିଁ। ଏହି ଜୀବନକୁ ଓ ଆଗାମୀ ବଂଶଧରମାନଙ୍କର ଜୀବନ ପ୍ରବାହକୁ ଅଧିକ ସୁଖପ୍ରଦ, ନ୍ୟାୟାଧାରିତ, ମାନବିକ କରିବାକୁ ଏହା ପ୍ରାଧାନ୍ୟ ଦିଏ। ଏହା ସହିତ ମାନବିକ ସମ୍ବେଦନଶୀଳତା ଓ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ହେତୁବାଦ ନିଜର ଗମ୍ଭୀର ସଂପୃକ୍ତି ବ୍ୟକ୍ତ କରିଥାଏ।

ହେତୁବାଦର ଆଦର୍ଶ ହେଉଛି ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ତାହା ମଣିଷର ଉଦ୍ୟମରେ ସମ୍ଭବ ହୋଇଛି। ଯେଉଁଠି ମଣିଷ ନିଜର ମସ୍ତିଷ୍କ ଖଟାଇ ନିଜ ପରିବେଶ ଓ ପରିସ୍ଥିତିକୁ ଉନ୍ନତ କରିବାକୁ ଉଦ୍ୟମ କରିଛି ସେଠାରେ ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସିଛି। ପରନ୍ତୁ ଯେଉଁଠି ମଣିଷମାନେ କାଳ୍ପନିକ ଦିଅଁ ଦେବତା ଉପରେ ଆସ୍ଥା ସ୍ଥାପନ କରନ୍ତି, ଦୈବୀ କରୁଣା ପାଇଁ ପୂଜା ପାର୍ବଣରେ ଭୋଳ ହୁଅନ୍ତି ସେମାନେ ପ୍ରାୟତଃ ଅନଗ୍ରସର ରହିବା ଏକ ବୌଦ୍ଧିକ ଉପଲବ୍ଧି। ବହୁ ଅତୀତରେ ଗ୍ରୀକ୍ ଦାର୍ଶନିକ ଯାହା କହିଥିଲେ "ମଣିଷ ହିଁ ତା ଭାଗ୍ୟର ନିର୍ମାତା" ତାହା ଏକ ସାର୍ବଜନୀନ ସତ୍ୟ ଭାବେ ଏବେ ବି ଆମ ପାଇଁ ଆଲୋକବର୍ତ୍ତିକା କହିଲେ ଅତ୍ୟୁକ୍ତି ହେବ ନାହିଁ।



# ଧର୍ମ ଓ ଦର୍ଶନରେ 'ଆତ୍ମା' ଭାବନା

ଧର୍ମ ଓ ଦର୍ଶନ ପରିସରରେ ଆତ୍ମା ସଂପର୍କରେ କ'ଣ ଭାବନା ରହିଛି ତାହାର ଏକ ସଂକ୍ଷିପ୍ତ ସୂଚନା ଦେବା ଶଂସିତ ପ୍ରବଂଧଟିର ଉଦ୍ଦେଶ୍ୟ। ଆତ୍ମା ବିଷୟଟି ଧର୍ମରେ ଓ ଦର୍ଶନରେ ଆଲୋଚିତ ହେବା ଦେଖାଯାଏ। ଧର୍ମରେ ଓ ଦର୍ଶନରେ ଆତ୍ମା ପ୍ରସଙ୍ଗରେ ପ୍ରକାଶ ପାଇଥିବା ବିଚାରର ଏକ ସଂକ୍ଷିପ୍ତ ବିଶ୍ଳେଷଣ ଆମର ଏଠାରେ ଲକ୍ଷ୍ୟ। ପ୍ରଥମେ ଧର୍ମ ପ୍ରସଙ୍ଗକୁ ନିଆଯାଉ।

ପ୍ରତ୍ୟେକ ଧର୍ମର କେତେକ ତାତ୍ତ୍ୱିକ ସିଦ୍ଧାନ୍ତ ରହିବା ଦେଖାଯାଏ। ଧର୍ମମାନଙ୍କର ତାତ୍ତ୍ୱିକ ସିଦ୍ଧାନ୍ତ ପୃଷ୍ଠଭୂମିରେ ଆତ୍ମା ଭାବନାଟି ସାର୍ବଜନୀନ ଭାବେ ଆସିଥାଏ। ପ୍ରତ୍ୟେକ ଧର୍ମ ବିଶ୍ୱାସକରେ ଯେ ଆତ୍ମା ବ୍ୟକ୍ତି ଭିତରର ଚେତନ ସତ୍ତା ଓ ଏହା ବ୍ୟକ୍ତିର ମୃତ୍ୟୁ ପରେ ମଧ୍ୟ ରହେ। ତେବେ ପ୍ରଶ୍ନ ଉଠେ- କେବଳ ମଣିଷର ଆତ୍ମା ରହିଛି ନା ପ୍ରତ୍ୟେକ ପ୍ରାଣୀର ବି ଆତ୍ମା ରହିଛି ! କେତେକ ଧର୍ମର ବିଶ୍ୱାସ ଅନୁଯାୟୀ କେବଳ ମଣିଷର ଆତ୍ମା ଅଛି, ଇତର ପ୍ରାଣୀଙ୍କର ନାହିଁ। ମଣିଷ ବିଚାରଶୀଳ, ସେ ବୁଦ୍ଧିର ପ୍ରୟୋଗ କରିପାରେ, ନ୍ୟାୟ-ଅନ୍ୟାୟର ଭାବନା ପୋଷଣକରେ, ସଭ୍ୟତା ସଂସ୍କୃତି ନିର୍ମାଣ କରିପାରିଛି, ଭାଷା କହିବାକୁ ସମର୍ଥ। ଏସବୁ ମନୁଷ୍ୟେତର ପ୍ରାଣୀମାନେ କରିବା ସମ୍ଭବ ନୁହେଁ। ସୁତରାଂ କେତେକ ଧର୍ମର ବିଶ୍ୱାସ ହେଉଛି ଯେ ମଣିଷର ଆତ୍ମା ଥାଏ, ଅନ୍ୟ ମାନବେତର ପ୍ରାଣୀମାନଙ୍କର ଆତ୍ମା ନାହିଁ, ସେମାନେ ଆତ୍ମାରହିତ। ଅନ୍ୟ କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ମଣିଷ ଓ ପ୍ରାଣୀମାନଙ୍କ ଭିତରେ ବହୁ ସାମଂଜସ୍ୟ ରହିଛି। ଆହାର, ଭୟ, ନିଦ୍ରା, ବଂଶବୃଦ୍ଧି, ଯୌନ ଆବେଗ ସବୁ ପ୍ରାଣୀଙ୍କ ପାଖରେ ଥିବା ଦେଖାଯାଏ। ମନୁଷ୍ୟମାନେ ହୁଅନ୍ତୁ ଅଥବା ମନୁଷ୍ୟେତର ପ୍ରାଣୀମାନେ ହୁଅନ୍ତୁ ସେମାନେ ଜୀବନ ଧାରଣ ପାଇଁ ଖାଦ୍ୟ ଖାଆନ୍ତି, ସନ୍ତାନ ସୃଷ୍ଟିକରି ବଂଶବୃଦ୍ଧି

କରନ୍ତି, ଜୀବନର ଆବଶ୍ୟକତା ପୂରଣ ପାଇଁ ପ୍ରକୃତି ଓ ପରିବେଶ ଉପରେ ନିର୍ଭରଶୀଳ ହୁଅନ୍ତି, ଜନ୍ମ ପରେ ବୃଦ୍ଧି ପାଇ ଶେଷରେ ମୃତ୍ୟୁ ବରଣ କରନ୍ତି। ତେଣୁ ଯଦି ମଣିଷର ଆତ୍ମା ଥିବ, ସବୁ ଇତର ପ୍ରାଣୀଙ୍କର ବି ଆତ୍ମା ରହିଥିବ। କେତେକ ଧର୍ମର ବିଶ୍ୱାସ ହେଉଛି ପ୍ରତ୍ୟେକ ଜୀବର ଆତ୍ମା ରହିଛି। ଆତ୍ମା ଯେହେତୁ ଏକ ପ୍ରତ୍ୟକ୍ଷ ବା ପର୍ଯ୍ୟବେକ୍ଷଣୀୟ ବସ୍ତୁ ନୁହେଁ, ତେଣୁ ଆତ୍ମା ସଂପର୍କରେ ନାନା କଳ୍ପନା ଧର୍ମମାନଙ୍କରେ ସ୍ଥାନ ପାଇବା ଦେଖାଯାଏ।

ନୃତାତ୍ତ୍ୱିକ ଅନୁଶୀଳନରୁ ଜଣାଯାଏ ଯେ ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ଓ ବିକାଶ ପୂର୍ବରୁ ପ୍ରାଗ୍‌ଧର୍ମୀୟ ସମାଜରେ ଜୀବ, ଆତ୍ମା ଇତ୍ୟାଦି ଭାବନାକୁ ନେଇ ନାନା ବିଶ୍ୱାସ ସୃଷ୍ଟି ହୋଇଥିଲା। ନିଜର ପ୍ରତିବିମ୍ବ ଦେଖିବା, ସ୍ୱପ୍ନରେ ମୃତ ଲୋକଙ୍କ ସହ ଆଳାପ କରିବା ଭାବନା ଗୁଡିକୁ ମଣିଷ ବ୍ୟାଖ୍ୟା କରିବା ସମ୍ଭବ ନଥିଲା। ଫଳତଃ ଏହି ବିଶ୍ୱାସ ସୃଷ୍ଟି ହୋଇଥିଲା ଯେ ବ୍ୟକ୍ତିର ମୃତ୍ୟୁରେ ତାର ପ୍ରାଣସତ୍ତା ଆତ୍ମା ହୋଇ ରହେ। ଧର୍ମମାନଙ୍କର ବିକାଶ ପରେ ପ୍ରତ୍ୟେକ ଧର୍ମ-ଚେତନାରେ ଆତ୍ମାର ସ୍ଥିତି, ସ୍ୱରୂପ, ଅନ୍ତିମ ପରିଣତି ନେଇ ନାନା କାଳ୍ପନିକ କାହାଣୀ ସଂଶ୍ଳିଷ୍ଟ ହେଲା। ପୁନଶ୍ଚ ମୁକ୍ତି, ମୋକ୍ଷ, ସ୍ୱର୍ଗ, ନରକ, ପୁନର୍ଜନ୍ମ, ବିଚାର ଦିବସ, ଈଶ୍ୱରୀୟ ବିଧାନ ଇତ୍ୟାଦି ବହୁ ଭାବନା ଆତ୍ମା ସହ ଧୀରେ ଧୀରେ ସଂଯୋଜିତ ହେବାକୁ ଲାଗିଲା। ଏହି ସବୁ ବିଶ୍ୱାସକୁ ନେଇ ଊନବିଂଶ ଶତାବ୍ଦୀରେ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଆତ୍ମା ସଂପର୍କରେ ବିଭିନ୍ନ ପରସ୍ପର ବିରୋଧୀ ଭାବନା କିପରି ରହିଛି ତାହା ଜଣାପଡିଲା।

ପ୍ରତ୍ୟେକ ଧର୍ମରେ ଆତ୍ମାର ଅସ୍ତିତ୍ୱ ନେଇ ଯେଉଁ ସବୁ ଭାବନାମାନ ରହିଛି ସେ ସବୁର ଅନୁଶୀଳନରୁ ଜଣାଯାଏ ଯେ କେତେକ ଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରୁଥିବା ବେଳେ ଅନ୍ୟ କେତେକ ଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି ନାହିଁ। ଉଦାହରଣ ସ୍ୱରୂପ ପାର୍ଶୀଧର୍ମ, ଇହୁଦୀ ଧର୍ମ, ଖ୍ରୀଷ୍ଟଧର୍ମ ଓ ଇଶ୍‌ଲାମ୍ ଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ। ଅପର ପକ୍ଷରେ ହିନ୍ଦୁଧର୍ମ, ଜୈନ ଧର୍ମ ଓ ଶିଖଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ରହିଛି। ବୌଦ୍ଧଧର୍ମରେ ପୁନର୍ଜନ୍ମବାଦର ଭାବନା ଥିଲେ ବି ଅନାତ୍ମବାଦ ଏହି ଧର୍ମର ଏକ ମୌଳିକ ଭାବନା। ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ, ସେ ସବୁ ଧର୍ମରେ ସ୍ୱର୍ଗବାସର କଳ୍ପନା ରହିଛି। ସ୍ୱର୍ଗ ଓ ନରକର ଭାବନା ଅନେକ ଧର୍ମରେ ସ୍ଥାନ ପାଇଛି।

ପାର୍ଶୀ ଧର୍ମ ଜୋରାଷ୍ଟରଙ୍କ ବିଚାରକୁ ଆଧାର କରି ପୁରାତନ ପର୍ଶିଆରେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା। ଏହି ଧର୍ମ ଅନୁଯାୟୀ ଶରୀରର ମୃତ୍ୟୁରେ ଆତ୍ମାର ମୃତ୍ୟୁ ହୁଏ ନାହିଁ। ବ୍ୟକ୍ତିର ମୃତ୍ୟୁପରେ ଆତ୍ମା ଈଶ୍ୱରଙ୍କ ନ୍ୟାୟାଳୟକୁ (ପାର୍ଶୀଧର୍ମରେ ଈଶ୍ୱରଙ୍କୁ ଅହୁର-ମଜଦା କୁହାଯାଏ) ଯାଇଥାଏ। ଯିଏ ଅଧିକ ସୁକର୍ମ କରିଥାଏ, ତାର ଆତ୍ମାକୁ ଈଶ୍ୱର ସ୍ୱର୍ଗକୁ ପଠାନ୍ତି। ଯେଉଁମାନେ ଅଧିକ କୁକର୍ମ କରିଥାନ୍ତି ସେମାନଙ୍କର ଆତ୍ମା ନରକକୁ ଯାଏ। ଆହୁର-ମଜଦାଙ୍କ ନ୍ୟାୟାଳୟରୁ ବିଚାର ପରେ ସବୁ ଆତ୍ମା ଏକ ସେତୁ ପାରହୁଅନ୍ତି। ସେତୁ ପାର ହେବା ବେଳେ ପୁଣ୍ୟବାନ ଆତ୍ମାମାନଙ୍କୁ ସୁନ୍ଦରୀ ଅପ୍ସରାମାନେ ସ୍ୱର୍ଗକୁ ପାଛୋଟି ନିଅନ୍ତି। ଅପର ପକ୍ଷରେ ପାପାତ୍ମା ମାନଙ୍କୁ ସେତୁ ପାର ହେବା ବେଳେ ଦୁଷ୍ଟ ବରାହ ଆକ୍ରମଣ କରି ନରକର ଗହ୍ୱରକୁ ଠେଲି ଦେଇଥାଏ। ପାର୍ଶୀଧର୍ମରେ ଆତ୍ମାମାନଙ୍କର ସ୍ୱର୍ଗବାସ ବା ନରକବାସ ଚିରନ୍ତନ ନୁହେଁ।

ଇହୁଦୀ ଧର୍ମ ମୋଜେଶଙ୍କ ଆବିର୍ଭାବ ପରେ ଖ୍ରୀ.ପୂ. ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା ଓ ଏହା ଜିଉମାନଙ୍କର ଧର୍ମ। ଏହି ଧର୍ମର ବିଶ୍ୱାସ ଅନୁଯାୟୀ ବ୍ୟକ୍ତିର ମୃତ୍ୟୁ ପରେ ଆତ୍ମା କବରରେ ଅବସ୍ଥାନ କରେ। ଏହି ଧର୍ମରେ ଏକ ଅନ୍ତିମ ବିଚାର ଦିବସ ଭାବନା ରହିଛି। ଅନ୍ତିମ ବିଚାର ଦିବସରେ ସବୁ ଆତ୍ମାମାନେ ଈଶ୍ୱରଙ୍କ (ଈଶ୍ୱରଙ୍କୁ ଏହି ଧର୍ମରେ 'ଯେହୋୱାହ' କୁହାଯାଏ) ସମ୍ମୁଖକୁ ଆସିବେ। ଈଶ୍ୱର ପୁଣ୍ୟାତ୍ମାମାନଙ୍କୁ ନିଜ ପାଖରେ ସବୁଦିନ ପାଇଁ ଆନନ୍ଦରେ ରଖିବେ, ପାପାତ୍ମାମାନଙ୍କୁ ଧ୍ୱଂସ କରିଦେବେ। ଏହି ଧର୍ମରେ ନରକର ଭାବନା ନାହିଁ।

ଖ୍ରୀଷ୍ଟଧର୍ମ ଇହୁଦୀ ଧର୍ମାବଲମ୍ବୀ ମହାନ୍ କାରୁଣିକ ଓ ସଂସ୍କାରକ ଯୀଶୁ ଖ୍ରୀଷ୍ଟଙ୍କର ବିଚାରକୁ ନେଇ ପ୍ରଥମ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା। ଏହି ଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମା ଅମର। ମୃତ୍ୟୁପରେ ଆତ୍ମା ରହେ। ଅନ୍ତିମ ବିଚାର ଦିବସରେ ଯୀଶୁ ଆସିବେ ଓ ପ୍ରତି ମନୁଷ୍ୟର ପାପ-ପୁଣ୍ୟର ବିଚାର କରିବେ। ଆତ୍ମାମାନେ ସଶରୀରେ କବରକୁ ଆସି ଯୀଶୁଙ୍କ ବିଚାର ପାଇଁ ଉପସ୍ଥିତ ହେବେ। ପୁଣ୍ୟବନ୍ତ ଆତ୍ମାମାନଙ୍କୁ ସ୍ୱର୍ଗକୁ ପଠାଯିବ ଓ ପାପାତ୍ମାମାନଙ୍କୁ ନରକକୁ ପଠାଯିବ। ପୁଣ୍ୟବାନ ମାନେ ଚିରଦିନ ପାଇଁ ସ୍ୱର୍ଗରେ ରହିବେ ଓ ପାପୀମାନେ ଚିରଦିନ ପାଇଁ ନରକ ଯନ୍ତ୍ରଣାରେ କଷ୍ଟ ପାଇବେ। ଏହି ଧର୍ମର ବିଶ୍ୱାସ ଅନୁଯାୟୀ ମୃତ୍ୟୁପରେ ସବୁ ମଣିଷର ଆତ୍ମାମାନେ ବିଚାର ଦିବସ ପର୍ଯ୍ୟନ୍ତ ନିଜ ନିଜ କବର ଭିତରେ ମୃତ ଶରୀର ସହ ରହନ୍ତି।

ଇଶ୍‌ଲାମ୍ ଧର୍ମ ଆଲ୍ଲାଙ୍କର ଦୂତ ପୈଗମ୍ବର ମହମ୍ମଦଙ୍କ ଦ୍ୱାରା ସପ୍ତମ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା। ଏହି ଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମାର ମୃତ୍ୟୁ ହୁଏ ନାହିଁ। ତେବେ ବ୍ୟକ୍ତିର ମୃତ୍ୟୁ ପରେ ଆତ୍ମା ଶରୀରରୁ ଯାଇ ଅନ୍ୟ ସ୍ଥାନରେ ରହେ। ଜଗତର ଅନ୍ତିମ ଦିବସ ପରେ ବିଚାର ଦିବସ ଆସିବ। ବିଚାର ଦିବସରେ କବରମାନଙ୍କରୁ ଶବମାନେ ଆସିବେ ଓ ସେମାନଙ୍କ ସହ ଜୀବାତ୍ମାର ପୁନର୍ମିଳନ ହେବ। ସମସ୍ତଙ୍କୁ ଦେବଦୂତମାନେ ଆଲ୍ଲାଙ୍କ ସମ୍ମୁଖକୁ ଆଣିବେ ଓ ସେଠାରେ ସେମାନଙ୍କର ବିଚାର ହେବ। ଯାହାର ପୁଣ୍ୟ ବେଶି ସିଏ ସ୍ୱର୍ଗକୁ ଯିବ, ଯାହାର ପାପ ବେଶି ସିଏ ନରକକୁ ଯିବ। କୋରାନରେ ସପ୍ତବିଧ ସ୍ୱର୍ଗ ଓ ସପ୍ତବିଧ ନରକର ସୁନ୍ଦର ବର୍ଣ୍ଣନା ରହିଛି। ଆତ୍ମାମାନଙ୍କର ସ୍ୱର୍ଗବାସ ବା ନରକବାସ ନିତ୍ୟ।

ପାର୍ଶୀଧର୍ମ, ଇହୁଦୀଧର୍ମ, ଖ୍ରୀଷ୍ଟଧର୍ମ ଓ ଇଶ୍‌ଲାମ୍ ଧର୍ମରେ ଜନ୍ମାନ୍ତର ଭାବନା ନାହିଁ। ପ୍ରତ୍ୟେକ ବ୍ୟକ୍ତି ମାତ୍ର ଥରଟିଏ ଜନ୍ମନିଏ, ମୃତ୍ୟୁପରେ ତାର ଜନ୍ମ ନାହିଁ। ତାର ଆତ୍ମା ବିଚାର ଦିବସ ପରେ ସ୍ୱର୍ଗବାସୀ ହୁଏ ବା ନରକବାସୀ ହୁଏ କିମ୍ବା ମନ୍ଦ ଆତ୍ମମାନେ ବିଲୁପ୍ତ ହୋଇଯାନ୍ତି। ପୁନଶ୍ଚ ଏହି ସବୁ ଧର୍ମମାନଙ୍କରେ କେବଳ ମନୁଷ୍ୟର ଆତ୍ମା ଥାଏ, ଇତର ପ୍ରାଣୀମାନଙ୍କର ଆତ୍ମା ନଥାଏ ବୋଲି ବିଶ୍ୱାସ କରାଯାଏ।

ଭାରତ ଭୂଖଣ୍ଡରେ ଉଦ୍‌ଭବ ହୋଇଥିବା ଜୈନଧର୍ମ, ବୌଦ୍ଧଧର୍ମ, ଶିଖଧର୍ମ ଓ ହିନ୍ଦୁଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି। ଏହି ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ ଆତ୍ମା ଅମର ହେଲେ ବି ମୋକ୍ଷ ବା ନିର୍ବାଣ ପାଇବା ପର୍ଯ୍ୟନ୍ତ ଏହା ଜନ୍ମ-ମୃତ୍ୟୁ ଚକ୍ରରେ ଘୂରି ବୁଲୁଥାଏ। ଜନ୍ମ, ଜନ୍ମପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ ଏହିପରି ଏହା ଗତି କରୁଥାଏ ଯେ ପର୍ଯ୍ୟନ୍ତ ଏହାର ମୋକ୍ଷପ୍ରାପ୍ତି ହୋଇନାହିଁ। ତେବେ ଆତ୍ମାର ସ୍ୱରୂପ କ'ଣ, ମୋକ୍ଷ ମିଳିବା ପରେ ଆତ୍ମାର କ'ଣ ହୁଏ, ଏହାର ଅସ୍ତିତ୍ୱ ରହେ ନା ନାହିଁ ଏସବୁ ପ୍ରସଙ୍ଗ ଉପରେ କୌଣସି ସହମତି ନାହିଁ।

ଜୈନଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମା ଏକ ସତ୍ତା । କୀଟଠାରୁ ମଣିଷ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବର ଆତ୍ମ-ସତ୍ତା ରହିଛି ଓ ଦୁଇଟି ଆତ୍ମ-ସତ୍ତା ଭିତରେ ଗୁଣଗତ ପାର୍ଥକ୍ୟ ନାହିଁ। ତେବେ ଜୈନଧର୍ମରେ ଈଶ୍ୱର ବିଶ୍ୱାସ ନାହିଁ। ଆତ୍ମା ମୋକ୍ଷ ପ୍ରାପ୍ତି ହେବା ଅର୍ଥ ଏହା ଅନନ୍ତ ଶକ୍ତି, ଅନନ୍ତ ଜ୍ଞାନ, ଅନନ୍ତ ଶ୍ରଦ୍ଧା ଓ ଅନନ୍ତ ଆନନ୍ଦ ପ୍ରାପ୍ତ ହେବା। ବୌଦ୍ଧଧର୍ମରେ ଆତ୍ମା ହେଉଛି ଚେତନାର ପ୍ରବାହ। ଏକ ନଦୀର ଜଳଧାରା

ଯେପରି ଅବିରତ ପ୍ରବାହିତ, ବ୍ୟକ୍ତିର ଚେତନା ସେହିପରି ସତ୍ତାବିହୀନ ଏକ ପ୍ରବାହ । ବୌଦ୍ଧଧର୍ମରେ ଆତ୍ମା ଏକ ଶାଶ୍ୱତ ସତ୍ତା ନୁହଁ, ଏହା କେବଳ ଏକ ପ୍ରବାହ । ଏଥିପାଇଁ ଏହାକୁ ଅନାତ୍ମବାଦ କୁହାଯାଏ ଓ ବୌଦ୍ଧଧର୍ମରେ ନିର୍ବାଣ ଏକ ଅବର୍ଣ୍ଣନୀୟ ଅବସ୍ଥା । ଜୈନଧର୍ମ ପରି ବୌଦ୍ଧଧର୍ମରେ ଈଶ୍ୱର ବିଶ୍ୱାସ ନାହିଁ । ଶିଖ୍‌ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରତ୍ୟେକ ପ୍ରାଣୀ ପାଖରେ ଚୈତନ୍ୟ ରହିଛି, ତେବେ ମନୁଷ୍ୟ ପାଖରେ ଚୈତନ୍ୟ ସହ ବିବେକ ରହିଛି। ଆତ୍ମା ଈଶ୍ୱରୀୟ ଚେତନାର ଅଙ୍ଗବିଶେଷ। ମୃତ୍ୟୁ ପରେ ଧର୍ମରାଜ ଈଶ୍ୱରଙ୍କ ଉପସ୍ଥିତିରେ ଜୀବର କର୍ମଫଳକୁ ମୂଲ୍ୟାୟନ କରି ତାର ମୁକ୍ତି ବା ପୁନର୍ଜନ୍ମର ସ୍ଥାନ ଓ ସ୍ଥିତି ବିଷୟରେ ନିଷ୍ପତ୍ତି ନିଅନ୍ତି। ହିନ୍ଦୁ ଧର୍ମରେ ଜନ୍ମାନ୍ତରବାଦ ଏକ ପ୍ରମୁଖ ଭାବନା। ତେବେ ଆତ୍ମାର ସ୍ୱରୂପ ନେଇ ଭାରତୀୟ ଦର୍ଶନଧାରାରେ ପରସ୍ପର-ବିରୋଧୀ ମତ ରହିଛି। ଗୋଟିଏ ଦର୍ଶନର ମତରେ ଆତ୍ମା ବହୁବିଧ ଓ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ଅନ୍ୟଠାରୁ ଭିନ୍ନ। ଆତ୍ମା ସ୍ୱରୂପରେ ଚେତନଶୀଳ ନୁହେଁ, ଏହା ସ୍ୱରୂପରେ ଜଡ। ମନର ସଂଯୋଗରେ ଆସିଲେ ଆତ୍ମା ଚେତନଶୀଳ ହୋଇଥାଏ। ଅର୍ଥାତ୍ ଚେତନଶୀଳତା ଆତ୍ମାର ଏକ ଆକସ୍ମିକ ଘଟଣା। ଅନ୍ୟ ଏକ ଭାରତୀୟ ଦର୍ଶନ ଅନୁଯାୟୀ ଚେତନା ଆତ୍ମାର ମୌଳିକ ଗୁଣ ଓ ଆତ୍ମା ସ୍ୱରୂପରେ ଆନନ୍ଦମୟ। ଆତ୍ମାମାନେ ସୃଷ୍ଟି ସମୟରେ ଈଶ୍ୱରଙ୍କଠାରୁ ପୃଥକ୍ ହୁଅନ୍ତି ଓ ପ୍ରଳୟ ସମୟରେ ଈଶ୍ୱରଙ୍କଠାରେ ବିଲୀନ ହୁଅନ୍ତି। ଅନ୍ୟ ଏକ ଦାର୍ଶନିକ ମତରେ ଆତ୍ମା ସ୍ୱରୂପରେ ବ୍ରହ୍ମ ଯାହା ବିଶୁଦ୍ଧ ଚୈତନ୍ୟ ଓ ଗୁଣରହିତ। ଅବିଦ୍ୟା ଯୋଗୁ ଆତ୍ମା ନିଜର ସ୍ୱରୂପକୁ ଜାଣିପାରେ ନାହିଁ, ଅବିଦ୍ୟା ଚାଲିଗଲେ ଆତ୍ମା ବ୍ରହ୍ମସହ ଅଭିନ୍ନ ହୋଇଯାଏ। ସବୁ ଆତ୍ମା ଏକ ଓ ଅଭିନ୍ନ।

ବସ୍ତୁତଃ ଆତ୍ମା ଭାବନାକୁ ନେଇ ବିଭିନ୍ନ ଧର୍ମଧାରାରେ ନାନା କଳ୍ପନା ସ୍ଥାନ ପାଇଛି। ଯେହେତୁ ଏ ସବୁ କଳ୍ପନା, ଏହାର କୌଣସି ସତ୍ୟତା ବା ବସ୍ତୁନିଷ୍ଠତା ନାହିଁ। ଧର୍ମ ଭାବନା ସହ ଏହି କଳ୍ପନାମାନ ସଂଶ୍ଳିଷ୍ଟ ହୋଇ ରହିଛି।

ଧର୍ମମାନଙ୍କରେ ଆତ୍ମାର ସ୍ୱରୂପ ବିଷୟକ ଆଲୋଚନା ପରେ ଆମେ ଦର୍ଶନ ପରିସରରେ ଆତ୍ମାର ଭାବନା ବିଷୟଟି ଆଲୋଚନା କରିବା। ଦର୍ଶନ ବା ଫିଲୋସଫି ଏକ ବୌଦ୍ଧିକ ଜିଜ୍ଞାସା। ତେବେ ଦର୍ଶନର ସଂଜ୍ଞା, ବିଷୟବସ୍ତୁ ଓ ପରିସର ସମୟକୁ ସମୟ ବଦଳି ଚାଲିଛି। ଯେଉଁ ସମୟରେ ଚିନ୍ତାରାଜ୍ୟରେ ଯେଉଁ ବିଚାରରାଜିର

ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଥାଏ ସେହି ଭାବନା ସକଳର ତାର୍କିକ ମୂଲ୍ୟାୟନ ଦର୍ଶନ ପରିସରରେ ହୋଇଥାଏ । ବିଜ୍ଞାନ ଓ ଆଧୁନିକ ଦର୍ଶନର ଯୁଗ ଆସିବା ପୂର୍ବରୁ ଧର୍ମର ଗଭୀର ପ୍ରଭାବ ସବୁ ସଭ୍ୟତାରେ ରହିଥିଲା । ବୌଦ୍ଧିକ ଓ ସାମାଜିକ ସ୍ତରକୁ ଧର୍ମଚେତନା ନିୟନ୍ତ୍ରିତ କରିରଖିବା ଯୁଗରେ ଧର୍ମୀୟ ବିଶ୍ୱାସ-ମାନଙ୍କୁ ଦର୍ଶନ ପରିସରରେ ତର୍କସମ୍ମତ ଭିତ୍ତି ଦେବାକୁ ପ୍ରୟାସ ହୋଇଥିଲା । ଧର୍ମର ତାତ୍ତ୍ୱିକ ସିଦ୍ଧାନ୍ତମାନଙ୍କୁ କିପରି ତର୍କଶୀଳ ଭାବେ ପ୍ରତିଷ୍ଠା କରାଯିବ ସେ ପାଇଁ ଦର୍ଶନ ବିଚାର ବ୍ୟକ୍ତ କରିଥିଲା । ଏହି ପରିପ୍ରେକ୍ଷୀରେ ଧର୍ମ ଓ ଦର୍ଶନର ସମ୍ବନ୍ଧ ଆଧୁନିକ ଦର୍ଶନର ବିକାଶ ପର୍ଯ୍ୟନ୍ତ ଅତି ନିବିଡ ଥିଲା । ଅଧିକାଂଶ ଧର୍ମରେ ଈଶ୍ୱର ଭାବନା ଏକ ପ୍ରମୁଖ ବିଶ୍ୱାସ ହେବା ମନେହୁଏ । ବସ୍ତୁତଃ ଈଶ୍ୱରଙ୍କ ଅସ୍ତିତ୍ୱକୁ ତର୍କଶୀଳ ଆଧାରରେ ପ୍ରମାଣ କରିବାକୁ ଗମ୍ଭୀର ପ୍ରୟାସ ହୋଇଥିଲା । ଏଥି ପାଇଁ ମଧ୍ୟଯୁଗୀୟ ଦାର୍ଶନିକମାନେ କେତେ କେତେ ଭାବଗର୍ଭକ ଯୁକ୍ତିର ଅବତାରଣା କରିଥିଲେ । ତେବେ ବିଚାରବୋଧର ବିକାଶ ଓ ଦାର୍ଶନିକ ଚିନ୍ତନର ଗଭୀରତାରୁ ପରେ ଏହି ଯୁକ୍ତିଗୁଡିକ କିପରି ତ୍ରୁଟି ଯୁକ୍ତ ଓ ଅବୈଧ ତାହା ସେହି ଦର୍ଶନ ପରିସରରେ ବେଶ୍ ଚର୍ଚ୍ଚା ହେଲା । ଈଶ୍ୱରଙ୍କ ଅସ୍ତିତ୍ୱକୁ ଯୁକ୍ତିଶୀଳ ଆଧାରରେ ଯେ ପ୍ରମାଣ କରିହେବ ନାହିଁ ଏହା ଦର୍ଶନରେ ସାର୍ବଜନୀନ ଭାବେ ଗୃହୀତ ହେବାକୁ ଲାଗିଲା । ଈଶ୍ୱର ପରି ଆତ୍ମା ଯେ ଏକ ସତ୍ତା ଓ ଜଣେ ବ୍ୟକ୍ତିର ଦେହାନ୍ତ ପରେ ତାଙ୍କର ଆତ୍ମା ଏକ ସତ୍ତା ଭାବେ ସଚେତନ ସ୍ତରରେ ରହେ ଏହା ବି ଧର୍ମର ଏକ ମୌଳିକ ବିଶ୍ୱାସ ଅଟେ । ଅବଶ୍ୟ ଆତ୍ମାର ସ୍ୱରୂପ, ନିର୍ଦ୍ଧାରିତ ଭବିଷ୍ୟ ଓ ପ୍ରକୃତି ଧର୍ମମାନଙ୍କରେ ପୃଥକ୍ ହେଲେ ମଧ୍ୟ ଧର୍ମମାନଙ୍କରେ ଆତ୍ମାର ସତ୍ତା ଓ ଅସ୍ତିତ୍ୱକୁ ନେଇ ବିଶ୍ୱାସ ରହିବା ଦେଖାଯାଏ । ଧର୍ମର ଏହି ବିଶ୍ୱାସକୁ ଏକ ଯୁକ୍ତି ସଂଗତ ଆଧାର ଦେବାକୁ ଦର୍ଶନ ପରିସରରେ ଏକଦା ପ୍ରୟାସ ହୋଇଥିଲା । ଈଶ୍ୱରଙ୍କ ପରି ଆତ୍ମାର ଅସ୍ତିତ୍ୱକୁ ପ୍ରତିଷ୍ଠା କରିବାକୁ ନାନା ଗମ୍ଭୀର ଯୁକ୍ତି ସୃଷ୍ଟି ହୋଇଥିଲା । ତେବେ ଏହି ପ୍ରୟାସ କିପରି ଅଯୌକ୍ତିକ ଓ ଅସଂଗତ ତାହାର ସାମାନ୍ୟ ଆଲୋଚନା ଆମର ଏଠାରେ ଲକ୍ଷ୍ୟ ।

ଧର୍ମର ବିଶ୍ୱାସକୁ ଆଧାରକରି ଦର୍ଶନରେ ଏହି ବିଚାର ବ୍ୟକ୍ତ ହେଲା ଯେ ପ୍ରତ୍ୟେକ ବ୍ୟକ୍ତି ଦୁଇଟି ସତ୍ତାର ସଂଯୋଗ । ବ୍ୟକ୍ତିର ଶରୀର ଗୋଟିଏ ସତ୍ତା ଓ ଆତ୍ମା ଆଉ ଗୋଟିଏ ସତ୍ତା । ଶରୀର ଅବୟବ ଯୁକ୍ତ, ଯାହା ଅବୟବ ଯୁକ୍ତ ତାହା ବିଭାଜ୍ୟ

ଓ ଧ୍ୱଂସ ସାପେକ୍ଷ। ଆତ୍ମା ଅବୟବ ରହିତ, ସରଳ ଓ ଅଣୁ ବିଶିଷ୍ଟ; ସୁତରାଂ ଏହା ଶାଶ୍ୱତ ଓ ଅମର। ଶରୀର ଆତ୍ମାର ଅଧିଷ୍ଠାନ ମାତ୍ର। ଶରୀର ଓ ଆତ୍ମା ଦୁଇଟି ପୃଥକ୍ ସତ୍ତା ଓ ତତ୍ତ୍ୱ। ଶରୀର ହେଉଛି ଜଡ ଓ ଏହାର ମୌଳିକ ଲକ୍ଷଣ ହେଉଛି ବିସ୍ତୃତି ବା ସ୍ଥିତି। ଆତ୍ମା ଯଦିବି ଏକ ସତ୍ତା ଏହାର ମୌଳିକ ଲକ୍ଷଣ ହେଉଛି ଚେତନା। ଯାହା ଚେତନାଯୁକ୍ତ ତାହାର ବିସ୍ତୃତି ନାହିଁ, ଯାହାର ବିସ୍ତୃତି ଅଛି ତାହା ଚେତନା ରହିତ ବା ଅଚେତନ। ପ୍ରତ୍ୟେକ ବ୍ୟକ୍ତି ଦୁଇଟି ପୃଥକ୍ ଓ ବିପରୀତ ସତ୍ତାର ସଂଯୋଗ। କେତେକ ଧର୍ମଗ୍ରନ୍ଥରେ ନାନା ଆଲଙ୍କାରିକ ଭାଷାରେ କୁହାଗଲା ଯେ ଆତ୍ମାକୁ ଅଗ୍ନି ଦାହ କରିପାରିବ ନାହିଁ, ଅସ୍ତ୍ର କାଟି ପାରିବ ନାହିଁ, ଜଳ ଭିଜାଇ ପାରିବ ନାହିଁ, ବାୟୁ ଶୁଖାଇ ପାରିବ ନାହିଁ କାରଣ ଏହା ନିତ୍ୟ ଓ ସନାତନ।

ଧର୍ମ ପରିସରରେ 'ଆତ୍ମା' ଶବ୍ଦର ପ୍ରୟୋଗ ହେବା ବେଳେ ଦର୍ଶନ, ମନୋବିଜ୍ଞାନ, ଚିକିତ୍ସାବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ 'ମନ' ଶବ୍ଦର ପ୍ରୟୋଗ ହେବା ଦେଖାଯାଏ। କେତେକ ଧର୍ମରେ ଆତ୍ମା ଓ ମନ ଭିତରେ ପାର୍ଥକ୍ୟ କରାଗଲେ ମଧ୍ୟ ବୈଜ୍ଞାନିକ ବିଶ୍ଳେଷଣ ପୃଷ୍ଠଭୂମିରେ ଚେତନାର ବାହକ ଭାବେ ମନକୁ ନିଆଯାଏ ଓ ସେହି ଦୃଷ୍ଟିରୁ ଆତ୍ମା ଓ ମନକୁ ସମାର୍ଥ ଭାବେ ଗ୍ରହଣ କରାଯାଏ। ଦର୍ଶନ ପରିସରରେ ଏକ ଗମ୍ଭୀର ପ୍ରଶ୍ନ ଉଠିଛି ଯେ ମନ ଚେତନାଯୁକ୍ତ ଓ ଶରୀର ଚେତନାରହିତ ହୋଇଥିବାରୁ ଶରୀର ଓ ମନ ଭିତରେ କିପରି ସମ୍ବନ୍ଧ ସ୍ଥାପିତ ହୁଏ ? ଶରୀର ଓ ମନ କିପରି ସମ୍ବନ୍ଧିତ ? ଏହି ପ୍ରଶ୍ନକୁ ଆଧାର କରି ନାନା କାଳ୍ପନିକ ପ୍ରକଳ୍ପର ଅବତାରଣା ଦେଖିବାକୁ ମିଳେ। ଏହା ଏକ ସାଧାରଣ ଅନୁଭବ ଯେ ମାନସିକ ଅବସ୍ଥା ଶରୀରକୁ ପ୍ରଭାବିତ କରିଥାଏ ଓ ଶାରୀରିକ ଘଟଣା ମନକୁ ଆକ୍ରାନ୍ତ କରିଥାଏ। ମନ ଓ ଶରୀର ଯଦି ଦୁଇଟି ପୃଥକ୍ ଓ ବିପରୀତ ସତ୍ତା ତେବେ ଉଭୟଙ୍କ ଭିତରେ ସଂପର୍କ ନାନା ଜଟିଳ ସମସ୍ୟା ଉଦ୍ରେକ କରାଇବ। ମନକୁ ଯଦି ମଣିଷ ମୁଣ୍ଡ ଭିତରର ଏକ ଗୋପନୀୟ ସତ୍ତା ବୋଲି ଗ୍ରହଣ କରାଯିବ ଓ ଭାବିବା, ଚିନ୍ତାକରିବା, କଳ୍ପନା କରିବା ଇତ୍ୟାଦି ମାନସିକ କାର୍ଯ୍ୟକୁ ମୁଣ୍ଡ ଭିତରର ନିଭୃତ କାର୍ଯ୍ୟ ବୋଲି ଧରାଯିବ ତେବେ ଏଥିରୁ ବହୁ ଜଟିଳ ସମସ୍ୟା ସୃଷ୍ଟି ହେବ। କାରଣ ସେପରି ହେଉଥିଲେ କେହି କାହାର ଭାବନାକୁ ଜାଣିବା ସମ୍ଭବ ହେବ ନାହିଁ ଏହି ଦୃଷ୍ଟିରୁ ଯେ ଜଣଙ୍କ ମସ୍ତିଷ୍କରେ ପ୍ରବାହିତ ଗୋପନୀୟ କାର୍ଯ୍ୟକୁ ଅନ୍ୟ ଜଣେ ନିରୀକ୍ଷଣ କରିବା ସମ୍ଭବ ନୁହେଁ। ଶରୀର ପରି ମନକୁ ଏକ

ସତ୍ତା ଭାବରେ ଗ୍ରହଣ କରିବା ଏକ ଗଭୀର ତାର୍କିକ ଦୋଷର ପରିଣତି ଯାହାକୁ ଦର୍ଶନ ପରିଭାଷାରେ 'ବର୍ଗ-ମିଶ୍ରଣ ଦୋଷ' ବା କାଟେଗୋରି ମିଷ୍ଟେକ କୁହାଯାଏ। ଶରୀର ଯେଉଁପରି ଏକ ସତ୍ତା ମନ ବା ଆତ୍ମାକୁ ସେହିପରି ଏକ ଅଶରୀର ସତ୍ତା ବୋଲି କଳ୍ପନା କରିବାଦ୍ୱାରା ବହୁ ଜଟିଳ ସମସ୍ୟା ବୌଦ୍ଧିକ ସ୍ତରରେ ମୁଣ୍ଡ ଟେକିବ। ମନ ଓ ଶରୀରକୁ ସତ୍ତା ବୋଲି ସ୍ୱୀକାର କଲେ ଉଭୟ ଏକ-ଶ୍ରେଣୀୟ ଭାବନା ହୋଇଯିବେ। ଏକ ଶ୍ରେଣୀୟ ଭାବନା ମାନଙ୍କ ବିଷୟରେ ଏକା ପ୍ରକାରର ପ୍ରଶ୍ନ ପଚରା ଯାଇପାରିବ, କିନ୍ତୁ ପୃଥକ୍ ଶ୍ରେଣୀର ପ୍ରତ୍ୟୟମାନଙ୍କ ବିଷୟରେ ଏହା କରାଯାଇପାରିବ ନାହିଁ। ତାଙ୍କ ଶରୀରର ଉଚ୍ଚତା କେତେ ବା ରଙ୍ଗ କ'ଣ ପଚରାଯାଇ ପାରିବ, କିନ୍ତୁ ତାଙ୍କ ମନ ବା ଆତ୍ମାର ରଙ୍ଗ କ'ଣ ଓ ଉଚତା କେତେ ଅତ୍ୟନ୍ତ ଅବାନ୍ତର ପ୍ରଶ୍ନ ହେବ। ବସ୍ତୁତଃ ଶରୀର ଓ ମନ ଏକ-ଶ୍ରେଣୀୟ ପ୍ରତ୍ୟୟ ନୁହନ୍ତି। ଶରୀର ଓ ମନକୁ ଦୁଇଟି ପୃଥକ୍ ସତ୍ତା ବୋଲି ଗ୍ରହଣ କରିବା ଯୋଗୁଁ କେତେ ଜଟିଳ ସମସ୍ୟା ମାନ ଚିନ୍ତା ସ୍ତରରେ ଆସେ ତାହା ଦାର୍ଶନିକ ଅନୁଶୀଳନରେ ଦର୍ଶାଯାଇଛି।

ଯଦି ବି ଧର୍ମ ଦୃଷ୍ଟିରୁ ଆତ୍ମାର ଅସ୍ତିତ୍ୱକୁ ସ୍ୱୀକାର କରାଯାଏ ଓ ଏହା ମଧ ବିଶ୍ୱାସ କରାଯାଏ ଯେ ମୃତ୍ୟୁ ପରେ ଆତ୍ମାର ଅସ୍ତିତ୍ୱ ରହେ, ତେବେ ପ୍ରଶ୍ନ ହେବ ଯେ ଆତ୍ମାର ତାଦାତ୍ମ୍ୟ ବା ବ୍ୟକ୍ତି ସତ୍ତାକୁ କିପରି ଚିହ୍ନିତ କରାଯିବ ? ଜଣେ ବ୍ୟକ୍ତିକୁ ସେହି ବ୍ୟକ୍ତି ବୋଲି ଚିହ୍ନିତ କରିବାର ଏକ ମାତ୍ର ମୁଖ୍ୟ ମାନଦଣ୍ଡ ହେଉଛି ତାଙ୍କର ଅବିଚ୍ଛିନ୍ନ ଶାରୀରିକ ସ୍ଥିତି। ପ୍ରତ୍ୟେକ ବ୍ୟକ୍ତି ଅନ୍ୟମାନଙ୍କଠାରୁ ପୃଥକ୍, କାରଣ ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ଶାରୀରିକ ବିସ୍ତୃତି ରହିଛି। ପ୍ରତ୍ୟେକ ବ୍ୟକ୍ତି ଜନ୍ମ ପରଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯାହା ସବୁ ମାନସିକ ସାମର୍ଥ୍ୟ, କ୍ରିୟା ଓ ଆବେଗ ପ୍ରକାଶ କରିଥାଏ ଏହା ତାର ଶାରୀରିକ ସ୍ଥିତି ଦେଇ ଅଭିବ୍ୟକ୍ତ ହେଉଥାଏ। ଶାରୀରିକ ବା ସେପରି କିଛି ବିସ୍ତୃତି ଅଭାବରେ ଆତ୍ମାମାନଙ୍କର ଅବସ୍ଥିତିକୁ ପରସ୍ପରଠାରୁ ପୃଥକ୍ କରାଯିବାର ମାନଦଣ୍ଡ କ'ଣ ହେବ ? କ, ଖ, ଗ.... ବ୍ୟକ୍ତି ବିଶେଷ ହେଲେ ଶାରୀରିକ ବା ବିସ୍ତୃତିଗତ ସ୍ଥିତି ଅଭାବରେ ସେମାନଙ୍କର ଆତ୍ମାମାନଙ୍କୁ କିପରି ଚିହ୍ନିତ କରାଯିବ ? ଜଣେ ବ୍ୟକ୍ତିର ମୃତ୍ୟୁପରେ ତାର ଯେ ଆତ୍ମା ରହୁଛି ତାହା କୌଣସି ପର୍ଯ୍ୟବେକ୍ଷଣୀୟ ଆଧାର ଉପରେ ପ୍ରତିଷ୍ଠିତ ନୁହେଁ, ବରଂ କେବଳ ଧର୍ମୀୟ ବିଶ୍ୱାସ ଆଧାରରେ ସ୍ୱୀକାର କରାଯାଉଛି। 'ଆତ୍ମା ଏକ ଚେତନ ସତ୍ତା ଓ ଏହାର ବିସ୍ତୃତିବିହୀନ ସ୍ଥିତି ରହିଛି'

କେବଳ କଳ୍ପନା ମାତ୍ର। ଏହା ପଛରେ ନା ରହିଛି ପର୍ଯ୍ୟବେକ୍ଷଣୀୟ ଆଧାର ନା ରହିଛି ଯୁକ୍ତିଶୀଳ ଭିତ୍ତି। ଯାହାର ସ୍ଥିତିଶୀଳତା ନାହିଁ ତାହାର ଗତିଶୀଳତା କୁଆଡୁ ଆସିବ ? ଆତ୍ମା ଏକ ଶରୀରରୁ ଯାଇ ଅନ୍ୟ ଶରୀର ଭିତରେ ପ୍ରବେଶ କରିବ, ସ୍ୱର୍ଗକୁ ଯିବ ବା ନରକଗାମୀ ହେବ ଭାବନାକୁ ଏକ ବିସ୍ତୃତିହୀନ ଓ ସ୍ଥିତିହୀନ ସତ୍ତା ପାଖରେ କିପରି ବୁଝାଯାଇ ପାରିବ? ଏକ ବିସ୍ତୃତିହୀନ ସତ୍ତାର ଗତିଶୀଳତା ଯେ ଅବାନ୍ତର ଏହା ଦାର୍ଶନିକ ବିଶ୍ଳେଷଣରୁ ସ୍ପଷ୍ଟ ହୋଇଥାଏ।

ବିଜ୍ଞାନ ମତରେ କୋଟି କୋଟି ବର୍ଷ ତଳେ ପ୍ରକୃତିରେ ଏକ କୋଷୀ ସଜୀବ ପ୍ରାଣୀର ଉଦ୍ଭବ ହୋଇଛି। ଏକ କୋଷୀ ଜୀବମାନଙ୍କଠାରୁ ଲକ୍ଷ ଲକ୍ଷ ବର୍ଷର ବିବର୍ତ୍ତନ ପ୍ରକ୍ରିୟା ଓ ପ୍ରାକୃତିକ ସନ୍ତୁଳନ ମଧ୍ୟ ଦେଇ ଆଜିର ଜୀବଜଗତ ସମ୍ଭବ ହୋଇଛି। ପ୍ରତ୍ୟେକ ପ୍ରାଣୀର ଶରୀରରେ ଅସଂଖ୍ୟ ଜୀବକୋଷ ରହିଛି। ଜୀବକୋଷ ମଧ୍ୟରେ ସଂପନ୍ନ ହେଉଥିବା ଅକ୍ସିଡେନସ, ଶ୍ୱାସକ୍ରିୟା ଓ ରକ୍ତସଞ୍ଚାଳନ ଯୋଗୁଁ ଏକ ପ୍ରାଣୀ ଜୀବିତ ରହିଛି। ଏକ ପ୍ରାଣୀ ପରାଙ୍ଗପୁଷ୍ଟ ଭାବେ ମାତୃ ଗର୍ଭରେ ଜୀବନ ଆରମ୍ଭ କରେ। ଜନ୍ମପରଠାରୁ ଏକ ପ୍ରାଣୀର ଜୀବକୋଷ ନଷ୍ଟ ହେଉଥାଏ ଓ ନୂତନ କୋଷର ସୃଷ୍ଟିରେ ତାହାର ବୃଦ୍ଧି ହେଉଥାଏ। ଯୁବକ ଅବସ୍ଥାରେ କୋଷର ମୃତ୍ୟୁ ତୁଳନାରେ କୋଷର ସୃଷ୍ଟି ଅଧିକ ହେଉଥାଏ, ଆସ୍ତେ ଆସ୍ତେ ଏହା ସମାନ ସ୍ତରକୁ ଆସି ପରେ କୋଷର ମୃତ୍ୟୁହାର ଅଧିକ ହୋଇଚାଲେ। ଯେତେବେଳେ ଶରୀର କୌଣସି ନୂତନ କୋଷ ସୃଷ୍ଟି କରିବାକୁ ସକ୍ଷମ ହୁଏ ନାହିଁ ବା କୋଷ ଜୀବିତ ରହେନାହିଁ, ସେତେବେଳେ ବ୍ୟକ୍ତିଭିତରେ ଚାଲୁଥିବା ରାସାୟନିକ କ୍ରିୟା ଓ ମସ୍ତିଷ୍କର କାର୍ଯ୍ୟ ଅଚଳ ସ୍ତରକୁ ଚାଲିଆସେ ଓ ଏହାକୁ ମୃତ୍ୟୁ କୁହାଯାଏ। ଏପରିକି ମୃତ୍ୟୁ ପରେ ଶରୀରର କୌଣସି ଅଙ୍ଗ ଅନ୍ୟ ବ୍ୟକ୍ତିର ଶରୀରରେ ରୋପଣ କରାଯାଇ ପାରିଲେ ସେଠାରେ ତାହା ଅନ୍ୟ ଶରୀରର କୋଷଦ୍ୱାରା ପୁଷ୍ଟ ହୋଇ କାର୍ଯ୍ୟକରେ।

ଜୀବନକୁ ଅଗ୍ନି ସାଦୃଶ୍ୟରେ ବୁଝାଯାଇପାରେ। କୌଣସି ଇନ୍ଧନ ବା ମହମବତି ଜଳିଲେ ନିଆଁ ସୃଷ୍ଟି ହୁଏ, ଇନ୍ଧନ ଅଭାବରେ ନିଆଁର ଉତ୍ପତ୍ତି ସମ୍ଭବ ନୁହେଁ। ଅମ୍ଳଜାନ, ଉତ୍ତାପ ଓ ହାଇଡ୍ରୋକାର୍ବନ ମଧ୍ୟରେ ରାସାୟନିକ କ୍ରିୟା ଯୋଗୁ ଇନ୍ଧନର ଦହନ ସମ୍ଭବ ହୋଇଥାଏ। ଏହି ପ୍ରକ୍ରିୟା ବନ୍ଦ ହେଲେ ଇନ୍ଧନ ଜଳେ ନାହିଁ ଓ ପୁନଶ୍ଚ ଆରମ୍ଭ ହେଲେ ଏହା ଜଳିଥାଏ। ଠିକ୍ ସେହିପରି ଶରୀର ଭିତରେ ସଂଘଟିତ

ହୋଇଥିବା ଅକ୍ସିଡେସନ, ରକ୍ତ ସଞ୍ଚାଳନ, ଶ୍ୱାସକ୍ରିୟାଦ୍ୱାରା ଜୀବନ ରହିଥାଏ, ଏହାର ଅଭାବରେ ମୃତ୍ୟୁ ହୁଏ। ଜୀବନ ଓ ମୃତ୍ୟୁ ଶରୀରର ରାସାୟନିକ ପ୍ରକ୍ରିୟାର ପରିଣାମ। ଜୀବନ ଶରୀରର ଓ ଆତ୍ମାର ସଂଯୋଗ ନୁହଁ ଓ ମୃତ୍ୟୁ ଶରୀର ଓ କାଳ୍ପନିକ ଆତ୍ମାର ପୃଥକୀକରଣ ନୁହଁ।

ଏକ ବୃକ୍ଷ, କୀଟ ବା ମଣିଷ ସମସ୍ତଙ୍କ ପାଖରେ ଜୀବନ ରହିଛି, କାରଣ ସମସ୍ତଙ୍କ ପାଖରେ ଜୀବକୋଷ ରହିଛି। ତେବେ ମଣିଷ ପାଖରେ ମସ୍ତିଷ୍କ ଓ ସ୍ନାୟବିକ କ୍ରିୟା ଯୋଗୁ ସେ ବିଚାର ବୁଦ୍ଧି ସଂପନ୍ନ ହୋଇପାରିଛି। ଏହା ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ସମ୍ଭବ ହୋଇଛି, କୌଣସି ଆତ୍ମାର ଉପସ୍ଥିତି ଯୋଗୁଁ ନୁହେଁ। ଜୀବନ, ମନ ବା ଆତ୍ମା କୌଣସି ସ୍ୱତନ୍ତ୍ର ସତ୍ତାକୁ ବୁଝାଏ ନାହିଁ, ଏସବୁ ଏକ ପ୍ରକ୍ରିୟାକୁ ବୁଝାଏ। ମୋଟ ଉପରେ ଅବିନାଶୀ ଆତ୍ମାର ଭାବନା ଏକ ଧାର୍ମିକ ବିଶ୍ୱାସ, ଏହା ପଶ୍ଚାତରେ କୌଣସି ଯୁକ୍ତିଶୀଳ, ତଥ୍ୟଭିତ୍ତିକ ବା ବୈଜ୍ଞାନିକ ଆଧାର ନାହିଁ। ପୁନଶ୍ଚ ଧର୍ମମାନଙ୍କ ଭିତରେ ଥିବା ବିଶ୍ୱାସ ସମାନ ନୁହଁ ବରଂ ପରସ୍ପର-ବିରୋଧୀ।



# ଲକ୍ଷ୍ମୀପୂଜା : କେତେକ ମନସ୍ତାତ୍ତ୍ୱିକ ଦିଗ

ହିନ୍ଦୁ ସାମାଜିକ ଜୀବନଧାରା ସହିତ ପ୍ରତିମା ପୂଜା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ଅବଶ୍ୟ ପ୍ରତିମା ପୂଜା ହିନ୍ଦୁଧର୍ମର ଏକ ମୌଳିକ ନିଷ୍କର୍ଷ କି ନୁହଁ ତାହା ବିବାଦମାନ ବିଷୟ । କାରଣ ହିନ୍ଦୁଧର୍ମର କେତେକ ପ୍ରଭାବଶାଳୀ ସଂସ୍କାରବାଦୀ ସଂପ୍ରଦାୟ ପ୍ରତିମା ପୂଜାକୁ ଅତ୍ୟନ୍ତ ବିରୋଧ କରିଥାନ୍ତି । ଏପରିକି ପ୍ରତିମା ପୂଜା ହିନ୍ଦୁ-ସନାତନ-ଧର୍ମର ପ୍ରତିକୂଳ ବୋଲି ସେମାନେ ମତ ଦେଇଥାନ୍ତି । ହିନ୍ଦୁ ଧର୍ମଚେତନାର ଅବକ୍ଷୟ ପାଇଁ ଅନ୍ୟାନ୍ୟ କାରଣ ସହିତ ସେମାନେ ପ୍ରତିମା ପୂଜାକୁ ମୁଖ୍ୟତଃ ଦାୟୀ କରିଥାନ୍ତି । ବିଶେଷକରି ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ପରି ବିଶିଷ୍ଟ ବୈଦିକ ବିଦ୍ୱାନ ଓ ସଂସ୍କାରକ ଆର୍ଯ୍ୟସମାଜ ଜରିଆରେ ପ୍ରତିମାପୂଜାକୁ ତୀବ୍ର ବିରୋଧ କରିଛନ୍ତି । ସେହିପରି ପ୍ରାର୍ଥନା ସମାଜ, ବ୍ରାହ୍ମସମାଜ ଓ କେତେକ ଅଦ୍ୱୈତବାଦୀ (ଯେଉଁମାନେ ହିନ୍ଦୁଧର୍ମ ଦର୍ଶନର ପ୍ରବକ୍ତା ହୋଇଛନ୍ତି) ମଧ୍ୟ ପ୍ରତିମା ପୂଜାକୁ ବିରୋଧ କରି ଆସିଛନ୍ତି । ହିନ୍ଦୁଧର୍ମର ପ୍ରାମାଣିକ ଶାସ୍ତ୍ର ବେଦ ଓ ଉପନିଷଦ୍‌ରେ ଯେ ପ୍ରତିମା ପୂଜା ନାହିଁ ଓ ଏହା ପରବର୍ତ୍ତୀ ଯୁଗରେ ପୂଜକ ଗୋଷ୍ଠୀ ଦ୍ୱାରା ସୃଷ୍ଟି ହୋଇଛି ଆର୍ଯ୍ୟସମାଜୀମାନେ ଏହା ନିଷ୍ଠାର ସହ ପ୍ରଚାର କରିଥାନ୍ତି । ଅପରପକ୍ଷରେ ହିନ୍ଦୁଧର୍ମର ଅନ୍ୟ କେତେକ ସଂପ୍ରଦାୟ ପ୍ରତିମାପୂଜାକୁ ହିନ୍ଦୁଧର୍ମ ଧାରାର ଏକ ଅବିଚ୍ଛେଦ୍ୟ ଦିଗ ଭାବରେ ଗ୍ରହଣ କରିଥାନ୍ତି ।

ପ୍ରତିମା ପୂଜା ସନାତନ ହିନ୍ଦୁଧର୍ମର ଅନୁକୂଳ ବା ପ୍ରତିକୂଳ ଏହି ବିବାଦକୁ ବାଦ୍ ଦେବାପରେ ଏହା ସ୍ୱୀକାର୍ଯ୍ୟ ଯେ ହିନ୍ଦୁ ସାମାଜିକ ଜୀବନ ପ୍ରବାହ କ୍ଷେତ୍ରରେ ପ୍ରତିମା ପୂଜା କେଉଁ ପ୍ରାଚୀନ କାଳରୁ ପ୍ରଚଳିତ ରହିଆସିଛି । ଅବଶ୍ୟ ଆନୁଷ୍ଠାନିକ ଧର୍ମ ଚେତନା ବା ଦାର୍ଶନିକ ଚିନ୍ତନର ଉଦ୍ଭବ ପୂର୍ବରୁ ପୃଥିବୀର ବିଭିନ୍ନ ସଭ୍ୟତାରେ ବହୁ ଈଶ୍ୱରବାଦର ପ୍ରଚଳନ ଦେଖିବାକୁ ମିଳେ । ଆନୁଷ୍ଠାନିକ ଧର୍ମ ମଧ୍ୟ ଦେଇ ଦାର୍ଶନିକ

ଚିନ୍ତନଧାରାରେ ଏକେଶ୍ୱରବାଦର ଭାବନା ଆସିବା ପୂର୍ବରୁ ବିଭିନ୍ନ ସମାଜରେ ପ୍ରାକୃତିକ ଶକ୍ତି ସମୂହକୁ ଆରାଧନା କରାଯାଇଛି । ସଭ୍ୟତାର ପହିଲି ପର୍ବରେ ପ୍ରକୃତିର ବିଶାଳତା ଓ ରହସ୍ୟମୟତା ମଣିଷ ବୋଧିର ଅବୋଧଗମ୍ୟ ହୋଇଛି । ଏହି ବିଶାଳ ପ୍ରକୃତିର ବିଭିନ୍ନ କ୍ଷେତ୍ର ନାନା ଐଶ୍ୱରୀୟ ଶକ୍ତିଦ୍ୱାରା ନିୟନ୍ତ୍ରିତ ଓ ପରିଚାଳିତ ବୋଲି ଭାବନା ସୃଷ୍ଟିହୋଇଛି । ବିଭିନ୍ନ ସଭ୍ୟତାର ଆରମ୍ଭ କାଳରେ ବହୁଈଶ୍ୱରବାଦ ଏକ ପ୍ରମୁଖ ବୌଦ୍ଧିକ ଚିନ୍ତନ ଭାବରେ ଜନଜୀବନକୁ ପ୍ରଭାବିତ କରିଆସିଛି । ସୂର୍ଯ୍ୟ, ଚନ୍ଦ୍ର, ଜଳ, ଅଗ୍ନି, ବାୟୁ, ସମୁଦ୍ର ଇତ୍ୟାଦି ପ୍ରାକୃତିକ ବିଭବ ଗୁଡିକୁ ମଣିଷ ପୂଜା କରିଛି । ମଣିଷ ବିଶ୍ୱାସ କରିଛି ଯେ ସେଗୁଡିକ ଏକ ଏକ ଦୈବୀ ସତ୍ତା ବା ଦୈବୀଶକ୍ତି ଦ୍ୱାରା ନିୟନ୍ତ୍ରିତ ଶକ୍ତି । ପୂଜା ଆରାଧନା ଦ୍ୱାରା ସେମାନଙ୍କୁ ସନ୍ତୁଷ୍ଟ କରାଯାଇ ପାରିବ, ଅପରପକ୍ଷରେ ଏହା ନକଲେ ସେମାନଙ୍କ କ୍ରୋଧର ହୁଏତ ଶିକାର ହେବାକୁ ହେବ । ସେଥିପାଇଁ ସେମାନଙ୍କୁ ତୁଷ୍ଟି କରିବା ପାଇଁ ବିଭିନ୍ନ ସଭ୍ୟତାରେ ନାନା ପୂଜା, ଆରାଧନା, ପ୍ରାର୍ଥନା, ଭକ୍ତିଭାବ ଓ କେତେ କେତେ କର୍ମକାଣ୍ଡର ଉଦ୍ଭବ ହୋଇଛି ।

ଏତଦ୍‌ବ୍ୟତୀତ ଗୋଷ୍ଠୀ ଜୀବନରେ କୃଷି, କାରିଗରୀ କୌଶଳ, ଧନ, ବିଦ୍ୟା, ସୁଖ ଇତ୍ୟାଦିର ଗୁରୁତ୍ୱ ଥିବା ଦୃଷ୍ଟିରୁ ସେଥିପାଇଁ ମଧ୍ୟ ବିଭିନ୍ନ ଦେବଦେବୀଙ୍କୁ ଚିନ୍ତା କରାଯାଇଛି । ଜୀବନର ପ୍ରତ୍ୟେକ କ୍ଷେତ୍ର ପାଇଁ ବିଭିନ୍ନ ସଭ୍ୟତାରେ ନାନା ଦେବ ଦେବୀଙ୍କୁ ସଂପୃକ୍ତ କରାଯାଇ ଆରାଧନା କରାଯାଇଛି । ଅବଶ୍ୟ ଆନୁଷ୍ଠାନିକ ଧର୍ମର ବିକାଶ ଫଳରେ ଏକେଶ୍ୱରବାଦୀ ଭାବନା ଆସିବା ଦ୍ୱାରା ବହୁ ଦେବଦେବୀ ପୂଜାର ଭାବନା କେତେକ ସମାଜରୁ ଲୋପ ପାଇଛି । କିନ୍ତୁ ଭାରତୀୟ ସମାଜରେ ପ୍ରାଚୀନ ବିଶ୍ୱାସ ଓ ଆରାଧନା ପୂଜକ ଗୋଷ୍ଠୀଦ୍ୱାରା ସୁନିୟନ୍ତ୍ରିତ ଭାବରେ ଯୁଗ ଯୁଗ ଧରି ପ୍ରଚଳିତ ରହିଆସିଛି ।

ପ୍ରାଚୀନ ହିନ୍ଦୁ ପରମ୍ପରାରେ ଜୀବନର ବିଭିନ୍ନ ବିଭବ ପାଇଁ ନାନା ଦେବଦେବୀଙ୍କୁ ଆରାଧନା ବା ଆବାହନ କରାଯାଇଛି । ସେମାନଙ୍କୁ ସୁଖ ଶାନ୍ତି ପ୍ରଦାନର ପ୍ରତୀକ ଭାବରେ ନିଆଯାଇଛି । ଜ୍ଞାନଲାଭ ପାଇଁ ସରସ୍ୱତୀ ଓ ଗଣେଶଙ୍କୁ, କାରିଗରୀ କୌଶଳରେ ସଫଳତା ପାଇଁ ବିଶ୍ୱକର୍ମାଙ୍କୁ, ବିତ୍ତ ବିଭବ ପାଇଁ ଲକ୍ଷ୍ମୀଙ୍କୁ, ସୁଖମୟ ଦାମ୍ପତ୍ୟ ଜୀବନ ପାଇଁ ପ୍ରଜାପତିଙ୍କୁ ଆରାଧନା କରାଯାଇଛି । ସେହିପରି ଫସଲ ଲାଭ ପାଇଁ, ବର୍ଷା ପାଇଁ, ଯାତ୍ରାର ସଫଳତା ପାଇଁ, ପ୍ରାକୃତିକ ବିପଦରୁ ରକ୍ଷା ପାଇବା ପାଇଁ ତଥା ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରତିକୂଳ ସ୍ଥିତିକୁ ପ୍ରତିହତ କରିବା ପାଇଁ କେତେକେତେ

ଦେବଦେବୀଙ୍କର ପୂଜା ଆରାଧନା ନେଇ ଭାବନା ସାମାଜିକ ଜୀବନ ପ୍ରବାହରେ ସୃଷ୍ଟି ହୋଇଛି । ମଣିଷ ଜୀବନ ସହିତ ଦୁଃଖ, ହତାଶା, ନୈରାଶ୍ୟ, ରୋଗ, ପ୍ରାକୃତିକ ବିପଦ ଇତ୍ୟାଦି ପ୍ରତିକୂଳ ସ୍ଥିତି ନିବିଷ୍ଟ ଭାବେ ସଂଶ୍ଳିଷ୍ଟ ରହିଥିବା ଯୋଗୁଁ ସେସବୁରୁ ନିଷ୍କୃତି ପାଇଁ ଅତୀନ୍ଦ୍ରିୟ ଶକ୍ତିରେ ବିଶ୍ୱାସ ଓ ଆସ୍ଥା ମଣିଷକୁ ମାନସିକ ଶକ୍ତି ଯୋଗାଇଛି । ମାନସିକ ଉତ୍ତେଜନା, ଭୟ ଓ ସମ୍ଭାବ୍ୟ ବିପଦରୁ ରକ୍ଷା ପାଇବା ପାଇଁ କେତେକ ବିଶ୍ୱାସ ଓ ପୂଜାପାର୍ବଣ୍ୟ ମନସ୍ତାତ୍ତ୍ୱିକ ସ୍ତରରେ ଆତ୍ମବିଶ୍ୱାସ ସୃଷ୍ଟି କରିଛି । ଅଲୌକିକ ଶକ୍ତିର ପୂଜା ଆରାଧନାଦ୍ୱାରା ଜୀବନର ସମ୍ଭାବ୍ୟ ପ୍ରତିକୂଳ ସ୍ଥିତିକୁ ପ୍ରତିହତ କରିହେବ ଏହି ମାନସିକତା ସମାଜରେ ରହିଆସିଛି । ବହୁ ଦେବଦେବୀ ପୂଜା ପ୍ରଚଳିତ ଥିବା ସମାଜରେ ପ୍ରାଚୀନ ଦେବଦେବୀଙ୍କ ପୂଜା ସହ ନୂଆ ନୂଆ ଦେବୀଙ୍କର ମଧ୍ୟ ଉଦ୍ଭାବନ କରାଯିବା ଅସମ୍ଭବ ନୁହେଁ । ସାମାଜିକ ଜୀବନ ପ୍ରବାହ କ୍ଷେତ୍ରରେ କେତେକ ପ୍ରାଚୀନ ଦେବଦେବୀ କାଳକ୍ରମେ ବିସ୍ମୃତ ହୋଇଯାଉଥିବା ବେଳେ ନୂଆ ନୂଆ ଦେବଦେବୀଙ୍କର ଆବିର୍ଭାବ ହେଉଥିବା ଏକ ସାଧାରଣ ବ୍ୟାପାର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାଚୀନ ବିଶ୍ୱାସ ଅନୁଯାୟୀ ଲକ୍ଷ୍ମୀଙ୍କୁ ବିଭବ ଓ ପବିତ୍ରତାର ଦେବୀ ବୋଲି ଗ୍ରହଣ କରାଯାଇଛି । ଦେବୀ ପୂଜା ପରମ୍ପରାରେ ଲକ୍ଷ୍ମୀ ବିଭବର, ସରସ୍ୱତୀ ବିଦ୍ୟାର ଓ କାଳୀ ଶକ୍ତି ଓ ସାମର୍ଥ୍ୟର ପ୍ରତୀକ ଭାବରେ ଗୃହୀତ ହୋଇଛନ୍ତି । ପ୍ରାଚୀନ ବିଶ୍ୱାସ ଅନୁଯାୟୀ ଲକ୍ଷ୍ମୀ, ସରସ୍ୱତୀ ଓ ମାହେଶ୍ୱରୀ ଯଥାକ୍ରମେ ବିଭବ, ଜ୍ଞାନ ଓ ଶକ୍ତିର ଉତ୍ସ ଅଟନ୍ତି । ସୁତରାଂ ଅଭିଳଷିତ ଲକ୍ଷ୍ୟ ହାସଲ ପାଇଁ ଆବଶ୍ୟକୀୟ ଦେବୀଙ୍କର ପୂଜା କରାଯିବା ଆବଶ୍ୟକ । ହିନ୍ଦୁ ସାମାଜିକ ମନସ୍ତତ୍ତ୍ୱ ଭିତରେ ଅତୀନ୍ଦ୍ରିୟ ଭାବନାର ପ୍ରଭାବ ବଳବତ୍ତର ଥିବା ଯୋଗୁଁ ଦେବୀପୂଜାର ପାରମ୍ପରିକ ଚଳଣି ଏବେବି ସମାଜରେ ବେଶ୍ ପ୍ରଚଳିତ ରହିଆସିଛି ।

ଏହି ବିଶ୍ୱାସ ପୃଷ୍ଠଭୂମିରେ ସାମାଜିକ ବିକାଶଧାରାର ଏକ ଚିତ୍ର ମଧ୍ୟ ମିଳିଥାଏ । ସାମାଜିକ ବିବର୍ତ୍ତନ କ୍ଷେତ୍ରରେ ଯେତେବେଳେ ନାରୀକୈନ୍ଦ୍ରିକ ପାରିବାରିକ ଜୀବନର ଅଭ୍ୟୁଦୟ ହୋଇଛି ସେତେବେଳେ ସମ୍ଭବତଃ ଶକ୍ତି ପୂଜାର ଭାବନା ସୃଷ୍ଟି ହୋଇଛି । ସାମାଜିକ ବିକାଶ ପ୍ରକ୍ରିୟାରେ ପୁରୁଷ କୈନ୍ଦ୍ରିକ ପାରିବାରିକ ଜୀବନର ପ୍ରାଧାନ୍ୟ ଥିବା ପର୍ଯ୍ୟନ୍ତ ବହୁ ଈଶ୍ୱରବାଦ ଭାବନା ପୃଷ୍ଠଭୂମିରେ ଈଶ୍ୱରମାନଙ୍କୁ ପୁରୁଷ ଭାବରେ ଚିତ୍ରଣ କରାଯାଇଛି । ମଣିଷ ନିଜର କଳ୍ପିତ ଈଶ୍ୱରଙ୍କୁ ସର୍ବଜ୍ଞ, ସର୍ବଶକ୍ତିମାନ, ଦୟାଳୁ, ବିଘ୍ନନାଶକ ଆଦି ଗୁଣରେ ଭୂଷିତ କରିଛି । କିନ୍ତୁ ସାମାଜିକ ପରିବର୍ତ୍ତନଧାରାରେ

ନାରୀର ପ୍ରାଧାନ୍ୟ ଆସିବା ସହିତ ପାରିବାରିକ ଜୀବନ ନାରୀକୈନ୍ଦ୍ରିକ ହେବାରେ ଶକ୍ତି ଓ ଦେବୀର ଭାବନା ସୃଷ୍ଟି ହୋଇଛି । ବସ୍ତୁତଃ ସାମାଜିକ ଜୀବନ ପ୍ରବାହରେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ ହେବା ପରିପ୍ରେକ୍ଷୀରେ ଅତୀନ୍ଦ୍ରିୟ ଚେତନାର ପ୍ରତୀକ ଭାବରେ ନାରୀଶକ୍ତିକୁ ଆରାଧନା କରାଯାଇଛି । ସୁତରାଂ ଲକ୍ଷ୍ମୀ, ସରସ୍ୱତୀ, ମାହେଶ୍ୱରୀ, ଭୈରବୀ ଇତ୍ୟାଦି ଦେବୀଙ୍କୁ ମଣିଷ ନିଜର ଭକ୍ତି ଅର୍ଘ୍ୟ ପ୍ରଦାନ କରିଛି । ସାମାଜିକ ପରିବର୍ତ୍ତନ ଭିତରେ ପୁନଶ୍ଚ ଏହି ଦେବୀମାନଙ୍କୁ ବଭିନ୍ନ ପୁରୁଷ ଈଶ୍ୱରଙ୍କର ପତ୍ନୀ ଭାବରେ ଚିତ୍ରଣ କରାଯାଇଛି । ଲକ୍ଷ୍ମୀଙ୍କୁ ନାରାୟଣଙ୍କର ଓ ମାହେଶ୍ୱରୀଙ୍କୁ ଶିବଙ୍କର ପତ୍ନୀ ଭାବରେ ନିଆଯାଇଛି । ପୁରୁଷକୈନ୍ଦ୍ରିକ ପାରିବାରିକ ବ୍ୟବସ୍ଥା ଯେତିକି ଯେତିକି ସାମାଜିକ ମନସ୍ତତ୍ତ୍ୱ ଭିତରେ ଗୁରୁତ୍ୱପୂର୍ଣ୍ଣ ହୋଇଛି ଦେବୀମାନଙ୍କର ସ୍ଥାନ ସେମାନଙ୍କର ସ୍ୱାମୀ ଦେବମାନଙ୍କର ସ୍ଥାନଠାରୁ କିଛି ନ୍ୟୂନ ହୋଇଛି । ମୋଟ ଉପରେ ସାମାଜିକ ବିକାଶଧାରା ସହିତ ଅତୀନ୍ଦ୍ରିୟ ଭାବନା ଓ ଦେବାଦେବୀ ପୂଜା ଆରାଧନା ସଂଗତି ରକ୍ଷାକରି ଏକ ସାଂସ୍କୃତିକ ମୂଲ୍ୟଚୟକୁ ପ୍ରଭାବିତ କରିଛନ୍ତି ।

ଓଡିଶାରେ ମାର୍ଗଶୀର ମାସର ଗୁରୁବାର ଗୁଡିକରେ ଲକ୍ଷ୍ମୀପୂଜା ଅତି ଜନପ୍ରିୟ ଅଟେ । ଏହା ଓଡିଶାର ଗ୍ରାମୀଣ ସାଂସ୍କୃତିକ ଜୀବନଧାରାରେ ଏକ ପର୍ବ ଭାବରେ ବହୁ ପୂର୍ବରୁ ପ୍ରଚଳିତ ହୋଇଆସିଛି । ଗ୍ରାମୀଣ କୃଷି ସଭ୍ୟତାରେ ମାର୍ଗଶୀର ମାସର କିଛି ବୈଶିଷ୍ଟ୍ୟ ଥିବା ମନେହୁଏ । କାରଣ ଏହି ମାସରେ କୃଷକମାନେ ସେମାନଙ୍କର ଶସ୍ୟ ଅମଳ କରିଥାନ୍ତି । ବର୍ଷକର ଉପାର୍ଜନକୁ ଘରକୁ ଆଣି ପାରୁଥିବା ଯୋଗୁଁ ଲକ୍ଷ୍ମୀଙ୍କର ଆବାହନ କରିଥାନ୍ତି । ଲୋକବିଶ୍ୱାସକୁ ନେଇ ବଳରାମ ଦାସ ଯେଉଁ "ଲକ୍ଷ୍ମୀ ପୁରାଣ" କ୍ଷୁଦ୍ର କାବ୍ୟଟି ଲେଖିଛନ୍ତି ତାହା ଓଡିଶାରେ ମଧ୍ୟ ଯଥେଷ୍ଟ ଜନପ୍ରିୟ । ଏହି କ୍ଷୁଦ୍ର କାବ୍ୟରେ ଯେଉଁ ବାର୍ତ୍ତାଟି କବି ଦେଇଛନ୍ତି ତାହାହିଁ ଗୁରୁତ୍ୱପୂର୍ଣ୍ଣ । ଏକ ଜାତିଭିତ୍ତିକ ସମାଜ ବ୍ୟବସ୍ଥାରେ ଚଣ୍ଡାଳମାନେ ଯେଉଁ ନିମ୍ନ ସ୍ଥାନ ନେଇଛନ୍ତି ତାହା ବିରୁଦ୍ଧରେ ଏକ ସାମାଜିକ କ୍ରାନ୍ତି ପାଇଁ ଏଥିରେ ଏକ ବାର୍ତ୍ତା ରହିଛି । ଲକ୍ଷ୍ମୀ ଶ୍ରୀୟା ଚଣ୍ଡାଲୁଣୀର ପବିତ୍ରତା ଓ ଆନ୍ତରିକ ଭକ୍ତିରେ ମୁଗ୍ଧ ହୋଇ ତାକୁ ପ୍ରସନ୍ନ ହୋଇଛନ୍ତି ଓ ତାର ପୂଜା ଅର୍ଘ୍ୟ ଗ୍ରହଣ କରିଛନ୍ତି । ଏହା ହିନ୍ଦୁ ସମାଜର ଅସ୍ପୃଶ୍ୟତା ବିରୁଦ୍ଧରେ ଯେ ଏକ ପ୍ରତିବାଦ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହିପରି ଲକ୍ଷ୍ମୀଙ୍କର ଏହି ବ୍ୟବହାରକୁ କେନ୍ଦ୍ରକରି ଦେଢ଼ଶ୍ୱଶୁର ବଳରାମ ତାଙ୍କର ସାନ ଭାଇ ଜଗନ୍ନାଥଙ୍କ ପାଖରେ (ଯେ ଲକ୍ଷ୍ମୀଙ୍କର ସ୍ୱାମୀ) ଲକ୍ଷ୍ମୀଙ୍କ ସମ୍ବନ୍ଧରେ ଅଭିଯୋଗ କରିଛନ୍ତି ଓ ସେମାନେ ଲକ୍ଷ୍ମୀଙ୍କୁ

ମନ୍ଦିର ଭିତରେ ପ୍ରବେଶ କରିବାକୁ ମନା କରିଛନ୍ତି। ପରେ ଲକ୍ଷ୍ମୀ ଉଭୟଙ୍କ ଉପରେ ପ୍ରତିଶୋଧ ନେଇଛନ୍ତି। ଜଗନ୍ନାଥ ଓ ବଳରାମ ନିଜର ତ୍ରୁଟିକୁ ଅନୁଭବ କରି ଲକ୍ଷ୍ମୀଙ୍କୁ ପୂର୍ବ ସମ୍ମାନ ଓ ଗୌରବର ଅଧିକାର ଦେଇଛନ୍ତି। କାହାଣୀଟିରେ ଲକ୍ଷ୍ମୀ, ଜଗନ୍ନାଥ ଓ ବଳରାମଙ୍କ ଜରିଆରେ (ପ୍ରଚଳିତ ବିଶ୍ୱାସ ଅନୁଯାୟୀ ଜଗନ୍ନାଥ ସ୍ୱୟଂ ଭଗବାନ, ଲକ୍ଷ୍ମୀ ତାଙ୍କର ପତ୍ନୀ ଓ ବଳରାମ ତାଙ୍କର ବଡ଼ଭାଇ) ନାରୀ ମର୍ଯ୍ୟାଦା ଓ ଅଧିକାରର ବାର୍ତ୍ତାକୁ ଲେଖକ ବଳରାମ ଦାସ ବ୍ୟକ୍ତ କରିଛନ୍ତି। ଏକ ପୁରୁଷକୈନ୍ଦ୍ରିକ ସମାଜରେ ଏକ ମିଥ୍ ଜରିଆରେ ନାରୀ ସ୍ୱାଧୀନତାର ଯେଉଁ ବାର୍ତ୍ତା ଦିଆଯାଇଛି ତାହା ଯେ ଗୁରୁତ୍ୱପୂର୍ଣ୍ଣ ଏହା କୁହାଯାଇପାରେ।

ସାମାଜିକ ବିକାଶଧାରାରେ ସହର ମାନଙ୍କର ଅଭ୍ୟୁଦୟ ଦ୍ୱାରା ଜାତୀୟ ଦୃଶ୍ୟପଟରେ ନାନା ପରିବର୍ତ୍ତନ ହୋଇଛି। ଓଡିଶାର ଜନ ଜୀବନରେ ଗତ ଏକ ଶତାବ୍ଦୀ ମଧ୍ୟରେ କେତେକ ଛୋଟ ବଡ଼ ସହର ସୃଷ୍ଟି ହେବା ପରେ ବିଭିନ୍ନ ସହର ମାନଙ୍କରେ ସାମୂହିକ ପୂଜା ପାର୍ବଣ ମାନ କରାଯାଉଛି। ପରିବର୍ତ୍ତିତ ପରିସ୍ଥିତିରେ ଜାତିପ୍ରଥାର ରୁଦ୍ଧ ବ୍ୟବସ୍ଥା କେତେକାଂଶରେ କୋହଳ ହେବାଦ୍ୱାରା ସମାଜର ବିଭିନ୍ନ ଶ୍ରେଣୀର ଲୋକମାନେ ସମ୍ମିଳିତ ଭାବରେ ପୂଜା, ପର୍ବ ବା ଉତ୍ସବ ପାଳନ କରିବାକୁ ସମର୍ଥ ହୋଇଛନ୍ତି। ସମାଜରେ ପ୍ରଚଳିତ ରହି ଆସିଥିବା ପାରଲୌକିକ ବିଶ୍ୱାସ ଆଧାରରେ ସମବେତ ପୂଜା, ପର୍ବ ପାଳନ କରିବା କ୍ଷେତ୍ରରେ ତିନୋଟି ଉଦ୍ଦେଶ୍ୟ ମୁଖ୍ୟ ମନେହୁଏ। ଧର୍ମୀୟ ପଦ୍ଧତି ଭିତରେ ଏହି ପୂଜା ଆରାଧନା ଲୋକମାନଙ୍କ ମଧ୍ୟରେ ଏକ ଆଧ୍ୟାତ୍ମିକ ବା ନୈତିକ ଆବେଗ ସୃଷ୍ଟି କରିପାରିବ ବୋଲି ବିଶ୍ୱାସ କରାଯାଇଥାଏ। ସାଂପ୍ରତିକ ଯୁଗରେ ବସ୍ତୁବାଦୀ ଜୀବନଧାରାଠାରୁ ମୁକ୍ତ ହେବାପାଇଁ ଏହି ପୂଜା ଆରାଧନା ସାହାଯ୍ୟ କରିବ ଓ ଲୋକଙ୍କର ଧର୍ମଚେତନାକୁ ଉଜ୍ଜୀବିତ କରିପାରିବ ବୋଲି ମନେ କରାଯାଏ। ଦ୍ୱିତୀୟରେ ଜନଗଣଙ୍କ ଭିତରେ ଏକ ସାଂସ୍କୃତିକ ସଂହତି ଆଣିବାରେ ସମ୍ମିଳିତ ପୂଜା ବା ଉତ୍ସବର ମହତ୍ତ୍ୱ ରହିପାରେ। ସମାଜର ବିଭିନ୍ନ ଶ୍ରେଣୀର ଓ ବୃତ୍ତିର ଲୋକମାନେ ସମ୍ମିଳିତ ଭାବରେ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରୁଥିବା ହେତୁ ସେମାନେ ପରସ୍ପର ନିକଟବର୍ତ୍ତୀ ହୋଇପାରିବେ। ଏହାଦ୍ୱାରା ନିଜ ନିଜ ଭିତରେ ଆଦାନ ପ୍ରଦାନ ହୋଇପାରିବ ଓ ପାରସ୍ପରିକ ସହଯୋଗର ମନୋଭାବଦ୍ୱାରା ସମାଜରେ ଏକ ସଂହତି ସୃଷ୍ଟି ହେବ। ତୃତୀୟରେ କର୍ମକ୍ଳାନ୍ତ ଜୀବନର ବନ୍ଧନ ଭିତରେ ସାମୂହିକ ପର୍ବପାଳନ ବା ପୂଜା ଆରାଧନା ଏକ ଚିତ୍ତବିନୋଦନର

ପରିବେଶ ସୃଷ୍ଟି କରିବ। ଉତ୍ସବ ମୁଖରିତ ଗ୍ରାମ୍ୟ ବା ସହରର ଜୀବନ ପ୍ରବାହ ପ୍ରତ୍ୟେକ ବ୍ୟକ୍ତି ପାଇଁ ଉପଭୋଗ୍ୟ ହେବ। କର୍ମତତ୍ପର ଜୀବନଧାରାରୁ ଏହି ସାମୟିକ ବିରତି ଜୀବନକୁ ଉପଭୋଗ୍ୟ କରିବା ସହିତ ନୂତନ ପ୍ରେରଣା ଓ ଅଭିନିବେଶ ଯୋଗାଇବ। ଏହି ସବୁ ସକାରାତ୍ମକ ଆଭିମୁଖ୍ୟ ସାମୂହିକ ପୂଜାପାର୍ବଣର ମୁଖ୍ୟ ଉଦ୍ଦେଶ୍ୟ ବୋଲି ବିଚାର କରାଯାଇପାରେ।

ସାଂପ୍ରତିକ ସମୟରେ ସାମୂହିକ ପୂଜା ଓ ଧର୍ମୋତ୍ସବ ପାଳନ ନେଇ ଅଭିନବ ଶ୍ରଦ୍ଧା ସୃଷ୍ଟି ହୋଇଥିବା ଲକ୍ଷ୍ୟ କରାଯାଏ। ଗତ କେତେ ଦଶନ୍ଧି ଭିତରେ ଧର୍ମଗତ ଅଭିନ୍ନତା ନେଇ ଏକ ଅହେତୁକ ସଚେତନତା ମଧ୍ୟ ସମାଜରେ ସୃଷ୍ଟି ହେବା ଦେଖାଯାଏ। ବିଶେଷକରି ଜାତି, ଧର୍ମ ଇତ୍ୟାଦି ପ୍ରସଙ୍ଗ ଗୁଡ଼ିକ ଆମର ରାଜନୈତିକ ଦୃଶ୍ୟପଟରେ ଗୁରୁତ୍ୱପୂର୍ଣ୍ଣ ବୋଲି ରାଜନୈତିକ ନେତୃବର୍ଗ ଯେଉଁ ଭାବନା ସୃଷ୍ଟି କରିଛନ୍ତି ତାହା ସମାଜର ଯୁବଗୋଷ୍ଠୀକୁ ଏକ ଅହେତୁକ ଇଶାରା ଯୋଗାଇଛି। ଅନ୍ୟ ଧର୍ମପ୍ରତି ବିଦ୍ୱେଷମୂଳକ ମନୋଭାବ ଜନିତ ମାନସିକତା ଭିତରୁ ଧର୍ମଗତ ଏକାତ୍ମତା ନେଇ ଅଧିକ ସଚେତନ ହୋଇଉଠୁଥିବା ଯୁବଗୋଷ୍ଠୀ ଧର୍ମୀୟ ବିଶ୍ୱାସ ଗୁଡ଼ିକୁ ଆଧାରକରି ନାନା ପୂଜା ଓ ଆରାଧନା କରିବାରେ ଅତ୍ୟନ୍ତ ଶ୍ରଦ୍ଧା ପ୍ରକାଶ କରୁଛନ୍ତି। ଏହା ସହିତ ପ୍ରଚଳିତ ଶିକ୍ଷା ଓ ଆର୍ଥିକ ବ୍ୟବସ୍ଥା ଭିତରେ ନିଜ ଜୀବନକୁ ବ୍ୟର୍ଥ ମଣୁଥିବା ଶିକ୍ଷିତ ଯୁବକମାନେ ମଧ୍ୟ ସାମୂହିକ ପୂଜାପାର୍ବଣ ନେଇ ଶ୍ରଦ୍ଧା ପ୍ରକାଶ କରିବା ଦୃଷ୍ଟିଗୋଚର ହୋଇଥାଏ। ଅସମ୍ଭବ ପ୍ରତିଯୋଗିତା ଭିତରେ ନାନା ମାନସିକ ଉତ୍ତେଜନାର ଶିକାର ହେଉଥିବା ଯୁବକମାନେ ନିଜର ନୈରାଶ୍ୟକୁ ସାମୟିକ ଭାବରେ ଭୁଲିଯିବା ପାଇଁ ସାମୂହିକ ଭାବରେ ପୂଜା ପର୍ବ ପାଳନ କରିବା ପାଇଁ ଏବେ ତତ୍ପର ହୋଇ ଉଠୁଥିବା ଦେଖାଯାଏ। ପ୍ରାଚୀନ କାଳରେ ରହସ୍ୟମୟ ପ୍ରକୃତି ଓ ଜୀବନର ଘନଘଟାକୁ ବୁଝିବା ନେଇ ଅସାମର୍ଥ୍ୟତା ଭିତରୁ ଯେପରି ଅତୀନ୍ଦ୍ରିୟ ଭାବନା ସକଳ ଆସିଥିଲା ସଂପ୍ରତି ତୀବ୍ର ପ୍ରତିଯୋଗିତା, ମାନସିକ ଦ୍ୱନ୍ଦ୍ୱ ଓ ସ୍ୱାବଲମ୍ବୀ ହେବାରେ ଅସଫଳତା ଭିତରୁ ଯୁବକମାନେ ପୂଜା ପର୍ବ ପାଳନ କରିବା ନେଇ ଶ୍ରଦ୍ଧା ଦେଖାଇବା ଏକ ବିଡମ୍ବନା କହିଲେ ଅତ୍ୟୁକ୍ତି ହେବନାହିଁ।

ସମାଜରେ ପ୍ରଚଳିତ ଥିବା ବହୁ ପୂଜାପାର୍ବଣ ମଧ୍ୟରେ ଲକ୍ଷ୍ମୀପୂଜା ଅନ୍ୟତମ। କେତେକ ଅଞ୍ଚଳ ନିର୍ଦ୍ଦିଷ୍ଟ ପର୍ବପର୍ବାଣୀ ପାଳନ କରିବାରେ ଯେପରି ସୁପ୍ରସିଦ୍ଧ ସେହିପରି

ଲକ୍ଷ୍ମୀପୂଜା ପାଳନ କ୍ଷେତ୍ରରେ ଢେଙ୍କାନାଳ ଓଡିଶାରେ ସୁବିଦିତ। ସହରର ବିଭିନ୍ନ ବସ୍ତି ମାନଙ୍କରେ ପୂଜାମଣ୍ଡପ କରି ଲକ୍ଷ୍ମୀଙ୍କର ଆରାଧନା କରିବା କ୍ଷେତ୍ରରେ ପ୍ରତିଯୋଗିତା (ସହଯୋଗିତା ମଧ୍ୟ) ସହରଟିକୁ ସେହି ସମୟରେ ଉତ୍ସବମୁଖର କରି ରଖିଥାଏ। ଏହି ପୂଜାଦ୍ୱାରା ସାମୂହିକ ଆରାଧନାର ସକାରାତ୍ମକ ଆଭିମୁଖ୍ୟ କେତେ ଦୂର ବାସ୍ତବରେ ପୂରଣ ହୋଇପାରୁଛି ତାହା ଅନୁଶୀଳନର ବସ୍ତୁ। ଏହିପରି ପୂଜାଦ୍ୱାରା ଆଧ୍ୟାତ୍ମିକ ବା ନୈତିକ ଭାବନା କେତେଦୂର ବୃଦ୍ଧି ହେଉଛି କିମ୍ବା ସାମାଜିକ ସଂହତି କ୍ଷେତ୍ରରେ ଏହା କେତେଦୂର ସହାୟକ ହେଉଛି ତାହା ଅଧ୍ୟୟନ ସାପେକ୍ଷ। ଯଦିବି ଯୁକ୍ତି ଦୃଷ୍ଟିରୁ ଏହି ସକାରାତ୍ମକ ଆଭିମୁଖ୍ୟ ସାଧିତ ହେଉଛି ବୋଲି ଗ୍ରହଣ କରାଯାଏ ତଥାପି ଏହାର କେତେକ ଅପସାଂସ୍କୃତିକ ପରିଣାମ ଯେ ନ ରହିଛି ତାହା ଅସ୍ୱୀକାର କରିହେବ ନାହିଁ। ବିଭିନ୍ନ ସହରରେ ପୂଜା ପର୍ବକୁ ନେଇ ବସ୍ତି ବସ୍ତି ମଧ୍ୟରେ ବେଳକେ ଉତ୍ତେଜନାର ପରିବେଶ ଓ ତିକ୍ତତା ସୃଷ୍ଟି ହେବା ସୁବିଦିତ ଅଟେ। ଏପରିକି କେତେକ ସହରରେ ଧର୍ମୀୟ ପୂଜା ଓ ଉତ୍ସବରୁ ବା ମେଢ ବିସର୍ଜନରୁ ଦଙ୍ଗା ଜନିତ ପରିବେଶ ସୃଷ୍ଟି ହେବା ଘଟଣା ବିରଳ ନୁହେଁ। ସେହିପରି ପୂଜାପାର୍ବଣ ନେଇ ବହୁ ଜନସମାଗମ ଜନିତ ପରିସ୍ଥିତିରୁ ପରିବେଶ ପ୍ରଦୂଷଣର ସମ୍ଭାବନା ମଧ୍ୟ ଥାଏ। ବିଦ୍ୟୁତ ଶକ୍ତିର ଆଶାତୀତ ଅପବ୍ୟୟ ଏହି ପୂଜା ସମୟରେ ହୋଇଥାଏ। ସେହିପରି ଚାନ୍ଦା ଆଦାୟ ଓ ତଦ୍‌ଜନିତ ଜୁଲମ୍ ଆମ ନାଗରିକ ବିଶୃଙ୍ଖଳାର ନିଦର୍ଶନ ଅଟେ। ସଂପ୍ରତି ପୂଜାପାର୍ବଣକୁ ଆଳକରି ଯାତ୍ରୀ, ଗାଡି ମଟର ଓ ବସ୍ତିମାନଙ୍କରୁ ଯେପରି ଚାନ୍ଦା ଆଦାୟ କରାଯାଏ ଓ ଜଣେ ସାଧାରଣ ମଣିଷ ନିଜକୁ ଅସହାୟ ମନେକରିଥାଏ ତାହା ଅନୁଭବୀ ହିଁ ଜାଣେ।

ପ୍ରାଚୀନ ଯୁଗର କେତେକ ପରମ୍ପରା ଆଧୁନିକ ବୈଜ୍ଞାନିକ ଯୁଗରେ ଅଧିକ ଔପଚାରିକ ଢ଼ଙ୍ଗରେ ପାଳିତ ହେବା ବିଡମ୍ବନାର ବିଷୟ ଅଟେ। ଯେଉଁ ପାରଲୌକିକ ବିଶ୍ୱାସର ପୃଷ୍ଠଭୂମିରେ ଏହି ସବୁ ପୂଜା ଆରାଧନା ପାଳିତ ହେଉଥିଲା ତାହା ଆଧୁନିକ ଯୁଗରେ ଓ ସାଂପ୍ରତିକ ଜୀବନଧାରାରେ କେତେଦୂର ମହତ୍ତ୍ୱପୂର୍ଣ୍ଣ ତାହା ବିଚାର ସାପେକ୍ଷ। ସାମାଜିକ ଜୀବନ ଧାରାରେ ପୂଜାପାର୍ବଣ ଯେଉଁ ସାମନ୍ତବାଦୀ ଭାବନାକୁ ପୁଷ୍ଟ କରି ଆସିଥିଲା ତାହା ଯେ ଏକ ଗଣତାନ୍ତ୍ରିକ ରାଷ୍ଟ୍ରରେ ତଥା ବ୍ୟକ୍ତିମର୍ଯ୍ୟାଦା ପୃଷ୍ଠଭୂମିରେ ଅପାଙ୍‌କ୍ତେୟ ତାହା ମନେହୁଏ। ତଥାପି ଏ କ୍ଷେତ୍ରରେ ଯେଉଁ ବିଧି, ପରମ୍ପରା ଇତ୍ୟାଦିକୁ ପାଳନ କରାଯାଇଥାଏ ତାହା ସାମାଜିକ ମନସ୍ତତ୍ତ୍ୱ ଭିତରେ ବସାବାନ୍ଧି

ରହିଥିବା ସାମନ୍ତବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ। ଏହା ସହିତ ସଂପ୍ରତି ବୈଜ୍ଞାନିକ ସାଧନ ଜରିଆରେ ଆମର ପୂଜାପାର୍ବଣକୁ ଅଧିକ କୋଳାହଳପୂର୍ଣ୍ଣ କରିବା ବିଡମ୍ବନାର ବିଷୟ ଅଟେ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ହେତୁବାଦ ଜନିତ ବିଚାରଶୀଳତା, ମାନବିକ ସମ୍ବେଦନଶୀଳତା ଓ ନାଗରିକ ଶୃଙ୍ଖଳାବୋଧ ଆମ ସମାଜରେ ବିକାଶଲାଭ କରିପାରୁନଥିବା ବେଳେ ପୂଜା ପାର୍ବଣର ପ୍ରାବଲ୍ୟ ବୃଦ୍ଧି ହେବା ବେଶ୍ କୌତୁହଳପ୍ରଦ ମନେହୁଏ। ନିଜର ସାମାଜିକ କର୍ତ୍ତବ୍ୟ କ୍ଷେତ୍ରରେ ଯେଉଁ ସଚେତନତା ରହିବା କଥା ତାହା ସମାଜରୁ ଦ୍ରୁତ ହ୍ରାସ ପାଉଥିବାବେଳେ ପାରଲୌକିକ ବିଶ୍ୱାସ, ଅତୀନ୍ଦ୍ରିୟ ମନୋଭାବ ଓ ଧର୍ମୀୟ କର୍ମକାଣ୍ଡ ପ୍ରତି ଆଗ୍ରହ ବୃଦ୍ଧି ପାଇବା ଏକ କ୍ଷୟଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ। ଜୀବନର ଆବଶ୍ୟକତା ପୂରଣ ପାଇଁ ରାଜନୈତିକ ବ୍ୟବସ୍ଥା ଓ ପ୍ରଶାସନ ଉପରେ ଆସ୍ଥା ସ୍ଥାପନ କ୍ଷେତ୍ରରେ ବ୍ୟର୍ଥ ହେଉଥିବା ସାଧାରଣ ମଣିଷ ଅଲୌକିକ ଓ ଅତୀନ୍ଦ୍ରିୟ ଶକ୍ତିରେ ବିଶ୍ୱାସ ସ୍ଥାପନ କରିବାକୁ ଯେ ବାଧ ହୁଏ ତାହା ମନେହୁଏ। ଭୟରୁ ଯେପରି ମଣିଷର ଈଶ୍ୱର ବିଶ୍ୱାସ ଦୃଢ଼ ହୋଇଥାଏ, ସେହିପରି ଅସହାୟ ପରିସ୍ଥିତି ଭିତରେ ଅଲୌକିକ ଶକ୍ତିର ଆଶ୍ରୟ ନେବା ମଣିଷର ସାଧାରଣ ମନସ୍ତତ୍ତ୍ୱ ଅଟେ। ଆମ ସମାଜରେ ଔପଚାରିକ ପୂଜାପାର୍ବଣ ତଥା ମନ୍ଦିର ନିର୍ମାଣ ଦିଗରେ ଆମର ବ୍ୟୟିତ ଶକ୍ତି ଆମ ଆଧାତ୍ମିକ ଉତ୍କର୍ଷ ପରିବର୍ତ୍ତେ ନାଗରିକ ଶୃଙ୍ଖଳା କ୍ଷେତ୍ରରେ ଅବକ୍ଷୟର ସୂଚନା ଦିଏ।

ଯଦି ଆରାଧ ଦେବୀ ବା ଦେବତା ପ୍ରକୃତରେ ମଣିଷର ପ୍ରାର୍ଥନାକୁ ଶୁଣୁଥାନ୍ତେ ତେବେ ମଣିଷର ଚରିତ୍ର ଓ ଦୃଷ୍ଟିଭଙ୍ଗୀରେ ସେ ପରିବର୍ତ୍ତନ ଆଣନ୍ତେ। ମଣିଷ ଭିତରେ ଏହି ଭାବନା ସୃଷ୍ଟିକରନ୍ତେ ଯେ ଅନ୍ତରର ନିର୍ମଳ ଭାବକୁ ସେ (ଆରାଧ୍ୟ ଦେବ ବା ଦେବୀ)ଗ୍ରହଣ କରନ୍ତି ଏପରି କୋଳାହଳମୟ ପୂଜାକୁ ନୁହେଁ। ଏକ ଉତ୍ତମ ମନୋଭାବ, ନିଃସ୍ୱାର୍ଥପର ଭାବନା ଓ ସମ୍ବେଦନଶୀଳ ଦୃଷ୍ଟିକୁ ସେ ଅଧିକ ଶ୍ରଦ୍ଧା କରନ୍ତି। କିନ୍ତୁ ମାଇକର କାନଫଟା ସଂଗୀତ, ନାଲି ନୀଳ ଆଲୁଅର ଝଲକ, କୋଳାହଳପୂର୍ଣ୍ଣ ପରିବେଶ ପୂଜକ ମାନଙ୍କର ତୁଚ୍ଛା ଔପଚାରିକତା ଓ ଆୟୋଜକ ମାନଙ୍କର ଜୁଲମ୍ ତାଙ୍କ ପାଇଁ ସଂପୂର୍ଣ୍ଣ ଅତୃପ୍ତିକର।

ବିଡ଼ମ୍ବନାର ବିଷୟ ଲକ୍ଷ୍ମୀ, ଗଣେଶ, ସରସ୍ୱତୀ ଇତ୍ୟାଦି ଦେବା ଦେବୀଙ୍କୁ ଏତେ ଆଡମ୍ବର ସହ ପୂଜା କରୁଥିବା ଏ ଦେଶର ଜନଗଣ ଅଶିକ୍ଷା, ଦାରିଦ୍ର୍ୟ ଓ ରୋଗ ଭିତରେ ଜର୍ଜରିତ ହୋଇ ରହିଛନ୍ତି। ଦୁର୍ନୀତି ଓ ସାମାଜିକ କର୍ତ୍ତବ୍ୟ ପ୍ରତି ଉଦାସୀନତା ଜାତୀୟ ଜୀବନରେ ବ୍ୟାପକ ହୋଇ ରହିଛି। ଆମର ପୂଜା ଓ ତଥାକଥିତ ଆଧ୍ୟାତ୍ମିକ କାର୍ଯ୍ୟରୁ କିଛି ନୈତିକ ପ୍ରଭାବ ବାସ୍ତବ ଜୀବନରେ ପ୍ରତିଫଳିତ ହେଉନାହିଁ।

ତେବେ ପୂଜା ପାର୍ବଣରୁ ସଂପ୍ରତି ଅନ୍ୟ ଏକ ଗୁରୁତର ସମସ୍ୟା ମୁଣ୍ଡ ଟେକୁଛି। ମାଟିରେ ପ୍ରସ୍ତୁତ ମୂର୍ତ୍ତିମାନଙ୍କୁ ଆକର୍ଷଣୀୟ କରିବାକୁ ମୂର୍ତ୍ତିମାନଙ୍କରେ ରାସାୟନିକ ରଙ୍ଗ ପ୍ଲାଷ୍ଟର ଅଫ ପ୍ୟାରିସ ବ୍ୟବହୃତ ହେଉଛି। ମୂର୍ତ୍ତିରେ ବ୍ୟବହୃତ ହେଉଥିବା ଏହି ରାସାୟନିକ ରଙ୍ଗ ଜଳରେ ମିଶି ଜଳକୁ ପ୍ରଦୂଷିତ କରୁଛି। ସେହି ରଙ୍ଗ ଜଳରେ ପ୍ରବାହିତ ହୋଇ କେତେକ ଜଳଚର ପ୍ରାଣୀଙ୍କ ଦେହକୁ ଯାଉଛି ଓ ପରୋକ୍ଷରେ ମଣିଷ ଶରୀରକୁ ଆସି ମାରାତ୍ମକ ରୋଗ ସୃଷ୍ଟି କରୁଛି। କର୍କଟ ରୋଗ ଭଳି ମାରାତ୍ମକ ରୋଗମାନ ପ୍ରଦୂଷିତ ଖାଦ୍ୟ ଓ ଜଳରୁ ସୃଷ୍ଟି ହେବା କୁହାଯାଉଛି। ପୂଜାପାର୍ବଣ ଆମ ପରିବେଶ ପ୍ରଦୂଷଣର କାରଣ ହେବା ଓ ମାରାତ୍ମକ ରୋଗ ସୃଷ୍ଟିକରିବା ଆମ ପାଇଁ ବିଡମ୍ବନା କହିଲେ ଅତ୍ୟୁକ୍ତି ହେବ ନାହିଁ।

ଉପସଂହାରରେ, ଆମ ଦେଶ ପୃଥିବୀରେ ଏକ ଅନଗ୍ରସର ରାଷ୍ଟ୍ର। ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ଶିଶୁଶ୍ରମିକ ପ୍ରଥା ଇତ୍ୟାଦି ବହୁବିଧ ସମସ୍ୟା ଆମ ଦେଶରେ ରହିଛି। ସେହିପରି ଭ୍ରଷ୍ଟାଚାର, ଦୁର୍ନୀତି, ନାଗରିକ ବିଶୃଂଖଳା ଆମ ଜନଜୀବନରେ ବେଶ୍ ବ୍ୟାପକ। ଏତେ ପୂଜା ପାର୍ବଣ ଆମ ସାମାଜିକ ଜୀବନକୁ ଉନ୍ନତ କରିବାରେ ବା ଜୀବନର ଗୁଣାତ୍ମକ ମାନ ବୃଦ୍ଧି ଦିଗରେ କୌଣସି ଭୂମିକା ନେଇପାରୁ ନାହିଁ, ବରଂ ଜନଜୀବନରେ ନୈତିକ ଅବକ୍ଷୟ ବୃଦ୍ଧି ପାଇବାରେ ଲାଗିଛି। ଯେତେ ଶକ୍ତି, ସମୟ, ଅର୍ଥ ଏସବୁ ଦିଗରେ ବିନିଯୋଗ ହେଉଛି, ସେ ସବୁ ଯଦି ଗଠନମୂଳକ କାର୍ଯ୍ୟରେ ବିନିଯୋଗ ହୋଇପାରନ୍ତା, ସମ୍ଭବତଃ ଆମ ସମାଜରୁ ଦାରିଦ୍ର୍ୟ ଅନେକାଂଶରେ ଦୂର ହୋଇପାରନ୍ତା। ଜୀବନର ବାସ୍ତବ ସମସ୍ୟା ପ୍ରତି ଉଦାସୀନ ରହି ପୂଜା ପାର୍ବଣରେ ଆମେ ମସଗୁଲ ହେବା ଆମ ବୌଦ୍ଧିକ ଦାରିଦ୍ର୍ୟର ସୂଚନା ଦିଏ।



# ବିବର୍ତ୍ତନଧାରାରେ ଶ୍ରୀଜଗନ୍ନାଥ : ଏକ ଦୃଷ୍ଟିପାତ

ହରିହର କାନୁନ୍‌ଗୋଙ୍କ ରଚିତ ପୁସ୍ତକ 'ବିବର୍ତ୍ତନଧାରାରେ ଶ୍ରୀଜଗନ୍ନାଥ' ଓଡ଼ିଆ ଭାଷାସାହିତ୍ୟକୁ ଜଗନ୍ନାଥ ପ୍ରତ୍ୟୟ ଉପରେ ଏକ ବିଶିଷ୍ଟ ଅବଦାନ। ଜଗନ୍ନାଥ ସଂସ୍କୃତିର ବିଭିନ୍ନ ଦିଗ ଉପରେ ଓଡିଆରେ ରାଶିରାଶି ପୁସ୍ତକ ରହିଥିଲେ ମଧ କାନୁନ୍‌ଗୋଙ୍କର ଏହି ପୁସ୍ତକ ଏକ ନୂତନ ଦିଗ ଉନ୍ମୋଚନ କରିଛି। ପ୍ରାକ୍-ଐତିହାସିକ ଯୁଗରୁ ଭାରତୀୟ ଜନଗୋଷ୍ଠୀର ଧର୍ମଧାରା କିପରି ଓଡିଶା ଭୂଖଣ୍ଡରେ ଏକାଦଶ-ଦ୍ୱାଦଶ ଶତାବ୍ଦୀରେ ଜଗନ୍ନାଥ ଭାବନାର ଉଦ୍ରେକ କରାଇଛି ତାହାର କ୍ରମବିବର୍ତ୍ତନର ଇତିହାସ ପୁସ୍ତକରେ ଦେଇଛନ୍ତି। ସେହିପରି ଜଗନ୍ନାଥ ମୂର୍ତ୍ତି ଗଠନ ଓ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ ପର୍ଯ୍ୟନ୍ତ ଜଗନ୍ନାଥ ଭାବନାର ବିକାଶକୁ ଲେଖକ ଯୁକ୍ତିଯୁକ୍ତ ଭାବେ ଉପସ୍ଥାପିତ କରିଛନ୍ତି।

ପୁସ୍ତକଟି ଦୁଇଟି ଭାଗରେ ବିଭକ୍ତ। ପ୍ରଥମ ଭାଗରେ ଲେଖକ ଭାରତବର୍ଷରେ ରହିଥିବା ବିଭିନ୍ନ ଧାର୍ମିକ ପରମ୍ପରାଗୁଡିକର ଐତିହାସିକ ବିକାଶକୁ ଦର୍ଶାଇଛନ୍ତି ଓ ଦ୍ୱିତୀୟ ଭାଗରେ ପ୍ରାଚୀନ ଓଡିଶାର ଭୌଗୋଳିକ, ରାଜନୈତିକ ଓ ସାଂସ୍କୃତିକ ବିକାଶଧାରାର ବିବରଣୀ ପ୍ରଦାନ କରିଛନ୍ତି। ଦ୍ୱିତୀୟ ଭାଗରେ ସାଂସ୍କୃତିକ ଓ ଧାର୍ମିକ ଚେତନା ଭିତର ଦେଇ ଜଗନ୍ନାଥ ଉପାସନାର ବୈଶିଷ୍ଟ୍ୟ, ଐତିହାସିକ ଭିତ୍ତିଭୂମି, ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି ଓ ଆଦିପୀଠ ସମ୍ବନ୍ଧରେ ତଥ୍ୟଭିତ୍ତିକ ସିଦ୍ଧାନ୍ତର ଅବତାରଣା କରିଛନ୍ତି। ଜଗନ୍ନାଥ ଏକ ବୌଦ୍ଧଦେବତା ନା ହିନ୍ଦୁ ଦେବତା ଥିଲେ ଏବଂ ଜଗନ୍ନାଥ ଉପାସନାର ଆଦିପୀଠ କେଉଁଠି ଥିଲା ତାହା ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି। ନିଜର ସିଦ୍ଧାନ୍ତକୁ ବସ୍ତୁନିଷ୍ଠ ତଥ୍ୟ ଆଧାରରେ ପ୍ରତିଷ୍ଠା କରିବାକୁ ପ୍ରୟାସ କରିଛନ୍ତି।

ଆଧ୍ୟାତ୍ମିକ ଚେତନାର କ୍ରମବିକାଶ ପୃଷ୍ଠଭୂମିରେ ମଣିଷର ବିସ୍ମୟ ଓ ଅନୁସନ୍ଧିତ୍ସାରୁ ତା'ର ଆଧ୍ୟାତ୍ମିକ ଚେତନାର ଭିତ୍ତି ଆରମ୍ଭ ହୋଇଛି ବୋଲି ଲେଖକ ଦର୍ଶାଇଛନ୍ତି। ଏହି ବିଶାଳ ଓ ରହସ୍ୟମୟ ବିଶ୍ୱ ବିଷୟରେ ମଣିଷ ଭାବିଛି ଯେ ଦୃଶ୍ୟମାନ ଜଗତର ଅନ୍ତରାଳରେ କିଛି ଆଧିଦୈବିକ ନିୟମ ରହିଛି ଓ ସେହି ନିୟମର କେହି ନିୟାମକ ରହିଛନ୍ତି। ଏହି ପରିକଳ୍ପନା ବ୍ୟକ୍ତିର ଚେତନାକୁ ଆଧ୍ୟାତ୍ମିକ ବା ଅନ୍ତର୍ମୁଖୀ କରାଇଛି। ଏହି ଭାବନାରୁ ମଣିଷ କଳ୍ପନା କରିଛି ଯେ ସଜୀବ ଓ ନିର୍ଜୀବ ପ୍ରତ୍ୟେକ ବସ୍ତୁ ଭିତରେ ଏକ ଆତ୍ମା ବିଦ୍ୟମାନ ଅଛି। ମୃତ୍ୟୁର ରହସ୍ୟ ସଂପର୍କରେ ସେ ନାନା କଥା କଳ୍ପନା କରିଛି ଓ ଆତ୍ମାର ଅମରତ୍ୱ ବିଷୟରେ ତାତ୍ତ୍ୱିକ ବିଚାର ସୃଷ୍ଟି ହୋଇଛି। ଏହି ବିଶ୍ୱାସ ଆଧାରରେ ତା'ର ଉପାସନା ରୂପ ନେଇଛି।

ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଆବିଷ୍କାରରୁ ଆଦିମାନବ ଗୋଷ୍ଠୀରେ ବୃକ୍ଷପୂଜା ପ୍ରଚଳିତ ଥିବା ଜଣାପଡେ। ମଣିଷ ଯାଯାବର ଭାବେ ଜୀବନ ବଞ୍ଚୁଥିବା ବେଳେ ବୃକ୍ଷର ଫଳମୂଳ ତା'ର ଖାଦ୍ୟ ଥିଲା, ପ୍ରାକୃତିକ ବିପଦ ଓ ହିଂସ୍ରଜନ୍ତୁଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ ସେ ବୃକ୍ଷଡାଳରେ ଆଶ୍ରୟ ନେଉଥିଲା। କୃତଜ୍ଞତା ସ୍ୱରୂପ ଆଦିମ ଅଧିବାସୀମାନେ ବିଶ୍ୱାସ କଲେ ଯେ, ଦେବତା ବୃକ୍ଷରେ ବାସକରନ୍ତି, ସେହିଠାରୁ ବୃକ୍ଷପୂଜାର ପରମ୍ପରା ସୃଷ୍ଟି ହେଲା। ଏହି ବୃକ୍ଷ ଉପାସନାରୁ ଖମ୍ବ ବା ଦାରୁ ଉପାସନା ମଧ୍ୟ ଦେଇ ବହୁ ପରେ ଜଗନ୍ନାଥ ମୂର୍ତ୍ତିର କଳ୍ପନା କରାଗଲା।

ବୃକ୍ଷ ବା ଖମ୍ବ ଭିତରେ ଦିବ୍ୟସତ୍ତା ବିଦ୍ୟମାନ ଏହି ଭାବନାରୁ ପୂଜାର ବିଭିନ୍ନ ବିଧିବିଧାନ ସୃଷ୍ଟି ହେଲା। ଯାଯାବର ଜୀବନ ପ୍ରଣାଳୀରେ ଖାଦ୍ୟ ଅନ୍ୱେଷଣ ପାଇଁ ବିଭିନ୍ନ ସମୟରେ ସ୍ଥାନ ପରିବର୍ତ୍ତନ କରିବାକୁ ପଡୁଥିଲା, ବସ୍ତୁତଃ ନିର୍ଦ୍ଧାରିତ ସଂକେତ ଯୁକ୍ତ ବୃକ୍ଷ ସବୁ ସ୍ଥାନରେ ମିଳୁନଥିବା ହେତୁ ଖମ୍ବପୂଜା ବୃକ୍ଷପୂଜାର ସ୍ଥାନ ଗ୍ରହଣ କଲା। ଖମ୍ବମାନଙ୍କୁ ବସ୍ତି ବା ଗୃହ ବାହାରେ ପୋତି ଆଦିମ ଲୋକମାନେ ତାକୁ ପୂଜା କରୁଥିଲେ। ତେବେ ଦାରୁନିର୍ମିତ ଖମ୍ବଗୁଡିକ ନିର୍ଦ୍ଦିଷ୍ଟ ସମୟ ଭିତରେ କ୍ଷୟପ୍ରାପ୍ତ ଯୋଗୁଁ ଖମ୍ବକୁ ସମୟ ଅବଧି ଭିତରେ ପରିବର୍ତ୍ତନ କରୁଥିଲେ। ଏକ ନୂତନ ଖମ୍ବ ସ୍ଥାପନ ବେଳେ ଖମ୍ବ ମୂଳରେ ଧାତୁକୁ ଜୀବନ୍ୟାସ ଦେଇ ପୋତୁଥିଲେ। ଆଦିମ ଲୋକମାନେ ତାଙ୍କର ଅନ୍ଧବିଶ୍ୱାସଜନିତ ଭାବନାରେ ରହି ଖମ୍ବ ବା ଦାରୁକୁ ଉପାସନା କଲେ।

ଭାରତର ମୂଳ ଅଧିବାସୀ ଶବର ନାମରେ ପରିଚିତ। ଶବର ଏକ ଜାତିକୁ ନ ବୁଝାଇ ଏକ ଜନଗୋଷ୍ଠୀ ବା ଆଦିବାସୀ ସଂପ୍ରଦାୟକୁ ସୂଚିତ କରୁଛି। ଶବରୀ ସଭ୍ୟତା ଓ ସଂସ୍କୃତିର ପୃଷ୍ଠପୋଷକ ଜନଜାତିମାନେ କୌଣସି ବ୍ୟକ୍ତିଗତ ଈଶ୍ୱର ଉପାସନା କରୁନଥିଲେ ଓ ବୃକ୍ଷ ବା ଦାରୁକୁ ନିତ୍ୟ ବୋଲି ମଧ ଗ୍ରହଣ କରୁନଥିଲେ। ଦାରୁକୁ ସେମାନେ ଜୀବର ଘଟ ବୋଲି ଭାବି ତା' ମଧରେ ସ୍ଥାପିତ ପଦାର୍ଥକୁ ଜୀବାତ୍ମା ଭାବେ ପୂଜା କରୁଥିଲେ।

ସେହି ଅତୀତରେ ରାଷ୍ଟ୍ର ବା ଦେଶ ଇତ୍ୟାଦିର ଭାବନା ନଥିଲା, ବିଶାଳ ଅଞ୍ଚଳ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା ଓ ଲୋକସଂଖ୍ୟା ଅତି ସୀମିତ ଥିଲା। ତେବେ ସାମାଜିକ ଅସ୍ମିତା ଥିବା ଏକ ଗୋଷ୍ଠୀ ଯାଯାବର ଭାବରେ ଯେଉଁ ଅଞ୍ଚଳରେ ରହୁଥିଲେ ସେଠାରେ ସେମାନଙ୍କର ଧାର୍ମିକ ବିଶ୍ୱାସକୁ ନେଇ ପରମ୍ପରାମାନ କାଳକ୍ରମେ ସୃଷ୍ଟି କରିଥିଲେ। ଆଦିମ ଜନଜାତିର ଲୋକମାନେ ବାସ କରୁଥିବା ଅଞ୍ଚଳ ଶବରୀ ସ୍ଥାନ ବୋଲି ପରିଚିତ ଥିଲା; ଓଡ୍ର, କଳିଙ୍ଗ, କୋଶଳ ଓ ଉତ୍କଳ ଏହାର ଅଂଶବିଶେଷ ଥିଲା। ଏହି ଆଦିମ ଅଧିବାସୀଙ୍କର ଯେଉଁ ଉପାସନା ପଦ୍ଧତି ଥିଲା, ତାହା ପରବର୍ତ୍ତୀ ପରିଭାଷାରେ ତନ୍ତ୍ର ସାଧନା କହିଲେ ଅତ୍ୟୁକ୍ତି ହେବନାହିଁ। ସେମାନଙ୍କ ମଧରେ ପୁରୁଷ ପ୍ରକୃତିର ଉପାସନା ରହିଥିଲା। ତନ୍ତ୍ରରେ ଭୈରବ ଓ ଭୈରବୀ ଉପାସନାକୁ ଜନଜାତିର ଲୋକମାନେ 'ଜଗନ୍ତ' ଓ କାଂପିଲ୍ୟମ୍ମା (ଧରଣୀମାତା) କହୁଥିଲେ ବୋଲି ଲେଖକ ଦର୍ଶାଇଛନ୍ତି।(ପୃ.୧୬)। କାଂପିଲ୍ୟମ୍ମା ଜଗନ୍ତ ଦେବତାଙ୍କର ଭଉଣୀବୋଲି ଆଦିବାସୀ ସଂପ୍ରଦାୟରେ ବିଶ୍ୱାସ ରହିଥିଲା। ବୃକ୍ଷଦେବତାରୁ ଖମ୍ବଦେବତା ଓ ପୁରୁଷ ପ୍ରକୃତିର (ଜଗନ୍ତ ଓ କାଂପିଂଲ୍ୟମ୍ମା) ଉପାସନାର ବିବର୍ତ୍ତନଧାରା ଶହ ଶହ ବର୍ଷର ବ୍ୟବଧାନ ଭିତରେ ଆଦିବାସୀଙ୍କ ମଧରେ ପରମ୍ପରା ହୋଇଗଲା।

ଏହି ଧାର୍ମିକ ପରମ୍ପରା ଥିବା ଏକ ଜନଗୋଷ୍ଠୀ ସହ ଏକ ଭିନ୍ନ ଜନଗୋଷ୍ଠୀ ନାଗ ସଂପ୍ରଦାୟର ଆଦାନ ପ୍ରଦାନ ବହୁ ଅତୀତରେ ଅର୍ଥାତ୍ ସିନ୍ଧୁ ସଭ୍ୟତାର ପୂର୍ବରୁ ସୃଷ୍ଟି ହୋଇଥିଲା। ତୁରାନୀୟ ନାମରେ ଏହି ଭିନ୍ନ ଜନଗୋଷ୍ଠୀ (ଆଧୁନିକ ଇରାକ-ଇରାନରୁ) ଭାରତ ଭୂଖଣ୍ଡକୁ ଆସିଥିଲେ। ସେମାନେ ନାଗଗୋଷ୍ଠୀ ଭାବରେ ପରିଚିତ। ନାଗମାନେ ଥିଲେ ଶୈବ ଓ ଲିଙ୍ଗ ଥିଲା ଏମାନଙ୍କର ଆରାଧ ଦେବତା। ସେମାନେ ଶିବଙ୍କର କୌଣସି ପ୍ରତିମୂର୍ତ୍ତି ପୂଜା ନ କରି କାଠ ବା ପଥରର ଲିଙ୍ଗପୂଜା କରୁଥିଲେ।

ସେମାନଙ୍କର ଧାର୍ମିକ ଚିହ୍ନ ଥିଲା ସର୍ପ। ଶବର ଓ ନାଗମାନେ ଶହଶହ ବର୍ଷର ଆଦାନ ପ୍ରଦାନ ଭିତରେ ପରସ୍ପରକୁ ପ୍ରଭାବିତ କରିଥିଲେ। ଆଦିମ ଅଧିବାସୀଙ୍କର ବୃକ୍ଷ ବା ଖମ୍ବପୂଜା ସହ ନାଗମାନଙ୍କର ଶିବ ବା ଲିଙ୍ଗପୂଜା ଭିତରେ ସମନ୍ୱୟ ସ୍ୱରୂପ ଏକ ନୂତନ ସାଂସ୍କୃତିକ ଧାରା ସୃଷ୍ଟି ହୋଇଥିଲା। ପଥର ବା ବୃକ୍ଷକୁ କାଟି ତାକୁ ଲିଙ୍ଗାକୃତି ସହିତ ସାମଞ୍ଜସ୍ୟ ରଖି ଖମ୍ବ ଆକାରରେ ଆରାଧନା କରାଗଲା। ଆଦିମ ଜନଜାତିର ଖମ୍ବପୂଜା ଓ ନାଗମାନଙ୍କର ଲିଙ୍ଗପୂଜାରୁ ଶାକ୍ତ ଓ ଶୈବ ଦୁଇଟି ଧାର୍ମିକ ଧାରା ପରେ ସୃଷ୍ଟି ହୋଇଥିଲା।

ତେବେ ଶାବରୀ ସଭ୍ୟତା ଓ ନାଗ ସଭ୍ୟତାର ସମ୍ମିଶ୍ରଣରେ ଯେଉଁ ସମନ୍ୱୟର ଧାରାଟି ଆସିଥିଲା ତାହା ହେଉଛି ବ୍ରାତ୍ୟ ସଭ୍ୟତା। ଏହା ମୁଖ୍ୟତଃ ଆଧୁନିକ ଭାରତ ଭୂଖଣ୍ଡର ପୂର୍ବଭାଗରେ (ସେତେବେଳର ନାମ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ ଇତ୍ୟାଦି ରାଜ୍ୟ) ବିସ୍ତାର ଲାଭ କରିଥିଲା। ଅଥର୍ବବେଦ ଏମାନଙ୍କର ପ୍ରଧାନ ଗ୍ରନ୍ଥ ଥିଲା ଓ ଏମାନେ ଶିବଲିଙ୍ଗ ପୂଜା କରିବା ସହ ଆଧାତ୍ମିକ ସାଧନାରେ ଯୋଗପନ୍ଥାକୁ ଗୁରୁତ୍ୱ ଦେଉଥିଲେ। ବ୍ରାତ୍ୟ ସଭ୍ୟତା ସମୟରେ ଓଡିଶାର ଦୁଇଟି ରାଜଶକ୍ତି କଳିଙ୍ଗ ଓ ଓଡ୍ର ବିକାଶ ଲାଭ କରିଥିଲା।

ଅଥର୍ବବେଦ ଏହି ସମୟରେ ରଚିତ ହେବା ସହ ସାଂଖ୍ୟଦର୍ଶନ ମଧ୍ୟ ଉଦ୍ଭବ ହୋଇଥିଲା । ଭାରତୀୟ ଦର୍ଶନ ଇତିହାସରେ ସାଂଖ୍ୟ ଦର୍ଶନ ଥିଲା ପ୍ରାଚୀନତମ। ଏହା କପିଳଙ୍କ କୃତ ଓ ଏହି ଦର୍ଶନରେ ପ୍ରକୃତି ଓ ପୁରୁଷକୁ ଦୁଇ ଆଦିସତ୍ତା ଭାବେ ଗ୍ରହଣ କରାଯାଇଛି । ଏହି ଦର୍ଶନରେ କୌଣସି ଈଶ୍ୱର କଳ୍ପନା ନାହିଁ । ତେବେ ପୁରୁଷ ଓ ପ୍ରକୃତି କଳ୍ପନାର ପ୍ରତୀକ ସ୍ୱରୂପ ଲିଙ୍ଗ ଓ ଯୋନିର ଉପାସନା ପାଇଁ ମାନସିକତା ପରେ ସୃଷ୍ଟି ହୋଇଛି। ଗୋଟିଏ ପ୍ରତୀକକୁ ପରେ ନାନା ଆଭୂଷଣ ଦେଇ ପ୍ରତିମା ପୂଜାରେ ରୂପାନ୍ତରିତ କରାଯାଇଛି। ତେବେ ଅଥର୍ବ ବୈଦ ଆର୍ଯ୍ୟେତର ଲୋକମାନଙ୍କ ଦ୍ୱାରା  ସୃଷ୍ଟି ହୋଇଥିବାରୁ ତାହା ବହୁଦିନ ପର୍ଯ୍ୟନ୍ତ ଆର୍ଯ୍ୟମାନଙ୍କ ଦ୍ୱାରା ଗୃହୀତହୋଇ ନଥିଲା । କିନ୍ତୁ ଏହାର ବୈଚାରିକ ଉତ୍କର୍ଷ ଯୋଗୁଁ ଏହା ଧର୍ମୀୟ ବିଶ୍ୱାସ କ୍ଷେତ୍ରରେ ଅନ୍ୟ ତିନି ବେଦ ସହ ଗୃହୀତ ହେଲା । ସେହିପରି ସାଂଖ୍ୟଦର୍ଶନ ଦାର୍ଶନିକ ବିଚାର କ୍ଷେତ୍ରରେ ଯେଉଁ ତାତ୍ତ୍ୱିକ ଭାବଧାରାକୁ ଜନ୍ମ ଦେଇଥିଲା, ତାହା ଅନ୍ୟାନ୍ୟ ଦର୍ଶନର ଉତ୍ପତ୍ତି ପାଇଁ ପଥ ଉନ୍ମୁକ୍ତ କରିବା ସହ ଶ୍ରେଷ୍ଠ ଦର୍ଶନ ଭାବେ ଗୀତାରେ ଗୃହୀତ ହେଲା।

ଏହି ସମୟରେ ଆର୍ଯ୍ୟମାନଙ୍କର ଆଗମନ ଭାରତୀୟ ସାମାଜିକ ଓ ସାଂସ୍କୃତିକ ଦୃଶ୍ୟପଟରେ ଏକ ନିର୍ଣ୍ଣାୟକ ସମୟ ଥିଲା। ଆର୍ଯ୍ୟମାନେ ଭାଷା, ବର୍ଣ୍ଣ ଓ ଶାରୀରିକ ଗଠନ ଦୃଷ୍ଟିରୁ ପୃଥକ୍ ଥିଲେ। ସେମାନେ ଏକ ଜନଗୋଷ୍ଠୀ ଭାବେ କେତେକ ସାଂସ୍କୃତିକ ପରମ୍ପରାକୁ ଗ୍ରହଣ କରୁଥିଲେ। ବିଶେଷକରି ବାହ୍ୟ ପ୍ରାକୃତିକ ଶକ୍ତି ସୂର୍ଯ୍ୟ, ଇନ୍ଦ୍ର, ଅଗ୍ନି, ବାୟୁ, ବରୁଣ ଇତ୍ୟାଦି ଜଡଶକ୍ତିକୁ ପୂଜା କରୁଥିଲେ। ଯଜ୍ଞକୁ ଏକ ପବିତ୍ର କାର୍ଯ୍ୟଭାବେ ଗ୍ରହଣ କରି କେତେକ ଗୃହପାଳିତ ପଶୁଙ୍କୁ ଯଜ୍ଞରେ ବଳି ଦେଉଥିଲେ। ସେମାନେ ମାଂସାହାରୀ ଥିଲେ ଓ ସୋମରସ ପାନ କରୁଥିଲେ। ସ୍ଥାନୀୟ ଜନଗୋଷ୍ଠୀ ସହ ସେମାନଙ୍କର ଭାଷାଭେଦ, ରଙ୍ଗଭେଦ ଓ ଆଚାରଭେଦକୁ ନେଇ ଦୁଇଗୋଷ୍ଠୀ ମଧ୍ୟରେ ସଂଘର୍ଷମୟ ପରିସ୍ଥିତି ଉଦ୍ଭବ ହୋଇଥିଲା। ଆର୍ଯ୍ୟମାନଙ୍କ ଆଗମନ ସମୟରେ ଭାରତରେ କୃଷି ସଭ୍ୟତାର ବିକାଶ ହୋଇଥିଲେ ମଧ୍ୟ ଭାରତୀୟ ଜନଗଣଙ୍କର ସଂଗ୍ରାମଶୀଳ ପ୍ରବୃତ୍ତି ଆର୍ଯ୍ୟମାନଙ୍କ ତୁଳନାରେ ନ୍ୟୂନ ଥିଲା। ଦୁଇ ଜନଗୋଷ୍ଠୀ ଏହି ବିଶାଳ ଭୂଖଣ୍ଡରେ ରହିବା ଭିତରେ ସେମାନଙ୍କ ମଧ୍ୟରେ ସମୟେ ସମୟେ ସଂଘର୍ଷ ସୃଷ୍ଟି ହେଉଥିଲା। ତେବେ ଆର୍ଯ୍ୟମାନେ ସେମାନଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ, ଜାତିଗତ ଓ ବର୍ଣ୍ଣଗତ ଅସ୍ମିତାକୁ ରକ୍ଷା କରିବା ପାଇଁ ଆର୍ଯ୍ୟେତର ଲୋକଙ୍କ ସହ ବୈବାହିକ ସଂପର୍କ ନ ରଖିବା ପାଇଁ ବର୍ଣ୍ଣାଶ୍ରମ ପ୍ରଥାର ଉଦ୍ରେକ କରାଇଥିଲେ। ସେତେବେଳେର ସମାଜରେ ଯେଉଁ ଭାରତୀୟମାନେ ଆର୍ଯ୍ୟମାନଙ୍କର ଧାର୍ମିକ ବିଶ୍ୱାସ, ଉପାସନା ଓ ବଳିପ୍ରଥାକୁ ବିରୋଧ କରୁଥିଲେ ସେମାନଙ୍କୁ ରାଜନୈତିକ କ୍ଷମତା ବଳରେ ସମାଜରୁ ଦୂରେଇ ରଖି ଶୂଦ୍ର ଆଖ୍ୟା ଦିଆଯାଇଥିଲା। ଆର୍ଯ୍ୟମାନେ ସୂର୍ଯ୍ୟ ଉପାସକ ଥିବାରୁ ସେମାନଙ୍କୁ ସୂର୍ଯ୍ୟବଂଶୀ କୁହାଯାଉଥିଲା। ଲେଖକଙ୍କ ମତରେ ସୂର୍ଯ୍ୟବଂଶୀମାନେ ଭାରତୀୟମାନଙ୍କୁ ଦାୟାହୁ (ଇରାନୀଭାଷାରେ ଏହାକୁ ସ୍ଥାନୀୟ ଅଧିବାସୀ କୁହାଯାଏ) କହୁଥିଲେ ଯାହା ଅପଭ୍ରଂଶ ହୋଇ ଦସ୍ୟୁ ବା ଦାସ ଶବ୍ଦ ହୋଇଛି। ମୋଟ୍ ଉପରେ ଆର୍ଯ୍ୟ ଓ ଅଣଆର୍ଯ୍ୟ ଲୋକଙ୍କ ମଧ୍ୟରେ ସେ ଯୁଗରେ କଳା-ଗୋରା ଜନିତ ବର୍ଣ୍ଣବୈଷମ୍ୟ ରହିଥିଲା।

ଆର୍ଯ୍ୟମାନେ ଯଜ୍ଞ କରୁଥିଲେ ଓ ଅଗ୍ନିକୁ ଦେବତା ମନେକରୁଥିଲେ। ସୂର୍ଯ୍ୟଙ୍କୁ ତ୍ରିଭୂବନର ଶ୍ରେଷ୍ଠ ଦେବତା ବା ବିଷ୍ଣୁ ରୂପେ ପୂଜାକରି ବିଭିନ୍ନ ମନ୍ତ୍ର ରଚନା କରିଥିଲେ। ନିଜ ଭିତରେ ଉପନୟନ ପ୍ରଥା ପ୍ରଚଳନ କଲେ ଓ ସମାଜର ଏକ ଶୁଦ୍ଧ ଶ୍ରେଣୀ ଭାବେ ବର୍ଣ୍ଣାଶ୍ରମ ବ୍ୟବସ୍ଥା ପ୍ରଚଳନ କଲେ। ଏହା ଦ୍ୱାରା ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁଥାନ ହୋଇଥିଲା। ଆର୍ଯ୍ୟମାନେ ଜୀବନଧାରାରେ ଯେଉଁ ଔପଚାରିକ କର୍ମକାଣ୍ଡ, ଧାର୍ମିକ ବିଶ୍ୱାସ ଓ

ସାମାଜିକ ବିଧି ବିଧାନର ପ୍ରୟୋଗ କଲେ ଏବଂ ସେତେବେଳର ବୁଦ୍ଧିଜୀବୀମାନେ ଏସବୁକୁ ନେଇ ଯେଉଁ ରାଶିରାଶି ମନ୍ତ୍ର ରଚନା କଲେ ସେସବୁର ସମ୍ମିଳିତ ପରିଣାମ ବ୍ରାହ୍ମଣ୍ୟଧର୍ମର ବିକାଶ ପାଇଁ ସହାୟକ ହୋଇଥିଲା।

ଆର୍ଯ୍ୟମାନେ ଭାରତର ଉତ୍ତର ପଶ୍ଚିମ ଭୂଖଣ୍ଡରେ ମୁଖ୍ୟତଃ ରହିଲେ ଓ ବ୍ରାହ୍ମଣ୍ୟଧର୍ମର ବିକାଶ କରାଇଲେ। ଶହଶହ ବର୍ଷର ସହାବସ୍ଥାନ ଯୋଗୁଁ ଆର୍ଯ୍ୟ ଓ ଅଣଆର୍ଯ୍ୟମାନଙ୍କ ମଧ୍ୟରେ ସାଂସ୍କୃତିକ ଆଦାନ ପ୍ରଦାନ ହୋଇଥିବ। ତେବେ ଅଣଆର୍ଯ୍ୟ ଗୋଷ୍ଠୀର ନାଗମାନେ ପ୍ରଭାବଶାଳୀ ଥିଲେ ଓ ଶୈବଧର୍ମକୁ ଗ୍ରହଣ କରୁଥିଲେ। ବୃକ୍ଷ ଓ ସର୍ପ ସେମାନଙ୍କର ଚିହ୍ନ ଥିଲା। ବହୁପରେ ଶିବଙ୍କର ମାନବୀୟ ମୂର୍ତ୍ତିର ପରିକଳ୍ପନା କରାଯାଇଥିଲା ଓ ଲେଖକଙ୍କ ମତରେ ଆର୍ଯ୍ୟମାନେ ଶିବଙ୍କୁ ସର୍ପଭୂଷିତ କରାଇଛନ୍ତି। ନାଗମାନଙ୍କର ଲିଙ୍ଗପୂଜା, ଆର୍ଯ୍ୟଙ୍କର ପ୍ରତିମାପୂଜା ଓ ଜନଜାତିର ଖମ୍ବପୂଜା ମଧ୍ୟ ଦେଇ ପ୍ରମୁଖ ଜନଗୋଷ୍ଠୀ ନିଜ ନିଜର ଧାର୍ମିକ ବିଶ୍ୱାସ ପ୍ରକାଶ କରିଥିଲେ। ତେବେ ଜନଜାତି ଓ ନାଗମାନେ ପରସ୍ପର ସହ ସମ୍ମିଳିତ ହୋଇଥିଲେ ମଧ୍ୟ ସେମାନଙ୍କର ଆର୍ଯ୍ୟମାନଙ୍କ ସହ ଏକ ସଂଘର୍ଷମୟ ପରିବେଶ ଲାଗିରହିଥିଲା। ଏହି ସନ୍ଧିକ୍ଷଣରେ ବ୍ୟାସ ଓ ଶ୍ରୀକୃଷ୍ଣ ଦୁଇ କ୍ରାନ୍ତିକାରୀ ବ୍ୟକ୍ତିଙ୍କର ଆବିର୍ଭାବ ହେବା ଲେଖକ ଦର୍ଶାଇଛନ୍ତି (ପୃ.୩୩)। ଶ୍ରୀକୃଷ୍ଣ ଏକ ଐତିହାସିକ ଚରିତ୍ର ହୁଅନ୍ତୁ ବା ମହାଭାରତ ଗ୍ରନ୍ଥର ଏକ କାଳ୍ପନିକ ଚରିତ୍ର ହୁଅନ୍ତୁ (ଲେଖକ କିନ୍ତୁ ଶ୍ରୀକୃଷ୍ଣଙ୍କୁ ଏକ ଐତିହାସିକ ବ୍ୟକ୍ତି ଓ ମହାଭାରତ ଯୁଦ୍ଧକୁ ଏକ ଐତିହାସିକ ଘଟଣା ଭାବେ ଗ୍ରହଣ କରିଛନ୍ତି) ସେତେବେଳର ସମସାମୟିକ ସମାଜରେ ଶ୍ରୀକୃଷ୍ଣଙ୍କୁ ଆଧାର କରି ନାନା ପରିବର୍ତ୍ତନ ଆସି ପାରିଲା। ଲେଖକଙ୍କ ମତରେ କୃଷ୍ଣ ଥିଲେ ସୋମବଂଶୀ ଓ ଶୈବଭକ୍ତ (ପୃ.୩୫)। ଭଗବତ ଗୀତାର ବର୍ଣ୍ଣନା ଆଧାରରେ ଶ୍ରୀକୃଷ୍ଣଙ୍କୁ ଈଶ୍ୱର ରୂପେ ସମାଜରେ ଗ୍ରହଣ କରି ନିଆଯାଇଥିଲା। ଶ୍ରୀକୃଷ୍ଣଙ୍କୁ ଭଗବାନ ରୂପେ ଗ୍ରହଣକରି ପୂଜା କରିବା ଦ୍ୱାରା ପୁରୁଷୋତ୍ତମ ପୂଜାର ଅୟମାରମ୍ଭ ହେଲା। ସୂର୍ଯ୍ୟଙ୍କ ପରିବର୍ତ୍ତେ ଶ୍ରୀକୃଷ୍ଣ ହିଁ ନାରାୟଣ ବିଷ୍ଣୁ ରୂପେ ପରିଗଣିତ ହେଲେ। ବୈଷ୍ଣବୀୟ ପୂଜାକୁ ଆଧାର କରି ଭାଗବତ ଧର୍ମର ଉତ୍ପତ୍ତି ହେଲା।

ବିଭିନ୍ନ ଧର୍ମଧାରା ମଧ୍ୟ ଦେଇ ବିଭିନ୍ନ ଉପାସନା ସୃଷ୍ଟି ହେବା ସହ ବିଭିନ୍ନ ଗୋଷ୍ଠୀ ପରସ୍ପରକୁ ପ୍ରଭାବିତ କରିଥିଲେ। ସାଂସ୍କୃତିକ ଆଦାନ ପ୍ରଦାନ ମଧ୍ୟ ଦେଇ ସମାଜରେ ସମନ୍ୱିତ ଚେତନାର ବିକାଶ ହେଉଥିଲେ ମଧ୍ୟ ବିଭିନ୍ନ କୁସଂସ୍କାର, ଧାର୍ମିକ ଅନ୍ଧବିଶ୍ୱାସ, ରୂଢ଼ିବାଦ ଓ ଜାତିଗତ ବିଦ୍ୱେଷ ସମାଜରେ ଲାଗି ରହିଥିଲା । ଏହି

ସମୟରେ ଜୈନଧର୍ମ ଓ ବୌଦ୍ଧଧର୍ମର ଉଦ୍ଭବ ହୋଇଥିଲା । ଏହି ଦୁଇ ଧର୍ମ ବ୍ରାହ୍ମଣ୍ୟଧର୍ମର ମୂର୍ତ୍ତିପୂଜା, ବଳି ଜନିତ ଯାଗଯଜ୍ଞ, ପୁରୋହିତ ପ୍ରଥା, ଜାତିପ୍ରଥା ଇତ୍ୟାଦି ବିରୁଦ୍ଧରେ ଯେଉଁ ପ୍ରତିବାଦର ସ୍ୱର ଉଠାଇଥିଲେ ତାହା ସେ ସମୟରେ ଜନଗଣଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ଜୈନଧର୍ମ ଓ ବୌଦ୍ଧଧର୍ମ ନୈତିକତା, ଅହିଂସା, ସମ୍ୟକ ଜ୍ଞାନ, ମମତା, ଜାତିବିହୀନ ସମାଜ, ଦୁଃଖରହିତ ଜୀବନ, କର୍ତ୍ତବ୍ୟପାଳନ, ସଂଯମତା ଇତ୍ୟାଦି ଗୁଣକୁ ପ୍ରାଧାନ୍ୟ ଦେଇ ସାଧାରଣ ଜୀବନଧାରାରେ ଯେଉଁ ଗୁଣାତ୍ମକ ଉତ୍କର୍ଷ ପାଇଁ ଆବେଦନ ସୃଷ୍ଟି କରିଥିଲେ ତାହା ସେହି ସମୟର ବୌଦ୍ଧିକ ଓ ସାଂସ୍କୃତିକ ବାତାବରଣରେ ବୈପ୍ଳବିକ ଥିଲା । ବସ୍ତୁତଃ ବୈଦିକ ବ୍ରାହ୍ମଣ୍ୟଧର୍ମ ଭୟଙ୍କର ଆହ୍ୱାନର ସମ୍ମୁଖୀନ ହୋଇ ଏହା ସମସ୍ତ ପ୍ରଭାବ ହରାଇ ବସିଲା । ତେବେ ଉଲ୍ଲେଖନୀୟ ବିଷୟ ଯେ ଜୈନ ଓ ବୌଦ୍ଧଧର୍ମର ଅଭୂତପୂର୍ବ ପ୍ରଭାବକୁ ପ୍ରତିହତ କରିବା ପାଇଁ ବ୍ରାହ୍ମଣମାନେ ବାଧ୍ୟବାଧକତାରେ ବ୍ରାତ୍ୟ ସଭ୍ୟତାର ଶିବ ବା ଲିଙ୍ଗ ପୂଜା ଓ ଭାଗବତ ଧର୍ମର ଶ୍ରୀକୃଷ୍ଣ ଉପାସନାକୁ ଗ୍ରହଣ କରିଥିଲେ । ବିଶେଷକରି ବୌଦ୍ଧଧର୍ମର ପ୍ରଚଣ୍ଡ ପ୍ରଭାବକୁ ପ୍ରତିହତ କରିବା ପାଇଁ ବୈଦିକ ବ୍ରାହ୍ମଣମାନେ ପୂର୍ବରୁ ହତାଦର କରିଥିବା ଶିବ ଓ କୃଷ୍ଣଙ୍କୁ ଗ୍ରହଣ କଲେ । ସେମାନେ ଶ୍ରୀକୃଷ୍ଣ ଉପାସନା ଓ ଶୈବପୂଜାକୁ ଭାଗବତ ଧର୍ମରେ ଅନ୍ତର୍ଭୁକ୍ତ କରାଇଲେ ।

ଲେଖକଙ୍କ ମତରେ ବ୍ରାହ୍ମଣମାନଙ୍କ ଚକ୍ରାନ୍ତରେ ବୌଦ୍ଧ ଧର୍ମାବଲମ୍ବୀଙ୍କ ମଧ୍ୟରେ ପୁରୋହିତବାଦ, ମୂର୍ତ୍ତିପୂଜା ଓ ସଂସ୍କୃତ ଭାଷାର ପ୍ରବେଶ କରାଗଲା, ପରିଣାମତଃ ବୌଦ୍ଧ ଧର୍ମ ଭିତରେ ମହାଯାନ ଓ ହୀନଯାନ ନାମରେ ଦୁଇଟି ପୃଥକ୍ ଗୋଷ୍ଠୀ ସୃଷ୍ଟି ହେଲା । ବୌଦ୍ଧଧର୍ମ ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀ ବେଳକୁ ଦୁର୍ବଳ ହେବାକୁ ଲାଗିଲା । ହର୍ଷବର୍ଦ୍ଧନ ଓ ସମୁଦ୍ରଗୁପ୍ତଙ୍କ ପରି ବୈଦିକ ଧର୍ମାବଲମ୍ବୀ ରାଜଶକ୍ତିର ଅଭ୍ୟୁଦୟ ଯୋଗୁଁ ବ୍ରାହ୍ମଣ୍ୟଧର୍ମ ହୃତ ଗୌରବ ଫେରାଇ ଆଣିବାକୁ ପ୍ରୟାସ କଲା । ରାଷ୍ଟ୍ରଶକ୍ତିର ପୃଷ୍ଠପୋଷକତା ଲାଭ କରି ସଂସ୍କୃତ ଭାଷାରେ ବିଭିନ୍ନ ପୁରାଣ ଓ କାଳ୍ପନିକ ଚରିତ୍ରମାନଙ୍କୁ ସୃଷ୍ଟି କରାଯାଇ ଜନଗଣଙ୍କ ମଧ୍ୟରେ ପ୍ରସାର କରାଗଲା । କାଳ୍ପନିକ ଚରିତ୍ରମାନଙ୍କୁ କୃଷ୍ଣ ଓ ଶିବଙ୍କ ସହ ସମନ୍ୱିତ କରାଗଲା । ବ୍ରାହ୍ମଣ୍ୟ ଧର୍ମରେ ପୂଜିତ ସୂର୍ଯ୍ୟଙ୍କୁ ଓ ଭାଗବତ ଧର୍ମର ପ୍ରବର୍ତ୍ତକ ଶ୍ରୀକୃଷ୍ଣଙ୍କୁ ବିଷ୍ଣୁଙ୍କ ସହିତ ଚିହ୍ନିତ କରାଗଲା । ଜୈନ ଓ ବୌଦ୍ଧଧର୍ମର ପ୍ରଭାବକୁ ପ୍ରତିହତ କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ନେଇ ଉତ୍ପନ୍ନ ଭାଗବତ ଧର୍ମ ବୈଦିକ ବ୍ରାହ୍ମଣମାନଙ୍କର ଧର୍ମ ରୂପେ ଅଭିହିତ ହୋଇଛି ।

ମୋଟ୍ ଉପରେ ଶହଶହ ବର୍ଷର ସାମାଜିକ ବିକାଶଧାରାରେ ବହୁ ଧାର୍ମିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଆଲୋଡ଼ନ ଭାରତ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା। ସେତେବେଳର ସାମାଜିକ ପରିବେଶରେ ପ୍ରତ୍ୟେକଟି ଧାରା ଗୋଟିଏ ବୈଚାରିକ ଭିତ୍ତି ଉପରେ ମୁଣ୍ଡ ଟେକିଥିଲା। ଆଦିମାନବର ଅଲୌକିକ ବିଶ୍ୱାସଠାରୁ ଏହି ଧାରାଟି ଆରମ୍ଭ ହୋଇ ଶାବରୀ, ନାଗ, ବ୍ରାତ୍ୟ, ଆର୍ଯ୍ୟ ଇତ୍ୟାଦି ଜନଗୋଷ୍ଠୀ ଦ୍ୱାରା କିଛି କିଛି ନୂତନତ୍ୱକୁ ନେଇ ଗୋଟିଏ ଗୋଟିଏ ପ୍ରଭାବଶାଳୀ ସାଂସ୍କୃତିକ ଆଲୋଡ଼ନ ଆସିଥିଲା। ସେହିପରି ଭାଗବତ ଧର୍ମ, ଜୈନଧର୍ମ, ବୌଦ୍ଧଧର୍ମ, ବ୍ରାହ୍ମଣ୍ୟଧର୍ମ ଆନୁଷ୍ଠାନିକ ଭାବେ ବିଭିନ୍ନ ତାତ୍ତ୍ୱିକ ବିଚାର, କର୍ମକାଣ୍ଡ, ଉପାସନା, ଜୀବନର ଅନ୍ତିମ ଲକ୍ଷ୍ୟ ଇତ୍ୟାଦି ବିଷୟରେ ବିଶ୍ୱାସମାନଙ୍କୁ ନେଇ ଗୋଟିଏ ଗୋଟିଏ ଧାର୍ମିକ ଧାରା ଭାବେ ଉଦ୍ଭବ ହୋଇଥିଲା। ତେବେ ଯେଉଁ ଯୁଗରେ ଯେଉଁ ଧାର୍ମିକ ବିଚାରଟି ରାଜଶକ୍ତିର ସମର୍ଥନ ଲାଭ କରିଥିଲା, ତାହା ଜନଗଣଙ୍କ ଭିତରେ ବଳିଷ୍ଠ ପ୍ରଭାବ ସୃଷ୍ଟି କରିଥିଲା ଓ ଯେଉଁ ଧର୍ମଧାରାଟି ରାଷ୍ଟ୍ରଶକ୍ତିର ସମର୍ଥନ ପାଇ ନଥିଲା ତାହାର ପ୍ରଭାବ ନିଷ୍ପ୍ରଭ ହୋଇ ଆସିଥିଲା।

ତେବେ ଯେତେଗୁଡିଏ ସାଂସ୍କୃତିକ ଓ ଧର୍ମୀୟ ଧାରା ସୃଷ୍ଟି ହୋଇଛି ପ୍ରତ୍ୟେକଟି ନିଜର ମୌଳିକ ଆଦର୍ଶକୁ ସବୁଦିନ ପାଇଁ ସ୍ଥାୟୀ କରିପାରି ନାହିଁ। ବରଂ ବିଭିନ୍ନ ଧର୍ମଧାରାଗୁଡିକ ଶହ ଶହ ବର୍ଷର ପାରସ୍ପରିକ ପ୍ରଭାବ ଓ ସହାବସ୍ଥାନ ମଧ୍ୟ ଦେଇ ପରସ୍ପରକୁ ପ୍ରଭାବିତ କରିଛନ୍ତି ଓ ଗୋଟିଏ ସମନ୍ୱିତ ଦୃଷ୍ଟି ଦିଗରେ ସହାୟକ ହୋଇଛନ୍ତି। ତେବେ ବୈଚାରିକ ସ୍ତରରେ ପ୍ରତ୍ୟେକଟି ଧର୍ମଧାରା କେତେକ ମୌଳିକ ବିଶ୍ୱାସ, ଉପାସନା ଓ ଜଗତ ଦୃଷ୍ଟିକୁ ତା'ର ସୈଦ୍ଧାନ୍ତିକ ସ୍ୱାତନ୍ତ୍ର୍ୟ ଭାବେ ବହନ କରି ଆସିଛି। ଏହି ପୃଷ୍ଠଭୂମିରେ ସମସ୍ତ ସାଂସ୍କୃତିକ ଓ ଧର୍ମୀୟ ଧାରା ଭିତରେ ମୋଟ୍ ଉପରେ ଦୁଇଟି ପୃଥକ୍ ଦୃଷ୍ଟିର ପରିଚୟ ମିଳିଥାଏ। ଗୋଟିଏ ଦୃଷ୍ଟି ସାକାର ଈଶ୍ୱରଙ୍କର ଉପସ୍ଥିତିକୁ ଅସ୍ୱୀକାର କରି ଚେତନାକୁ ଅନ୍ତର୍ମୁଖୀ କରିବାକୁ ପ୍ରୟାସ କରିବା ଦେଖାଯାଏ। ନୈତିକତା, ଜୀବନର ଗଭୀରତମ ଅନୁଭୂତି ମଧ୍ୟ ଦେଇ ନିର୍ବାଣଲାଭ, ପ୍ରକୃତି ଓ ଜୀବନର ପରମତତ୍ତ୍ୱର ଉପଲବ୍ଧି, ଧ୍ୟାନ ଓ ଯୋଗ ସାଧନ ପ୍ରଣାଳୀରେ ଏକ ନିରୋଗ ଜୀବନ ଓ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ଏହି ଧାରାର ମୌଳିକ ବିଭବ ହୋଇ ରହିବା ଦେଖାଯାଏ। ଅନ୍ୟ ଧାରାଟି ସାକାର ମୂର୍ତ୍ତି ପୂଜାରେ ବିଶ୍ୱାସ କରି ବିଭିନ୍ନ କଳ୍ପିତ ଦେବତାଙ୍କୁ ନାନା ଅସ୍ତ୍ରଶସ୍ତ୍ର ତଥା ଚାକଚକ୍ୟ ବସ୍ତ୍ରାଳଙ୍କାରରେ ଭୂଷିତ କରିଥାଏ।

ଆତ୍ମା, ଅମରତ୍ୱ, ସ୍ୱର୍ଗ, ନର୍କ, ଜନ୍ମାନ୍ତରବାଦ ଇତ୍ୟାଦି ଏହି ଭାବନାର ଅଙ୍ଗବିଶେଷ ଅଟେ। ମୂର୍ତ୍ତିପୂଜା ଜନିତ ବିଶ୍ୱାସକୁ ନେଇ ନାନା କର୍ମକାଣ୍ଡ, ପୂଜା, ମନ୍ତ୍ର, ପୁରୋହିତବାଦ ଏଥିରେ ସଂପୃକ୍ତ ରହିଥାଏ। ଏହି ଦୁଇଟି ଧାରା ଭିତରେ କେତେକ ସାମଞ୍ଜସ୍ୟ ଥିଲେ ବି ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ।

ଏହି ପୃଷ୍ଠଭୂମିରେ ଜଗନ୍ନାଥ ଭାବନାର ଉତ୍ପତ୍ତି, ଜଗନ୍ନାଥଙ୍କ ଆଦିପୀଠ, ଜଗନ୍ନାଥ ଉପାସନାର ବୈଶିଷ୍ଟ୍ୟ, ଓଡିଶାର ସାଂସ୍କୃତିକ ଜୀବନଧାରାରେ ଜଗନ୍ନାଥ ଉପାସନାର ପ୍ରଭାବ ଇତ୍ୟାଦି ବିଷୟରେ ଲେଖକ ବିଭିନ୍ନ ଆଲୋକପାତ କରିଛନ୍ତି। ତେବେ ଓଡିଶା ଯେ ଜଗନ୍ନାଥ ଉପାସନାର ଭିତ୍ତିଭୂମି ଓ ଏହି ଭୂଖଣ୍ଡରେ ଏହି ଧର୍ମଧାରାଟି ଉଦ୍ଭବ ହୋଇଥିଲା ଏହା ନିଃସନ୍ଦେହ। ଅବଶ୍ୟ ଦେଶ, ରାଷ୍ଟ୍ରର ଭୌଗୋଳିକ ସୀମାର ଭାବନା ସଭ୍ୟତାର ବିକାଶଧାରାରେ ବହୁ ପରେ ଆସିଛି। ରାଜତନ୍ତ୍ର ଯୁଗରେ ଜଣେ ଜଣେ ପ୍ରତାପଶାଳୀ ରାଜା ରାଜ୍ୟମାନଙ୍କୁ ଜୟ କରୁଥିଲେ ଓ ନିଜ ରାଜ୍ୟର ସୀମା ବୃଦ୍ଧି କରିପାରୁଥିଲେ। ସେହିପରି କୌଣସି ପରାଜିତ ରାଜାଙ୍କର ରାଜ୍ୟର ପତନ ହେଉଥିଲା ବା ଏହାର ସୀମା ସଙ୍କୁଚିତ ହୋଇ ପାରୁଥିଲା। ସେ ସମୟର ରାଜତନ୍ତ୍ର ଯୁଗରେ କୌଣସି ରାଜ୍ୟର ସୀମା ସଂପ୍ରସାରିତ ବା ସଂକୁଚିତ ହେବା ଏକ ସାଧାରଣ ଘଟଣା ଥିଲା। ଲେଖକଙ୍କ ମତରେ ଆଧୁନିକ ଓଡିଶା ନାମଟି କପିଳେନ୍ଦ୍ର ଦେବଙ୍କ ଶାସନ ସମୟରେ ଅର୍ଥାତ୍ ପଞ୍ଚଦଶ ଶତାବ୍ଦୀରେ ରାଜନୈତିକ ସ୍ୱୀକୃତି ଲାଭ କରିଥିଲା। ଓଡିଶାର ଅତୀତ ନାମ କଳିଙ୍ଗ, କଙ୍ଗୋଜ, ତୋଷଳ, କୋଶଳ, ଓଡ୍ର ପ୍ରଭୃତି ଥିଲା। ଓଡିଶା ବହୁ ଭୂଖଣ୍ଡରେ ବିଭକ୍ତ ରହିଥିଲା। କେତେକ ଅଭିଲେଖ ତଥା ଐତିହାସିକ ତଥ୍ୟରୁ ଏହା ଜଣାପଡେ ଯେ ସପ୍ତମ ଶତାବ୍ଦୀରେ ଉତ୍କଳ, ଓଡ୍ର, କଙ୍ଗୋଜ ଓ ତୋଷଳ ଆଦି ରାଜ୍ୟମାନଙ୍କୁ ହର୍ଷବର୍ଦ୍ଧନ ଏକ ଶାସନାଧୀନ କରାଇ ତାହାକୁ ଓଡ୍ର ବିଷୟ ବୋଲି କହିଥିଲେ। ତେବେ ବିଭିନ୍ନ ରାଜବଂଶର ଶାସନ ସମୟରେ ଓଡିଶାର ସୀମା ଭିନ୍ନ ଭିନ୍ନ ହୋଇ ରହିଥିଲା ଓ ଏହା ବହୁ ଭୂଖଣ୍ଡ ବିଶିଷ୍ଟ ହୋଇ ରାଜତନ୍ତ୍ର ଦ୍ୱାରା ଶାସିତ ହେଉଥିଲା। ସପ୍ତମ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ମଧ୍ୟରେ ଓଡ୍ର ଦେଶର ଉତ୍ତରସୀମା କେନ୍ଦୁଝରରୁ ମହାନଦୀ ପର୍ଯ୍ୟନ୍ତ, ପୂର୍ବସୀମା ତୋଷଳୀଠାରୁ ପଶ୍ଚିମରେ କୋଶଳ ପର୍ଯ୍ୟନ୍ତ ବିସ୍ତାରିତ ଥିଲା। ଓଡ୍ର ଦେଶର ଏହି ଚତୁଃସୀମା ମଧ୍ୟରେ ଜଗନ୍ନାଥ କୌଣସି ସ୍ଥାନରେ ପୂଜିତ ହେଉଥିଲେ। ତେବେ ହର୍ଷବର୍ଦ୍ଧନ ଜଣେ ବୌଦ୍ଧଧର୍ମାବଲମ୍ବୀ ସମ୍ରାଟ ଥିଲେ ଓ ତାହାଙ୍କ ସାମ୍ରାଜ୍ୟଗଠନ କାର୍ଯ୍ୟରେ ବୋଧିସତ୍ତ୍ୱଙ୍କ ପ୍ରେରଣା ଥିଲା।

ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ହର୍ଷବର୍ଦ୍ଧନଙ୍କର ସମସାମୟିକ ଥିଲେ। ହୁଏନ୍‌ସାଂ ହର୍ଷବର୍ଦ୍ଧନଙ୍କ ଏହି ରାଜ୍ୟକୁ 'ଓଡ୍ର' ବୋଲି ବର୍ଣ୍ଣନା କରିଛନ୍ତି।

ତେବେ ହର୍ଷବର୍ଦ୍ଧନଙ୍କ ଶହେବର୍ଷ ପରେ ଅଷ୍ଟମ ଶତାବ୍ଦୀରେ ତୋଷଳୀରେ ଭୌମକର ରାଜବଂଶର ପ୍ରତିଷ୍ଠା ହୋଇଥିଲା ଓ ଓଡ୍ର ଦେଶ ଭୌମକର ସାମ୍ରାଜ୍ୟର ଅଂଶବିଶେଷ ନଥିଲା। ଓଡିଶାର ଅରଣ୍ୟ ବେଷ୍ଟିତ ପାର୍ବତ୍ୟାଞ୍ଚଳ ଓ ମଧ୍ୟଭାଗରୁ ପଶ୍ଚିମାଞ୍ଚଳ ଓଡ୍ରର ଅନ୍ତର୍ଭୁକ୍ତ ଥିଲା ଓ ଏହା ଉପକୂଳ ଅଞ୍ଚଳରେ ସ୍ଥାପିତ ଭୌମକର ସାମ୍ରାଜ୍ୟର ଅଂଶବିଶେଷ ନଥିଲା।

ଓଡ୍ରର ଜନସାଧାରଣ ଅଣଆର୍ଯ୍ୟ ଓ ଆଦିମ ଜନଜାତି ସଂପ୍ରଦାୟର ଥିଲେ। ଏମାନେ ପୌରାଣିକ ଯୁଗରୁ ନିଜର ସ୍ୱାତନ୍ତ୍ୟ ରକ୍ଷା କରି ଉପକୂଳବର୍ତ୍ତୀ କଳିଙ୍ଗ ଜାତିଠାରୁ ପୃଥକ୍ ଥିଲେ। ଓଡ୍ର ଭୂଖଣ୍ଡରେ ଶବର, କନ୍ଧ, କୋହ୍ଲ ଓ ଅନ୍ୟାନ୍ୟ ଆଦିମ ଜାତିର ଲୋକମାନଙ୍କ ସହ ନାଗ ସଂପ୍ରଦାୟର ଭଞ୍ଜ ଓ ମୁଣ୍ଡାମାନେ ବହୁ ପ୍ରାଚୀନ କାଳରୁ ବସବାସ କରି ଆସିଥିଲେ। ସେହିପରି ଓଡିଶାରେ ଯେତେଗୁଡିଏ ରାଜବଂଶ ଶାସନ କରି ଆସିଛନ୍ତି ସେମାନଙ୍କ ମଧ୍ୟରେ ସବୁଠାରୁ ପ୍ରାଚୀନତମ ରାଜବଂଶ ଖିଂଜଳିମଣ୍ଡଳର ଭଞ୍ଜ ରାଜବଂଶ ଅଟେ ବୋଲି ଲେଖକ ସୂଚାଇଛନ୍ତି। (ପୃ. ୧୦୨)। ଖିଂଜଳିମଣ୍ଡଳ ଓଡ୍ର ଦେଶର ଅଂଶବିଶେଷ ଥିଲା। ଏପରିକି ବୌଦ୍ଧଧର୍ମର ଉତ୍ପତ୍ତି ପୂର୍ବରୁ ଭଞ୍ଜମାନେ ପାର୍ବତ୍ୟ ଓଡିଶାରେ ଶାସନ କରୁଥିଲେ। ଚତୁର୍ଥ ଶତାବ୍ଦୀ ବେଳକୁ ଓଡ୍ର ଭୂଖଣ୍ଡରେ ଭଞ୍ଜ ରାଜବଂଶ ପ୍ରତିଷ୍ଠା ହୋଇସାରିଥିଲା। ତେବେ ଓଡ୍ରରେ ଯେଉଁ ଦୁଇ ପ୍ରମୁଖ ସଂପ୍ରଦାୟର ଲୋକମାନେ ବାସ କରୁଥିଲେ ସେମାନେ ହେଲେ ଅଣଆର୍ଯ୍ୟ ଜନଜାତି ଓ ନାଗ। ନାଗଗୋଷ୍ଠୀର ଲୋକମାନେ ଓଡ୍ରର ଆଦିମ ଅଧିବାସୀଙ୍କୁ ସଂଗଠିତ କରି ଭଞ୍ଜ ରାଜବଂଶ ପ୍ରତିଷ୍ଠା କରି ଶାସନ କରୁଥିଲେ। ଏହି ଦୁଇ ସଂପ୍ରଦାୟ ଭିତରେ ବହୁ ସାଂସ୍କୃତିକ ଓ ସାମାଜିକ ସମ୍ବନ୍ଧ ସୃଷ୍ଟି ହୋଇଥିଲା। ନାନାଜାତିର ଲୋକମାନେ ସ୍ତମ୍ଭ ବା ଖମ୍ବ ପୂଜା କରୁଥିଲେ ଓ ନାଗମାନେ ସର୍ପକୁ ସେମାନଙ୍କର ଲାଞ୍ଛନ ବା ଚିହ୍ନ ଭାବେ ନେଇ ଲିଙ୍ଗ ପୂଜା କରୁଥିଲେ। ନାଗମାନେ ପରେ ଭଞ୍ଜବଂଶ ସ୍ଥାପନ କରି ବୌଦ୍ଧଧର୍ମାବଲମ୍ବୀ ହେଲେ। ରାଜଧର୍ମ ଓ ପ୍ରଜାଧର୍ମ ଭିତରେ ସମନ୍ୱୟ ପୂର୍ବକ ଖମ୍ବ ଉପାସକଙ୍କର ସ୍ତମ୍ଭ ଓ ନାଗମାନଙ୍କର ସର୍ପ ମୁଖାକୃତିକୁ ନେଇ ଏକ ସମନ୍ୱିତ ମୂର୍ତ୍ତିର କଳ୍ପନା କରାଯାଇଥିଲା। ଜଗନ୍ନାଥ ମୂର୍ତ୍ତି କଳ୍ପନାର ଏହି ହିଁ ଥିଲା ପୃଷ୍ଠଭୂମି। ତେବେ ଏହି ମୂର୍ତ୍ତିକୁ ସେମାନେ ବୁଦ୍ଧ ରୂପରେ ପୂଜା କରିବାକୁ ଲାଗିଲେ। ପରେ ଏହାକୁ

ଜଗନ୍ନାଥ ବୋଲି କୁହାଗଲା । ମୋଟ୍ ଉପରେ ନାଗବଂଶୀ ବୌଦ୍ଧମାନେ ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିର କଳ୍ପନା ମାଧ୍ୟମରେ ନାଗ ଓ ଆଦିମ ଅଧିବାସୀଙ୍କ ମଧ୍ୟରେ ଏକ ଭାବଗତ ଓ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରିଥିଲେ । ସେହି ମୂର୍ତ୍ତି ହିଁ ହେଉଛି ଜଗନ୍ନାଥଙ୍କର ମୂର୍ତ୍ତି ।

ଲେଖକ କେତେକ ଶିଳାଲେଖ, ଐତିହାସିକ ତଥ୍ୟ, ପୌରାଣିକ ଗ୍ରନ୍ଥ ଓ ଧର୍ମବିଶ୍ୱାସକୁ ପର୍ଯ୍ୟାଲୋଚନା କରି ଜଗନ୍ନାଥ ଯେ ବୁଦ୍ଧଙ୍କର ଅବତାର ଏହା ପ୍ରତିଷ୍ଠା କରିବାକୁ ପ୍ରୟାସ କରିଛନ୍ତି । ଜଗନ୍ନାଥ ପରିକଳ୍ପନା ପୂର୍ବରୁ ଓଡ୍ର ଭୂଖଣ୍ଡରେ ବୌଦ୍ଧଧର୍ମ ହିଁ ମୁଖ୍ୟ ଧର୍ମଧାରା ଭାବେ ନାଗମାନଙ୍କ ଦ୍ୱାରା ଗ୍ରହଣୀୟ ହୋଇଥିଲା । ହୁଏନ୍‌ସାଂଙ୍କର ଭ୍ରମଣ ବୃତ୍ତାନ୍ତକୁ ଉଦ୍ଧାର କରି ଲେଖକ ଦର୍ଶାଇଛନ୍ତି ଯେ, ଓଡ୍ର ଦେଶରେ ସେତେବେଳେ ବୌଦ୍ଧଧର୍ମ ଏକ ଜୀବନ୍ତ ଧର୍ମ ଥିଲା । ବୌଦ୍ଧଧର୍ମ ଓଡିଶାକୁ ଆସିବା ପରେ ଓଡ୍ର ଭୂଖଣ୍ଡରେ ରାଜଶକ୍ତିର ସମର୍ଥନ ଲାଭକରି ଏହା ଜୀବନ୍ତ ହୋଇଉଠିଥିଲା । ମହାନଦୀ କୂଳେ କୂଳେ ସମ୍ବଲପୁର, ବଲାଙ୍ଗିର, ସୋନପୁର, ବୌଦ୍ଧ ପ୍ରଭୃତି ଓଡ୍ର ଭୂଖଣ୍ଡ ମଧ୍ୟ ଦେଇ ବହୁ ବୌଦ୍ଧ ବିହାର ନିର୍ମିତ ହୋଇଥିଲା । ନନ୍ଦିନିଆଁ ପର୍ବତମାଳା ଓ ତହିଁରେ ଅବସ୍ଥିତ ପୁଷ୍ପଗିରି ମହାବିହାର (ମହାନଦୀ ତଟର ନରସିଂହପୁର-ଅନୁଗୋଳ ମଧ୍ୟରେ) ହୀନଯାନ ବୌଦ୍ଧଧର୍ମର ପ୍ରଧାନ ପୀଠସ୍ଥଳି ଥିଲା । ନରସିଂହପୁରସ୍ଥିତ ନନ୍ଦନିଆଁ ପର୍ବତମାଳା, ବୌଦ୍ଧ ଅଞ୍ଚଳ, ମହାନଦୀର ପୃଷ୍ଠଦେଶରେ ରହିଥିବା ବିସ୍ତୃତ ଅଞ୍ଚଳ, ବ୍ରାହ୍ମଣୀନଦୀ କୂଳସ୍ଥ ସାମଲ, ତାଲ୍‌ଚେର ଓ ବଜ୍ରକୋଟ ଇତ୍ୟାଦି ଅଞ୍ଚଳରେ ବହୁ ବୌଦ୍ଧ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ରହିବା ଦେଖାଯାଏ ବୋଲି ଲେଖକ ନାନା ଦୃଷ୍ଟାନ୍ତ ଦେଇଛନ୍ତି ।

ନାଗବଂଶୀ ବୌଦ୍ଧମାନେ ବୁଦ୍ଧଙ୍କର ଅବତାର ଭାବେ ଏକ ମୂର୍ତ୍ତିର ପରିକଳ୍ପନା କରିଥିଲେ । ଏଥିରେ ଓଡ୍ରର ଜନଜାତିର ପୂଜିତ ସ୍ତମ୍ଭ ସହ ନାଗମାନଙ୍କର ସର୍ପ ମୁଖାକୃତ ଲାଞ୍ଛନକୁ ମିଶାଇ ଏକ ସମନ୍ୱିତ ମୂର୍ତ୍ତିର କଳ୍ପନା ରହିଥିଲା । ଜଗନ୍ନାଥଙ୍କର ସର୍ପାକୃତି ମୁଖମଣ୍ଡଳ, ଚକ୍ଷୁ ଓ ମୂର୍ତ୍ତିଗଠନ ଏହାର ପ୍ରମାଣ ଦେଇଥାଏ । ଅଧିକନ୍ତୁ ଲେଖକ ଦର୍ଶାଇଛନ୍ତି ଯେ, ଜଗନ୍ନାଥଙ୍କର ନବକଳେବର କେବଳ ଜଗନ୍ନାଥଙ୍କ ମୁଖମଣ୍ଡଳ ନିର୍ମାଣ କରିବା ସମୟରେ ସର୍ପମୁଖରେ ପ୍ରତିବିମ୍ବକୁ ଅବଲମ୍ବନ କରିବାର ଏକ ନିର୍ଦ୍ଦିଷ୍ଟ ବିଧି ପାଳନ କରାଯାଏ । (ପୃ.୧୩୩)

'ଜଗନ୍ନାଥ' ଶବ୍ଦର ଉତ୍ପତ୍ତି ନେଇ ଲେଖକଙ୍କ ମତ ହେଉଛି ଅଷ୍ଟମ ଶତାବ୍ଦୀର କବି ଇନ୍ଦ୍ରଭୂତିଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥରେ ପ୍ରଥମଥର ପାଇଁ ଜଗନ୍ନାଥ ଶବ୍ଦର ପ୍ରୟୋଗ ହୋଇଥିବା ଦେଖାଯାଏ। ତେବେ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ପ୍ରାର୍ଥନା କରିଛନ୍ତି। ସେହିପରି ଓଡିଶାର ଜନଜାତି ମଧ୍ୟରେ ଧର୍ମଗତ ଓ ସାମାଜିକ ଐକ୍ୟ ପ୍ରତିଷ୍ଠା ପାଇଁ ଶବରମାନଙ୍କ ଆରାଧ୍ୟ ଦେବତା ଜଗନ୍ତଙ୍କ ସହିତ ନାଥ ଧର୍ମୀ ନାଗବଂଶୀଙ୍କର ସମନ୍ୱୟ ରକ୍ଷା କରିବା ପାଇଁ ଜଗନ୍ନାଥ ଶବ୍ଦର ପରିକଳ୍ପନା କରାଯାଇଥିଲା। ପୁନଶ୍ଚ ବୁଦ୍ଧ କୁଆଡେ ଦେହତ୍ୟାଗ ବେଳେ 'ମୁଁ ଜଗତର ନାଥ, ଜଗତର ଦୁଃଖନାଶନର ଉପାୟ ମୁଁ ପାଇଛି' ବୋଲି କହିଥିବା କେତେକ ଲେଖାରୁ ଲେଖକ ଉଦ୍ଧାର କରିଛନ୍ତି' (ପୃ.୧୩୬)। ଆଦିବାସୀମାନେ ନିଜର ଶ୍ରେଷ୍ଠ ପ୍ରଭୁଙ୍କୁ ଜଗନ୍ତ ବୋଲି କହୁଥିଲେ। ଜଗନ୍ତ ଶବ୍ଦ ସହ ନାଥ ଶବ୍ଦକୁ ମିଶାଇ ଜଗନ୍ତନାଥରୁ ଜଗତନାଥ ଓ ଶେଷରେ ଜଗନ୍ନାଥ ଶବ୍ଦର ସୃଷ୍ଟି ହେବା ଲେଖକ ଦର୍ଶାଇଛନ୍ତି। (ପୃ.୧୪୯)

ଜଗନ୍ନାଥ ଶବ୍ଦର ଅନ୍ୟ ଯେଉଁ ବ୍ୟବହାର ଅଛି, ଲେଖକ ସେସବୁର ଟଣାଓଟରା ଅର୍ଥକୁ ଆଧାରହୀନ ବୋଲି ଦର୍ଶାଇ ତାହାକୁ ସମାଲୋଚନା କରିଛନ୍ତି। ବୁଦ୍ଧଙ୍କ ନିଜସ୍ୱ ଉକ୍ତିକୁ ଆଧାର କରି ବୌଦ୍ଧଧର୍ମାବଲମ୍ବୀମାନେ ବୁଦ୍ଧଙ୍କୁ ଉପାସନା କଲାବେଳେ ତାହାଙ୍କୁ ଜଗନ୍ନାଥ ରୂପରେ ହିଁ ସମ୍ବୋଧିତ କରିଥାଆନ୍ତି। ତେବେ ପ୍ରଥମଥର ପାଇଁ 'ଜଗନ୍ନାଥ' ଶବ୍ଦ ପ୍ରୟୋଗ କରିଥିବା କବି ଇନ୍ଦ୍ରଭୂତି ଥିଲେ ବୌଦ୍ଧ ଓ ବଜ୍ରଯାନୀ। ବୌଦ୍ଧଧର୍ମରେ ତନ୍ତ୍ରର ପ୍ରଭାବ ଯୋଗୁଁ ବଜ୍ରଯାନୀମାନେ ଶୂନ୍ୟବାଦରେ ବିଶ୍ୱାସ କରୁଥିବାରୁ ପାଣିପାଦଶୂନ୍ୟ ଜଗନ୍ନାଥଙ୍କର ମୂର୍ତ୍ତିକୁ ଉପାସ୍ୟ ଭାବେ ଗ୍ରହଣ କରିଥିଲେ। ପୁନଶ୍ଚ ବଜ୍ରଯାନୀମାନେ ଶବରମାନଙ୍କ ମଧ୍ୟରେ ନିଜ ଧର୍ମମତର ପ୍ରଚାର କରିବା ପାଇଁ ସେମାନଙ୍କ ଦ୍ୱାରା ପୂଜିତ ଦାରୁ ବା ଖମ୍ବକୁ ଜଗନ୍ନାଥ ଆଖ୍ୟା ଦେଇ ପରମବଜ୍ରୀ ରୂପେ ଗ୍ରହଣ କରିଥିଲେ। ଲେଖକ ଡକ୍ଟର ମହତାବଙ୍କ ମତ ଉଦ୍ଧାରକରି ଲେଖିଛନ୍ତି, "ବୁଦ୍ଧଙ୍କ ଅନ୍ୟ ନାମ ଜଗନ୍ନାଥ, ଏହା ପୁରାତନ ପାଲି ସାହିତ୍ୟ ଓ ନେପାଳରୁ ମିଳିଥିବା ତନ୍ତ୍ର ସାହିତ୍ୟରୁ ମଧ୍ୟ ମିଳେ। ଏଲୋରାର ପର୍ବତ ଖୋଦିତ ଗୋଟିଏ ବୌଦ୍ଧ ମନ୍ଦିରର ନାମ ଜଗନ୍ନାଥ। ଜଗନ୍ନାଥ ନାମର ମୂଳ ହେଉଛି ବୌଦ୍ଧ" (ପୃ.୧୩୯)। ଏହି ସବୁ ତଥ୍ୟକୁ ଆଧାର କରି ଲେଖକ ଜଗନ୍ନାଥଙ୍କୁ ବୌଦ୍ଧମୂଳ ବୋଲି ପ୍ରତିଷ୍ଠା କରିଛନ୍ତି।

ପୁନଶ୍ଚ ଜଗନ୍ନାଥଙ୍କର ଆଦିପୀଠ କେଉଁ ଜାଗାରେ ଥିଲା ଏହା ଏକ ବିବଦମାନ ପ୍ରଶ୍ନ ହେଲେ ବି ଲେଖକ ବିଭିନ୍ନ ଯୁକ୍ତି ଓ ତଥ୍ୟର ଆଶ୍ରୟ ନେଇ ଦର୍ଶାଇଛନ୍ତି ଯେ, ପୁରୀ ଜଗନ୍ନାଥଙ୍କର ଆଦିପୀଠ ନୁହେଁ। ପୁରୀରେ ଜଗନ୍ନାଥ ମନ୍ଦିର ସ୍ଥାପନ ପୂର୍ବରୁ ଜଗନ୍ନାଥ ଉପାସନା ଓଡ୍ର ଭୂଖଣ୍ଡରେ ସୃଷ୍ଟି ହୋଇଥିଲା ଓ ପୁରୀ ଓଡ୍ରର ଅଂଶବିଶେଷ ନଥିଲା। ଉପକୂଳବର୍ତ୍ତୀ ଅଞ୍ଚଳ ଓଡ୍ରର ପରିସରଭୁକ୍ତ ନ ଥିବାରୁ ପୁରୀ ଜଗନ୍ନାଥଙ୍କର ଆଦି ପୀଠସ୍ଥଳି ନଥିଲା। ଅପରପକ୍ଷରେ ନରସିଂହପୁର ଓ ହିନ୍ଦୋଳରେ ବ୍ୟାପୀ ରହିଥିବା ନନ୍ଦିନିଆଁ ପର୍ବତମାଳା ଅଞ୍ଚଳ ଜଗନ୍ନାଥଙ୍କ ଆଦିପୀଠସ୍ଥଳି ବୋଲି ଲେଖକ ଦର୍ଶାଇଛନ୍ତି। ତଳମୂଳ ଗ୍ରାମରେ ଥିବା ନାଗ ଓ ମନସାପୂଜାର ପ୍ରାଚୀନ ପରମ୍ପରା ଓ ହୁଏନ୍‌ସାଂଙ୍କ ଦ୍ୱାରା ଆଲୋଚିତ ବୌଦ୍ଧବିହାର, ପୁଷ୍ପଗିରି, ଯାହା ଏହି ଅଞ୍ଚଳରେ ଅବସ୍ଥିତ ଥିଲା, ଏହି ସମ୍ଭାବନାର ବଳିଷ୍ଠ ଆଧାର ବୋଲି ଲେଖକ ଗ୍ରହଣ କରିଛନ୍ତି। ପୁନଶ୍ଚ ଏହି ଅଞ୍ଚଳର ଜଗନ୍ନାଥ ସଡ଼କ ସୋନପୁର, ବୌଦ, ଫୁଲବାଣୀ ଅଞ୍ଚଳରୁ ନଦୀ କୂଳେକୂଳେ ଆସି ଅନୁଗୋଳ, ହିନ୍ଦୋଳ ଓ ନରସିଂହପୁର ଅଞ୍ଚଳରେ ବିସ୍ତୃତ ରହିଥିଲା। ଏହା ମହାନଦୀ କୂଳେକୂଳେ ଆସି ଅନୁଗୋଳ, ହିନ୍ଦୋଳ ଓ ନରସିଂହପୁର ଅଞ୍ଚଳରେ ବିସ୍ତୃତ ରହିଥିଲା ଓ କେବେ ପୁରୀ ପର୍ଯ୍ୟନ୍ତ ବିସ୍ତୃତ ନଥିଲା। ସପ୍ତମ-ଅଷ୍ଟମ ଶତାବ୍ଦୀରେ ରଚିତ କାଳିକା ପୁରାଣ ମତରେ ଜଗନ୍ନାଥ ଓଡ୍ର ଦେଶର ପଶ୍ଚିମ ଭାଗରେ ପୂଜା ପାଇବା ଉଲ୍ଲେଖ ରହିଛି। ଓଡ୍ରର ପାରମ୍ପରିକ ସୀମାକୁ ବିଚାରକୁ ନେଇ ଓ ଏହିପରି ବିଭିନ୍ନ ତଥ୍ୟର ଆଧାରରେ ଓଡ୍ରଦେଶର ମହାନଦୀ କୂଳରେ ଜଗନ୍ନାଥଙ୍କର ଆଦିପୀଠସ୍ଥଳି ଥିଲା ବୋଲି ଲେଖକ ଦର୍ଶାଇଛନ୍ତି। ଏହି ସ୍ଥାନ ନନ୍ଦିନିଆଁ ପର୍ବତମାଳାର ତଟସ୍ଥାନକୁ ହିଁ ବୁଝାଇଥାଏ। ବସ୍ତୁତଃ ଆଜିର ପୁରୀ କଙ୍ଗୋଦ ବା ତୋଷାଳୀର ଅନ୍ତର୍ଭୁକ୍ତ ଥିଲା, ମାତ୍ର ଓଡ୍ରର ନ ଥିଲା। ଓଡିଶାରେ ଥିବା ଛବିଶଟି ଗଡ଼ଜାତ ବିଭିନ୍ନ ସମୟରେ ବିଭିନ୍ନ ରାଜବଂଶ ଦ୍ୱାରା ଶାସିତ ହୋଇଛି।

ମୋଟ୍ ଉପରେ ଦୁଇଟି ପ୍ରଶ୍ନକୁ ଲେଖକ ବଡ଼ ଗମ୍ଭୀରତାର ସହ ଆଲୋଚନା କରିଛନ୍ତି। ତାହା ହେଲା-

(୧) ଜଗନ୍ନାଥ ବୌଦ୍ଧମୂଳ ନା ବିଷ୍ଣୁମୂଳ ?

(୨) ଜଗନ୍ନାଥଙ୍କର ଆଦିପୀଠସ୍ଥଳ ପୁରୀ ନା ନନ୍ଦିନିଆଁ ପର୍ବତମାଳାର ତଟଦେଶ ?

ଲେଖକ ବିଭିନ୍ନ ତଥ୍ୟ, ପୁରାଣ, ସାହିତ୍ୟ, ଇତିହାସ ଓ ଶିଳାଲେଖକୁ ବିଚାରକୁ ନେଇ ଦର୍ଶାଇଛନ୍ତି ଯେ, ଜଗନ୍ନାଥ ମୌଳିକତଃ ବୌଦ୍ଧମୂଳ ଓ ପରେ ତାଙ୍କୁ ବିଷ୍ଣୁମୂଳ ବୋଲି ଗ୍ରହଣ କରାଯାଇଛି। ସେହିପରି ଜଗନ୍ନାଥଙ୍କର ଆଦିପୀଠ କେବେ ବି ପୁରୀ ନଥିଲା ଓ ପୁରୀ ମନ୍ଦିର ନିର୍ମାଣ ପରେ ସେଠାରେ ଜଗନ୍ନାଥଙ୍କୁ ସ୍ଥାପନ କରାଯିବା ଦ୍ୱାରା ଜଗନ୍ନାଥ ଉପାସନାର ମହାତ୍ମ୍ୟ ପୁରୀକୁ ଆସିଲା।

ବସ୍ତୁତଃ ଲେଖକଙ୍କ ମତରେ ଜଗନ୍ନାଥ ବ୍ରାହ୍ମଣଧର୍ମର ଦେବତା ନଥିଲେ, ବରଂ ପରେ ତାଙ୍କୁ ବିଷ୍ଣୁମୂଳ ଭାବେ ବ୍ରାହ୍ମଣ୍ୟ ଧର୍ମର ଦେବତାରେ ରୂପାନ୍ତରିତ କରାଯାଇଥିଲା। ସେଥିପାଇଁ ନାନା କିମ୍ବଦନ୍ତୀ ଓ ପୌରାଣିକ ଉପାଖ୍ୟାନ ସୃଷ୍ଟି କରାଯାଇଥିଲା। ତେବେ ଇତିହାସ ଓ କିମ୍ବଦନ୍ତୀ ମଧ୍ୟରେ ପାର୍ଥକ୍ୟ ରହିଛି। ଇତିହାସ ସର୍ବଦା ତଥ୍ୟଭିତ୍ତିକ ଓ ବାସ୍ତବ। କିନ୍ତୁ କିମ୍ବଦନ୍ତୀ ବା ଜନଶ୍ରୁତି ତଥ୍ୟଭିତ୍ତିକ ନୁହେଁ, ଏହା କପୋଳକଳ୍ପିତ, ଅତିରଞ୍ଜିତ ଓ ଅସତ୍ୟ।

ଯେଉଁ ପୁରାଣମାନଙ୍କରେ ଜଗନ୍ନାଥଙ୍କ ଆଦିପୀଠ ପୁରୀ ବୋଲି ଦର୍ଶାଯାଇଛି ଲେଖକ ସେସବୁକୁ ଆଲୋଚନା କରିଛନ୍ତି। ସ୍କନ୍ଧ ପୁରାଣ, ବିଷ୍ଣୁପୁରାଣ ଓ ବ୍ରହ୍ମପୁରାଣ ଆଦିକୁ ଆଲୋଚନାକୁ ନେଇ ସେସବୁ ପୁରାଣମାନଙ୍କର କାହାଣୀମାନ ପରସ୍ପର ବିରୋଧୀ ବୋଲି ଦର୍ଶାଇଛନ୍ତି। ସେସବୁ ପୁରାଣଗୁଡିକ ଜଗନ୍ନାଥ ମନ୍ଦିର ନିର୍ମାଣ ପରବର୍ତ୍ତୀ କାଳରେ ରଚିତ ହୋଇଛି। ବିଭିନ୍ନ ପୁରାଣମାନଙ୍କରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ବିଷୟ ଉଲ୍ଲେଖ ଅଛି। ଏହିସବୁ ପୁରାଣମାନଙ୍କର ବର୍ଣ୍ଣନାନୁଯାୟୀ, ଓଡିଶାରେ ମାଧବ ଉପାସନା ପ୍ରଚଳିତ ଥିଲା। ନୀଳମାଧବ ବିଗ୍ରହ ଅନ୍ତର୍ଦ୍ଧାନ ହୋଇଗଲା ଓ ସମୁଦ୍ରରେ ଭାସି ଆସୁଥିବା ଏକ ଦାରୁରୁ ଜଗନ୍ନାଥ ମୂର୍ତ୍ତି ଗଠନ କରିବା ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହୋଇଥିଲା। ଏହାର ଅର୍ଥ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ମୂର୍ତ୍ତି ଗଠନ ହେବା ପୂର୍ବରୁ ଜଗନ୍ନାଥଙ୍କର ଆବିର୍ଭାବ ହୋଇନଥିଲା। ତେବେ ଇନ୍ଦ୍ରଦ୍ୟୁମ୍ନ ଏକ ପୌରାଣିକ ଚରିତ୍ର, ବସ୍ତୁତଃ ତାଙ୍କର ଐତିହାସିକତା ନଥିବାରୁ ଏହାର ସମୟ ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ।

ଓଡ୍ର ବାହାରେ ଓଡିଶାରେ ମାଧବ ପୂଜାର ପ୍ରତୀକ ଭାବେ ନୀଳମାଧବ ପୂଜା ପାଉଥିଲେ। ଏହିସବୁ ପୁରାଣମାନଙ୍କରେ ଜଗନ୍ନାଥଙ୍କ ବିବରଣୀ ସଂପର୍କରେ କିଛି ବର୍ଣ୍ଣନା ନାହିଁ, ବରଂ ଜଗନ୍ନାଥଙ୍କୁ ନୀଳମାଧବଙ୍କର ପରିବର୍ତ୍ତିତ ରୂପ ଭାବେ

ଉପସ୍ଥାପନ କରିବାକୁ ପ୍ରୟାସ କରାଯାଇଛି। ଲେଖକଙ୍କ ମତରେ ଜଗନ୍ନାଥ ପୁରୀରେ ସଂସ୍ଥାପିତ ହେବା ପରେ ଅନେକ କାଳ୍ପନିକ ଉପାଖ୍ୟାନମାନ ରଚନା କରାଯାଇ ଜଗନ୍ନାଥଙ୍କର ପ୍ରାଚୀନତା ଓ ବିଷ୍ଣୁମୂଳତ୍ୱ ପ୍ରମାଣ କରିବା ପାଇଁ ପ୍ରୟାସ କରାଯାଇଛି। (ପୃ.୧୬୧)

ଏହି କ୍ଷେତ୍ରରେ ମାଦଳାପାଞ୍ଜିର ତଥ୍ୟକୁ ବିଚାରକୁ ନିଆଗଲେ ଦେଖାଯିବ ଯେ ସେଠାରେ ଇନ୍ଦ୍ରଦ୍ୟୁମ୍ନ ଓ ନୀଳମାଧବ ଉପାଖ୍ୟାନ ସ୍ଥାନ ପାଇନାହିଁ। ତେବେ ମାଦଳାପାଞ୍ଜିର ରଚନାକାଳ ଷୋଡ଼ଶ ଶତାବ୍ଦୀ ଶେଷ ଭାଗରେ ଓ ଏହା ଭୋଇ ବଂଶ ଅମଳରୁ ଆରମ୍ଭ ହୋଇଥିଲା। ଭୋଇବଂଶଠାରୁ ମାଦଳା ପାଞ୍ଜିରେ ଯାହା ଉଲ୍ଲେଖ ଅଛି, ତାହା ଇତିହାସ, ସୁତରାଂ ଅନ୍ୟାନ୍ୟ କ୍ଷେତ୍ରରୁ ପ୍ରାପ୍ତ ବିବରଣୀ ସହ ଏହାର ଅସାମଞ୍ଜସ୍ୟ ନାହିଁ। ତେବେ ଯଯାତିକେଶରୀ ମାଳବ ରାଜ୍ୟରୁ ଆସି ଓଡିଶାର ଅନେକ ଅଞ୍ଚଳକୁ ଜୟ କରି କେଶରୀ ବଂଶ ସ୍ଥାପନ କରିଥିଲେ। ଏହା ଏକାଦଶ ଶତାବ୍ଦୀର ଘଟଣା। ସେହି ପରଠାରୁ ଉପକୂଳ ଓଡିଶାରେ ମନ୍ଦିର ନିର୍ମାଣର ଏକ ନୂତନ ଯୁଗ ଆରମ୍ଭ ହୋଇଥିଲା। ଜଗନ୍ନାଥ ମନ୍ଦିର ଚୋଳଗଙ୍ଗଦେବ ଓ ତାଙ୍କ ପୁତ୍ର ଅନଙ୍ଗଭୀମ ଦେବ ଦ୍ୱାଦଶ ଶତାବ୍ଦୀରେ ପ୍ରତିଷ୍ଠା କରିଥିଲେ। ତେବେ ମାଦଳାପାଞ୍ଜି ଲେଖା ଯାଇଥିବା ସମୟର ପୂର୍ବବର୍ତ୍ତୀ ଯେଉଁ ଘଟଣାମାନ ଏଥିରେ ରହିଛି ତାହା କେବଳ ଜନଶ୍ରୁତି ଓ କିମ୍ବଦନ୍ତୀକୁ ଆଧାର କରି କରାଯାଇଛି ଯାହା ଇତିହାସ ନୁହେଁ। ମାଦଳା ପାଞ୍ଜିରେ ଜଗନ୍ନାଥଙ୍କୁ ପୁରୁଷୋତ୍ତମ ବୋଲି ବର୍ଣ୍ଣନା କରାଯାଇଛି। ମାଦଳାପାଞ୍ଜି ଲେଖାଯିବା ସମୟକୁ ଜଗନ୍ନାଥ ଏକ ବୈଷ୍ଣବୀୟ ଦେବତା ପୁରୁଷୋତ୍ତମ ଭାବେ ପରିଚିତ ହୋଇ ସାରିଥିଲେ। ତେବେ ଯଯାତିଙ୍କ ପୂର୍ବରୁ ପୁରୀରେ ଜଗନ୍ନାଥ ଉପାସନାର କୌଣସି ପ୍ରମାଣ ନାହିଁ। ସୁତରାଂ ଜଗନ୍ନାଥଙ୍କର ସ୍ଥାପନା ଯଯାତିଙ୍କ ପରବର୍ତ୍ତୀ ସମୟ କହିଲେ ଅତ୍ୟୁକ୍ତି ହେବନାହିଁ। ତେବେ ମାଦଳାପାଞ୍ଜିରେ ପୁରୀରେ ଜଗନ୍ନାଥ ଉପାସନାର ସମୟକାଳକୁ ଅତି ପ୍ରାଚୀନ ବୋଲି ଦର୍ଶାଇବାକୁ କେତେକ କିମ୍ବଦନ୍ତୀମୂଳକ କାହାଣୀର ଅବତାରଣା କରାଯାଇଛି। ଏହି କାହାଣୀ ଭିତରୁ ରକ୍ତବାହୁର ଆଗମନ ଓ ଜଗନ୍ନାଥଙ୍କୁ ସୋନପୁରରେ ଲୁଚାଇ ରଖିବା ବା ପାତାଳି କରିବା ପ୍ରସଙ୍ଗଟି ମହତ୍ତ୍ୱପୂର୍ଣ୍ଣ। ରକ୍ତବାହୁ କାହାଣୀର ମହତ୍ତ୍ୱ ହେଉଛି ଯେ, ଇତିହାସର କୌଣସି ଏକ ସମୟରେ ଜଗନ୍ନାଥଙ୍କ ଅସ୍ତିତ୍ୱ ପ୍ରତି ବିପଦର ଆଶଙ୍କା ଦେଖାଦେବାରୁ ତାଙ୍କୁ ସୋନପୁରରେ ପାତାଳି କରି ରଖାଯାଇଥିଲା।

ତେବେ ଜଗନ୍ନାଥଙ୍କ ପ୍ରତି ବିପଦ ଦେଖାଯିବାର କାରଣ କ'ଣ ହୋଇପାରେ ? ଏହାର ଏକ ସୁଚିନ୍ତିତ ବ୍ୟାଖ୍ୟା ବିଭିନ୍ନ ତଥ୍ୟକୁ ଆଧାର କରି ଲେଖକ ଦେବାକୁ ପ୍ରୟାସ କରିଛନ୍ତି । ତାହାନୁଯାୟୀ ଗୁପ୍ତଯୁଗରେ ବ୍ରାହ୍ମଣ୍ୟଧର୍ମର ଉତ୍‌ଥାନ ପରଠୁ ବୌଦ୍ଧଧର୍ମର ବିଲୋପ ପାଇଁ ଏକ କ୍ରମାଗତ ପ୍ରୟାସ ହୋଇଥିଲା । ସେହି ସମୟରେ ଅନେକ ବୌଦ୍ଧକୀର୍ତ୍ତୀକୁ ଧ୍ୱଂସ କରାଗଲା ଓ ସେହି ଧ୍ୱଂସସାଧନ ଉପରେ ବ୍ରାହ୍ମଣଧର୍ମର ପ୍ରତିଷ୍ଠା ହେଲା । ଅତୀତରେ ଯେଉଁ ଧର୍ମ ରାଜତନ୍ତ୍ରର ପୃଷ୍ଠପୋଷକତା ଲାଭ କରିଛି, ତାହାର ପ୍ରସାର ପାଇଁ ରାଷ୍ଟ୍ରଶକ୍ତି ଅନ୍ୟ ଧର୍ମକୁ ଆକ୍ରମଣ କରିଛି । ଏହା ଇତିହାସର ଓ ମଣିଷ ସଭ୍ୟତାର ସାଧାରଣ ଘଟଣା ହୋଇ ରହିଛି । ଜଗନ୍ନାଥ ଯେହେତୁ ଏକ ବୌଦ୍ଧାବତାର ଭାବରେ ପୂଜିତ ହେଉଥିଲେ ଓ ବୌଦ୍ଧ ଧର୍ମାବଲମ୍ବୀ ଭଞ୍ଜବଂଶୀୟ ଶାସକଙ୍କର ଆରାଧ୍ୟ ଦେବତା ଥିଲେ ତେଣୁ ତାଙ୍କ ଅସ୍ତିତ୍ୱ ପ୍ରତି ବିପଦ ସୃଷ୍ଟି ହୋଇଥିଲା । ଐତିହାସିକ ତଥ୍ୟ ଆଧାରରେ ଲେଖକ ଦର୍ଶାଇଛନ୍ତି ଯେ, କର୍ଣ୍ଣସୁବର୍ଣ୍ଣର ରାଜା ଶଶାଙ୍କ ଓଡ଼ିଶାର ଅନେକ ଅଞ୍ଚଳ ଜୟକରି ବୌଦ୍ଧଧର୍ମର କୀର୍ତ୍ତିମାନ ଧ୍ୱଂସ କରିଥିଲେ । ଶଶାଙ୍କ କିପରି ସମୁଦ୍ର କୂଳଠାରୁ ଗଙ୍ଗାତଟ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବୌଦ୍ଧବିହାରଗୁଡିକ ଧ୍ୱଂସକରିଥିଲେ ତାହାର ବର୍ଣ୍ଣନା କେତେକ ବୌଦ୍ଧଗ୍ରନ୍ଥରେ ରହିଛି । କଙ୍ଗୋଜ ଦାୟିତ୍ୱରେ ଶଶାଙ୍କଙ୍କ ପରେ ତାଙ୍କର ମହାସାମନ୍ତ ରହି ବ୍ରାହ୍ମଣ୍ୟଧର୍ମର ପୁନରୁତ୍‌ଥାନ ପାଇଁ ବହୁ ଉଦ୍ୟମ କରିଥିଲେ । ସମ୍ଭବତଃ ବୈଦିକ ପରମ୍ପରା ଓ ବ୍ରାହ୍ମଣ୍ୟଧର୍ମର ପ୍ରତିଷ୍ଠା ସମୟରେ ଓଡ୍ରର ବିଖ୍ୟାତ ବୌଦ୍ଧକ୍ଷେତ୍ର ପୁଷ୍ପଗିରି ବିହାରକୁ ଧ୍ୱଂସ କରାଯାଇଥିଲା ଯାହା ନନ୍ଦିନିଆଁ ପର୍ବତ ତଟ୍‌ରେ ଅବସ୍ଥିତ ଥିଲା । ଶଶାଙ୍କ ଓ ତାଙ୍କର ସାମନ୍ତରାଜା ବୌଦ୍ଧକୀର୍ତ୍ତିର ବିଲୋପ ସାଧନ କରି ହିନ୍ଦୁରାଜ୍ୟ ପ୍ରତିଷ୍ଠା କରିବା ପାଇଁ ଯେଉଁ ହିଂସାତ୍ମକ ପନ୍ଥାର ଆଶ୍ରୟ ନେଇଥିଲେ ତାହାର କାହାଣୀକୁ ଏକ କିମ୍ବଦନ୍ତୀ ରୂପେ ରକ୍ତବାହୁ ଚରିତ୍ର ମାଧ୍ୟମରେ ମାଦଳା ପାଞ୍ଜିରେ ବ୍ୟକ୍ତ କରାଯାଇଛି ବୋଲି ଲେଖକ ମତବ୍ୟକ୍ତ କରିଛନ୍ତି । ଏହା ବୌଦ୍ଧଧର୍ମର ଦେବତା ଜଗନ୍ନାଥଙ୍କ ପ୍ରତି ବିପଦର ଆଶଙ୍କା ସୃଷ୍ଟି କରିଥିବାରୁ ଓଡ୍ର ଭୂଖଣ୍ଡର ମୂଳ ପୀଠରୁ ଜଗନ୍ନାଥଙ୍କୁ ନେଇ ସୋନପୁରରେ ପାତାଳି କରାଯାଇଥିଲା । ବସ୍ତୁତଃ ଏହା ସହିତ ପୁରୀର ଜଗନ୍ନାଥ ଉପାସନାର ସମ୍ବନ୍ଧ ନାହିଁ ଓ ଏହି ଘଟଣା ଯଯାତିଙ୍କର ବହୁ ପୂର୍ବରୁ ବୋଲି ମନେହୁଏ ।

ତେବେ ପ୍ରଶ୍ନ ହେଉଛି ବୌଦ୍ଧମୂଳ ଜଗନ୍ନାଥଙ୍କୁ କିପରି ବ୍ରାହ୍ମଣ୍ୟଧର୍ମରେ ଗ୍ରହଣ କରାଗଲା ଓ ପୁରୀକୁ ଜଗନ୍ନାଥଧାମ ଭାବେ ପ୍ରାଧାନ୍ୟ ଦିଆଗଲା ? ଲେଖକଙ୍କ

ସୁଚିନ୍ତିତ ମନ୍ତବ୍ୟ ହେଉଛି ଯେ ସୋମବଂଶୀ ଯଯାତି କେଶରୀଙ୍କ ପୂର୍ବରୁ ପୁରୀ ଜଗନ୍ନାଥ କ୍ଷେତ୍ର ହେବାର କୌଣସି ପ୍ରମାଣ ଇତିହାସରେ ନାହିଁ। ଜଗନ୍ନାଥ ଓଡ୍ରଦେଶ ରାଜବଂଶ ଦ୍ୱାରା ପୂଜିତ ହେଉଥିଲେ ଓ ପୁରୀ ଇତିହାସର କୌଣସି ସମୟରେ ଓଡ୍ରର ଅଂଶବିଶେଷ ନଥିଲା(ପୃ.୧୯୮)। ପୁରୀ ଓ ଉପକୂଳବର୍ତ୍ତୀ ତୋଷଳରେ (ପୁରୀ ତୋଷଳରେ ଅନ୍ତର୍ଭୁକ୍ତ) ଜଗନ୍ନାଥ ଉପାସନା ପୂର୍ବରୁ ମାଧବ ଉପାସନା ଥିଲା ବୋଲି ଲେଖକ ଦର୍ଶାଇଛନ୍ତି। ମାଧବ ଉପାସନା ଅର୍ଥ କୃଷ୍ଣ ଉପାସନା, କାରଣ କୃଷ୍ଣଙ୍କର ଅନ୍ୟନାମ ଥିଲା ମାଧବ। ମାଧବ ବା ନୀଳମାଧବ ଉପାସନାରେ ଶ୍ରୀକୃଷ୍ଣଙ୍କର ବିଗ୍ରହକୁ ପୂଜା କରାଯାଏ। ଯଯାତି କେଶରୀଙ୍କ ଆଗମନ ପୂର୍ବରୁ ପୁରୀରେ ନୀଳମାଧବଙ୍କର ଉପାସନା ଥିଲା ଓ ସେଠାରେ ଏକ ଭଗ୍ନ ମନ୍ଦିର ରହିଥିଲା। ସେହିଠାରେ ହିଁ ଯଯାତି ଜଗନ୍ନାଥଙ୍କ ପୂଜା ଓ ଉପାସନା ପ୍ରଚଳନ କରିଥିଲେ ଓ ପରେ ସେହି ସୋମବଂଶୀ ରାଜା ଅନଙ୍ଗଭୀମଦେବ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ।

ଏହି ପରିପ୍ରେକ୍ଷୀରେ ଲେଖକ ଜଗନ୍ନାଥଙ୍କ ଉତ୍ପତ୍ତି ସଂପର୍କରେ କେତେକ ପ୍ରଚଳିତ ମତକୁ ସମାଲୋଚନା କରିଛନ୍ତି। ଜଗନ୍ନାଥଙ୍କ ରତ୍ନବେଦୀ ଉପରେ ଏବେ ସୁଦ୍ଧା ନୀଳମାଧବଙ୍କର ଉପାସନା ଜଗନ୍ନାଥଙ୍କ ଉପାସନା ସହ ହୋଇଆସୁଅଛି। ସୁତରାଂ ଜଗନ୍ନାଥଙ୍କର ପୂର୍ବରୂପ ନୀଳମାଧବ ବୋଲି କେହି କେହି ମତ ପ୍ରକାଶ କରିଥା'ନ୍ତି। ତେବେ ଲେଖକଙ୍କ ମତରେ ନୀଳମାଧବ ଓ ଜଗନ୍ନାଥ ପରସ୍ପରଠାରୁ ସମ୍ପୂର୍ଣ୍ଣ ପୃଥକ୍ (ପୃ.୨୨୦)। ଜଗନ୍ନାଥ ଓ ନୀଳମାଧବଙ୍କୁ ସମାନ କହିବା ଏକ ବିଶ୍ୱାସଜନିତ ଭାବବିହ୍ୱଳତା ହୋଇପାରେ, କିନ୍ତୁ ଏହା ଏକ ଐତିହାସିକ ସତ୍ୟ ନୁହେଁ। ଜଗନ୍ନାଥ ଉପାସନା ଓ ନୀଳମାଧବ ଉପାସନା ଦୁଇଟି ପୃଥକ୍ ଭୂଖଣ୍ଡରେ ଓ ପୃଥକ୍ ବିଶ୍ୱାସ ଆଧାରରେ ଗଢ଼ି ଉଠିଥିଲା। ସୁତରାଂ ସେମାନେ ସମାନ ନୁହନ୍ତି। ସେହିପରି ଓଡ୍ରର ଭଞ୍ଜବଂଶୀ ରାଜାମାନେ ମଧ୍ୟ ମାଧବ ଉପାସନା କରୁଥିଲେ ବୋଲି କେହି କେହି ମତ ଦେଇଥା'ନ୍ତି। ତେବେ ଲେଖକଙ୍କ ମତରେ ମାଧବ ଉପାସନା ଓଡିଶାର ଉପକୂଳ ଅଞ୍ଚଳ ମାନଙ୍କରେ ପ୍ରସାର ଲାଭ କରିଥିଲା। ଓଡିଶାରେ ପୂଜିତ 'ମାଧବ' ପୁରୁଷୋତ୍ତମ ନାମରେ ସୁବିଦିତ। କାରଣ ପୁରୁଷୋତ୍ତମଙ୍କର ଅନ୍ୟ ନାମ ଥିଲା ନୃସିଂହ। ପୁରୀକୁ ପ୍ରଥମେ ନୃସିଂହକ୍ଷେତ୍ର ବୋଲି କୁହାଯାଉଥିଲା। ଯେ ନୃସିଂହ, ସେ ମାଧବ ଓ ସେ ପୁରୁଷୋତ୍ତମ। ବସ୍ତୁତଃ ପୁରୀର ନାମ ପୁରାଣ ବା ମାଦଳାପାଞ୍ଜିରେ ବ୍ୟବହୃତ ନ ହୋଇ ପୁରୁଷୋତ୍ତମ କ୍ଷେତ୍ର ବୋଲି ବ୍ୟବହୃତ ହୋଇଛି। ବୌଦ୍ଧମୂଳ ଜଗନ୍ନାଥଙ୍କୁ

ହିନ୍ଦୁ ସମାଜର ଦେବତା ଭାବରେ ନିଆଯାଇଛି, କାରଣ ପୁରାଣରେ ଅବତାରବାଦର ପରିକଳ୍ପନା କରାଯାଇ ବୁଦ୍ଧଙ୍କୁ ବିଷ୍ଣୁଙ୍କର ନବମ ଅବତାର ଭାବେ ସ୍ୱୀକୃତି ଦିଆଯାଇଛି।

ମୋଟ୍ ଉପରେ ସୋମବଂଶୀମାନେ ଓଡିଶାକୁ ଆସିବା ପରେ ଯାଇ ମାଧବ ଉପାସନା ଓଡିଶାରେ ପ୍ରଚଳିତ ହୋଇଛି। ଦଶମ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ମାଧବ ଉପାସନା ଓଡିଶାରେ ନଥିଲା। ମାଧବ ଉପାସନାର ପ୍ରଚଳିତ ସୋମବଂଶୀ ଯଯାତିଙ୍କ ସମୟରୁ ବା ତାଙ୍କ ପରେ ଆରମ୍ଭ ହୋଇଛି ଓ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର ଭାବେ ଗ୍ରହଣ କରାଯାଇଛି। ବସ୍ତୁତଃ ମାଧବ ବା ନୃସିଂହଙ୍କ ପୂଜାକୁ ନେଇ ପୁରୁଷୋତ୍ତମ ନାମକରଣ ହୋଇଛି, ଜଗନ୍ନାଥଙ୍କ ପୂଜାକୁ ନେଇ ନୁହେଁ। ଲେଖକଙ୍କ ମତରେ ପୁରୀରେ ପୁରୁଷୋତ୍ତମ ନୃସିଂହଙ୍କର ଉପାସନା ପ୍ରତିଷ୍ଠା ଲାଭ କଲା ପରେ ପରବର୍ତ୍ତୀ ଅବସ୍ଥାରେ ଜଗନ୍ନାଥ ସେଠାରେ ପ୍ରତିଷ୍ଠିତ ହୋଇଛନ୍ତି। (ପୃ. ୨୩୨)। ଦଶଅବତାର ତତ୍ତ୍ୱର ପ୍ରବକ୍ତା କବି ଜୟଦେବ କୃଷ୍ଣ ବା ମାଧବଙ୍କର ଉପାସକ ଥିଲେ, ବୁଦ୍ଧଙ୍କର ନୁହେଁ। ବୌଦ୍ଧଧର୍ମର ବିଲୋପ ସାଧନ କରିବା ପାଇଁ ବ୍ରାହ୍ମଣମାନେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଭାବେ ନେଇ ବୁଦ୍ଧଙ୍କର କେତେକ ମତକୁ ହିନ୍ଦୁଧର୍ମ ମତରେ ମିଶାଇ ଦେଇଥିଲେ। ଯଦିବା ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀ ପରଠୁ ବହୁ କାବ୍ୟ କବିତା ଓ ପୁରାଣର ବର୍ଣ୍ଣନାରେ ଜଗନ୍ନାଥ ବୁଦ୍ଧଙ୍କର ଅବତାର ବୋଲି ଦର୍ଶାଯାଇଛି ତଥାପି ଜଗନ୍ନାଥଙ୍କୁ ବୈଷ୍ଣବୀୟ ଦେବତା ଭାବେ ପ୍ରତିଷ୍ଠା ପାଇଁ ବ୍ରାହ୍ମଣ୍ୟଧର୍ମ ପ୍ରୟାସ କରିଛି। ସେହି ଲକ୍ଷ୍ୟ ଦିଗରେ ବ୍ରାହ୍ମଣମାନେ ଏକ ହସ୍ତପଦଶୂନ୍ୟ ଦେବତା ଗଠନ କରି, ଅହିଂସାମୟ ବିଷ୍ଣୁମନ୍ତ୍ରରେ ତାଙ୍କୁ ପୂଜା କରି ଓ ତାଙ୍କ ଭୋଗରେ କୌଣସି ଜାତି ବିଚାର ନ ରଖି ବୌଦ୍ଧ ବିଚାରକୁ ହିନ୍ଦୁଧର୍ମ ଆଡ଼କୁ ଫେରାଇଛନ୍ତି। ଜଣେ ବିଶିଷ୍ଟ ଗବେଷକଙ୍କ ମତକୁ ଉଦ୍ଧାର କରି ଲେଖକ ଦର୍ଶାଇଛନ୍ତି ଯେ, ବୌଦ୍ଧଧର୍ମର ପରାଭବ ଓ ହିନ୍ଦୁଧର୍ମର ପୁନଃସଂସ୍କାର ଓ ଟେକ ବଢ଼ାଇବା ସକାଶେ ବୌଦ୍ଧଙ୍କ ମାଲ ମସଲାରୁ ଯେ ଜଗନ୍ନାଥ ଦେବଙ୍କର ସୃଷ୍ଟି ହୋଇଛି ଏଥିରେ କୌଣସି ସନ୍ଦେହ ନାହିଁ।'(ପୃ. ୨୩୩)। ଏହି ପରିପ୍ରେକ୍ଷୀରେ ଜଗନ୍ନାଥଙ୍କ ବିଷ୍ଣୁମୂଳତ୍ୱ ସମ୍ଭାବନା ଓ ସିଦ୍ଧାନ୍ତକୁ ଲେଖକ ନାନା ଦିଗରୁ ଆଲୋଚନା କରି ସେହି ମତ କିପରି ଆଧାରଶୂନ୍ୟ, ତଥ୍ୟବିରୋଧୀ ଓ କେବଳ ଧାର୍ମିକ ଭାବପ୍ରବଣତା ଯୁକ୍ତ ତାହା ଦର୍ଶାଇଛନ୍ତି। ତଥ୍ୟ ଭିତ୍ତିରେ ସିଦ୍ଧାନ୍ତର ନିଷ୍କର୍ଷ ହୋଇଥାଏ, କିନ୍ତୁ ପ୍ରଥମରୁ ଏକ ସିଦ୍ଧାନ୍ତକୁ ନିରୂପଣ କରି ସେହି ସିଦ୍ଧାନ୍ତ ସପକ୍ଷରେ କଳ୍ପିତ ତଥ୍ୟ ସଂଗ୍ରହ କରିବା ତର୍କଦୃଷ୍ଟିରୁ ଦୋଷଯୁକ୍ତ। ବସ୍ତୁତଃ ଯେଉଁମାନେ ଶିଳାଲେଖ,

ଐତିହାସିକ ତଥ୍ୟ ଓ ସମସାମୟିକ ରଚନାକୁ ବିଚାରକୁ ନ ନେଇ ଧାର୍ମିକ ଭାବାବେଗ ଦ୍ୱାରା ପରିଚାଳିତ ହୋଇ ଜଗନ୍ନାଥଙ୍କର ବିଷ୍ଣୁମୂଳତ୍ୱ ପ୍ରମାଣ କରିବାକୁ ପ୍ରୟାସ କରିଛନ୍ତି, ସେମାନଙ୍କର ବିଚାର ଯେ ଭ୍ରମାତ୍ମକ, ଏହା ଲେଖକ ତାଙ୍କର ସିଦ୍ଧାନ୍ତରେ ଅବତାରଣା କରିଛନ୍ତି ।

ଓଡିଶାର ବିସ୍ତୃତ ଆଦିବାସୀ ଅଞ୍ଚଳ, ହିଞ୍ଜିଳି, କଟକ ଓ ସେତେବେଳେର ଓଡ୍ର ଦେଶରେ ବୌଦ୍ଧଧର୍ମର ଯେଉଁ ପ୍ରଭାବ ରହିଥିଲା ଓ ଯେଉଁ ଅସଂଖ୍ୟ ବୌଦ୍ଧକୀର୍ତ୍ତି ମୁଣ୍ଡ ଟେକିଥିଲା ତାହାକୁ ସୋମବଂଶୀ ଶାସନ ପରଠୁ ଧ୍ୱଂସ କରାଯାଇଛି । ଏହାର ବହୁ ପ୍ରମାଣ ଇତିହାସରେ ରହିଛି । ସୋମବଂଶୀଙ୍କର ବୌଦ୍ଧ ବିଦ୍ୱେଷୀ ମନୋଭାବ ଯୋଗୁଁ ବୌଦ୍ଧକୀର୍ତ୍ତିରାଜିକୁ ଧ୍ୱଂସ କରି ସେଠାରେ ମାଧବ ଉପାସନା ଆରମ୍ଭ କରାଯାଇଛି । ସୋମବଂଶୀମାନେ ରାଜ୍ୟ ଜୟ ଅଭିଯାନ କଲାବେଳେ ଯେଉଁ ସ୍ଥାନମାନଙ୍କରେ ବୌଦ୍ଧ ସଭ୍ୟତା ଓ କୀର୍ତ୍ତି ଦେଖିଛନ୍ତି ତାହାକୁ ଧ୍ୱଂସ କରି ସେଠାରେ ମାଧବ ଉପାସନାର ପୀଠ ସ୍ଥାପନ କରିଛନ୍ତି । ବସ୍ତୁତଃ ସମଗ୍ର କୋଶଳ ଓ ଓଡ୍ରରେ ଯେଉଁଠି ଏକଦା ବୌଦ୍ଧଧର୍ମ ଏକ ଜୀବନ୍ତ ଧର୍ମ ଥିଲା ତାହା ସୋମବଂଶର ଆବିର୍ଭାବ ପରେ ଧ୍ୱଂସ ହୋଇଛି । ଲେଖକ ଓଡିଶାର ବହୁ ଅଞ୍ଚଳର ଉପାସନା ପୀଠଗୁଡିକର ପର୍ଯ୍ୟାଲୋଚନା କରି ଏକଦା ସେସବୁ କିପରି ବୌଦ୍ଧ ଭାସ୍କର୍ଯ୍ୟ ଜନିତ ପୀଠ ଥିଲା ଓ ପରେ ମାଧବ ଉପାସନା ପୀଠ ହୋଇଛି ତାହା ଦର୍ଶାଇଛନ୍ତି । ହରିଶଙ୍କର, ନୃସିଂହନାଥ, ନରସିଂହପୁର, ହିନ୍ଦୋଳ, ଆଠମଲ୍ଲିକ, ବିନିକା, ସୋନପୁର, ବାଙ୍କୀ, ନରାଜ, ଚୌଦ୍ୱାର ଓ ମହାନଦୀର ଉଭୟ ତଟର ବିସ୍ତୃତ ଅଞ୍ଚଳରେ ବିରାଜମାନ କରୁଥିବା ବହୁ ପ୍ରାଚୀନ ବୌଦ୍ଧ ସ୍ଥାପତ୍ୟର ଧ୍ୱଂସାବଶେଷ ଅଦ୍ୟାବଧି ଦୃଷ୍ଟିଗୋଚର ହୁଏ । ଅନେକ ସ୍ଥାନରେ ବୌଦ୍ଧ ପୀଠସ୍ଥଳି ନୃସିଂହ ଓ ମାଧବ ଉପାସନା ପୀଠରେ ପରିବର୍ତ୍ତିତ ହୋଇଥିବାର ପ୍ରମାଣ ଲେଖକ ପୁସ୍ତକରେ ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ।

ଏସବୁ ବୌଦ୍ଧ ସ୍ଥାପତ୍ୟ, କୀର୍ତ୍ତି ଓ ବିହାରମାନଙ୍କର ଧ୍ୱଂସକାରୀ କିଏ ସେ ସମ୍ବନ୍ଧରେ ଇତିହାସ ନୀରବ ରହିଥିଲେ ମଧ୍ୟ ଏହା ଯେ ସୋମବଂଶୀମାନଙ୍କ ଆବିର୍ଭାବର ପରବର୍ତ୍ତୀ ଘଟଣା ଏହା ଲେଖକ ସୂଚାଇଛନ୍ତି (ପୃ.୨୫୧) । ତେବେ ଏହି ଧାରାଟି ଶଶାଙ୍କଙ୍କ ପାଖରୁ ଆରମ୍ଭ ହୋଇଥିଲା । ଇତିହାସର ଏହା ଏକ ଅବିବାଦୀୟ ଘଟଣା ଯେ ଅତୀତରେ ଯେଉଁ ଧର୍ମ ଯେତେବେଳେ ରାଜତନ୍ତ୍ରର ପୃଷ୍ଠପୋଷକତା ଲାଭ

କରିଛି ତାହା ପ୍ରସାରଲାଭ କରିଛି। ଏକ ଅନୁଦାର ବା ଅନ୍ୟ ଧର୍ମବିଦ୍ୱେଷୀ ରାଷ୍ଟ୍ରଶକ୍ତି ଅନ୍ୟର ଧର୍ମ, ଉପାସନା ପ୍ରତି ଅସହିଷ୍ଣୁ ହେଲେ ସେହି ଧର୍ମ ଯେତେ ଜୀବନ୍ତ ଧର୍ମ ହୋଇଥାଉ ପଛେ ତାହା ଯେ ପତନୋନ୍ମୁଖୀ ହେବ ଏହା ନିଃସନ୍ଦେହ। ବିଶେଷକରି ରାଜତନ୍ତ୍ର ଯୁଗରେ ଓ ମଧ୍ୟଯୁଗୀୟ ପରିବେଶରେ ଏହା ହିଁ ଇତିହାସର ଧାରା ହୋଇଛି।

ଲେଖକ ପ୍ରଥମ ଭାଗରେ ଆଦିବାସୀଙ୍କର ଧାର୍ମିକ ବିଶ୍ୱାସର ବିକାଶଧାରା ସହ ଭାରତର ପ୍ରମୁଖ ଧାର୍ମିକ ଧାରାଗୁଡ଼ିକର ପର୍ଯ୍ୟାଲୋଚନା କରିଛନ୍ତି। ସେମାନଙ୍କର ଖମ୍ବ ପୂଜା ନାନା ବିବର୍ତ୍ତନ ଦେଇ କିପରି ଜଗନ୍ନାଥ ମୂର୍ତ୍ତି କଳ୍ପନାରେ ରୂପାନ୍ତରିତ ହୋଇଛି ତାହା ଦର୍ଶାଇଛନ୍ତି। ଦ୍ୱିତୀୟ ଭାଗରେ ଜଗନ୍ନାଥଙ୍କ ବୌଦ୍ଧମୂଳତ୍ୱ ଓ ଓଡ୍ର ଜଗନ୍ନାଥଙ୍କ ଆଦିପୀଠ, ପୁରୀ ନୁହେଁ ଏହାକୁ ପ୍ରତିପାଦନ କରିଛନ୍ତି। ଏହିସବୁ ସିଦ୍ଧାନ୍ତକୁ ପ୍ରତିପାଦନ କରିବା ପାଇଁ ଲେଖକ ଶିଳାଲେଖ, ଐତିହାସିକ ତଥ୍ୟ, ପୁରାଣ ସାହିତ୍ୟକୁ ଆଧାର ଭାବେ ନେଇଛନ୍ତି। ଏକ ସିଦ୍ଧାନ୍ତ ସ୍ଥାପନ ପାଇଁ ବସ୍ତୁନିଷ୍ଠ ପ୍ରମାଣ ଯେ ମାନଦଣ୍ଡ ଏହା ନିଃସନ୍ଦେହ। ତେବେ ଲେଖକ ଏ କ୍ଷେତ୍ରରେ ଯେପରି ବସ୍ତୁନିଷ୍ଠ ହୋଇଛନ୍ତି 'ଜଗନ୍ନାଥ ଉପାସନାର ବୈଶିଷ୍ଟ୍ୟ' (ନବମ ପରିଚ୍ଛେଦ) ବିଷୟ ଆଲୋଚନା କଲାବେଳେ ସେହି ମାନଦଣ୍ଡ ଅବ୍ୟାହତ ରଖିନାହାନ୍ତି। ପରନ୍ତୁ ବିଚାରଶୀଳ ଦୃଷ୍ଟିଭଙ୍ଗୀ ଅପେକ୍ଷା ବିଶ୍ୱାସ ଓ ଭାବପ୍ରବଣତାକୁ ଗୁରୁତ୍ୱ ଦେଇଛନ୍ତି। ଲେଖକ ଶ୍ରୀଜଗନ୍ନାଥ ଉପାସନାର ବୈଶିଷ୍ଟ୍ୟ ଅଧ୍ୟାୟରେ ଲେଖିଛନ୍ତି, "ଓଡିଶାର ଧର୍ମ କହିଲେ କେବଳ ଜଗନ୍ନାଥଙ୍କର ଉପାସନାକୁ ବୁଝାଏ। ... ଏ ଜାତିର ରାଷ୍ଟ୍ରଦେବତା ଜଗତର ନାଥ ଜଗନ୍ନାଥଙ୍କୁ ନିଜ ଆସନରୁ ତିଳେ ହେଲେ କେହି ଟଳାଇ ପାରନ୍ତିନାହିଁ।...ଜଗନ୍ନାଥଙ୍କ ଇତିହାସ ହିଁ ଏ ଜାତିର ଇତିହାସ। ଜଗନ୍ନାଥ ହିଁ ଓଡିଆ ଜାତିର ସର୍ବସ୍ୱ।" (ପୃ.୭୪)

ଏହା ଯେ ଏକ ଧାର୍ମିକ-ଭାବପ୍ରବଣ ଜନିତ ଅଭିବ୍ୟକ୍ତି ଏହା ନିଃସନ୍ଦେହ ମନେହୁଏ। ଲେଖକ ନିଜେ ପୁସ୍ତକର ଅନେକ ସ୍ଥାନରେ ଦର୍ଶାଇଛନ୍ତି ଯେ ଓଡିଶାର ଯେଉଁ ଭୂଗୋଳ ଆଜି ରହିଛି ତାହା ସେପରି କେବେ ନଥିଲା, ଏହା ନାନା ଗଡ଼ଜାତରେ ବିଭକ୍ତ ହୋଇ ରହିଥିଲା। ସମଗ୍ର ଓଡିଶା ଭୂଖଣ୍ଡରେ ଜଗନ୍ନାଥଙ୍କୁ ଏକ ରାଷ୍ଟ୍ରଦେବତା କହିବା ଅପ୍ରାସଙ୍ଗିକ ମନେହୁଏ। ସମଗ୍ର ଓଡ଼ିଶାରେ ଜଗନ୍ନାଥଙ୍କୁ ଏକ ନିର୍ଦ୍ଦିଷ୍ଟ ଦେବତା ଭାବେ ପୂଜା କରାଯିବାର ଇତିହାସ ରହିଛି କି? ତା' ହୋଇଥିଲେ ଜଗନ୍ନାଥ ବିଷ୍ଣୁମୂଳ ନା ବୌଦ୍ଧମୂଳ ଏ ପ୍ରଶ୍ନର ସମାଧାନ ପାଇଁ ଲେଖକଙ୍କୁ ଏତେ ଯୁକ୍ତିର ଆଶ୍ରୟ

ନେବାକୁ ପଡିନଥା'ନ୍ତା। ବରଂ ଏକ କାଳ୍ପନିକ ଦେବତାକୁ ନିଜ ଧର୍ମୀୟ ବିଶ୍ୱାସ ଭିତରେ ପକାଇ ଜନମାନସର ଧାର୍ମିକ ଭାବପ୍ରବଣତାର ସୁଯୋଗ ନେବାକୁ ଇତିହାସରେ ବିଭିନ୍ନ ରାଜବଂଶ ପ୍ରୟାସ କରିଛନ୍ତି। ଯଦି ଜଗନ୍ନାଥ ଏକ ସର୍ବଜନବନ୍ଦ୍ୟ ଦେବତା ଥିଲେ ତେବେ ଏତେ ବୌଦ୍ଧ ବିହାର ଓ କୀର୍ତ୍ତିମାନଙ୍କୁ ନଷ୍ଟ କାହିଁକି କରାଯାଇଛି ? ଏକ ଆଦିମ ଯୁଗର କଳ୍ପନାକୁ ବିଭିନ୍ନ ଯୁଗରେ ନାନା ରଙ୍ଗ ଓ ତାତ୍ତ୍ୱିକ ଆଭୂଷଣ ଦେଇ ଭାବବିହ୍ୱଳ ହେବା ଏକ ବିଚାରଶୀଳ ଓ ପ୍ରଗତିଶୀଳ ବିଚାରର ସ୍ୱାକ୍ଷର ବହନ କରେ ନାହିଁ। ଆଧିଦୈବିକ, ଅତୀନ୍ଦ୍ରିୟ, ରହସ୍ୟମୟ ଭାବନାଗୁଡିକ ମଧ୍ୟଯୁଗୀୟ ମାନସିକତାର ପରିଚାୟକ ଓ ସେଗୁଡିକ ହେତୁହୀନ କଳ୍ପନାମାତ୍ର। ଏସବୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାବନାକୁ ଆଶ୍ରୟ କରି ନିଜର ଅସ୍ମିତାକୁ ପ୍ରକାଶ କରିବା ଏକ ସଭ୍ୟ ଜୀବନଧାରାର ପ୍ରତୀକ ହୋଇନପାରେ। ଶଶାଙ୍କଙ୍କର ଆକ୍ରମଣରୁ ଜଗନ୍ନାଥଙ୍କୁ ନେଇ ଲୁଚାଇବା କ'ଣ ଯଥେଷ୍ଟ ପ୍ରମାଣ ଦିଏ ନାହିଁ ଯେ ମଣିଷର ହିଂସା ଓ ବର୍ବରତାରୁ କାଳ୍ପନିକ ଈଶ୍ୱର ମଧ ତ୍ରାହି ପାନ୍ତି ନାହିଁ? ଧାର୍ମିକ ପୂଜା, ଉପାସନା, ଭାବବିହ୍ୱଳତା ଇତ୍ୟାଦି ଦେଇ ବ୍ୟଷ୍ଟି ବା ଗୋଷ୍ଠୀର ନୈତିକ ଓ ବୌଦ୍ଧିକ ଉତ୍ତରଣ ସମ୍ଭବ କି ?

ଲେଖକ କହିଛନ୍ତି, 'ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଓଡିଆ ଜାତିର ରାଷ୍ଟ୍ର ଦେବତା ଜଗନ୍ନାଥ ସର୍ବଧର୍ମ ସମନ୍ୱୟର ଦେବତା ଭାବରେ ପରିଚିତ।...ଜାତିଭେଦ ବିହୀନ ମହାପ୍ରସାଦ ସେବନର ପରମ୍ପରା ଶ୍ରୀମନ୍ଦିରରେ ପ୍ରଚଳିତ।"(ପୃ.୭୭)।

ଏହା ମଧ ଏକ ଭାବବିହ୍ୱଳ ଜନିତ ମନ୍ତବ୍ୟ ଛଡା ଅନ୍ୟ କିଛି ନୁହେଁ।

ଶ୍ରୀ ଜଗନ୍ନାଥ ମନ୍ଦିର ଭିତରକୁ ଅଣହିନ୍ଦୁମାନଙ୍କର ପ୍ରବେଶକୁ ସର୍ବଦା ବାରଣ କରାଯାଇଛି। ଆଧ୍ୟାତ୍ମିକ ଅଭୀପ୍ସା ରଖି କୌଣସି ଅଣହିନ୍ଦୁ ଜଗନ୍ନାଥ ମନ୍ଦିର ଭିତରେ ପ୍ରବେଶ କରିପାରିବ କି ? ଏପରିକି ଯେଉଁ ଜଗନ୍ନାଥଙ୍କୁ ବୌଦ୍ଧମୂଳ ବୋଲି ପ୍ରତିଷ୍ଠା କରିବା ପାଇଁ ଲେଖକ ପୁସ୍ତକରେ ବହୁ ପ୍ରୟାସ କରିଛନ୍ତି, କୌଣସି ନୈଷ୍ଠିକ ବୌଦ୍ଧଙ୍କର ଜଗନ୍ନାଥ ମନ୍ଦିର ଭିତରେ କେବେ ପ୍ରବେଶ ଅଧିକାର ରହିଛି କି ? ସେହିପରି ଜାତିପ୍ରଥା ହିନ୍ଦୁ ସମାଜର ଯେ ଏକ ଘୃଣ୍ୟ ଓ ଅମାନବିକ ପ୍ରଥା ଏହା କହିବା ନିଷ୍ପ୍ରୟୋଜନ। ତଥାକଥିତ ଦଳିତ ଓ ଆଦିବାସୀମାନଙ୍କର ଜଗନ୍ନାଥ ମନ୍ଦିରରେ ସମ୍ମାନଜନକ ପ୍ରବେଶ ଅଧିକାର ରହିଛି କି? ତେବେ ଯୁକ୍ତି ହୋଇପାରେ ଜଗନ୍ନାଥ ମନ୍ଦିର ଓ ସେଠିକାର କର୍ମକାଣ୍ଡ ସହିତ ଜଗନ୍ନାଥ ଚେତନା ସଂପୃକ୍ତ ନୁହେଁ। ଜଗନ୍ନାଥ ଚେତନା ଓ ଜଗନ୍ନାଥ

ଉପାସନା ପରସ୍ପରଠାରୁ ଭିନ୍ନ ଅଟନ୍ତି। ଜଗନ୍ନାଥ ଚେତନା ଏକ ମାନବବାଦୀ ମୂଲ୍ୟବୋଧର ପ୍ରତୀକ ବୋଲି କୁହାଯାଇପାରେ। ଯଦି ବାସ୍ତବରେ ଜଗନ୍ନାଥ ଭାବନା ଏକ ମାନବବାଦୀ ମୂଲ୍ୟବୋଧ ଆଧାରିତ ବିଚାର ହୋଇଥାନ୍ତା ତେବେ ଜଗନ୍ନାଥ ଭାବନାରେ ଉଦ୍‌ବୁଦ୍ଧ ଓଡିଶା ଭୂଖଣ୍ଡରେ ଅନ୍ତତଃ ଅସ୍ପୃଶ୍ୟତା ଓ ଉଚ୍ଚନୀଚ ଭେଦଭାବର ମାତ୍ରା ନଥା'ନ୍ତା ବା ଅତି କମ୍ ହୋଇଥାନ୍ତା। କିନ୍ତୁ ଏବେ ବି ଓଡିଶାର ଜନ ଜୀବନରେ ଏହି ଅପସଂସ୍କୃତି ଓ ଅନୈତିକ ପ୍ରଥା ବଦ୍ଧମୂଳ ରହିଛି। ସମାଜରେ ବ୍ୟକ୍ତି ମର୍ଯ୍ୟାଦାର ଯେଉଁ କିଛି ମାନସିକତା ସୃଷ୍ଟି ହୋଇଛି ତାହା ଆଧୁନିକ ଜୀବନଶୈଳୀ, ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଓ ସ୍ୱାଧୀନ ଭାରତର ପ୍ରଗତିଶୀଳ ସମ୍ବିଧାନ ଯୋଗୁଁ ସମ୍ଭବ ହୋଇଛି, ଜଗନ୍ନାଥ ବିଶ୍ୱାସର ପ୍ରଭାବ ଯୋଗୁଁ ନୁହେଁ। ହୁଏତ ଜଗନ୍ନାଥ ବୌଦ୍ଧ ଦେବତା ଥିବାବେଳେ ବୌଦ୍ଧଧର୍ମର ସମତାଦୃଷ୍ଟି ଯୋଗୁଁ ସେହି ସାମାଜିକ ଗୋଷ୍ଠୀ ଭିତରେ ଜାତିପ୍ରଥାର ଏପରି ଭେଦଭାବ ନଥାଇପାରେ, କିନ୍ତୁ ଜଗନ୍ନାଥ ଯେବେଠାରୁ ହିନ୍ଦୁ ଦେବତା ହୋଇଛନ୍ତି ହିନ୍ଦୁ ସମାଜର ଜାତିପ୍ରଥା ଜନିତ ବ୍ୟବସ୍ଥା ସମାଜରେ ସୁଦୃଢ଼ ହୋଇଯାଇଛି।

ଓଡ୍ରମାନେ ଉପକୂଳବର୍ତ୍ତୀ କଳିଙ୍ଗ ଜାତିଠାରୁ ସ୍ୱାତନ୍ତ୍ର୍ୟ ରଖିଥିବା ଏକ ଆଦିମ ଜାତି ବୋଲି ଲେଖକ ପୁସ୍ତକରେ ଦର୍ଶାଇଛନ୍ତି (ପୃ.୯୮-୯୯)। ସେହିପରି ଲେଖକ ଓଡିଶାକୁ ଏକ ପୁଣ୍ୟଭୂମି ବୋଲି ବହୁବାର ଉଲ୍ଲେଖ କରିଛନ୍ତି (ପୃ.୯୭)। ଗୋଟିଏ ଜାତି ଓ ତା'ର ଭୂମିକୁ ପତିତ ବା ପବିତ୍ର ବୋଲି ବିଚାର କରିବା ଯେ ଏକ ଅହେତୁକ ମୂଲ୍ୟାୟନ ଏହା ନିଃସନ୍ଦେହ। ଯେଉଁଠି ବିଚାରଶୀଳତା ପରିବର୍ତ୍ତେ ଭାବପ୍ରବଣତା ଆସେ ସେଠାରେ ଏହି ପ୍ରକାର ଆତ୍ମପ୍ରଶଂସା ବା ନିନ୍ଦାସୂଚକ ମୂଲ୍ୟାୟନ ହୋଇଥାଏ।

ପୁସ୍ତକରେ ଲେଖକ କେତେକ ସିଦ୍ଧାନ୍ତକୁ ଯଥା, ଜଗନ୍ନାଥ ବୌଦ୍ଧମୂଳ, ଜଗନ୍ନାଥଙ୍କ ଆଦିପୀଠ ପୁରୀ ନୁହେଁ ଯେପରି ପ୍ରତିଷ୍ଠା କରିବାକୁ ପ୍ରୟାସ କରିଛନ୍ତି ସେହିପରି ବୌଦ୍ଧ ଦେବତା ଜଗନ୍ନାଥ କିପରି ଓ କେବେ ଏକ ହିନ୍ଦୁ ଦେବତାରେ ରୂପାନ୍ତରିତ ହେଲେ ତାହା ବସ୍ତୁନିଷ୍ଠ ତଥ୍ୟ ଆଧାରରେ ପ୍ରତିଷ୍ଠା କରିନାହାନ୍ତି। ସୋମବଂଶୀ ଶାସନ କାଳରେ ପୁରୀରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଓ ଜଗନ୍ନାଥ ଉପାସନା ଆରମ୍ଭ ହେବା ଓ ସୋମବଂଶୀମାନେ ବୌଦ୍ଧବିଦ୍ୱେଷୀ ଥିବା ଲେଖକ ଦର୍ଶାଇଛନ୍ତି। ତେବେ ପ୍ରଶ୍ନ ହେଉଛି, ଯେଉଁ ସୋମବଂଶୀମାନେ ଏତେ ବୌଦ୍ଧ ବିଦ୍ୱେଷୀ ଥିଲେ ସେମାନେ

କାହିଁକି ବୌଦ୍ଧ ଦେବତା ଜଗନ୍ନାଥଙ୍କୁ ହିନ୍ଦୁ ଦେବତାରେ ରୂପାନ୍ତରିତ କରିବାକୁ ଚାହିଁଲେ ବା ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଭାବରେ ଗ୍ରହଣ କଲେ ? ବ୍ରାହ୍ମଣ୍ୟଧର୍ମର ପ୍ରସାର ପାଇଁ ବୌଦ୍ଧଧର୍ମର ଧ୍ୱଂସ ସାଧନ କରିବା ଅଥଚ ବୁଦ୍ଧଙ୍କୁ ବ୍ରାହ୍ମଣ୍ୟ ଧର୍ମର ଅବତାର ଭିତରେ ସଂପୃକ୍ତ କରିବା ଏକ ରହସ୍ୟମୟ ଘଟଣା ମନେହୁଏ ନାହିଁ କି ? ଲେଖକ ଏ କ୍ଷେତ୍ରରେ ଯେଉଁ କାରଣ ଦର୍ଶାଇଛନ୍ତି ତାହା ଯେ ଯଥେଷ୍ଟ ବା ପ୍ରାମାଣଯୋଗ୍ୟ ନୁହେଁ ଏହା ପ୍ରତୀତ ହୁଏ ।

ମଣିଷର ଅନୁସନ୍ଧିତ୍ସୁ ମନର ବିସ୍ମୟରୁ ଧାର୍ମିକ ବା ଆଧାତ୍ମିକ ଚେତନାର ବିକାଶ ହୋଇଛି ବୋଲି ଲେଖକ ଉପକ୍ରମଣିକାରେ ସୂଚାଇଛନ୍ତି । ଏହା ସତ୍ୟ ଯେ, ଅନୁସନ୍ଧିତ୍ସା ଓ କୌତୂହଳତା ହିଁ ଜ୍ଞାନର ବିକାଶର ମୂଳଭିତ୍ତି । ତେବେ ଅନୁସନ୍ଧିତ୍ସା ଦ୍ୱାରା ମଣିଷ ବିଜ୍ଞାନ ଆଡ଼କୁ ଯାଏ  ଅଥଚ କାଳ୍ପନିକ ବିଶ୍ୱାସ ଦ୍ୱାରା ମଣିଷ ଅଧିକ ଧାର୍ମିକ ହୁଏ । ଧର୍ମ, ଆଧାତ୍ମିକତାର ଆଧାର ରହସ୍ୟମୟ ହୋଇଥାଏ । ସେ ଯାହାହେଉ, ଅନୁସନ୍ଧିତ୍ସା ଯେ ସଭ୍ୟତା ଓ ସଂସ୍କୃତି ଗଠନରେ ଏକ ପ୍ରଧାନ ଭୂମିକା ନେଇଛି ଓ ଆଦି ମାନବର ସେହି କାଳ୍ପନିକ ବିଶ୍ୱାସରୁ ଗୋଟିଏ ସାଂସ୍କୃତିକ ଧାରାର ଅଯମାରମ୍ଭ ହୋଇ ନାନା ଦିଗନ୍ତକୁ ସ୍ପର୍ଶ କରିଛି ଏହା ସମ୍ଭବତଃ ଲେଖକ ଦର୍ଶାଇବାକୁ ମନେ କରିଛନ୍ତି ।

ସ୍ଥଳବିଶେଷରେ ସାମାଜିକ ଓ ସାଂସ୍କୃତିକ ପ୍ରଭାବ ଲେଖକଙ୍କୁ ଭାବପ୍ରବଣ କରିଥିଲେ ମଧ୍ୟ ସେ ଅନେକାଂଶରେ ବସ୍ତୁନିଷ୍ଠ ବିଶ୍ଳେଷଣ ମାଧ୍ୟମରେ ତାଙ୍କର ସିଦ୍ଧାନ୍ତକୁ ଉପସ୍ଥାପନ କରିଛନ୍ତି । ତାଙ୍କର ଏହି ଗବେଷଣାଲବ୍ଧ ସିଦ୍ଧାନ୍ତ ଜଗନ୍ନାଥ ଭାବଧାରା ଜନିତ ସାହିତ୍ୟ କ୍ଷେତ୍ରକୁ ଏକ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ ।





ଲେଖକ ଅଧ୍ୟାପକ ଧନେଶ୍ୱର ସାହୁଙ୍କ ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ । ଦର୍ଶନଶାସ୍ତ୍ରରେ ରେଭେନ୍‌ସା ମହାବିଦ୍ୟାଳୟରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଓ ଉଭୟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ନେଇ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଲାଭ । ୧୯୭୪ରୁ ସରକାରୀ କଲେଜରେ ଦର୍ଶନ ଅଧ୍ୟାପକ ଭାବେ ଯୋଗଦେଇ ବିଭିନ୍ନ କଲେଜରେ ଅଧ୍ୟାପନା କରି ୨୦୦୭ରେ ବିଜେବି ମହାବିଦ୍ୟାଳୟରୁ ବିଭାଗୀୟ ମୁଖ୍ୟ ଭାବେ ଅବସରଗ୍ରହଣ ।

ଜଣେ ପ୍ରାବନ୍ଧିକ, ସ୍ତମ୍ଭକାର ଓ ହେତୁବାଦୀ ଚିନ୍ତକ ଭାବେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ । ସମକାଳର ଓଡ଼ିଆ ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ବୈଚାରିକ ସ୍ୱଚ୍ଛତା, ଯୁକ୍ତିଶୀଳତା, ଅନୁଶୀଳନାତ୍ମକ ବିଶ୍ଳେଷଣ ଓ ମୌଳିକତା ତାଙ୍କ ସାରସ୍ୱତ ସୃଷ୍ଟିର ଅନ୍ତଃସ୍ୱର ।

ଇଂରାଜୀ ପୁସ୍ତକ ବ୍ୟତୀତ 'ଧର୍ମର ଊର୍ଦ୍ଧ୍ୱରେ', 'ଆବ୍ରାହମ କୋଭୁର', 'ଧର୍ମ ଦର୍ଶନ ଓ ସମାଜ', 'ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ', 'ସଂସ୍କୃତି ଓ ସର୍ବୋଦୟ(ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ), 'ଗାନ୍ଧୀ ବିଜ୍ଞାନ ଓ ମାନବବାଦ', 'ଜୀବନ ଜିଜ୍ଞାସା' ତାଙ୍କର ସୃଜନ ସୃଷ୍ଟି । ଏହାଛଡ଼ା 'ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ', 'ପେରିୟାରଙ୍କ ରଚନା', 'ଭାରତରେ ଜାତିପ୍ରଥା : ଉତ୍ପତ୍ତି ଓ ସ୍ୱରୂପ' ତାଙ୍କର ତିନୋଟି ସୁଖପାଠ୍ୟ ଅନୁବାଦ ପୁସ୍ତକ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର କ୍ଷେତ୍ରରେ ପ୍ରତିବଦ୍ଧତା ପାଇଁ ପେରିୟାର ଇଣ୍ଟରନେସ୍‌ନାଲ ଦ୍ୱାରା ପୁରସ୍କୃତ ।

ପ୍ରକାଶକ

ସୁବର୍ଣ୍ଣଶ୍ରୀ ପ୍ରକାଶନୀ